କେ. କୃଷ୍ଣମୂର୍ତ୍ତି

ଲେଖିକା :

ଡକ୍ଟର ନନ୍ଦିନୀ ଦାସ

ପ୍ରକାଶକ

ସେଲ୍ଫ୍ ଏଡୁକେସନ୍ ଟ୍ରଷ୍ଟ

ପୁରିଘାଟ ରୋଡ୍

କଟକ-୭୫୩୦୦୯

ପ୍ରଥମ ପ୍ରକାଶ :

୧୯୯୨

(ଏକ ହଜାର ପଚାଶ ମୁଦ୍ରଣ)

ମୂଲ୍ୟ :

ବନ୍ଧାଇ ସହ

ପଚାଶ ଟଙ୍କା ମାତ୍ର

ମୁଦ୍ରଣ :

ଗୀତାଞ୍ଜଳି ପ୍ରେସ

କଟକ-୭୫୩୦୦୨

J. Krishnamurti

Writer :

**Dr. Nandini Das**

Publisher :

**Self Education Trust**

Purighat Road

Cuttack-753009

Published :

**1992**

(1050 Print)

Hard back Price :

Rupees **Fifty** only

Printer :

**Gitanjali Press**

Cuttack-753002

"From the nineteen twenties I have been saying that there should be no interpreters of the teachings for they distort the teachings and it becomes a means of exploitation. No interpreters are necessary for each person should observe directly his own activities, not according to any theory or authority. Unfortunately interpreters have sprung up, a fact for which we are in no way responsible. In recent years several people have asserted that they are my successors and that they have been especially chosen by me to disseminate the teachings. I have said, and I again repeat, that there are no representatives of Krishnamurti personally or of his teachings during or after his life-time. I am very sorry that this has to be said again."

[ Bulletin No. 7, 1970 of Krishnamurti Foundation Trust, England ]

# ଭୂମିକା

କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ମୁଖ୍ୟତଃ ଭାଷଣ ଓ ପ୍ରଶ୍ନୋତ୍ତର ଆକାରରେ ସଙ୍କଳିତ । ପାଠକ ଯେତେବେଳେ ତାଙ୍କର ଭାଷଣକୁ ବହିରୁ ପଢ଼ିବେ ବା ଟେପ୍‌ରୁ ଶୁଣିବେ ସେତେବେଳେ ସେ ନିଜକୁ କୃଷ୍ଣମୂର୍ତ୍ତିଙ୍କର ସଭାରେ ବସିଥିବା ଜଣେ ଶ୍ରୋତା ବୋଲି ମନେ କରି ନିମଗ୍ନ ଚିତ୍ତରେ ତାହାକୁ ବୁଝିବାକୁ ଚେଷ୍ଟା କରିବେ । ସତେ ଯେପରି କୃଷ୍ଣମୂର୍ତ୍ତି ତାଙ୍କୁ ହିଁ ସାମନାରେ ବସାଇ କଥାଗୁଡ଼ାକ କହୁଛନ୍ତି । ସେ ଯେ ପ୍ରକୃତରେ ବହିଟିଏ ପଢ଼ୁଛନ୍ତି ବା ଟେପ୍ ଶୁଣୁଛନ୍ତି ଏକଥା ପୂରାପୂରି ଭୁଲିଯିବେ । ସେହିପରି ଯେତେବେଳେ ପ୍ରଶ୍ନୋତ୍ତର ସମ୍ବଳିତ କଥୋପକଥନ ପଢ଼ିବେ ବା ଶୁଣିବେ ସେତେବେଳେ ନିଜକୁ ସେହି ପ୍ରଶ୍ନକର୍ତ୍ତାଙ୍କର ବ୍ୟକ୍ତିତ୍ୱ ଓ ସମସ୍ୟା ସହିତ ପୂରାପୂରି ଏକାକାର କରିନେବେ ଏବଂ ମନେ କରିବେ ଯେପରିକି ସେ ନିଜେ କୃଷ୍ଣମୂର୍ତ୍ତିଙ୍କ ସାମନାରେ ବସି ସେହି ପ୍ରଶ୍ନଟି ତାଙ୍କୁ ପଚାରୁଛନ୍ତି । ତା'ପରେ କୃଷ୍ଣମୂର୍ତ୍ତି ଯେଉଁ ଉତ୍ତର ଦେବେ ତାକୁ ସେ ଗଭୀର ଧ୍ୟାନ ସହକାରେ ବୁଝିବାକୁ ଚେଷ୍ଟା କରିବେ । ଯଦିବା ତାଙ୍କ ମନରେ ଥିବା ପ୍ରଶ୍ନଟି, ପ୍ରଶ୍ନକର୍ତ୍ତା ପଚାରିଥିବା ପ୍ରଶ୍ନଠାରୁ ସାମାନ୍ୟ ଭିନ୍ନ ହୋଇଥାଏ ତଥାପି ତାକୁ ସମ୍ପୂର୍ଣ୍ଣ ଭୁଲିଯାଇ ପ୍ରଶ୍ନକର୍ତ୍ତାଙ୍କର ନିର୍ଦ୍ଦିଷ୍ଟ ପ୍ରଶ୍ନର ଉତ୍ତରକୁ ହୃଦୟଙ୍ଗମ କରିବାକୁ ଚେଷ୍ଟା କରିବେ । କାରଣ କୃଷ୍ଣମୂର୍ତ୍ତିଙ୍କର ପ୍ରତ୍ୟେକଟି ଉତ୍ତର ନିର୍ଦ୍ଦିଷ୍ଟ ଭାବରେ ପଚରା ଯାଇଥିବା ସେହି ପ୍ରଶ୍ନଟି ନିମନ୍ତେ ଉଦ୍ଦିଷ୍ଟ । ପ୍ରଶ୍ନରେ ସାମାନ୍ୟ ପରିବର୍ତ୍ତନ ଘଟିଲେ ସେହି ଉତ୍ତର ଆଉ ତା'ପାଇଁ ପ୍ରଯୁଜ୍ୟ ନୁହେଁ । ତେବେ ବିଚିତ୍ର ଏଇ ଯେ ଏଭଳି କୌଣସି ନିର୍ଦ୍ଦିଷ୍ଟ ପ୍ରଶ୍ନ ନାହିଁ ଯାହାକୁ କି କୃଷ୍ଣମୂର୍ତ୍ତି ପ୍ରସଙ୍ଗକ୍ରମେ ଆଲୋଚନା କରିନାହାନ୍ତି ।

କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାକୁ ପଢ଼ିବା ଓ ବୁଝିବା ପାଇଁ ଉପରୋକ୍ତ ଉପାୟ ପାଠକଙ୍କୁ ସବୁ କ୍ଷେତ୍ରରେ ଅତ୍ୟନ୍ତ ସାହାଯ୍ୟ କରିବ ।

**ଲେଖିକା**

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ବାଲ୍ୟକଥା | ୧ |
| ଥିଓସଫିକାଲ ସୋସାଇଟି ଓ ମହାଗୁରୁ | ୧୧ |
| "କି ଅଦ୍ଭୁତ ଜ୍ୟୋତିର୍ବଳୟ !" | ୨୭ |
| ଆନି ବେସାନ୍ତ ଓ କୃଷ୍ଣମୂର୍ତ୍ତି | ୩୭ |
| ଦୀକ୍ଷା-ଗ୍ରହଣ | ୪୩ |
| 'ଅର୍ଡ଼ର ଅଫ୍ ଦ ରାଇଜିଂ ଷ୍ଟାର' | ୫୨ |
| ଲଣ୍ଡନରେ କୃଷ୍ଣମୂର୍ତ୍ତି | ୫୭ |
| ଏକ ଅଲୌକିକ ଘଟଣା | ୬୨ |
| କଚେରିରେ ଫଇସଲା | ୬୭ |
| ନିର୍ବିକାର ସେବା ସାଥିକୁ ସୌଖୀନତା | ୭୨ |
| ବ୍ୟକ୍ତିତ୍ୱର ପ୍ରଥମ ଝଲକ | ୭୯ |
| ବାପ ପୁଅଙ୍କ ଶେଷ ଭେଟ | ୮୭ |
| ଗୁଜବ ଓ ଟାଣ୍ଡ ଟାପର ଘେରରେ କୃଷ୍ଣମୂର୍ତ୍ତି | ୮୯ |
| 'ସେ ମୂଳଆଡି ମୁଁ, ପୁଣି ତା'ର ଗନ୍ତବ୍ୟ ବି ମୁଁ' | ୯୩ |
| ଏକ ଅଭିନବ ପରୀକ୍ଷା | ୧୦୪ |
| ପ୍ରସ୍ତୁତି ପଥେ | ୧୧୦ |
| ପ୍ରେମ ହିଁ ମୂଳମନ୍ତ୍ର | ୧୧୭ |
| ନିତ୍ୟ | ୧୧୯ |
| 'ମୁଁ ଓ ମୋର ଭାଇ ହେଉଛୁ ଏକ' | ୧୨୩ |
| ଗୋଷ୍ଠୀ କନ୍ଦଳ | ୧୩୨ |
| 'ଗୁରୁ କ'ଣ ଅନାବଶ୍ୟକ ?' | ୧୪୪ |
| 'ସତ୍ୟ ଏକ ପଥହୀନ ସାମ୍ରାଜ୍ୟ' | ୧୫୩ |
| ଆନି ବେସାନ୍ତଙ୍କ ମୃତ୍ୟୁ | ୧୬୧ |

| | |
|---|---|
| 'କ୍ରିଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀ' | ୧୬୫ |
| ନିଃସଙ୍ଗତା ଓ ଆତ୍ମ-ଅନୁଧ୍ୟାନ | ୧୭୨ |
| ଉପଯୁକ୍ତ ଶିକ୍ଷା ଓ ବିଦ୍ୟାଳୟ | ୧୭୯ |
| ଜାନୁଆରୀ ୩୦, ୧୯୪୮ | ୧୮୭ |
| ଉତ୍କାମଣ୍ଡରେ 'ପ୍ରକ୍ରିୟା' | ୧୯୪ |
| "ଯେଉଁ ପ୍ରେମ ଦୁଃଖ ଓ ଘୃଣାରେ ପରିଣତ ହୁଏ, ସେ ତ ପ୍ରେମ ନୁହେଁ···" | ୨୦୨ |
| 'ଭଗବନ'ର ଅର୍ଥ କଣ ? | ୨୧୧ |
| ରାଜଗୋପାଳ | ୨୧୪ |
| ପହଲଗାଓଁରେ କ୍ରିଷ୍ଣମୂର୍ତ୍ତି | ୨୨୦ |
| 'କ୍ରିଷ୍ଣମୂର୍ତ୍ତି ନୋଟ୍‌ବୁକ୍' | ୨୩୦ |
| କ୍ରିଷ୍ଣମୂର୍ତ୍ତି ଫାଉଣ୍ଡେସନ୍ | ୨୩୯ |
| ଆଧ୍ୟାତ୍ମିକ ଶକ୍ତି ଓ ଉପଶମ | ୨୪୦ |
| ପ୍ରଶ୍ନଶୀଳ ଶିକ୍ଷାତତ୍ତ୍ୱ | ୨୪୭ |
| 'ଭୟ' ଓ ମାନସିକ ଶୃଙ୍ଖଳା | ୨୬୪ |
| ମୃତ୍ୟୁ ସହ କଥୋପକଥନ | ୨୬୯ |
| ଆଡ୍ୟାରର ଭ୍ରମଣ | ୨୭୭ |
| ସାଧୁ ସନ୍ନ୍ୟାସୀଙ୍କ ଗହଣରେ | ୨୮୭ |
| 'ଏ ଶିକ୍ଷାର କେହି ପ୍ରତିନିଧି ନାହିଁ' | ୨୯୧ |
| ନବେ ବର୍ଷ ବୟସରେ— | ୩୦୦ |
| ଅନ୍ତିମ ଯାତ୍ରା | ୩୧୪ |
| 'କିଏ ସେଇ କ୍ରିଷ୍ଣମୂର୍ତ୍ତି ?' | ୩୨୮ |










କିଶୋର ଜେ. କ୍ରିଷ୍ଣମୂର୍ତ୍ତି ଓ ସାନ ଭାଇ ନିତ୍ୟ



ବସନ୍ତ ବିହାର, ମାଡ୍ରାସ



ପାଇନ୍ କଟେଜ, ଓହାଇ, କାଲିଫର୍ଣିଆ

## ବାଲ୍ୟକଥା

ଆନ୍ଧ୍ର ପ୍ରଦେଶର ଚିତ୍ତୁରୁ ଜିଲ୍ଲାରେ ଗ୍ରୋଟିଏ ସହରଟିଏ—ମଦନାପଲ୍ଲୀ । ମାଡ୍ରାସଠାରୁ ଦେଢ଼ଶହ ମାଇଲ ଉତ୍ତରକୁ ବାଙ୍ଗାଲୋର-ମାଡ୍ରାସ ରାଜପଥ ଉପରେ ଏହି ଗ୍ରୋଟ ସହରଟି ଆଜି ବି ଛୋଟିଆ ହୋଇଛି । ଜାଗାଟିର ଏମିତି କିଛି ନାଆଁ ଡାକ ନାହିଁ ସତ କିନ୍ତୁ ବେଶ୍ ପୁରୁଣା । ସହରର ଗୋଟିଏ ପାଖରେ ବେଢ଼ାଇ ହୋଇ ରହିଛି ଉଚ୍ଚ ହର୍ଷଲକୋଣ୍ଡା ପର୍ବତମାଳା ଆଉ ତା ସେପାରିରେ ଘନ ସବୁଜ ଜଙ୍ଗଲ । ଖରାଦିନର ପ୍ରଚଣ୍ଡ ଝାଞ୍ଜିଭରା ଗରମ ଆଉ ତା ସାଙ୍ଗକୁ ବର୍ଷାଦିନର ଯଥେଷ୍ଟ ବର୍ଷା—ତା'ର ଭିତରେ ମଦନାପଲ୍ଲୀ ସହରଟି ସଦା ଜୀବନ୍ତ, ସଦା ପ୍ରାଣବନ୍ତ ।

ସେଇ ସହରର ଏକ ନୈଷ୍ଠିକ ତେଲଗୁ ବ୍ରାହ୍ମଣ ପରିବାରରେ ଜିଡ୍ଡୁ କ୍ରିଷ୍ଣମୂର୍ତ୍ତିଙ୍କର ଜନ୍ମ । ବାପା ତାଙ୍କର ଜିଡ୍ଡୁ ନାରାୟଣିୟା ମାଡ୍ରାସ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ହାସଲ କରି ବ୍ରିଟିଶ୍ ସରକାରଙ୍କ ଅଧୀନରେ ରେଭିନ୍ୟୁ ବିଭାଗରେ ଜଣେ ପଦସ୍ଥ ଅଫିସର ଥିଲେ । ନାରାୟଣିୟାଙ୍କ ବାପା ସେକାଳର ଜଣେ ଅତି ଉଚ୍ଚଶିକ୍ଷିତ ସରକାରୀ କର୍ମଚାରୀ ଥିଲେ ଓ ତାଙ୍କର ଜେଜେବାପା ଜଣେ ସଂସ୍କୃତ ବିଶାରଦ ଥିଲେ । ସେ ମଧ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀରେ ଏକ ବିଶିଷ୍ଟ ପଦବୀର ଅଧିକାରୀ ଥିଲେ । ଏମିତି ଦେଖିବାକୁ ଗଲେ ସେତେବେଳକାର ସମୟକୁ ଚାହିଁ କ୍ରିଷ୍ଣମୂର୍ତ୍ତିଙ୍କ ପରିବାରଟି ଏକ ଶିକ୍ଷିତ ଓ ସମ୍ଭ୍ରାନ୍ତ ପରିବାର ଭିତରେ ଗଣା ଯାଉଥିଲା । କ୍ରିଷ୍ଣମୂର୍ତ୍ତିଙ୍କର ମାଆ ଜିଡ୍ଡୁ ସଞ୍ଜୀବାମ୍ମା ଥିଲେ ଜଣେ ଅତ୍ୟନ୍ତ ଧର୍ମପରାୟଣା ଓ କୋମଳମତି ମହିଳା । ଘରକାମ ସମ୍ଭାଳିବା ଓ ଦାନଧର୍ମ, ଦେବପୂଜାରେ ହିଁ ତାଙ୍କର ସମୟ କଟୁଥିଲା । ସଞ୍ଜୀବାମ୍ମାଙ୍କର ସର୍ବମୋଟ ଦଶଟି ସନ୍ତାନ ମଧ୍ୟରେ କ୍ରିଷ୍ଣମୂର୍ତ୍ତି ଥିଲେ

ଅଷ୍ଟମ ଗର୍ଭର ସନ୍ତାନ । ମାତ୍ର କ୍ରିଷ୍ଣମୂର୍ତ୍ତି ଜନ୍ମ ହେବା ବେଳକୁ ତାଙ୍କ ଉପରେ ମାତ୍ର ଗୋଟିଏ ପୁଅ ଓ ଯୋଡ଼ିଏ ଝିଅ ବଞ୍ଚି ରହିଥିଲେ, ଅନ୍ୟ ସମସ୍ତେ ପିଲା ବୟସରୁ ମରି ଯାଇଥିଲେ । କ୍ରିଷ୍ଣମୂର୍ତ୍ତି ଜନ୍ମ ନେବାକୁ ଅଳ୍ପ ଦିନ ବାକିଥାଏ ସଞ୍ଜୀବାମ୍ମାଙ୍କ ମନରେ ବାରମ୍ବାର ଉଠିଲା ଯେ ତାଙ୍କର ଏଇ ଗର୍ଭର ସନ୍ତାନଟି ଦେବକଳାରେ ଜନ୍ମ ନେବ—ଅନ୍ୟାନ୍ୟ ସାଧାରଣ ପିଲାଙ୍କଠାରୁ ସେ ଏକବାରେ ଭିନ୍ନ ସ୍ୱଭାବର ହେବ ଏବଂ ଭବିଷ୍ୟତରେ ଅଶେଷ ଶକ୍ତିର ପରିଚୟ ଦେବ । ସଞ୍ଜୀବାମ୍ମା ଥିଲେ କୃଷ୍ଣଭକ୍ତ । ତେଣୁ ଯେତେଦୂର ସମ୍ଭବ ସେ ଏହି ଅଷ୍ଟମ ଗର୍ଭରେ ଜନ୍ମ ନେବାକୁ ଥିବା ସନ୍ତାନଟିକୁ ଶ୍ରୀକୃଷ୍ଣଙ୍କର ଅଂଶ ବୋଲି ମନେ ମନେ ଧରି ନେଇଥିଲେ । ଆଉ ଖାସ୍ ସେଇ କାରଣରୁ ସେ ଅଡ଼ି ବସିଲେ ଯେ ତାଙ୍କର ଅଷ୍ଟମ ସନ୍ତାନଟି ଅନ୍ୟ କେଉଁଠି ନୁହେଁ, ଖୋଦ୍ ଠାକୁର ଘରେ ହିଁ ଜନ୍ମ ନେବ । ଶେଷକୁ ତାଙ୍କର କଥା ରହିଲା । ୧୮୯୫ ମସିହା ମେ' ମାସ ୧୧ ତାରିଖ ରାତି ସାଢ଼େ ବାରଟା ସମୟରେ ଠାକୁର ଘର ଭିତରେ କ୍ରିଷ୍ଣମୂର୍ତ୍ତି ଜନ୍ମ ହେଲେ । ଶୁଣାଯାଏ ଯେ କ୍ରିଷ୍ଣମୂର୍ତ୍ତିଙ୍କର ଜନ୍ମବେଳେ ତାଙ୍କ ମାଆ ଏକ ଲୟରେ "ରାମ...ରାମ", "ଅଞ୍ଜନେୟ" ବୋଲି ଉଚ୍ଚାରଣ କରିବାରେ ଲାଗିଥିଲେ ।

କ୍ରିଷ୍ଣମୂର୍ତ୍ତିଙ୍କର ବାପା କୋଷ୍ଠୀ ଗଣନାରେ ଖୁବ୍ ବିଶ୍ୱାସ କରୁଥିଲେ । ତେଣୁ ପୁଅଟି ଜନ୍ମ ହେବାପରେ ସେଠାକାର ଜଣେ ବଡ଼ ପଣ୍ଡିତଙ୍କୁ ଡକାଇ ସେ ଆଗ୍ରହରେ ପିଲାଟିର ଜାତକ କଷିବାକୁ ଦେଲେ । କଥା ହେଉଛି ସ୍ୱୀଙ୍କର ବିଶ୍ୱାସକୁ ଦେଖି ସେ ମଧ୍ୟ ପୁଅର ଭବିଷ୍ୟତ ଜାଣିବାକୁ କୌତୂହଳୀ ହୋଇ ଉଠିଥିଲେ । ଅନେକ ସମୟ ଗଣନା ସାରିବା ପରେ ପଣ୍ଡିତ ଶେଷକୁ ହସ ହସ ମୁହଁରେ ନାରାୟଣିୟାଙ୍କୁ ଚାହିଁ କହିଲେ ଯେ, 'ତାଙ୍କର ଏଇ ପିଲାଟି ଦିନେ ଜଣେ ଅତି ବଡ଼ ମହାପୁରୁଷ ହେବ । ଖୁବ୍ ନାଆଁ କରିବ ; ତାର ଖ୍ୟାତି ସାରା ଜଗତକୁ ଚମକାଇ ଦେବ । ଅତି ଉଚ୍ଚ କୋଷ୍ଠୀ ତା'ର ।' ଗଣନା ଶୁଣାଇ ଦେଇ ପଣ୍ଡିତ ଚାଲିଗଲେ ସିନା କିନ୍ତୁ ବର୍ଷ ଗଡ଼ିବା ସଙ୍ଗେ ସଙ୍ଗେ କ୍ରିଷ୍ଣମୂର୍ତ୍ତିଙ୍କର ହାବଭାବ, ଆଚରଣ ଦେଖି ନାରାୟଣିୟାଙ୍କ ମନରେ ସନ୍ଦେହ ଆସିଲା ।

ତାଙ୍କର ମନେହେଲା ଯେ ଗଣକଙ୍କର ସବୁଯାକ ଭବିଷ୍ୟତବାଣୀ ବୋଧହୁଏ ଭୁଲ ହେଇଯିବ । ବୁଦ୍ଧି ଓ ସ୍ମରଣ ଶକ୍ତିରେ ଧୀରେ ଧୀରେ ପ୍ରଖର ହେବା ବଦଳରେ କ୍ରିଷ୍ଣମୂର୍ତ୍ତି ଯେ ବେଳକୁ ବେଳ ଗୋଟିଏ ନିତାନ୍ତ ସରଳିଆ ଓ ନିର୍ବୁଦ୍ଧିଆ ପିଲାଭଳି ବ୍ୟବହାର ଦେଖାଇବାରେ ଲାଗିଛନ୍ତି ! ନାରାୟଣିଆ ହତାଶ ହୋଇପଡ଼ିଲେ । ପୁଅର ଉଜ୍ଜ୍ୱଳ ଭବିଷ୍ୟତ ନେଇ ମନରେ ତାଙ୍କର ଯେତେ ଯେତେ ସ୍ୱପ୍ନ ବସା ବାନ୍ଧିଥିଲା, ସବୁ ଫିକା ପଡ଼ି ଆସିଲା । କିନ୍ତୁ ନାରାୟଣିଆଙ୍କ ଠାରୁ କ୍ରିଷ୍ଣମୂର୍ତ୍ତିଙ୍କ ବିଷୟରେ ସବୁ ଶୁଣିବା ସତ୍ତ୍ୱେ ଜାତକ କଷିଥିବା ପଣ୍ଡିତଙ୍କର ମନରେ ଟିକେ ବି ସନ୍ଦେହ ଆସିଲା ନାହିଁ । ବାଟରେ ଘାଟରେ ସେ ଯୋଉଠି ନାରାୟଣିୟାଙ୍କୁ ଦେଖନ୍ତି ଭାରି ଆଗ୍ରହରେ ସେଇ ପୁଅଟି ବିଷୟରେ ପଚାରି ବସନ୍ତି ଓ ଉତ୍ତରରେ ନାରାୟଣିୟାଙ୍କର ଶୁଖିଲା ମୁହଁ ଦେଖି ତାଙ୍କୁ ଦମ୍ଭ ଦେଇ କହି ଉଠନ୍ତି, "ରହ ରହ ଦେଖିବ, ପିଲାଟି କେମିତି ସାରା ଜଗତରେ ଚମକି ଉଠିବ । ମୋ କଥା କେଉଁ ମିଛ ହେବ ନାହିଁ । ଖାଲି ଧୈର୍ଯ୍ୟ ଧର ।"

କ୍ରିଷ୍ଣମୂର୍ତ୍ତିଙ୍କୁ ଯେତେବେଳେ ଦେଢ଼ବର୍ଷ ବୟସ କଡ଼ାପ୍ପା ବୋଲି ଗୋଟିଏ ବଡ଼ ସହରକୁ ନାରାୟଣିୟାଙ୍କର ବଦଳି ହେଇଗଲା । ମଦନାପଲ୍ଲୀର ଶ୍ରେଷ୍ଠ ପରିବେଶରୁ ସେମାନେ ସିନା ବଡ଼ ସହରକୁ ଆସିଲେ ହେଲେ ଆସିବାର ଅଳ୍ପ କେତେଦିନ ଭିତରେ କ୍ରିଷ୍ଣମୂର୍ତ୍ତିଙ୍କୁ ପ୍ରବଳ ମ୍ୟାଲେରିଆ ଜର ଧରିଲା । ପିଲାଟି ଦିନୁ ତାଙ୍କର ସ୍ୱାସ୍ଥ୍ୟ ଅତି ଦୁର୍ବଳ ଥିଲା । ଏବେ ମ୍ୟାଲେରିଆ ଜରରେ ଘାଣ୍ଟି ହେଇ ସେ ଏମିତି ମଲାଗଲା ହୋଇପଡ଼ିଲେ ଯେ ଘରଲୋକେ ତାଙ୍କର ବଞ୍ଚିବାର ଆଶା ଛାଡ଼ି ବସିଲେ । ଶେଷରେ ଅନ୍ୟ ଉପାୟ ନ ଦେଖି ନାରାୟଣିୟା ସେ ଜାଗା ଛାଡ଼ି କାଦିରି ବୋଲି ଅନ୍ୟ ଏକ ସହରକୁ ବଦଳି ହୋଇ ଆସିଲେ । ସେତେବେଳକୁ ପୂରା ସାଢ଼େ ତିନି ବର୍ଷ କାଳ ବାରମ୍ବାର ମ୍ୟାଲେରିଆ ଜରରେ ପଡ଼ି କ୍ରିଷ୍ଣମୂର୍ତ୍ତିଙ୍କ ଦେହରେ ହାଡ଼ ଚମ ଛଡ଼ା ଆଉ କିଛି ନ ଥିଲା । କାଦିରିର ପରିବେଶ ଯଦିଓ ଅପେକ୍ଷାକୃତ ସ୍ୱାସ୍ଥ୍ୟକର ଥିଲା ତଥାପି ସେଠାକୁ ଆସିବାର ଅନେକ ବର୍ଷ ଯାଏ ସେ ମଝିରେ ମଝିରେ ମ୍ୟାଲେରିଆରେ ଭୋଗିବାକୁ ଲାଗିଲେ ।

କୃଷ୍ଣମୂର୍ତ୍ତିଙ୍କୁ ଯେତେବେଳେ ଛଅ ବର୍ଷ ବୟସ ସେତେବେଳେ କାଦବରଠାରେ ତାଙ୍କର ବ୍ରତୋପନୟନ ହେଲା । ସେତେବେଳକୁ ତାଙ୍କ ତଳେ ଆଉ ଗୋଟିଏ ପୁଅ ବି ଜନ୍ମ ହୋଇ ସାରଥାଏ । ନାଆଁ ତାର ନିତ୍ୟାନନ୍ଦ, ଡାକନ୍ତି 'ନିତ୍ୟ' । ଘର ଭିତରେ ସବୁ ଭାଇ ଭଉଣୀଙ୍କ ଭିତରେ ଏଇ ନିତ୍ୟ ଥିଲା କୃଷ୍ଣମୂର୍ତ୍ତିଙ୍କର ସବୁଠାରୁ ପ୍ରିୟପାତ୍ର । ଭାରି ଚୁଲ୍ବୁଲ୍ ଚତୁର ପିଲାଟିଏ । ବୟସରେ ସିନା କୃଷ୍ଣମୂର୍ତ୍ତିଙ୍କଠାରୁ ତିନିବର୍ଷ ସାନ, ହେଲେ ସବୁ ଗୁଣରେ ଢେର ଆଗୁଆ । ବିଶେଷ କରି ଦୁଇ ଭାଇଙ୍କ ଭିତରେ କୃଷ୍ଣମୂର୍ତ୍ତିଙ୍କର ବୋକାମି ଆଉ ସରଳତା ଆଗରେ ନିତ୍ୟର ବୁଦ୍ଧି ଜ୍ଞାନ ସ୍ପଷ୍ଟ ବାରି ହୋଇ ପଡ଼ୁଥିଲା ।

କାଦବରର ଗୋଟିଏ ସ୍କୁଲରେ ପିଲା ଦିହିଁଙ୍କର ନାମଲେଖା ହେଲା । କିନ୍ତୁ ଦେଖାଗଲା ଯେ ସ୍କୁଲରେ ନିତ୍ୟ ତା' ପାଠକୁ ଝଟ୍‌ଝାଟ୍ ଧରି ନେଉଥିବାବେଳେ କୃଷ୍ଣମୂର୍ତ୍ତି ବୋକାଟା ପରି ନିଜ ଶ୍ରେଣୀରେ ବସି ଖାଲି ବଲବଲ କରି ଚାହିଁ ରହନ୍ତି । ମୁଣ୍ଡରେ ତାଙ୍କର କିଛି ଢୁକେ ନାହିଁ । ମାଷ୍ଟ୍ରେ ଭାବନ୍ତି, ଯେତେ ପ୍ରକାରେ ବୁଝାଇଲେ ସୁଦ୍ଧା ନାରାୟଣିୟାଙ୍କର ଏଇ ପୁଅଟି ମୁଣ୍ଡରେ କିଛି ପୂରାଇବା ହେଉଛି ଏକ କାଠିକର ପାଠ । ଘରେ ବାପା ବି ସେଇକଥା ଅନୁଭବ କରନ୍ତି । କିନ୍ତୁ ଉପାୟ କ'ଣ ? ତେବେ, ପଢ଼ାପଢ଼ି ନ ହେଲେ ବି ଦୟା, ଦାନ ଗୁଣଟା କୃଷ୍ଣମୂର୍ତ୍ତିଙ୍କଠାରେ ପିଲାଟି ଦିନରୁ ପୂରାମାତ୍ରାରେ ରହିଥିଲା । କୋଉଦିନ ସ୍କୁଲରୁ ଫେରିବା ପରେ ଜଣାପଡ଼େ ଯେ ସେ ନିଜର ସିଲଟ ଖଡ଼ି ଗୋଟିଏ ଗରିବ ପିଲାକୁ ଦେଇ ଆସିଛନ୍ତି ତ କୋଉଦିନ ନିଜର ପଢ଼ା ବହି କାହାକୁ ଦେଇ ପକାଇଛନ୍ତି । ତାଙ୍କର ଏ ପ୍ରକାର ଉଦାରତାରେ ବେଳେବେଳେ ବାପା ମାଆ ବି ବ୍ୟସ୍ତ ହୋଇଉଠନ୍ତି । ନିଜର ଜିନିଷ-ପତ୍ରକୁ ଜଗି ସମ୍ଭାଳି ରଖିବାକୁ ପୁଅକୁ ଅନେକ ବୁଝାନ୍ତି, ଡରାନ୍ତି ; ହେଲେ କଥାଗୁଡ଼ାକ ଯେମିତି ତାଙ୍କର ଏ କାନରେ ପଶି ସେ କାନରେ ବାହାରିଯାଏ । ସ୍ୱଭାବରେ ତାଙ୍କର କୌଣସି ପରିବର୍ତ୍ତନ ହୁଏ ନାହିଁ ।

ଖାଲି ସ୍କୁଲ କାହିଁକି—ଘରେ ମଧ୍ୟ ସେଇକଥା । ନିତି ସକାଳେ ଭିକାରିମାନେ ଆସି ଦୁଆରେ ଠିଆ ହୁଅନ୍ତି । କୃଷ୍ଣମୂର୍ତ୍ତି ଜଗିରି କରି

ମାଆଠାରୁ ଗୃଡ଼ଳ ଡାଲ୍ ନେଇ ଭିକ ଦେବାକୁ ବାହାରି ପଡ଼ନ୍ତି । କିନ୍ତୁ ସେଠି ବାଣ୍ଟିକୁଣ୍ଟି ସବୁ ଭିକାରିଙ୍କୁ ଦେବା ବଦଳରେ ସେ ଡାଲ୍‌ଟାଯାକ ଗୃଡ଼ଳ ପ୍ରଥମ ଭିକାରିର ମୁଣିରେ ଢାଳି ଦେଇ ଅନ୍ୟମାନଙ୍କ ପାଇଁ ଆହୁରି ଗୃଡ଼ଳ ଆଣିବାକୁ ଘର ଭିତରକୁ ଧାଆନ୍ତି । ତାଙ୍କର ଭୋଳାପଣ ଦେଖି ଭାଇ ଭଉଣୀ ହସନ୍ତି । ପୁଣି ଯେତେବେଳେ ସଞ୍ଜବେଳଆ ଭିକାରିମାନେ ଆସି ହାଜର ହୁଅନ୍ତି, କେବେ କେମିତି ଚାକରମାନେ ତାଙ୍କୁ ଘଉଡ଼ାଇ ଦେବାକୁ ବାହାରନ୍ତି । ସେତେବେଳେ କୃଷ୍ଣମୂର୍ତ୍ତି ଆଉ ଥୟ ଧରି ରହନ୍ତି ନାହିଁ । ଭିତରେ ମାଆ ସାଙ୍ଗରେ ଅଝଟ ଲଗାନ୍ତି ସେମାନଙ୍କୁ ରାତି ପାଇଁ ରନ୍ଧା ହୋଇଥିବା ଭାତ ତରକାରି ଦେବାକୁ । ଚାକରମାନେ ଯେତେ ବୁଝାଇଲେ ବି ସେ ବୁଝନ୍ତି ନାହିଁ । କେବଳ ଭିକାରି ନୁହଁ, ଯିଏ ଯାହା ମାଗେ କିଛି ନ ବୁଝି ନ ବିଚାରି ତାକୁ ସେଇଟା ଦେଇ ଦେବାର ପ୍ରବୃତ୍ତିଟା ତାଙ୍କଠାରେ ପିଲାଟି ଦିନରୁ ବଡ଼ ପ୍ରବଳ ଥିଲା । ଘରେ ପିଲାମାନଙ୍କୁ ଭଲ ଲାଗେ ବୋଲି ଜେଜାବାପା ନାନା ପ୍ରକାର ମିଠେଇ ତିଆରି କରି ରଖନ୍ତି । କିନ୍ତୁ ପ୍ରାୟ ସବୁବେଳେ ଦେଖାଯାଏ ଯେ କୃଷ୍ଣମୂର୍ତ୍ତି ନିଜ ଭାଗ ମିଠେଇରୁ ଅଳ୍ପ ଟିକିଏ ମାତ୍ର ରଖି ବାକିତକ ସବୁ ଭାଇ ଭଉଣୀମାନଙ୍କୁ ଦେଇ ପକାଇ ଥାଆନ୍ତି । ତା'ପରେ ନିଜର ସେଇ ଅଳ୍ପ ଟିକକ ଭାଗ ଖାଉ ଖାଉ ନିତ୍ୟ ଯଦି ଲୋଭରେ ମାଗି ବସେ ତ ସେ ବିନା ଦ୍ୱିଧାରେ ସେତକ ମଧ୍ୟ ତା ହାତକୁ ବଢ଼ାଇ ଦିଅନ୍ତି ।

ମାଆଙ୍କର କୃଷ୍ଣଭକ୍ତି ଓ ଧର୍ମନିଷ୍ଠା କୃଷ୍ଣମୂର୍ତ୍ତିଙ୍କ ମନରେ ଗଭୀର ପ୍ରଭାବ ପକାଇଥିଲା । ଦିନର ଅଧିକାଂଶ ସମୟ ସେ ମାଆ ପଛେ ପଛେ ଘୁରି ଫେରି ବୁଲୁଥିଲେ । ଜେଜାବାପା ଯେତେବେଳେ ପୂଜା କରିବା ପାଇଁ ଠାକୁର ଘରେ ପଶନ୍ତି, ସେ ବି ଯାଇ ତାଙ୍କ ପାଖରେ ବସି ରହନ୍ତି । ଜେଜାବାପା ମଧ୍ୟ ଟିକିଏ ଫୁରୁସତ ପାଇଲେ ପୁଅକୁ ବସାଇ ରାମାୟଣ, ମହାଭାରତରୁ ପଢ଼ିଥିବା କାହାଣୀମାନ ଶୁଣାନ୍ତି, ନ ହେଲେ ଥିଓସଫି ବହିରୁ କର୍ମ, ପୁନର୍ଜନ୍ମ ଇତ୍ୟାଦି ବିଷୟରେ ସେ ଯାହାସବୁ ଶୁଣିଥାନ୍ତି ସେଇ କଥାସବୁ କହନ୍ତି ।

୧୮୮୨ ମସିହାରେ ନାରାୟଣିୟା ଥିଓସଫିକାଲ ସୋସାଇଟିରେ ଯୋଗଦେବା ପରଠାରୁ ସେ ଓ ତାଙ୍କର ପତ୍ନୀ ଉଭୟେ ଯେ କେବଳ ଥିଓସଫିର ଜ୍ଞାନକୁ ଅନ୍ତରରେ ଗ୍ରହଣ କରି ନେଇଥିଲେ ତା ନୁହେଁ, ଥିଓସଫିକାଲ ସୋସାଇଟିର ମୁଖ୍ୟ ପୁରୋଧା ଶ୍ରୀମତୀ ଆନି ବେସାନ୍ତଙ୍କ ପ୍ରତି ମଧ୍ୟ ସେମାନଙ୍କ ମନରେ ଅଗାଧ ଭକ୍ତି ଭରି ରହିଥିଲା । ତେଣୁ ସେମାନଙ୍କ ଠାକୁର ଘର କାନ୍ଥରେ ଶ୍ରୀକୃଷ୍ଣ, ମହାଦେବ, ଗଣେଶ ଇତ୍ୟାଦି ବିଭିନ୍ନ ଦେବାଦେବୀଙ୍କ ଫଟୋ ସହିତ ଆନିବେସାନ୍ତଙ୍କର ଗୋଟିଏ ବଡ଼ କାଚ ବନ୍ଧେଇ ଫଟୋ ମଧ୍ୟ ସ୍ଥାନ ପାଇଥିଲା । ମାଆଙ୍କଠାରୁ ଆନି ବେସାନ୍ତଙ୍କ ବିଷୟରେ ଶୁଣି ଶୁଣି କୃଷ୍ଣମୂର୍ତ୍ତିଙ୍କ ମନରେ ମଧ୍ୟ କୁଆଡ଼େକୁ ଆନି ବେସାନ୍ତଙ୍କ ପ୍ରତି ଏକ ଶ୍ରଦ୍ଧା ଆସିଯାଇଥିଲା ।

ଈଶ୍ୱର ଭକ୍ତି ଓ ପୂଜାପୂଜି ନେଇ କୃଷ୍ଣମୂର୍ତ୍ତି ନିଜର ଭାଇ ଭଉଣୀଙ୍କଠାରୁ ଟିକିଏ ଭିନ୍ନ ଥିଲେ । ଘରର ପିଲାମାନେ ଯେତେବେଳେ ଖେଳ କୁଦ ଉଆଁ ଉଡ଼େଇଁରେ ମାତିଥାନ୍ତି ସେତେବେଳେ କୃଷ୍ଣମୂର୍ତ୍ତିଙ୍କୁ ସେଠି କେହି କେବେ ଦେଖେ ନାହିଁ । ଖୋଜିଲାବେଳକୁ ହୁଏତ ସେ ଯାଇ ମାଆ ପାଖରେ ଠାକୁର ଘରେ ବସିଥାନ୍ତି ନ ହେଲେ ଚୁପ୍‌ଚାପ୍ କୋଉ ଗଛମୂଳେ ଛିଡ଼ା ହୋଇ ଗଛର ଶିଡ଼ିକି ବାଟେ ଖୋଲା ଆକାଶ ଆଡ଼େ ଚାହିଁ ନିଜକୁ ସେଇଥିରେ ହଜାଇ ଦେଇଥାନ୍ତି । କୃଷ୍ଣମୂର୍ତ୍ତିଙ୍କର ଧର୍ମ ଅନୁରକ୍ତି ଦେଖି ସଞ୍ଜୀବାମ୍ମା ମନେ ମନେ ଖୁସି ହୁଅନ୍ତି ଓ ମନ୍ଦିର ପ୍ରଭୃତିକୁ ଗଲାବେଳେ ପୁଅକୁ ବି ସାଙ୍ଗରେ ନେଇଯାଆନ୍ତି । କାଦିରିରେ ସେମାନେ ରହୁଥିବା ଘରଠାରୁ ଟିକିଏ ଦୂରରେ ନରସିଂହସ୍ୱାମୀ ମନ୍ଦିରଟିଏ ଥିଲା । ସଞ୍ଜୀବାମ୍ମା ପ୍ରତିଦିନ ସକାଳେ ଗାଧୋଇ ସାରି ସେଇ ମନ୍ଦିରକୁ ଦର୍ଶନ କରିବାକୁ ଯାଆନ୍ତି, ଆଉ ଗଲାବେଳେ ପ୍ରାୟ ସବୁଦିନ କୃଷ୍ଣମୂର୍ତ୍ତି ମଧ୍ୟ ତାଙ୍କ ସାଙ୍ଗରେ ଯିବାକୁ ଚାହାନ୍ତି । ମାଆ ସାଙ୍ଗରେ ଏମିତି ଚାଲି ଚାଲି ଯିବାକୁ ସେ ଖୁବ୍ ଭଲ ପାଆନ୍ତି । କିନ୍ତୁ ବେଳେବେଳେ ବାଟ ଚାଲୁ ଚାଲୁ ସେ ହଠାତ୍ ରାସ୍ତାରେ ଅଟକିଯାଇ ଗଛରେ ବସିଥିବା ଚଢ଼େଇଟି ଆଡ଼େ ଚାହିଁ, ନ ହେଲେ ଆକାଶର ମେଘ ଖଣ୍ଡିକୁ ଚାହିଁ ସତେ ଅବା ବିଭୋର ହୋଇଉଠନ୍ତି । ସେ ଯେ ମାଆ ସାଥିରେ ମନ୍ଦିରକୁ

ଯାଉଛନ୍ତି ଏକଥା ସେତେବେଳେ ପୂରା ଭୁଲି ଯାଆନ୍ତି । ପୁଣି କେବେ-କେବେ ଘଣ୍ଟା ଘଣ୍ଟା କଡ଼ରେ ଠୁଙ୍କା ହୋଇ ବସିପଡ଼ି ଘଣ୍ଟା ଘଣ୍ଟା କଡ଼ରେ ଧାଡ଼ି ବାନ୍ଧି ଚାଲୁଥିବା ପିମ୍ପୁଡ଼ିମାନଙ୍କୁ ଅପଲକ ଦୃଷ୍ଟିରେ ଚାହିଁ ରହନ୍ତି । ଏମିତି ନିମଗ୍ନ ହୋଇଯିବା ଗୁଣଟା ତାଙ୍କଠାରେ ସେଇଦିନୁ ବଡ଼ ପ୍ରଖର ଥିଲା । ଖାଲି ଘଣ୍ଟାଘାଟରେ ନୁହେଁ, ଘର ଭିତରେ ବି ଥରେ ଥରେ ସେ ଏମିତି ନିମଗ୍ନ ହୋଇଯାଉଥିଲେ ଯେ ସତେ ଅବା ନିଜ ଭିତରେ ନିଜେ ହଜି ଯାଉଥିଲେ । ଥରେ କୁଆଡ଼େ ନାରାୟଣିୟା ନ ଥିବାବେଳେ କୃଷ୍ଣମୂର୍ତ୍ତି ତାଙ୍କ ଘଡ଼ିଟି ଆଣି ଖୋଲି ପକାଇଲେ । ତା'ପରେ ଯିଏ ଯେତେ ଡାକିଲେ ବି ଘଡ଼ିଟିକୁ ପୂରା ନ ସଜାଡ଼ିବା ଯାଏ ସେ ଜାଗାରୁ କୁଆଡ଼େ ହେଲେ ଚଳିଲେ ନାହିଁ । ଭାତ ଖାଇଲେ ନାହିଁ କି ସ୍କୁଲ ବି ଗଲେ ନାହିଁ । ଶେଷରେ ଘଡ଼ିଟିକୁ ପୂରାପୂରି ଯୋଡ଼ିଲେ—ସେଠୁ ଯାଇ ଉଠିଲେ ।

କୃଷ୍ଣମୂର୍ତ୍ତିଙ୍କୁ ଯେତେବେଳେ ମୋଟେ ଆଠ ବର୍ଷ ବୟସ ସେତେବେଳେ ତାଙ୍କର ସବା ବଡ଼ ଭଉଣୀର ହଠାତ୍ ମୃତ୍ୟୁ ଘଟିଲା । ଦୁଃଖରେ ସଞ୍ଜୀବାମ୍ମା ଏକବାରେ ଭାଙ୍ଗି ପଡ଼ିଲେ ଓ ଝିଅକୁ ସଦାବେଳେ ଝୁରି ହେବାରେ ଲାଗିଲେ । ସଞ୍ଜୀବାମ୍ମାଙ୍କଠାରେ କିଛି କିଛି ଅତୀନ୍ଦ୍ରିୟ ଶକ୍ତି ଥିଲା ଯାହା ଫଳରେ କି ସେ ମୃତ ବ୍ୟକ୍ତିର ସୂକ୍ଷ୍ମ ଶରୀରକୁ ଅନେକ ସମୟରେ ଦେଖି ପାରୁଥିଲେ । ଝିଅ ମରିବା ପରେ ସେ ମଝିରେ ମଝିରେ ବଗିଚା ଭିତରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ସେଇଠି ଝିଅର ଛାୟାରୂପକୁ ଦେଖୁଥିଲେ । କେବେକେବେ ଗଲାବେଳେ ସେ କୃଷ୍ଣମୂର୍ତ୍ତିଙ୍କୁ ମଧ୍ୟ ସାଙ୍ଗରେ ଡାକି ନେଉଥିଲେ । ଯେଉଁଦିନ କୃଷ୍ଣମୂର୍ତ୍ତି ପ୍ରଥମ କରି ମାଆ ସାଙ୍ଗରେ ବଗିଚାର ସେହି ସ୍ଥାନକୁ ଗଲେ ସେ ଦିନ ଜଣାପଡ଼ିଲା ଯେ ତାଙ୍କଠାରେ ମଧ୍ୟ ସେହି ଅତୀନ୍ଦ୍ରିୟ ଶକ୍ତି ରହିଛି ଓ ସେ ମଧ୍ୟ ମୃତ ଭଉଣୀର ଛାୟାରୂପକୁ ଦେଖି ପାରୁଛନ୍ତି । ସେଦିନ ପ୍ରଥମ କରି ମରି ଯୋଇଥିବା ଭଉଣୀର ରୂପକୁ ଦେଖି ସେ ଭୟରେ ମାଆ ପାଖକୁ ଲାଗି ଆସିଥିଲେ । ମାଆ କିନ୍ତୁ ତାଙ୍କୁ ଆଶ୍ୱାସନା ଦେଇ ବୁଝାଇ ଦେଇଥିଲେ ଯେ ଏଥିରେ ଡରିବାର କିଛି ନାହିଁ । ତା'ପରଠାରୁ ସେ ଅନେକ ଥର ମାଆ ସହିତ ଯାଇ ଭଉଣୀର ଛାୟାରୂପକୁ ଦେଖୁଥିଲେ ।

ପରିବାର ଭିତରେ କେବଳ ଏଇ ଦୁଇଜଣଙ୍କୁ ଛାଡ଼ି ଅନ୍ୟ କାହାରିକୁ ଏସବୁ ଦିଶୁ ନ ଥିଲା ।

ଭଉଣୀ ମରିବାର ଦୁଇବର୍ଷ ପରେ ୧୯୦୫ ମସିହା ଡିସେମ୍ବର ମାସରେ ସଂଜୀବାମ୍ମା ବି ଆର ପାରିକୁ ଚାଲିଗଲେ । କୃଷ୍ଣମୂର୍ତ୍ତିଙ୍କର ବୟସ ସେତେବେଳକୁ ଜମା ଦଶ । ମା'ଆର ମୃତ୍ୟୁ ପରେ ଘର ଭିତରେ ସେ ବଡ଼ ଏକାକୀ ହୋଇ ପଡ଼ିଲେ । ସହଜେ ତ ସ୍କୁଲ ସାଙ୍ଗରେ ତାଙ୍କର ଆଦୌ ଭଲ ପଡ଼ୁ ନ ଥିଲା । ପାଠ ପଢ଼ା ତାଙ୍କୁ ମୋଟେ ଭଲ ଲାଗୁ ନ ଥିଲା କି ସ୍କୁଲର ସେଇ ରାଗୀ ମାଷ୍ଟ୍ରଗୁଡ଼ାଙ୍କୁ ସେ ଜମା ଭଲ ପାଇପାରୁ ନ ଥିଲେ । ତାଙ୍କର ଧିମା ବୁଦ୍ଧି ଆଉ ଭୁଲାପଣିଆ ହେତୁ ସ୍କୁଲରେ ସେ ବରାବର ମାଡ଼ ଗାଳି ଖାଉଥିଲେ, ଯାହା ଫଳରେ କି ସ୍କୁଲ ଓ ମାଷ୍ଟ୍ର-ମାନଙ୍କ ପ୍ରତି ମନରେ ତାଙ୍କର ଗୋଟାଏ ଭୟ ଆସି ଯାଇଥିଲା । ସ୍କୁଲର କଡ଼ା ଶାସନ ଆଉ ସାଙ୍ଗ ସାଥୀଙ୍କ ହୁମ୍‌ଦୁମିଆ ଖେଳକୁଦରୁ ତାଙ୍କୁ ବଞ୍ଚାଇ ରଖିବା ପାଇଁ ଯୋଉ ପଣତକାନିଟି ଏ ପର୍ଯ୍ୟନ୍ତ ମେଲି ରହିଥିଲା ସେଇଟି ବି ଏବେ ଦୂରେଇ ଗଲା ।

ମା'ଆ ମରିବା ପରେ କୃଷ୍ଣମୂର୍ତ୍ତି ବାରମ୍ବାର ଘର ଭିତରେ ମା'ଆର ଅଶରୀରୀ ଛାୟାକୁ ଦେଖିବାରେ ଲାଗିଲେ । ଦିନକର ଘଟଣା । ଘଟଣାଟିକୁ କୃଷ୍ଣମୂର୍ତ୍ତି ପରବର୍ତ୍ତୀ କାଳରେ ନିଜର ଏକ ବାଲ୍ୟ ବୃତ୍ତାନ୍ତରେ ବର୍ଣ୍ଣନା କରିଛନ୍ତି । ସେତେବେଳକୁ ସଂଜୀବାମ୍ମାଙ୍କ ମୃତ୍ୟୁ ମୋଟେ ତିନି ଦିନ ହୋଇଥାଏ । କୃଷ୍ଣମୂର୍ତ୍ତି ସକାଳେ ଟାଧୋଇବାକୁ ଯାଉଛନ୍ତି ହଠାତ୍ ଦେଖିଲେ ସେଇ ଗାଧୁଆ ଘର ଭିତରୁ ଗାଧେଇ ପାଧେଇ ମା'ଆ ଓଦା ଲୁଗାରେ ବାହାରି ଆସୁଛି । ମା'ଆକୁ ଏମିତି ଅଚାନକ ଆଖି ଆଗରେ ଦେଖି ସେ ବଡ଼ ଘାବରେଇ ଗଲେ । କିନ୍ତୁ ଆଉ କିଛି ହେଲେ ନ ବିଚାରି ସେ ସିଧା ତାଙ୍କ ପଛେ ପଛେ ଚାଲିଲେ । ଦେଖିଲେ, ମା'ଆ ଯାଇ ପାଖ ବଖରାରେ ଲୁଗା ପାଲଟିଲେ ଓ ତା'ପରେ ଅନ୍ୟ ଏକ ବଖରାକୁ ଯାଇ ସେଠାରେ ତାଙ୍କ ପାଇଁ ଶ୍ରାଦ୍ଧ-ପର୍ବରେ ବଢ଼ା ହୋଇଥିବା ଖାଦ୍ୟ ପାଖରେ ବସି ଖାଇବାକୁ ଲାଗିଲେ । ତା'ପରେ ପୁଣି ସିଡ଼ି ଦେଇ ଉପର ମହଲାକୁ ଉଠିଲେ । କୃଷ୍ଣମୂର୍ତ୍ତି ଚୁପ୍‌ଚାପ୍ ତାଙ୍କ ପଛେ ପଛେ

ଗ୍ଭଲଥାନ୍ତି । କିନ୍ତୁ ଅଧା ସିଡ଼ିରେ ପହଞ୍ଚି ସେ ଛାୟାମୂର୍ତ୍ତି ଯେ କୁଆଡ଼େ ଉଭାନ୍ ହୋଇଗଲା ତାଙ୍କୁ ଆଉ କିଛି ଦିଶିଲା ନାହିଁ । ପୁଣି ଆଉଦିନେ ସେମିତି ସେ ଘର ଭିତରେ ମାଆର ଛାୟାକୁ ଦେଖି ତା' ପଛେ ପଛେ ଗ୍ଭଲିଲେ । ସିଡ଼ି ଚଢ଼ି ଉପର ମହଲାକୁ ଉଠିଲେ । ସେଥରକ ସେ ଖୁବ୍ ସ୍ପଷ୍ଟ ଭାବରେ ସେ ରୂପକୁ ଦେଖି ପାରୁଥିଲେ । ଯେତେବେଳେ ତାଙ୍କୁ ଛୁଇଁବା ପାଇଁ ସେ ହାତ ବଢ଼ାଇଲେ ତାଙ୍କର ମନେହେଲା ସତେକି ମାଆ ଶାଢ଼ୀର କାନିଟା ତାଙ୍କ ହାତରେ ବାଜିଲା । କିନ୍ତୁ ଏଥର ବି ସିଡ଼ିର ସବା ଉପର ମୁଣ୍ଡରେ ପହଞ୍ଚି ସେ ଛାୟାମୂର୍ତ୍ତି କୁଆଡ଼େ ଉଭେଇ ଗଲା । ଖାଲି ସେତିକି ନୁହେଁ, କୃଷ୍ଣମୂର୍ତ୍ତି ଯେତେବେଳେ ଘରୁ କୁଆଡ଼େ ଗୋଡ଼ କାଢ଼ୁଥିଲେ ଓ ବିଶେଷ କରି ସ୍କୁଲ ଯିବା ବାଟରେ ତାଙ୍କର ମନେ ହେଉଥିଲା ସତେ ଅବା ମାଆ ତାଙ୍କର ପଛେ ପଛେ ଗ୍ଭଲିଛି । ତା' ଚୁଡ଼ିର ରୁଣୁଝୁଣୁ ଶବ୍ଦ କାନରେ ବାଜୁଥିଲା । ଡରି ଡରି ପଛକୁ ମୁହଁ ଫେରାଇ ଗ୍ଭହିଁଲେ ମାଆର ସେ ଲୁଗା ଓ ତା ମୁହଁର ଝାପ୍‌ସା ଛବି ମଧ୍ୟ ଦିଶି ଯାଉଥିଲା ।

ସଂଜୀବାମ୍ମାଙ୍କର ମୃତ୍ୟୁ ପରେ ନାରାୟଣିୟାଙ୍କ ଘର ଏକ ରକମ ଅଚଳ ହୋଇ ପଡ଼ିଲା କହିଲେ ଚଳେ । ସେତେବେଳକୁ ତାଙ୍କର ସବା ସାନ ପୁଅ ସଦାନନ୍ଦର ବୟସ ମାତ୍ର ତିନି । ତା'ଛଡ଼ା ଜନ୍ମରୁ ତା'ଠାରେ କେତେକ ଶାରୀରିକ ବିକୃତି ଥିବାରୁ ଜଣେ ଲୋକ ବରାବର ତା ପିଛା ଦରକାର ଥିଲା । ଏଣେ ଅଫିସ କାମ ନେଇ ନାରାୟଣିୟା ଅଧିକାଂଶ ସମୟ ବ୍ୟସ୍ତ ରହୁଥିଲେ । ତେଣୁ ପିଲାମାନଙ୍କ କଥା ଓ ଘର କଥା ବୁଝାଶୁଝା କରିବା ପାଇଁ ଆଉ କେହି ହେଲେ ନ ଥିଲେ । ଶେଷକୁ ଅନ୍ୟ କିଛି ଉପାୟ ନ ଦେଖି ସେ କୁହାବୋଲା କରି ପୁଣି ମଦନାପଲ୍ଲୀକୁ ନିଜର ବଦଳି କରାଇନେଲେ । ସେଠାକୁ ଆସିବା ପରେ ଯୋଗକୁ ତାଙ୍କର ସମ୍ପର୍କୀୟା ବିଧବା ଭଉଣୀଟିଏ ମଧ୍ୟ ଘର ଦେଖାଶୁଣା କରିବା ପାଇଁ ଆସି ଜୁଟିଗଲା । ତାକୁ ପାଇ ନାରାୟଣିୟା ଟିକିଏ ଆଶ୍ୱସ୍ତ ହେଲେ । ଧୀରେ ଧୀରେ ସବୁ କଥା ସମ୍ଭାଳି ପଡ଼ିଗଲା । କିଛି ଦିନ ପରେ ସେଇ ସହରର ଗୋଟିଏ ହାଇସ୍କୁଲରେ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କର ନାମ ଲେଖା ହେଲା ।

ମଦନାପଲ୍ଲୀରେ ସେମାନଙ୍କ ଘରଠାରୁ ପ୍ରାୟ ଦୁଇ ମାଇଲ ଖଣ୍ଡେ ଦୂରରେ ଶ୍ରେଷ୍ଠ ମୁଣ୍ଡିଆ ଉପରେ ନିଗ୍ଛିଆ ମନ୍ଦିରଟିଏ ଥିଲା । ପ୍ରତିଦିନ ଅପରାହ୍ନରେ ସ୍କୁଲରୁ ଫେରିବା ପରେ ସେଇ ମୁଣ୍ଡିଆ ଉପରକୁ ଚାଲି ଚାଲି ଯିବାକୁ କୃଷ୍ଣମୂର୍ତ୍ତିଙ୍କୁ ଭାରି ଭଲ ଲାଗୁଥିଲା । ଏଇଟା ଯେମିତି ତାଙ୍କର ଗୋଟିଏ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । କିନ୍ତୁ ମୁଣ୍ଡିଆ ଉପରକୁ ଯାଇଥିବା ରାସ୍ତା ଏତେ ଉଠାଣି ଆଉ ପଥୁରିଆ ଥିଲା ଯେ ସେଠିକି ସାଧାରଣତଃ ତାଙ୍କ ସାଙ୍ଗରେ ଯିବାକୁ କେହି ହେଲେ ପିଲା ମଙ୍ଗୁ ନ ଥିଲେ । ହେଲେ ଗଲାବେଳେ ସାଙ୍ଗରେ ନିତ୍ୟକୁ ନେଇ ଯିବାକୁ କୃଷ୍ଣମୂର୍ତ୍ତି ବେଳେବେଳେ ଜିଗର ଧରୁଥିଲେ । ଆଉ ନିତ୍ୟ ବି ତାଙ୍କ ପ୍ରତି ଏତେ ଅନୁରକ୍ତ ଥିଲେ ଯେ ସେ ଯୁଆଡ଼େ ଯାଉଥିଲେ, ସଦାବେଳେ ସାଙ୍ଗରେ ବାହାରି ପଡ଼ୁଥିଲେ ।

ମଦନାପଲ୍ଲୀରେ ଥିବାବେଳେ କେବେ କେମିତି କୃଷ୍ଣମୂର୍ତ୍ତି ଭାଇ ଓ ସାଙ୍ଗସାଥୀଙ୍କ ଗହଣରେ ଆଖପାଖ ଜାଗାକୁ ବଣଭୋଜି କରିବାକୁ ଯାଉଥିଲେ । ନାରାୟଣିୟା ସେତେବେଳକୁ ଥିଲେ ସେଠାକାର ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ । ତେଣୁ ଡୋଲଡାକ କରିବାକୁ ଘରେ ଚାକର ପିଅନ ଅନେକ ଥିଲେ । ପିଲାଏ ବଣଭୋଜିରେ ଗଲାବେଳେ ସେମାନେ ତାଙ୍କ ପାଇଁ ଦରି ପର ଓ ଖାଇବା ଜିନିଷ ପ୍ରଭୃତି ବୋହି ବୋହିକା ଚାଲୁଥିଲେ । କୃଷ୍ଣମୂର୍ତ୍ତି କିନ୍ତୁ ସେତେବେଳେ ସାଙ୍ଗସାଥୀ ମେଳରୁ ଧାଇଁ ଆସି ଉପରେ ପଡ଼ି ଚାକରଙ୍କ ହାତରୁ କିଛି ନା କିଛି ଜିନିଷ ଛଡ଼ାଇ ନେଇ ନିଜେ ବୋହିବାରେ ଲାଗୁଥିଲେ । ଏ କଥା ଦେଖି ଭାଇ ନାକ ଟେକୁଥିଲେ—ବାପା ତାଙ୍କର ଏଡ଼େ ବଡ଼ ଅଫିସର ଅଥଚ ତାଙ୍କ ପୁଅ ହାତରେ ଜିନିଷ ବୋହି ବାଟ ଚାଲିବ ! କିନ୍ତୁ କୃଷ୍ଣମୂର୍ତ୍ତିଙ୍କର ସେଥିପ୍ରତି କେବେ ଧ୍ୟାନ ନ ଥିଲା । ଅନ୍ୟ କାହାରିକୁ କାମ କରିବାର ଦେଖିଲେ ସେ ଧାଇଁ ଯାଇ ତା ହାତରୁ ଛଡ଼ାଇ ନିଜେ ସେ କାମଟିକୁ କରି ବସୁଥିଲେ । ଅନେକ ସମୟରେ ତାଙ୍କର ଏ ପ୍ରକାର ମନୋଭାବକୁ ନିର୍ବୋଧତା ମନେ କରି ସାଙ୍ଗସାଥୀ ପରିହାସ କରୁଥିଲେ । କିନ୍ତୁ ଧନୀ ଗରିବ, ଶ୍ରେଷ୍ଠ ବଡ଼ର ଭେଦଭାବଟା କୃଷ୍ଣମୂର୍ତ୍ତିଙ୍କ ମନରେ କୌଣସି

ପ୍ରଭାବ ପକାଇ ପାରୁ ନ ଥିଲା । ସାମାଜିକ ତାରତମ୍ୟକୁ ସେ ଆଦୌ ବୁଝିପାରୁ ନ ଥିଲେ । ମିଥ୍ୟା ଆଭିଜାତ୍ୟ ବା ଗର୍ବ ଅହଙ୍କାର ତାଙ୍କ ମନକୁ ଆଦୌ ଛୁଇଁପାରି ନ ଥିଲା । ଆଜି ସେଇଥିପାଇଁ ଖାସ୍ ଲୋକେ ତାଙ୍କୁ ବୋକା, ମାନ୍ଦା ବୋଲି କହୁଥିଲେ । କିନ୍ତୁ ଏ ନିଷ୍କପଟତା ଓ ସରଳତା ଯେ କେତେ ବଡ଼ ଗୁଣ ସେଇଟା କାହାରି ଆଖିକୁ ଦିଶୁ ନ ଥିଲା । କ୍ରିଷ୍ଣମୂର୍ତ୍ତିଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଏ ଗୁଣ ଦୁଇଟି ସେମିତି ପ୍ରଖର ଓ ତୀବ୍ର ହୋଇ ରହି ଯାଇଥିଲା ।

## ଥିଓସଫିକାଲ ସୋସାଇଟି ଓ ମହାଗୁରୁ

କ୍ରିଷ୍ଣମୂର୍ତ୍ତିଙ୍କର ବାଲ୍ୟ ଇତିହାସ ଥିଓସଫିର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । କିନ୍ତୁ ସେ କିଭଳି ଭାବରେ ଥିଓସଫିକାଲ ସୋସାଇଟିର ସଂସ୍ପର୍ଶରେ ଆସିଲେ ସେ କାହାଣୀ ବଡ଼ ବିଚିତ୍ର । ତେବେ ସେ କଥା ଜାଣିବା ପୂର୍ବରୁ ଏହି ଥିଓସଫିକାଲ ସୋସାଇଟି କଅଣ ଓ ତା'ର ଉଦ୍ଦେଶ୍ୟ କଅଣ ସେ ବିଷୟରେ ମଧ୍ୟ କିଛି ଜାଣିବା ଆବଶ୍ୟକ ।

ସାଧାରଣତଃ ଆମେ ଭାରତୀୟମାନେ ହିନ୍ଦୁଧର୍ମ, ଖ୍ରୀଷ୍ଟିଆନ୍ ଧର୍ମ, ଇସ୍‌ଲାମ୍ ବା ପାର୍ସୀ ଧର୍ମ ସହିତ ଅଳ୍ପବହୁତେ ପରିଚିତ । ମାତ୍ର 'ଥିଓସଫି' କହିଲେ କ'ଣ ବୁଝାଏ ସେ କଥା ନେଇ ଆମ ମନରେ ଅନେକ ଭୁଲ ଧାରଣା ରହିଛି । ଆମ ଭିତରୁ କେତେକ ଏହାକୁ ଅନ୍ୟାନ୍ୟ ଧର୍ମ ଭଳି ଏକ ପାରମ୍ପରିକ ଧର୍ମ ବୋଲି ମନେ କରନ୍ତି । ପୁଣି ଆଉ କେତେକ ଏହାକୁ ଇଉରୋପୀୟ ଧର୍ମଶାସ୍ତ୍ରରୁ ସୃଷ୍ଟ ଏକ ଦର୍ଶନବାଦ ବୋଲି କହିଥାନ୍ତି । ବାସ୍ତବରେ ଥିଓସଫି କୌଣସି ଧର୍ମ ନୁହେଁ କି ପାଶ୍ଚାତ୍ୟ ଦର୍ଶନତତ୍ତ୍ୱରୁ ସୃଷ୍ଟ ମଧ୍ୟ ନୁହେଁ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ଯେତେକ ଧର୍ମ ରହିଛି ସେହି ସକଳ ଧର୍ମର ଅନ୍ତର୍ନିହିତ ସତ୍ତା ହିଁ 'ଥିଓସଫି' ନାମରେ ପରିଚିତ । ଯେଉଁସବୁ ଚିରନ୍ତନ ସତ୍ୟ ଉପରେ ପୃଥିବୀର ବଡ଼ ବଡ଼ ଧର୍ମଗୁଡ଼ିକ ପ୍ରତିଷ୍ଠିତ ତା'ର

ସାରତତ୍ତ୍ୱର ସମନ୍ୱୟ ହେଉଛି ଥିଓସଫି । ମୂଳ ଗ୍ରୀକ୍ ଶବ୍ଦ— 'ଥିଓସଫିଆ', ଅର୍ଥାତ୍ 'ଈଶ୍ୱର ସମ୍ବନ୍ଧୀୟ ଜ୍ଞାନ' ବା 'ଦିବ୍ୟଜ୍ଞାନ' (divine wisdom)ରୁ ସୃଷ୍ଟ ଏବଂ ଥିଓସଫି ଆମ ସୌରମଣ୍ଡଳର ଉତ୍ପତ୍ତି, ଉହିଁରେ ମାନବର ଅସ୍ତିତ୍ୱ, କ୍ରମବର୍ଦ୍ଧନ ଓ ଆଧ୍ୟାତ୍ମିକ ବିକାଶ ଇତ୍ୟାଦି ଅନେକ ଚମକପ୍ରଦ ଗୁପ୍ତଜ୍ଞାନକୁ ନେଇ ସଂକଳିତ । ତେଣୁ ଏହା ଏକାଧାରରେ ଦର୍ଶନ, ବିଜ୍ଞାନ ଏବଂ ସକଳ ଧର୍ମର ଏକ ଅଭୂତପୂର୍ବ ସମନ୍ୱୟ ।

କାହିଁ କେଉଁ ଅନାଦି କାଳରୁ ଏ ପୃଥିବୀରେ କେତେ ଯେ ଆଧ୍ୟାତ୍ମିକ 'ପରମ୍ପରା ଗଢ଼ା ହୋଇଛି ଇତିହାସ ତା'ର ବିବରଣୀ ରଖି ପାରିନାହିଁ । ମାନବ ସଭ୍ୟତାକୁ ଆଧ୍ୟାତ୍ମିକ ଜ୍ଞାନ ପ୍ରଦାନ କରିବାର ଦାୟିତ୍ୱରେ ଥିବା କେତେକ ସିଦ୍ଧ ପୁରୁଷ ବା ମହାତ୍ମା ପୃଥିବୀପୃଷ୍ଠରେ ସମୟକ୍ରମେ ଏଭଳି ଆଧ୍ୟାତ୍ମିକ ପରମ୍ପରାମାନ ସୃଷ୍ଟି କରି ମନୁଷ୍ୟର ଆଧ୍ୟାତ୍ମିକ କ୍ରମବିକାଶକୁ ତ୍ୱରାନ୍ୱିତ କରିବାରେ ସାହାଯ୍ୟ କରିଥାନ୍ତି । ସେମାନଙ୍କ ଦ୍ୱାରା ପ୍ରଦତ୍ତ ଉକ୍ତ ଗୁପ୍ତଜ୍ଞାନରୁ ଅଧିକାଂଶ ଯଦିଓ ଆମପାଇଁ ଏବେ ଲୁପ୍ତ ତଥାପି ମୋକ୍ଷ ଲାଭ କରିସାରିଥିବା କେତେକ ବିଶିଷ୍ଟ ସିଦ୍ଧଯୋଗୀ ବା 'ଆଡେ଼ପ୍ଟ' (adept)ମାନଙ୍କ ଦ୍ୱାରା ତାହା ଏବେ ବି କେତେକ ନିରାପଦ ସ୍ଥାନରେ ସୁରକ୍ଷିତ ରହିଛି । ଏହି ଯେଉଁ 'ଆଡେ଼ପ୍ଟ' ବା ମହାତ୍ମାଗଣ ମନୁଷ୍ୟର କ୍ରମବିକାଶ ଓ ଆଧ୍ୟାତ୍ମିକତାର ଦାୟିତ୍ୱରେ ଅଛନ୍ତି, ଥିଓସଫିର ଭାଷାରେ ସେମାନଙ୍କୁ 'ହ୍ୱାଇଟ୍ ବ୍ରଦରହୁଡ଼୍'ର ସଦସ୍ୟ ବୋଲି କୁହାଯାଏ । ସାଧାରଣତଃ ଜଣେ ମଣିଷ ଆଧ୍ୟାତ୍ମିକ କ୍ରମବିକାଶ ପଥରେ ଅଗ୍ରସର ହୋଇ ମୋକ୍ଷ ଲାଭ କରିବାର ଠିକ୍ ପୂର୍ବରୁ ଓ ପରେ ଗୋଟିଏ ଆଧ୍ୟାତ୍ମିକ ସଂଗଠନ ବା ଆଶ୍ରମର ଦଳଭୁକ୍ତ ହୋଇଥାଏ । ଆମର ଏଇ ଜଗତରେ ଏହିଭଳି ଯେତେକ ସଂଗଠନ ବା ଆଶ୍ରମ ରହିଛି ସେଥିମଧ୍ୟରୁ ସବୁଠାରୁ ଶକ୍ତିଶାଳୀ ସଂଗଠନଟି ହେଲା 'ହ୍ୱାଇଟ୍ ବ୍ରଦରହୁଡ଼୍' । ହ୍ୱାଇଟ୍ ବ୍ରଦରହୁଡ଼୍ର ସଦସ୍ୟଗଣ ଏଇ ଯେଉଁ ଗୁପ୍ତଜ୍ଞାନର ଭଣ୍ଡାରକୁ ନିରାପଦରେ ସମ୍ଭାଳି ରଖିଥାନ୍ତି ଗୁପ୍ତଜ୍ଞାନବାଦୀମାନେ (occultist) ଇଚ୍ଛା କଲେ ନିଜର

ସିଦ୍ଧି ବଳରେ ସେହିସବୁ ତଥ୍ୟକୁ ନେଇ ନିଜ କାର୍ଯ୍ୟରେ ଲଗାଇପାରନ୍ତି । ସାଧାରଣତଃ ଏଥିପାଇଁ ସେମାନଙ୍କୁ ଦୁଇଟି ପଦ୍ଧତି ଅବଲମ୍ବନ କରିବାକୁ ହୋଇଥାଏ । ସେଥିରୁ ଗୋଟିଏ ହେଉଛି 'ମହାଗୁରୁ' ବା ମହାତ୍ମାମାନଙ୍କ ଦ୍ୱାରା ସୁରକ୍ଷିତ ଗ୍ରନ୍ଥରୁ ପ୍ରତ୍ୟକ୍ଷ ଭାବରେ ତଥ୍ୟ ସଂଗ୍ରହ କରିବା । ମାନବ ସଭ୍ୟତାର ଆରମ୍ଭ କାଳରୁ ଆଜ ପର୍ଯ୍ୟନ୍ତ ଯେତେ ଯେତେ ଧର୍ମଗ୍ରନ୍ଥ ଓ ଶାସ୍ତ୍ର ପ୍ରଭୃତି ରଚିତ ହୋଇଛି ସେ ସମସ୍ତ ଗ୍ରନ୍ଥ ଆକାରରେ କେତେକ ସ୍ୱତନ୍ତ୍ର ଭୂତଳସ୍ଥ ପୁସ୍ତକାଗାର ଓ ମନ୍ଦିର ଆଢ଼ରେ ସୁରକ୍ଷିତ ରହିଛି । ଶତ୍ରୁ ଆକ୍ରମଣ ତ ଦୂରର କଥା, କୌଣସି ମନୁଷ୍ୟର ମଧ ସେଠାକୁ ପ୍ରବେଶ କରିବାର ସାଧ ନାହିଁ । ଅତି ଉଚ୍ଚକୋଟୀର ସିଦ୍ଧିସମ୍ପନ୍ନ ଜଣେ ଗୁପ୍ତଜ୍ଞାନବାଦୀ ହିଁ କେବଳ ନିଜର ଶକ୍ତି ସାହାଯ୍ୟରେ ସେଠାରୁ ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରି ପାରିଥାଏ ।

ଏହାଛଡ଼ା ଅନ୍ୟ ଯେଉଁ ଉପାୟରେ ଗୁପ୍ତଜ୍ଞାନବାଦୀ ତଥ୍ୟ ସଂଗ୍ରହ କରେ ତାହା ହେଉଛି 'ଆକାଶିକ ରେକର୍ଡ଼୍'ରୁ ତଥ୍ୟ ସଂଗ୍ରହ ପଦ୍ଧତି । ଥିଓସଫିର ଭାଷାରେ ଏହି 'ଆକାଶ' ହେଉଛି ଏକ ଅତି ସୂକ୍ଷ୍ମ, ସ୍ୱତନ୍ତ୍ର ଧରଣର ମାଧ୍ୟମ । ଆମର ଏଇ ପୃଥିବୀରେ ଛୋଟ, ବଡ଼ ଯେତେ ଯାହା ଘଟଣା ଘଟେ—ଆମର କଥାବାର୍ତ୍ତା, ଭାବନା, ଚିନ୍ତା ବିଚାର, ଯାହା କିଛି ସେ ସବୁ 'ଆକାଶ'ରେ ଏକ ଅବିକଳ ଛାପ ପକାଇଯାଏ ଏବଂ ତାହା କେବେହେଲେ କ୍ଷୟ ହୁଏ ନାହିଁ । ସିଦ୍ଧି ଲାଭ କରିଥିବା ଗୁପ୍ତଜ୍ଞାନବାଦୀ ଇଚ୍ଛା କଲେ ନିଜର ଶକ୍ତି ଖଟାଇ ତହିଁରୁ ଆବଶ୍ୟକୀୟ ତଥ୍ୟ ଯୋଗାଡ଼ କରିଥାଏ ।

ଆମ ପୃଥିବୀରେ ନୂତନ ଧର୍ମ ବା ଆଧ୍ୟାତ୍ମିକ ପରମ୍ପରା ସୃଷ୍ଟି କରିବା ପାଇଁ ମହାଗୁରୁମାନେ ସାଧାରଣତଃ ଜଣେ ଲେଖାଁ ସୁଯୋଗ୍ୟ ବ୍ୟକ୍ତିଙ୍କୁ ବାଛି ତାଙ୍କର ସାହାଯ୍ୟରେ ଜ୍ଞାନ ପ୍ରସାର କରିଥାନ୍ତି । ସେହିଭଳି ଊନବିଂଶ ଶତାବ୍ଦୀର ଶେଷ ଭାଗରେ ମହାଗୁରୁମାନେ ପୃଥିବୀରେ ଏକ ନୂତନ ଆଧ୍ୟାତ୍ମିକତାର ଜାଗରଣ ନିମନ୍ତେ ହେଲେନା ପେଟ୍ରୋଭ୍ନା ବ୍ଲାଭାସ୍କି ନାମକ ଜଣେ ରୁଷୀୟ ମହିଳାଙ୍କୁ ମନୋନୀତ କରିଥିଲେ । ମାଡ଼ାମ୍ ବ୍ଲାଭାସ୍କିଙ୍କର ଜନ୍ମ ୧୮୩୧ ମସିହା, ଜୁଲାଇ ୩୦ ତାରିଖରେ

ହୋଇଥିଲି । ତାଙ୍କର ଜନ୍ମ, ଖ୍ରୀଷ୍ଟଧର୍ମରେ ଦୀକ୍ଷାଗ୍ରହଣ ଓ ପୁଣି ନାମକରଣ ସମୟରେ ଏଭଳି କେତେକ ଚମକପ୍ରଦ ଘଟଣା ଘଟିଥିଲା ଯାହାଦ୍ୱାରା କି ଭବିଷ୍ୟତ-ଦ୍ରଷ୍ଟାମାନେ ସେତେବେଳଠୁ ଜାଣି ପାରିଥିଲେ ଯେ ହେଲେନାଙ୍କ ଜୀବନ ଅତ୍ୟନ୍ତ ସଙ୍କଟବହୁଳ ଓ ଗୁରୁତ୍ୱପୂର୍ଣ୍ଣ ହେବ । ସତକୁ ସତ, ବୟସ ବଢ଼ିବା ସଙ୍ଗେ ସଙ୍ଗେ ଦେଖାଗଲା ଯେ ଅପ୍ରତ୍ୟାଶିତ ଭାବରେ ସେ ଅନେକ ବଡ଼ ବଡ଼ ବିପଦରେ ପଡ଼ୁଛନ୍ତି ଓ ଅଦ୍ଭୁତ ଭାବରେ ତହିଁରୁ ମୁକୁଳି ମଧ୍ୟ ଆସୁଛନ୍ତି । ସ୍ୱଭାବତଃ ସେ ଥିଲେ ଭୀଷଣ ଦୁଃସାହସୀ । ପିଲାଟି ଦିନରୁ ତାଙ୍କଠାରେ କେତେକ ସିଦ୍ଧି ଥିବାର ସୂଚନା ମଧ୍ୟ ମିଳିଥିଲା । ଯେତେବେଳେ ହେଲେନାଙ୍କୁ ଅଠର ବର୍ଷ ବୟସ ସେତେବେଳେ ତାଙ୍କର ବିବାହ ହୋଇଥିଲା । କିନ୍ତୁ ବିବାହର ମାତ୍ର ତିନି ମାସ ପରେ ସେ ଲୁଚିକରି ଘରଛାଡ଼ି ଚାଲି ଆସିଲେ ଏବଂ ସେହି ଦିନଠାରୁ ଗୁପ୍ତଜ୍ଞାନ ଆହରଣ ଲାଗି ସକ୍ରିୟ ଉଦ୍ୟମ ଆରମ୍ଭ କଲେ । ୧୮୫୧ ମସିହାରେ ସେ ପ୍ରଥମ ଥର ପାଇଁ ମହାଗୁରୁଙ୍କୁ ,ସଶରୀରେ ଦର୍ଶନ କରିଥିଲେ । ତା ପରଠାରୁ ତାଙ୍କର ତତ୍ତ୍ୱାବଧାନରେ ରହି ସେ ଗୁପ୍ତଜ୍ଞାନ ଶିକ୍ଷା କରିବା ସଙ୍ଗେ ସଙ୍ଗେ ନିଜଠାରେ ଥିବା ସିଦ୍ଧିଗୁଡ଼ିକୁ ଆହୁରି ଉନ୍ନତ କରି ତା'ର ଉପଯୁକ୍ତ ପ୍ରୟୋଗ କରିବା ଦିଗରେ ତାଲିମ ମଧ୍ୟ ପାଇଲେ । ସେଥିପାଇଁ ତାଙ୍କୁ ପ୍ରଥମେ କିଛି ବର୍ଷ ହିମାଳୟ ଓ ତିବ୍ବତର ଦୁର୍ଗମ ଅଞ୍ଚଳରେ ଥିବା କେତେକ ସ୍ୱତନ୍ତ୍ର ଆଶ୍ରମରେ କଟାଇବାକୁ ପଡ଼ିଥିଲା । ମାଡ଼ାମ୍ ବ୍ଲାଭସ୍କିଙ୍କଠାରେ ଅନ୍ୟାନ୍ୟ ସିଦ୍ଧି ସହିତ ଆଉ ଏକ ଶକ୍ତି ମଧ୍ୟ ଖୁବ୍ ସୁସ୍ପଷ୍ଟ ଥିଲା ଓ ତା'ରି ସାହାଯ୍ୟରେ ସେ ଅକ୍ଳେଶରେ ହ୍ୱାଇଟ୍ ବ୍ରଦରହୁଡ଼୍‌ର ସଦସ୍ୟମାନଙ୍କଠାରୁ ସନ୍ଦେଶ ଆଣି ମାନବ ଜାତିର ହିତ ଲାଗି ପୃଥିବୀରେ କାର୍ଯ୍ୟ କରୁଥିବା ମହାଯୋଗୀମାନଙ୍କ ନିକଟରେ ପହଞ୍ଚାଇ ପାରୁଥିଲେ ।

ମହାଗୁରୁଙ୍କଠାରୁ ଶିକ୍ଷା ଶେଷ କରି ମାଡ଼ାମ୍ ବ୍ଲାଭସ୍କି ଯେତେବେଳେ ଆସି ଆମେରିକାରେ ନିଜର କର୍ମକ୍ଷେତ୍ରର ପ୍ରସ୍ତୁତି ଆରମ୍ଭ କଲେ ସେତେବେଳେ ତାଙ୍କୁ ଅନେକ ବାଧାର ସମ୍ମୁଖୀନ ହେବାକୁ

ପଡ଼ିଥିଲା । କାରଣ, ସହଜେତ’ ଜଡ଼ବାଦରେ ବିଶ୍ୱାସ କରୁଥିବା ପାଶ୍ଚାତ୍ୟ ସମାଜ ଆଧ୍ୟାତ୍ମିକତାକୁ ଗ୍ରହଣ କରି ପାରୁ ନ ଥିଲା, ତା ଛଡ଼ା ସେଠାର ଜନସାଧାରଣ ମଧ୍ୟ ଏହି ବିଦେଶୀ ମହିଳାଙ୍କୁ ବଡ଼ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ମାଡ଼ାମ୍ ବ୍ଲାଭାସ୍କି କିନ୍ତୁ ସହଜରେ ହାରିଯିବା ଲୋକ ନ ଥିଲେ । ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ସେ ଲୋକମାନଙ୍କ ଭିତରେ ଆଧ୍ୟାତ୍ମିକବାଦ ପ୍ରତି ବିଶ୍ୱାସ ସୃଷ୍ଟି କରିବାକୁ ଲାଗି ପଡ଼ିଲେ । ସେ ବୁଝାଇବାକୁ ଚେଷ୍ଟା କଲେ ଯେ ମନୁଷ୍ୟର ସାଧାରଣ ଜ୍ଞାନ ପରିସରର ବାହାରେ ପ୍ରକୃତି ରାଜ୍ୟରେ ଏଭଳି କେତେକ ଗୁପ୍ତଜ୍ଞାନ ଓ ଚିରନ୍ତନ ନିୟମଧାରା ରହିଛି ଯାହା ବିଷୟରେ କି ସାଧାରଣ ମନୁଷ୍ୟ ସଂପୂର୍ଣ୍ଣ ଅଜ୍ଞ । ସେହି ସମସ୍ତ ନିୟମଧାରାକୁ ଅତି ସାବଧାନତା ସହ ପାଳନ କରି କେତେକ ଅତିମାନବ ବା ମହାଗୁରୁ ଏ ଜଗତର କଲ୍ୟାଣ ସାଧନରେ ସଦା ନିୟୋଜିତ ଅଛନ୍ତି । ବ୍ଲାଭାସ୍କିଙ୍କଠାରୁ ଏକଥା ଶୁଣିବା ସତ୍ତ୍ୱେ ଯେଉଁମାନେ ତାଙ୍କୁ ଅବିଶ୍ୱାସ କଲେ ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇବାକୁ ସେ କେତେକ ସିଦ୍ଧି ପ୍ରଦର୍ଶନ କରି ନିଜ ଅଲୌକିକ ଶକ୍ତିର ପରିଚୟ ଦେଲେ । କିନ୍ତୁ ଲୋକମାନଙ୍କ ମନରେ ପରିବର୍ତ୍ତନ ଆଣିବା କିଛି ସହଜ କଥା ନ ଥିଲା । ଏଥିପାଇଁ ବ୍ଲାଭାସ୍କିଙ୍କୁ ଧୈର୍ଯ୍ୟର ସହିତ ଅନେକ ବର୍ଷ ଅପେକ୍ଷା କରିବାକୁ ପଡ଼ିଲା, ଅନେକ ପରିଶ୍ରମ କରିବାକୁ ପଡ଼ିଲା । ସେହି ସମୟରେ ଅର୍ଥାତ୍ ୧୮୭୭-୧୮୮୮ ମସିହା ଭିତରେ ସେ ‘ଆଇସିସ୍ ଅନ୍‌ଭେଲ୍‌ଡ଼୍’ ଓ ‘ଦ ସିକ୍ରେଟ୍ ଡକ୍‌ଟ୍ରିନ୍’ ନାମରେ ଦୁଇଟି ଅତି ବଡ଼ ବଡ଼ ଗ୍ରନ୍ଥ ରଚନା କଲେ । ଏହି ଗ୍ରନ୍ଥ ଦୁଇଟି ରଚନା କରିବାରେ ତାଙ୍କୁ ମହାଗୁରୁମାନେ ଅନେକ ସାହାଯ୍ୟ କରିଥିଲେ ଓ କହିବାକୁ ଗଲେ ଏହା ସେହିମାନଙ୍କର ତତ୍ତ୍ୱାବଧାନରେ ହିଁ ଲେଖା ହୋଇଥିଲା । ଏ ମହାଗ୍ରନ୍ଥ ଦୁଇଟିରେ ଆମର ବିଶ୍ୱବ୍ରହ୍ମାଣ୍ଡ, ସୌରମଣ୍ଡଳ, ପୃଥିବୀ ତଥା ମାନବର ଅତୀତ ଓ ଭବିଷ୍ୟତ ସମ୍ପର୍କରେ ଅନେକ ପ୍ରସଙ୍ଗ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏତେ ନିଖୁଣ ଭାବରେ ବର୍ଣ୍ଣନା କରାଯାଇଛି ଯେ ଜଣେ ମଣିଷ ପକ୍ଷରେ ବିନା ଦିବ୍ୟ ଶକ୍ତି ସାହାଯ୍ୟରେ ଏଭଳି ସଠିକ ଓ ବିପୁଳ ତଥ୍ୟ ପ୍ରଦାନ କରିବା ଆଦୌ ସମ୍ଭବ ନୁହେଁ । ଏଠାରେ ଆହୁରି ମଧ୍ୟ କୁହାଯାଇପାରେ ଯେ ‘ଆଇସିସ୍ ଅନ୍‌ଭେଲ୍‌ଡ଼୍’ରେ

ସମୁଦାୟ ୧୩୩୯ ଗୋଟି ଓ 'ଦ ସିକ୍ରେଟ୍ ଡକ୍‌ଟ୍ରିନ୍'ରେ ସମୁଦାୟ ୧୧୪୭ ଗୋଟି ପୁସ୍ତକରୁ ତଥ୍ୟ ସଂଗ୍ରହ କରାଯାଇଥିବା କଥା ଉଲ୍ଲେଖ ହୋଇଛି । ଏହି ମହାଗ୍ରନ୍ଥ ଦୁଇଟି ପ୍ରକାଶ ପାଇବା ପରେ ସମଗ୍ର ପାଶ୍ଚାତ୍ୟ ଜଗତରେ ଏକ ଚହଳ ପଡ଼ିଗଲା । ତାହାର ବିଷୟବସ୍ତୁର ଯୁକ୍ତିଯୁକ୍ତତା, ବୈଜ୍ଞାନିକ ଦୃଷ୍ଟିକୋଣ ଓ ତଥ୍ୟର ଅପରିମେୟତା ଲୋକମାନଙ୍କୁ ଚକିତ କରିଦେଲା । ଖାଲି ସେତିକି ନୁହେଁ, ମାଡ଼ାମ୍ ବ୍ଲାଭସ୍କି ଏହାପରେ ଆଉ ଯେତେ ଯାହା ଲେଖିଥିଲେ ସେଗୁଡ଼ିକ ମଧ୍ୟ ପରେ 'ଦ କଲେକ୍‌ଟେଡ୍ ରାଇଟିଂସ୍ ଅଫ୍ ଏଚ: ପି: ବି:' ନାମରେ ସମୁଦାୟ ୧୪ ଖଣ୍ଡରେ ପ୍ରକାଶ ପାଇଥିଲା ।

ଏସବୁ ପଢ଼ିବା ପରେ ପ୍ରଶ୍ନ ଉଠିଲା—ଏତେ ଅଳ୍ପକାଳ ମଧ୍ୟରେ ମାଡ଼ାମ୍ ବ୍ଲାଭସ୍କି ଏତେଗୁଡ଼ିଏ ଦୁଷ୍ପ୍ରାପ୍ୟ ପ୍ରାଚୀନ ଗ୍ରନ୍ଥରୁ ତଥ୍ୟ ସଂଗ୍ରହ କରି ଏ ମହାଗ୍ରନ୍ଥମାନ ରଚନା କରି ପାରିଲେ କିପରି ? ଏମିତି ଏକାକୀ—ଏପରିକି ଜଣେ ସହାୟକ ସୁଦ୍ଧା ନ ରଖି ସେ ଏହି ଅସମ୍ଭବକୁ ସମ୍ଭବ କଲେ କିପରି ?

ଏ ପ୍ରଶ୍ନର ଉତ୍ତରରେ ଆମକୁ ବ୍ଲାଭସ୍କିଙ୍କର ପୂର୍ବୋକ୍ତ ସିଦ୍ଧି ସମ୍ପର୍କରେ କିଛି ଜାଣି ରଖିବା ଆବଶ୍ୟକ । ମହାଗୁରୁଙ୍କଠାରୁ ତାଲିମ ପାଇବା ପରେ ସେ ନିଜର ସିଦ୍ଧି ସାହାଯ୍ୟରେ ହିଁ ଏହି ଦୁଃସାଧ୍ୟ ସାଧନ କରି ପାରିଥିଲେ । ଉକ୍ତ ମହାଗ୍ରନ୍ଥମାନ ରଚନା କରିବା ସମୟରେ ଯେଉଁସବୁ ସିଦ୍ଧି ତାଙ୍କୁ ସାହାଯ୍ୟ କରିଥିଲା ସେଗୁଡ଼ିକ ହେଲା—

(୧) ଦିବ୍ୟ ବା ଅତୀନ୍ଦ୍ରିୟ ଦୃଷ୍ଟି ।

(୨) ଦିବ୍ୟ ବା ଅତୀନ୍ଦ୍ରିୟ ଶ୍ରବଣ ଶକ୍ତି ।

(୩) ଦୃଷ୍ଟିବୋଧର ଶକ୍ତି ।

(୪) ମନଶକ୍ତିର ଅଧିକାରୀମାନଙ୍କ ସହିତ ଯୋଗସୂତ୍ର ରକ୍ଷା କରିବାର ଶକ୍ତି ।

(୫) କୌଣସି ଭାବକୁ ସହସା ଧରିନେବାର ଶକ୍ତି ।

(୬) ଦୃଶ୍ୟ କରାଇପାରିବାର ଶକ୍ତି ।

(୭) ସ୍ପର୍ଶ ଦ୍ୱାରା ବସ୍ତୁର ବିଗତ ଇତିହାସ ଜାଣିବାର ଶକ୍ତି ।

(୮) ସ୍ୱତଃସ୍ଫୂର୍ତ୍ତ ଜ୍ଞାନର ଶକ୍ତି ।

(୯) ବସ୍ତୁକୁ ଊଦ୍ଧା କରାଇ ପାରିବାର ଶକ୍ତି ।

ଏହି ସିଦ୍ଧିଗୁଡ଼ିକର ପ୍ରୟୋଗରେ ମାଡ଼ାମ୍ ବ୍ଲାଭସ୍କି ଯେଉଁ ଗ୍ରନ୍ଥମାନ ରଚନା କରିଥିଲେ ସେଗୁଡ଼ିକୁ ବିଶ୍ଳେଷଣ କରି ଦେଖିଲେ ଜଣାଯାଏ ଯେ ତାହା ମୁଖ୍ୟତଃ ସାତଗୋଟି ପ୍ରଣାଳୀରେ ଲିଖିତ ହୋଇଛି । ସେଗୁଡ଼ିକ ହେଲ—

(୧) ବର୍ଣ୍ଣନାତ୍ମକ ପ୍ରଣାଳୀ :—ଗୋଟିଏ ଜଟିଳ ବିଷୟକୁ ଅତି ସରଳ ଓ ବୋଧଗମ୍ୟ ଭାଷାରେ ବର୍ଣ୍ଣନା କରିବାର ଦକ୍ଷତା ବ୍ଲାଭସ୍କିଙ୍କର ଥିଲ । ଏହା ସାହାଯ୍ୟରେ ସେ ଅନେକ ଦୁର୍ବୋଧ ବସ୍ତୁକୁ ମଧ୍ୟ ଅତି ସହଜ ଭାବରେ ପାଠକ ନିକଟରେ ଉପସ୍ଥାପିତ କରି ପାରୁଥିଲେ । ଉଦାହରଣ ସ୍ୱରୂପ, 'ଦି ସିକ୍ରେଟ୍ ଡକ୍‌ଟ୍ରିନ୍'ର ଗୋଟିଏ ସ୍ଥାନରେ ସେ 'ପରମାଣୁ'କୁ ଏତେ ସରଳ ଭାବରେ ବୈଜ୍ଞାନିକ ଦୃଷ୍ଟିକୋଣ ଦେଇ ବର୍ଣ୍ଣନା କରିଛନ୍ତି ଯେ ଆଧ୍ୟାତ୍ମିକ ସାହିତ୍ୟରେ ଏ ଭଳି ଶୈଳୀ ପ୍ରାୟ ଦେଖିବାକୁ ମିଳେ ନାହିଁ ।

(୨) ଅନୁଜ୍ଞା ବଳରେ ଲେଖିବାର ପ୍ରଣାଳୀ :—ଗ୍ରନ୍ଥଗୁଡ଼ିକର କେତେକ ସ୍ଥାନରେ କ'ଣ ଲେଖା ହେବ, ଏକଥା ବ୍ଲାଭସ୍କି ମହାଗୁରୁଙ୍କ-ଠାରୁ ନିର୍ଦ୍ଦେଶ ପାଇ ସେହି ଅନୁସାରେ ଲେଖୁଥିଲେ । 'ଦି ସିକ୍ରେଟ୍ ଡକ୍‌ଟ୍ରିନ୍'ରେ ଏଭଳି ଅନେକ ଅଂଶ ରହିଛି ଯାହାକି ସ୍ୱୟଂ ମହାଗୁରୁଙ୍କ ନିର୍ଦ୍ଦେଶକ୍ରମେ ଲେଖା ହୋଇଛି । ଏଇକଥା ସ୍ୱୀକାର କରି ଥରେ ସେ ତାଙ୍କର ସହକର୍ମୀ କର୍ଣ୍ଣେଲ ଓଲକଟ୍‌ଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ—"ତମେ ଯିବା ପରେ ମହାଗୁରୁ ପ୍ରାୟ ପ୍ରତିଦିନ ଏହି ପାଣ୍ଡୁଲିପିରେ କିଛି କିଛି ନୂଆ କଥା ଯୋଡ଼ିବାକୁ ମତେ ନିର୍ଦ୍ଦେଶ ଦେଉଛନ୍ତି । ତେଣୁ ବର୍ତ୍ତମାନ ପାଣ୍ଡୁଲିପିର ରୂପରେଖ ପୂର୍ବାପେକ୍ଷା ଅନେକ ବଦଳି ଗଲଣି ଓ ସେଥିରେ ଏଭଳି କେତେକ ତଥ୍ୟ ରହିଛି ଯାହାକି ମୁଁ ନିଜେ ମଧ୍ୟ ବୁଝି ପାରୁନାହିଁ ।"

ମାଡ଼ାମ୍ ବ୍ଲାଭସ୍କି ଯେ ପ୍ରକୃତରେ ମହାଗୁରୁଙ୍କଠାରୁ ନିର୍ଦ୍ଦେଶ ପାଇ ଲେଖୁଥିଲେ ତାର ଅନ୍ୟ ଏକ ପ୍ରମାଣ ମିଳେ ତାଙ୍କର ବାନ୍ଧବୀ କାଉଣ୍ଟେସ୍ ଓ୍ୱାଚ୍‌ମିଷ୍ଟରଙ୍କଠାରୁ । ଶ୍ରୀମତୀ ଓ୍ୱାଚ୍‌ମିଷ୍ଟର ନିଜର ଏକ ପୁସ୍ତକରେ ବର୍ଣ୍ଣନା କରିଛନ୍ତି ଯେ ଦିନେ ସକାଳେ ବ୍ଲାଭସ୍କିଙ୍କର କୋଠରୀ ଭିତରେ ପଶିଯାଇ ସେ ଦେଖିଲେ ଯେ ବ୍ଲାଭସ୍କିଙ୍କର ପଢ଼ା ଟେବୁଲ ଉପରେ ଖଣ୍ଡିଏ କାଗଜରେ ନାଲି କାଳିରେ କେତେକ ଦୁର୍ବୋଧ ଲିପି ଲେଖା ହୋଇ ରହିଛି । ସେହି ରହସ୍ୟମୟ ଲିପି ଗୁଡ଼ିକ କଣ ବୋଲି ପଚାରିବାରେ ବ୍ଲାଭସ୍କି କହିଲେ ଯେ ସେଥିରେ ତାଙ୍କର ସେହି ଦିନର କାର୍ଯ୍ୟାବଳୀର ନିର୍ଦ୍ଦେଶ ରହିଛି । ଏଭଳି ଘଟଣା କେବଳ ଥରେ ନୁହଁ ଅନେକବାର ଘଟିଥିବା କଥା କାଉଣ୍ଟେସ୍ କହିଥିଲେ ।

(୩) ଶ୍ରୁତିଲିଖନ ପ୍ରଣାଳୀ :—ମାଡ଼ାମ୍ ବ୍ଲାଭସ୍କି ଓ ମହାଗୁରୁଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ଚୁମ୍ବକୀୟ ସମ୍ପର୍କ ସ୍ଥାପନ ଦ୍ୱାରା ଏହି ପ୍ରଣାଳୀରେ ଲେଖିବା ସମ୍ଭବ ହୋଇଥିଲା । ପୂର୍ବୋକ୍ତ ପ୍ରଣାଳୀ ଠାରୁ ଏହି ପ୍ରଣାଳୀଟି ସାମାନ୍ୟ ଭିନ୍ନ । ଏଥିରେ ବ୍ଲାଭସ୍କିଙ୍କୁ କଣ ଲେଖିବାକୁ ହେବ ସେ କଥା ନିର୍ଦ୍ଦେଶ ନ ଦେଇ ଶ୍ରୁତିଲିଖନ ପ୍ରକାରରେ ମହାଗୁରୁ ସ୍ୱୟଂ ଡାକି ଦେଉଥିଲେ । ତାଙ୍କର ସର୍ବପ୍ରଥମ ଗ୍ରନ୍ଥ 'ଆଇସିସ୍ ଅନ୍‌ଭେଲ୍‌ଡ୍'ଠାରୁ ଆରମ୍ଭ କରି ପରବର୍ତ୍ତୀ ସମସ୍ତ ଗ୍ରନ୍ଥର କିଛି କିଛି ଅଂଶ ଏହି ପ୍ରଣାଳୀରେ ଲେଖା ହୋଇଛି ବୋଲି ବ୍ଲାଭସ୍କି ନିଜେ ସ୍ୱୀକାର କରିଛନ୍ତି । ସେ ଏକଥା ମଧ୍ୟ କହିଛନ୍ତି ଯେ ତାଙ୍କର ଓ ମହାଗୁରୁଙ୍କ ମଧ୍ୟରେ ଭାବନା ରୂପାନ୍ତର ଦ୍ୱାରା ଏହା ସମ୍ଭବ ହୋଇପାରିଛି ।

(୪) ଦିବ୍ୟଦୃଷ୍ଟି ସାହାଯ୍ୟରେ ଲିଖନ ପ୍ରଣାଳୀ :—ଏହି ବିଶେଷ ଶକ୍ତି ସାହାଯ୍ୟରେ ବ୍ଲାଭସ୍କି ଯେତେବେଳେ କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ସମ୍ବନ୍ଧରେ କିଛି ଜାଣିବାକୁ ଇଚ୍ଛା କରୁଥିଲେ ସେତେବେଳେ ସେହି ତଥ୍ୟ ପ୍ରଦାନକାରୀ ପୁସ୍ତକଟିକୁ ଦିବ୍ୟଦୃଷ୍ଟି ବଳରେ ଆଖି ସାମନାରେ ଦେଖି ପାରୁଥିଲେ । ତା'ପରେ ପୁସ୍ତକର ଯେଉଁ ପୃଷ୍ଠାରେ ସେ ଚାହୁଁଥିବା ତଥ୍ୟଟି ରହିଛି ତାହା ମଧ୍ୟ ତାଙ୍କ ଆଖି ଆଗରେ ମେଲି ହୋଇ ଯାଉଥିଲା । ଫଳରେ ତାଙ୍କୁ ଅଯଥା ଗୁଡ଼ାଏ ପୁସ୍ତକ ଖୋଜିବାକୁ ହେଉ ନଥିଲା ।

ଏହି ବିଷୟରେ ତାଙ୍କର ଜଣେ ବନ୍ଧୁ ବର୍ଣ୍ଣନା କରିଛନ୍ତି ଯେ ଯେତେବେଳେ ବ୍ଲାଭସ୍କି 'ଦ ସିକ୍ରେଟ୍ ଡକ୍‌ଟ୍ରିନ୍' ରଚନା କରୁଥିଲେ ସେତେବେଳେ ଅନେକ ସମୟରେ କଣ ସବୁ ଦେଖି ଦେଖି ନିଜ ଖାତାରେ ଉତାରିବା ଭଳି ଲେଖି ଯାଉଥିଲେ । ଅଥଚ ପାଖ ଆଖରେ ତାଙ୍କର କୌଣସି ପୁସ୍ତକ ନ ଥାଏ । ସମ୍ଭବତଃ ସେତେବେଳେ ସେ ନିଜର ଅନ୍ତର୍ଦୃଷ୍ଟି ଲଗାଇ ଅଦୃଶ୍ୟ ପୁସ୍ତକରୁ ତଥ୍ୟ ସଂଗ୍ରହ କରୁଥିଲେ ।

(୫) ସ୍ପର୍ଶ ଦ୍ୱାରା ବସ୍ତୁ ସମ୍ପର୍କରେ ଜ୍ଞାନ ଆହରଣ କରି ଲେଖିବା :—ଉକ୍ତ ପ୍ରଣାଳୀରେ ଲେଖିବା ଲାଗି ଲେଖକଠାରେ ଉଚ୍ଚକୋଟୀର ଅନ୍ତର୍ଦୃଷ୍ଟି ସହିତ ବଳିଷ୍ଠ ଇଚ୍ଛାଶକ୍ତି ଥିବା ଆବଶ୍ୟକ । ସାଧାରଣତଃ ଏହି ସିଦ୍ଧି ଲାଭ କରିଥିବା ବ୍ୟକ୍ତି ଅତ୍ୟନ୍ତ ସଂବେଦନଶୀଳ ହୋଇଥାନ୍ତି । କୌଣସି ଏକ ଅତି ପୁରାତନ ବସ୍ତୁକୁ ହାତରେ କିଛି ସମୟ ସ୍ପର୍ଶକରି ଅଥବା କପାଳରେ ଲଗାଇ ସେ ବସ୍ତୁଟିର ନିର୍ମାତା ତଥା ବସ୍ତୁ ସଂସ୍ପର୍ଶରେ ଆସିଥିବା ସମସ୍ତ ବ୍ୟକ୍ତିଙ୍କ ବିଷୟରେ ଜାଣି ପାରନ୍ତି । ବ୍ଲାଭସ୍କି ଉକ୍ତ ସିଦ୍ଧି ପ୍ରୟୋଗ କରି ଅନେକ ପ୍ରାଚୀନ ପାଣ୍ଡୁଲିପି, ଚିତ୍ରପଟ ତଥା ପୋଷାକ ଆଦିରୁ ତାହାର ବ୍ୟବହାରକାରୀଙ୍କ ସମ୍ପର୍କରେ ସବିଶେଷ ବର୍ଣ୍ଣନା କରି ପାରୁଥିଲେ ।

(୬) ଶୂନ୍ୟରୁ ଲେଖାକୁ ଉଦ୍ଭବ କରାଇବା ପ୍ରଣାଳୀ —ଅନେକ ସମୟରେ ବ୍ଲାଭସ୍କିଙ୍କ ନିକଟରେ ଲେଖା ସବୁ ଶୂନ୍ୟରୁ ଆସି ବାସ୍ତବ ରୂପ ଧାରଣ କରୁଥିଲା । ଖଣ୍ଡିଏ ଧଳା କାଗଜ ଉପରେ ଏହି ଲେଖା ସବୁ ଆପେ ଆପେ ଲେଖି ହୋଇଯାଉଥିଲା ଓ ତାକୁ ସେ ପୁସ୍ତକରେ ସ୍ଥାନ ଦେଉଥିଲେ ।

(୭) ଟୁଲ୍‌କୁ ଧାରା ସଦୃଶ ଲେଖିବା—ବ୍ଲାଭସ୍କିଙ୍କର ଅନ୍ୟାନ୍ୟ ସମସ୍ତ ପ୍ରଣାଳୀଠାରୁ ଏହା ସମ୍ପୂର୍ଣ୍ଣ ପୃଥକ । ଟୁଲ୍‌କୁ ହେଉଛି ତିବ୍ବତର ଏକ ରହସ୍ୟମୟ ପ୍ରଣାଳୀ । ଏଥିରେ ଲେଖକ ଏକ ବିଶେଷ ଧରଣର ପ୍ରେରଣା ପାଇ ସେହି ଅନୁସାରେ ଲେଖିଥାନ୍ତି । ମାଡାମ୍ ବ୍ଲାଭସ୍କି ନିଜ ପୁସ୍ତକରେ ଅନେକ ସ୍ଥାନରେ ଏହି ପ୍ରଣାଳୀ ଅବଲମ୍ବନ କରିଛନ୍ତି ।

ଉପରୋକ୍ତ ପ୍ରଣାଳୀଗୁଡ଼ିକରୁ ଜଣାଯାଏ ଯେ ବ୍ଲାଭସ୍କି ନିଜର ଗ୍ରନ୍ଥାବଳୀରେ ପ୍ରଦାନ କରିଥିବା ଅପରିସୀମ ଜ୍ଞାନର ସ୍ରଷ୍ଟା ନୁହନ୍ତି, ସେ ହେଉଛନ୍ତି କେବଳ ବାର୍ତ୍ତାବହ ମାତ୍ର । କିନ୍ତୁ ଏକଥା ଠିକ୍ ଭାବେ ବୁଝି ନ ପାରି ତାଙ୍କୁ ଅନେକ ଲୋକ ତାନ୍ତ୍ରିକ, ଗୁଣିଆ ବୋଲି ମନେ କରି ତାଙ୍କ ନାମରେ କୁତ୍ସା ରଚନା କରିଥିଲେ । ମାତ୍ର ଏ ସବୁ ଲୋକାପବାଦକୁ ତିଳେମାତ୍ର ଭ୍ରୂକ୍ଷେପ ନ କରି ସେ ୧୮୭୫ ମସିହାରେ (ନଭେମ୍ବର ୧୭ ତାରିଖ) ସହକର୍ମୀ କର୍ଣ୍ଣେଲ ହେନରୀ ଷ୍ଟିଲ ଓଲକଟ୍ ଓ ଉଇଲିୟମ୍ କ୍ୟୁ-ଜଜ୍‌ଙ୍କ ସାହାଯ୍ୟରେ ନିଉୟର୍କ ଠାରେ ଥିଓସଫିକାଲ ସୋସାଇଟି ପ୍ରତିଷ୍ଠା କଲେ । ପରେ, ୧୯୦୫ ମସିହା ଏପ୍ରିଲ ମାସ ୩ ତାରିଖରେ ଭାରତର ମାଡ୍ରାସ ଠାରେ ଏହାର ଶାଖା ପ୍ରତିଷ୍ଠିତ ହେଲା । ଲୁପ୍ତ ଜ୍ଞାନର ପୁନର୍ଜାଗରଣ ଦ୍ୱାରା ମାନବର ଆଧ୍ୟାତ୍ମିକ କ୍ରମବିକାଶକୁ ଦ୍ରୁତତର କରାଇବା ଏହି ସୋସାଇଟିର ମୁଖ୍ୟ ଧର୍ମ ରହିଲା ।

କର୍ମ ଓ ପୁନର୍ଜନ୍ମ ମତବାଦରେ ଥିଓସଫି ପୂରାମାତ୍ରାରେ ବିଶ୍ୱାସ କରେ । ଏହି ମତବାଦ ଅନୁଯାୟୀ ମଣିଷ ଆପଣା କୃତକର୍ମର ପରିଣାମ ସ୍ୱରୂପ ଜୀବନରେ ସୁଖ, ଦୁଃଖ, ରୋଗ ବ୍ୟାଧି ଓ ଧନସମ୍ପତ୍ତି ଲାଭ କରିଥାଏ ଏବଂ ନିଜର କର୍ମ କ୍ଷୟ କରିବା ଲାଗି ତାକୁ ପୃଥିବୀରେ ବାରମ୍ବାର ଜନ୍ମ ନେବାକୁ ହୋଇଥାଏ । ପ୍ରତ୍ୟେକ ଜନ୍ମରେ ମଣିଷ ନିଜ ଜୀବାତ୍ମାର (ego) ବିକାଶ ଘଟାଇ ଆଧ୍ୟାତ୍ମିକ କ୍ରମବିକାଶ ପଥରେ ଉପରକୁ ଉପରକୁ ଉଠିଥାଏ । ତେଣୁ ପୃଥିବୀରେ ଏକ ସଙ୍ଗେ ଏତେ ଲୋକ ବାସ କରୁଥିଲେ ସୁଦ୍ଧା ଆମରି ଭିତରେ ଏଭଳି କେତେକ ବ୍ୟକ୍ତି ଅଛନ୍ତି ଯୋଉମାନେ କି ଆଧ୍ୟାତ୍ମିକ ପଥରେ ଆମଠାରୁ ଉଚ୍ଚତର । ସେଭଳି ଲୋକମାନେ ସାଧାରଣତଃ ବଡ଼ ବଡ଼ ସାଧୁ ସନ୍ଥ ଓ ପରୋପକାରୀ ବ୍ୟକ୍ତି ରୂପେ ଜନ୍ମ ନେଇଥାନ୍ତି । ଆଧ୍ୟାତ୍ମିକ ଜଗତରେ ଜୀବାତ୍ମାର ବିକାଶ ଅନୁଯାୟୀ ଏକ ସୋପାନକ୍ରମ ରହିଛି । ଥିଓସଫିର ଭାଷାରେ ତାକୁ 'ଅକଲ୍‌ଟ୍ ହାଇରାର୍କି' ବା ଆଧ୍ୟାତ୍ମିକ ସୋପାନକ୍ରମ କୁହାଯାଏ । ଏ ସୋପାନକ୍ରମର ସମସ୍ତ ସଦସ୍ୟ 'ହ୍ୱାଇଟ୍ ବ୍ରଦରହୁଡ଼୍'ର ପରିସରଭୁକ୍ତ । ଜୀବାତ୍ମାର ସାମଗ୍ରିକ ବିକାଶରେ

ସହାୟତା କରିବା ଏମାନଙ୍କର ମୁଖ୍ୟ ଦାୟିତ୍ୱ । ତେଣୁ ଯେଉଁ ବ୍ୟକ୍ତି-ମାନଙ୍କଠାରେ ସଦ୍‌ଗୁଣ, ସତ୍‌କର୍ମ, ବିବେକ ଓ ନିଃସ୍ୱାର୍ଥପରତା ଆଦି ଗୁଣ ଥାଏ ସେହିମାନେ ଉକ୍ତ ଆଧ୍ୟାତ୍ମିକ ପଥରେ ଅଗ୍ରସର ହୋଇଥାନ୍ତି ଏବଂ ସେମାନଙ୍କ ଅଜାଣତରେ ମହାଗୁରୁମାନେ ସଦାସର୍ବଦା ତାଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ଆଧ୍ୟାତ୍ମିକ ଉନ୍ନତି କରି କେତେବେଳେ ସେମାନେ 'ହ୍ୱାଇଟ୍ ବ୍ରଦରହୁଡ୍'ର କାର୍ଯ୍ୟରେ ସହାୟତା କରିବାକୁ ଯୋଗ୍ୟ ହେବେ ସେ କଥା ମହାଗୁରୁମାନେ ଠିକ୍ ବୁଝିପାରନ୍ତି । ଏଭଳି ଜଣେ ଉପଯୁକ୍ତ ବ୍ୟକ୍ତିକୁ ପାଇଲେ ମହାଗୁରୁ ପ୍ରଥମେ ନିଜର ଶିଷ୍ୟ ଭାବରେ ଗ୍ରହଣ କରି ନିଅନ୍ତି । ତେବେ ଶିଷ୍ୟତ୍ୱ ପ୍ରଦାନ କରିବା ପୂର୍ବରୁ ସେ ତାଙ୍କୁ ଆଗ କିଛିକାଳ ଶିକ୍ଷା-ନବିଶ ରୂପେ ରଖି ଅତି ନିବିଡ଼ ଭାବରେ ତାଙ୍କର ଯୋଗ୍ୟତାକୁ ଲକ୍ଷ୍ୟ କରନ୍ତି । ଶିଷ୍ୟତ୍ୱ ପ୍ରଦାନକୁ 'ଇନିସିଏସନ୍' ବା ଦୀକ୍ଷାଗ୍ରହଣ କୁହାଯାଏ ଏବଂ ତାହାକୁ 'ହ୍ୱାଇଟ୍ ବ୍ରଦରହୁଡ୍'ର ଜଣେ ନିଯୁକ୍ତ ସଦସ୍ୟ ଆଧ୍ୟାତ୍ମିକ ସୋପାନକ୍ରମର ମୁଖ୍ୟ—'ଲର୍ଡ଼ ଅଫ୍ ଦି ଓ୍ୱାର୍ଲ୍ଡ୍'ଙ୍କ ନାମରେ ପ୍ରଦାନ କରିଥାନ୍ତି । ଆଧ୍ୟାତ୍ମିକ ଜଗତର ସମସ୍ତ ଦୀକ୍ଷା କେବଳ ଜୀବାତ୍ମା ସ୍ତରରେ ସମ୍ପାଦିତ ହୋଇଥାଏ ଏବଂ ଏହା ଅନେକଗୁଡ଼ିଏ ସ୍ତର ଦେଇ ଗତି କରେ ।

ଯେଉଁ ବ୍ୟକ୍ତି ପ୍ରଥମ ଦୀକ୍ଷା ସ୍ତରରେ ଉତ୍ତୀର୍ଣ୍ଣ ହୁଅନ୍ତି ସେ 'ହ୍ୱାଇଟ୍ ବ୍ରଦରହୁଡ୍'ର ଚେତନାର ଏକ ଅବିଚ୍ଛେଦ୍ୟ ଅଂଶ ହୋଇ ତାହାର କାର୍ଯ୍ୟରେ ସାମିଲ ହୋଇଯାଆନ୍ତି । ପ୍ରଥମ ଦୀକ୍ଷା ଲାଭ କରିବା ପରେ ବ୍ୟକ୍ତି ନିଜର ଆତ୍ମ-ବିଶ୍ୱାସ ଓ ମହାଗୁରୁଙ୍କ ପ୍ରତି ଶ୍ରଦ୍ଧା ଭାବ ଦ୍ୱାରା ଆଧ୍ୟାତ୍ମିକ ପଥରେ ଆହୁରି ଅଗ୍ରସର ହୋଇ ଭବିଷ୍ୟତରେ ଦ୍ୱିତୀୟ ଦୀକ୍ଷା ଲାଗି ନିଜର ଜୀବାତ୍ମାକୁ ପ୍ରସ୍ତୁତ କରନ୍ତି । ପ୍ରଥମ ଦୀକ୍ଷାପ୍ରାପ୍ତ ବ୍ୟକ୍ତି ସଚେତନ ଅବସ୍ଥାରେ 'ବୌଦ୍ଧିକ ସ୍ତର'ରେ (Buddhic Plane) ପ୍ରବେଶ କରିବାର ଯୋଗ୍ୟତା ମଧ୍ୟ ଲାଭ କରିଥାନ୍ତି । ପ୍ରଥମ ଦୀକ୍ଷା ଅତିକ୍ରମ କରି ଦ୍ୱିତୀୟ ଦୀକ୍ଷା ଲାଗି ଯୋଗ୍ୟହେବାକୁ ମନୁଷ୍ୟକୁ ଜୀବନରେ ତିନିଗୋଟି ଶୃଙ୍ଖଳ ଛିନ୍ନ କରିବାକୁ ପଡ଼ିଥାଏ । ସେହି ଶୃଙ୍ଖଳଗୁଡ଼ିକ ହେଲା—(୧) ବ୍ୟକ୍ତିତ୍ୱ ପ୍ରତି ମନର ଭ୍ରମ, (୨) ଅନିଶ୍ଚିତତା, (୩) କୁସଂସ୍କାର ।

ଯେଉଁ ବ୍ୟକ୍ତି ପରବର୍ତ୍ତୀ ଜୀବନରେ ଉପରୋକ୍ତ ବନ୍ଧନ ବା ଶୃଙ୍ଖଳଗୁଡ଼ିକୁ କାଟିଦେଇ ପାରନ୍ତି ତାଙ୍କୁ ମହାଗୁରୁ ଦ୍ୱିତୀୟ ଦୀକ୍ଷା ପାଇଁ ଯୋଗ୍ୟ ବିଚାର କରନ୍ତି । ସେହିପରି ଦ୍ୱିତୀୟରୁ ଉତ୍ତୀର୍ଣ୍ଣ ହୋଇ ତୃତୀୟ ଦୀକ୍ଷା ଲାଭ କରିବାକୁ ମନୁଷ୍ୟକୁ ଆହୁରି କେତୋଟି ଶୃଙ୍ଖଳ କାଟିବାକୁ ପଡ଼ିଥାଏ । ଯେଉଁ ବ୍ୟକ୍ତି ତୃତୀୟ ଦୀକ୍ଷା ଲାଭ କରିସାରି ଚତୁର୍ଥ ଦୀକ୍ଷା ପାଇଁ ଯୋଗ୍ୟ ବିବେଚିତ ହୋଇଥାନ୍ତି ତାଙ୍କୁ 'ଅନାଗାମୀ' କୁହାଯାଏ ଏବଂ ତାଙ୍କୁ ମଧ୍ୟ ଚତୁର୍ଥ ଦୀକ୍ଷାସ୍ତରରେ ପହଞ୍ଚିବା ଲାଗି ଆଉ କେତୋଟି ଶୃଙ୍ଖଳ ଅତିକ୍ରମ କରି ନିବାକୁ ପଡ଼େ । ପ୍ରଥମ ତିନୋଟି ଦୀକ୍ଷା ସ୍ତରରେ ମନୁଷ୍ୟଠାରେ କ୍ରମଶଃ ବୌଦ୍ଧିକ ଚେତନା ଜାତ ହେବାରେ ଲାଗିଥାଏ । ମାତ୍ର ଚତୁର୍ଥ ଦୀକ୍ଷା ଲାଭ କରିସାରିବା ପରେ ବ୍ୟକ୍ତି ଧୀରେ ଧୀରେ ବୌଦ୍ଧିକ ସ୍ତର ଉପରେ ଥିବା 'ନିର୍ବାଣ ସ୍ତର'ରେ ପଦାର୍ପଣ କରିଥାନ୍ତି । ଆଧ୍ୟାତ୍ମିକ ସୋପାନ-କ୍ରମରେ ସାଧାରଣତଃ ଏହାକୁ ଏକ ମଧ୍ୟବର୍ତ୍ତୀ ସ୍ଥାନ କୁହାଯାଏ । ସାଧାରଣ କ୍ଷେତ୍ରରେ ଜୀବାତ୍ମାକୁ ପ୍ରଥମ ଦୀକ୍ଷାରୁ ଉଠି ଚତୁର୍ଥ ଦୀକ୍ଷାରେ ପହଞ୍ଚିବା ପାଇଁ ହାରାହାରି ସାତଟି ଜନ୍ମ ଆବଶ୍ୟକ ହେଉଥିବାବେଳେ ଚତୁର୍ଥରୁ ଉଠି ପଞ୍ଚମ ଦୀକ୍ଷାସ୍ତରରେ ପହଞ୍ଚିବା ପାଇଁ ଆହୁରି ସାତଟି ଜନ୍ମ ଆବଶ୍ୟକ ହୋଇଥାଏ ।

ଚତୁର୍ଥ ଦୀକ୍ଷା ଲାଭ କରିଥିବା ବ୍ୟକ୍ତିକୁ ବୌଦ୍ଧ ଧର୍ମରେ 'ଅରହତ୍' ଓ ହିନ୍ଦୁ ଧର୍ମରେ 'ପରମହଂସ' ଆଖ୍ୟା ଦିଆଯାଇଛି । ଅରହତ୍ ଅବସ୍ଥା ପ୍ରାପ୍ତ ହେବା ପରେ ନିର୍ବାଣ ସ୍ତରରେ ଆହୁରି ଉପରକୁ ଅଗ୍ରସର ହେବା ଲାଗି ମନୁଷ୍ୟକୁ କ୍ରମଶଃ ଅନ୍ୟାନ୍ୟ ଦଶଟି ଶୃଙ୍ଖଳକୁ ଅତିକ୍ରମ କରିବାକୁ ପଡ଼ିଥାଏ । ପଞ୍ଚମ ଦୀକ୍ଷା ଲାଭ କରିଥିବା ଜୀବାତ୍ମାକୁ 'ଆଡ଼େପ୍ଟ' ବା 'ଅଶେଖ' କୁହାଯାଏ । 'ଆଡ଼େପ୍ଟ' ସ୍ତରରେ ପଦାର୍ପଣ କରିଥିବା ଜୀବାତ୍ମା ଜନ୍ମ-ମୃତ୍ୟୁର ଚକ୍ରରୁ ଊର୍ଦ୍ଧ୍ୱକୁ ଚାଲିଯାଇଥିବାରୁ ହିନ୍ଦୁ ଧର୍ମରେ ତାହାକୁ 'ଜୀବନ୍ମୁକ୍ତ' ମଧ୍ୟ କୁହାଯାଏ । ଏହି 'ଆଡ଼େପ୍ଟ'ମାନେ ସେମାନଙ୍କ ନିଜ ଇଚ୍ଛାଶକ୍ତିକୁ ବିଶ୍ୱର ଇଚ୍ଛାଶକ୍ତି (universal will) ସହିତ ସାମିଲ କରାଇ ଦିଅନ୍ତି । ଏହି ଆଡ଼େପ୍ଟମାନଙ୍କୁ ଥିଓସଫି ଭାଷାରେ 'ମାଷ୍ଟର' (Master) ବା ମହାଗୁରୁ କୁହାଯାଏ ।

ପଞ୍ଚମ ଦୀକ୍ଷା ଉପରକୁ ଅତିକ୍ରମ କରିବା ପରେ ତା ଉପରକୁ ସାତଗୋଟି ବିଭିନ୍ନ 'ଧାରା' ବା ପଥ ରହିଥାଏ । ଜଣେ ଆଡେପ୍ଟ ନିଜର ଅନ୍ତଃରୁଚି ଅନୁଯାୟୀ ସେଥିମଧ୍ୟରୁ ଗୋଟିଏ ପଥ ବାଛି ନେଇ କାଳକ୍ରମେ ସେହି ଧାରାରେ ଅଗ୍ରସର ହୁଅନ୍ତି । ଥିଓସଫିରେ ଏହି 'ଧାରା'କୁ 'Ray' ବୋଲି କୁହାଯାଏ । ଏଗୁଡିକ ନିର୍ଦ୍ଦିଷ୍ଟ ବିଭିନ୍ନ ପର୍ଯ୍ୟାୟ ସହିତ ସଂପୃକ୍ତ ଥାଏ । ଅର୍ଥାତ୍, ପ୍ରଥମ ଧାରାଟି ଶକ୍ତି ବା ପୃଥିବୀର ଚାଳନ, ଗଠନ ଓ ଶାସନ ସହିତ ସଂପୃକ୍ତ । ଦ୍ୱିତୀୟଟି ଧର୍ମଜ୍ଞାନ ବା ଶିକ୍ଷା, ତୃତୀୟଟି କୌଶଳ, ଜ୍ୟୋତିଷୀ ବିଦ୍ୟା ପ୍ରଭୃତି, ଚତୁର୍ଥଟି ସୌନ୍ଦର୍ଯ୍ୟ ଓ ସମନ୍ୱୟତା, ପଞ୍ଚମଟି ବିଜ୍ଞାନ, ଷଷ୍ଠଟି ଭକ୍ତି ଓ ସପ୍ତମଟି ତନ୍ତ୍ରମନ୍ତ୍ର ସହିତ ସଂପୃକ୍ତ ।

ଆଡେପ୍ଟ୍, ଅର୍ଥାତ୍ ପଞ୍ଚମ ଦୀକ୍ଷା ଲାଭ କରିଥିବା ଜୀବାତ୍ମା ଉପରୋକ୍ତ ସାତଟି ଧାରା ମଧ୍ୟରୁ ଯେ କୌଣସି ଗୋଟିକରେ ଅଗ୍ରସର ହୋଇ ପରବର୍ତ୍ତୀ ଷଷ୍ଠ ଦୀକ୍ଷା ଲାଭ ଲାଗି ନିଜକୁ ପ୍ରସ୍ତୁତ କରାଏ । ଷଷ୍ଠ ଦୀକ୍ଷାପ୍ରାପ୍ତ ଜୀବାତ୍ମାକୁ 'ଚୈହାନ' ଓ ସପ୍ତମ ଦୀକ୍ଷାପ୍ରାପ୍ତକୁ 'ମହାଚୈହାନ୍' କୁହାଯାଏ । ପ୍ରତ୍ୟେକ ଧାରାର ଶୀର୍ଷରେ ଜଣେ ଲେଖାଁ 'ମହାଚୈହାନ' ବା ଧାରାକର୍ତ୍ତା ଅଧିଷ୍ଠିତ । ପ୍ରଥମ ଧାରାଟିର ମହାଚୈହାନଙ୍କୁ 'ମନୁ' ଓ ଦ୍ୱିତୀୟ ଧାରାର ମହାଚୈହାନଙ୍କୁ 'ବୋଧିସତ୍ତ୍ୱ' ଆଖ୍ୟା ଦିଆଯାଇଛି । ମହାଚୈହାନ ପଦବୀ ଉପରେ, ଅର୍ଥାତ୍ ଅଷ୍ଟମ ଦୀକ୍ଷା ଲାଭ କରିବା ପରେ ଜୀବାତ୍ମା 'ବୁଦ୍ଧ' ପଦବୀ ପ୍ରାପ୍ତ ହୁଏ । ଆମେ ଯେଉଁ ଗୌତମ ବୁଦ୍ଧଙ୍କ ନାମ ଶୁଣିଛୁ ସେ ହେଉଛନ୍ତି ଦ୍ୱିତୀୟ 'ଧାରା'ର ଅଷ୍ଟମ ଦୀକ୍ଷାପ୍ରାପ୍ତ ଜୀବାତ୍ମା ଏବଂ ସେ ହିଁ ଏକମାତ୍ର ଜୀବାତ୍ମା ଯେ କି ଏହି ପୃଥିବୀରେ ବିବର୍ତ୍ତନ ପଥ ଦେଇ ବୁଦ୍ଧ ପଦ ଲାଭ କରିଛନ୍ତି । ବୁଦ୍ଧ ପଦ ଭଳି ପ୍ରଥମ 'ଧାରା'ରେ ଅଷ୍ଟମ ଦୀକ୍ଷା ଲାଭ କରିଥିବା ଜୀବାତ୍ମାକୁ 'ପ୍ରତ୍ୟେକ ବୁଦ୍ଧ' କୁହାଯାଏ । ମାତ୍ର ଏ ପୃଥିବୀରେ ତାଙ୍କର କାର୍ଯ୍ୟ ପରିସର ସମ୍ପର୍କରେ କିଛି ଜଣାଯାଇ ନାହିଁ । ଏ ସମସ୍ତଙ୍କ ଉପରେ ଜଣେ ସର୍ବୋଚ୍ଚ କର୍ତ୍ତା ଅଧିଷ୍ଠିତ । ନବମ ଦୀକ୍ଷା ପ୍ରାପ୍ତି ପରେ ଜୀବାତ୍ମା ଏହି ସର୍ବୋଚ୍ଚ କର୍ତ୍ତା—'ଲର୍ଡ଼ ଅଫ୍ ଦି ଓ୍ୱାର୍ଲଡ଼୍' ଭାବରେ ଅଧିଷ୍ଠିତ ହୋଇଥାଏ । ହିନ୍ଦୁ ଧର୍ମରେ ତାଙ୍କୁ 'ସନତ୍ କୁମାର' ବୋଲି ବର୍ଣ୍ଣନା

କରିଯାଇଛି । ପୂର୍ବୋକ୍ତ ସାତଟି ଯାକ ବିଭାଗର ସର୍ବୋପରି ବିକାଶ ତାଙ୍କର ଦାୟିତ୍ୱାଧୀନ ଅଟେ । ସୋପାନକ୍ରମର ଏହି ପଦବୀଗୁଡ଼ିକ ଚିରସ୍ଥାୟୀ ନୁହେଁ । ସାଂସାରିକ ଦୃଷ୍ଟିକୋଣରୁ ବର୍ଣ୍ଣନା କଲେ ଏହାକୁ ଗୋଟିଏ ଅଫିସ୍‌ର ବିଭିନ୍ନ ପଦବୀ ସହିତ ତୁଳନା କରିଯାଇପାରେ । ଅର୍ଥାତ୍ ଜଣକ ପରେ ଜଣେ ଏହି ପଦବୀଗୁଡ଼ିକରେ ଅବସ୍ଥାପିତ ହୋଇ କାର୍ଯ୍ୟ ସମ୍ପାଦନା କରିଥାନ୍ତି । ଏହାଛଡ଼ା ଏ କଥା ଭାବିବା ମଧ୍ୟ ଭୁଲ ଯେ 'ଲର୍ଡ୍ ଅଫ୍ ଦି ୱାର୍ଲଡ୍'ଙ୍କ ଉପରେ ଆଉ କୌଣସି ପଦବୀ ନାହିଁ । କଥା ହେଉଛି ସେସବୁ ପଦବୀ ମାନବର ଚିନ୍ତା ପରିସରର ଏତେ ଊର୍ଦ୍ଧ୍ୱରେ ଯେ ସେ ସମ୍ପର୍କରେ ଆଲୋଚନା କରିବା ସମ୍ଭବ ନୁହେଁ ।

ଏଠାରେ ପୁଣି ଥରେ ଉଲ୍ଲେଖ କରିଯାଇପାରେ ଯେ ଦ୍ୱିତୀୟ ବିଭାଗଟି ଜ୍ଞାନର ବିଭାଗ ହୋଇଥିବାରୁ ଜ୍ଞାନପ୍ରବର୍ତ୍ତୀମାନଙ୍କୁ ସମୟକ୍ରମେ ପୃଥିବୀକୁ ପଠାଇବା ଏହି ବିଭାଗର କାର୍ଯ୍ୟଭୁକ୍ତ । ଭଗବାନ ଗୌତମ ଯେ କି ଦ୍ୱିତୀୟ ବିଭାଗର ବୁଦ୍ଧ ପଦରେ ଅଧିଷ୍ଠିତ ସେ ଆଜିକୁ ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବେ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ । ବୁଦ୍ଧ ପଦ ଲାଭ କରିବା ପୂର୍ବରୁ ସେ ଅନେକ କାଳ ବୋଧିସତ୍ତ୍ୱ ଭାବରେ କଟାଇଥିଲେ ଏବଂ ନିଜର ଅପୂର୍ବ ତ୍ୟାଗ ଓ ମାନବ ଜାତି ପ୍ରତି କରୁଣା ହେତୁ 'ବୋଧିସତ୍ତ୍ୱ' ପଦରୁ ଉନ୍ନୀତ ହୋଇ ବୁଦ୍ଧ ପଦ ହାସଲ କରିଥିଲେ । ଗୌତମଙ୍କ ପରେ ମହାମୁନି ମୈତ୍ରେୟ ବୋଧିସତ୍ତ୍ୱ ପଦବୀରେ ଅଧିଷ୍ଠିତ ହୋଇଥିଲେ । ମାନବ ଜାତିର ଆଧ୍ୟାତ୍ମିକ ବିକାଶକୁ ଦ୍ରୁତତର କରିବାକୁ ମୈତ୍ରେୟ ବୋଧିସତ୍ତ୍ୱ ଅନେକ ଥର ପୃଥିବୀରେ ଜଗତ୍‌ଗୁରୁ ତଥା ଅନ୍ୟାନ୍ୟ ଧର୍ମପ୍ରବର୍ତ୍ତୀ ଭାବରେ ଜନ୍ମ ନେଇଛନ୍ତି । ଅତୀତରେ ସେ ଭାରତବର୍ଷରେ ଶ୍ରୀକୃଷ୍ଣ, ମହାବୀର, ଶଙ୍କରାଚାର୍ଯ୍ୟ, ପାଲେଷ୍ଟାଇନରେ ଯୀଶୁଖ୍ରୀଷ୍ଟ, ଚୀନରେ ଲାଓ'ସୁ, କନ୍‌ଫୁସିୟସ୍, ପ୍ରାଚୀନ ଗ୍ରୀସରେ ପାଇଥାଗୋରସ୍ ଓ ତିବ୍ବତରେ ସଙ୍ଖାପା ଭାବରେ ଜନ୍ମ ନେଇଥିବା କଥା ଥିଓସଫି ଇତିହାସରେ ବର୍ଣ୍ଣିତ ହୋଇଛି ।

ସାଧାରଣତଃ ପ୍ରତ୍ୟେକ ଶତାବ୍ଦୀର ଶେଷ ଭାଗରେ ପୃଥିବୀରେ ଏକ ଆଧ୍ୟାତ୍ମିକ 'ଅଭ୍ୟୁତ୍ଥାନ ଲାଗି 'ହ୍ୱାଇଟ୍ ବ୍ରଦରହୁଡ୍'ରୁ ନୂତନ ଶକ୍ତି ବା ପ୍ରେରଣା ମିଳିଥାଏ । ସେତେବେଳେ ମହାଗୁରୁମାନେ ଜଣେ ଜ୍ଞାନ ପ୍ରଚାରକଙ୍କୁ ବାଛି ତାଙ୍କର ମାଧ୍ୟମରେ ଉକ୍ତ ଆଧ୍ୟାତ୍ମିକ ଜାଗରଣ ସୃଷ୍ଟି କରିଥାନ୍ତି । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ମାଡ଼ାମ୍ ବ୍ଲାଭସ୍କିଙ୍କ ଦ୍ୱାରା ଥିଓସଫିକାଲ ସୋସାଇଟି ପ୍ରତିଷ୍ଠିତ ହେବାର ଅନ୍ତରାଳରେ ଏହି ଆଧ୍ୟାତ୍ମିକ ଶକ୍ତି ବା ପ୍ରେରଣା ହିଁ କାର୍ଯ୍ୟ କରୁଥିଲା । କେବଳ ସେତିକି ନୁହେଁ, ମହାମୁନି ମୈତ୍ରେୟ ନିକଟ ଭବିଷ୍ୟତରେ ପୁନର୍ବାର ଜଗତ୍‌ଗୁରୁ ଭାବରେ ଜନ୍ମ ଗ୍ରହଣ କରିବେ ବୋଲି ଜାଣି ସେହି ଉଦ୍ଦେଶ୍ୟରେ ପୃଥିବୀବାସୀଙ୍କୁ ପ୍ରସ୍ତୁତ କରାଇବାକୁ ମହାଗୁରୁମାନେ ଥିଓସଫିକାଲ ସୋସାଇଟି ଗଠନ କରାଇଥିଲେ ବୋଲି ମାଡ଼ାମ୍ ବ୍ଲାଭସ୍କି ନିଜେ ୧୮୮୯ ମସିହାରେ ସ୍ୱୀକାର କରିଥିଲେ । ୧୮୯୧ ମସିହା ମେ' ମାସ ୮ ତାରିଖରେ ମାଡ଼ାମ୍ ବ୍ଲାଭସ୍କିଙ୍କର ମୃତ୍ୟୁ ପରେ ତାଙ୍କର ଦୁଇଜଣ ବିଶିଷ୍ଟ ଶିଷ୍ୟ, ଶ୍ରୀମତୀ ଆନି ବେସାନ୍ତ (୧୮୪୭—୧୯୩୩) ଏବଂ ଚାର୍ଲସ୍ ୱେବଷ୍ଟର୍ ଲେଡ୍‌ବିଟର୍ (୧୮୪୭—୧୯୩୪)ଙ୍କ ଦ୍ୱାରା ଥିଓସଫିକାଲ ସୋସାଇଟି ସାରା ବିଶ୍ୱରେ ଦ୍ରୁତ ଲୋକପ୍ରିୟତା ହାସଲ କଲା । ଲେଡ୍‌ବିଟର ଆଦ୍ୟ ଜୀବନରେ ଚର୍ଚ୍ଚରେ ଜଣେ ପାଦ୍ରୀ ଭାବରେ କାର୍ଯ୍ୟ କରୁଥିଲେ । ବ୍ଲାଭସ୍କିଙ୍କ ସଂସ୍ପର୍ଶରେ ଆସି ସେ ପାଦ୍ରୀ କାମ ଛାଡ଼ି ତାଙ୍କ ସହିତ ଭାରତ ଆସିଲେ ଓ ଥିଓସଫିକାଲ ସୋସାଇଟିର କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରିଦେଲେ । ତାଙ୍କର ସହକର୍ମୀ ଶ୍ରୀମତୀ ଆନି ବେସାନ୍ତ ୧୯୦୭ ମସିହାରେ ଥିଓସଫିକାଲ ସୋସାଇଟିର ଆନ୍ତର୍ଜାତିକ ସଭାପତି ରୂପେ ମନୋନୀତ ହୋଇ ମାଡ୍ରାସସ୍ଥିତ ଆଡାୟାର ଥିଓସଫିକାଲ ସୋସାଇଟିର ମୁଖ୍ୟ କାର୍ଯ୍ୟାଳୟରେ ରହି କାର୍ଯ୍ୟ କରିବାକୁ ଲାଗିଲେ ।

## "କି ଅଦ୍ଭୁତ ଜ୍ୟୋତିବଳୟ !"

୧୯୦୭ ମସିହାରେ ନାରାୟଣିୟା ଚାକିରିରୁ ଅବସର ନେଲେ । ତାପରେ ସେ ମନେ ମନେ ଭାବିଲେ ଯେ ଏଣିକି ଆଉ ଘରେ ତୁନିରେ ବସିବେ କାହିଁକି ବରଂ ଥିଓସଫିକାଲ ସୋସାଇଟିକୁ ଯାଇ ସେଠାରେ କିଛି କିଛି ସାହାଯ୍ୟ କରିବେ । ମନକଥା ଜଣାଇ ସେ ଆନି ବେସାନ୍ତଙ୍କ ନିକଟକୁ ଖଣ୍ଡେ ଚିଠି ପକାଇଲେ । ସେଥିରେ ସେ ଲେଖିଥିଲେ ଯେ ଆଡ୍ୟାର୍‌ର ଥିଓସଫିକାଲ ସୋସାଇଟିର ହତା ଭିତରେ ଖଣ୍ଡେ ଦୂରକୁ ଥିବା ଛୋଟ ଘରଟିରେ ଯଦି ସେ ତାଙ୍କ ପୁଅମାନଙ୍କୁ ଧରି ରହିବାର ଅନୁମତି ପାଆନ୍ତେ ତେବେ ଥିଓସଫିକାଲ ସୋସାଇଟି ପାଇଁ ମାଗଣାରେ କିଛି କାମ ମଧ୍ୟ କରି ପାରନ୍ତେ । ତାଙ୍କ ଚିଠି ପାଇ ଆନି ବେସାନ୍ତ ଭାବିଲେ ଯେ ନାରାୟଣିୟା ନିଜର ପିଲାପିଲିଙ୍କୁ ନେଇ ସେହି ହତା ଭିତରେ ରହିଲେ ପିଲାମାନେ ନିଶ୍ଚୟ ପାଟିତୁଣ୍ଡ, ହୋ' ହାଲ୍ଲା କରିବେ । ତେଣୁ ପ୍ରଥମେ ସେ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । କିନ୍ତୁ ଯୋଗକୁ ତା'ର ଦୁଇ ବର୍ଷ ପରେ ହଠାତ୍ ଥିଓସଫିକାଲ ସୋସାଇଟିର ଅଫିସ କାର୍ଯ୍ୟ ଚାଲାଇବାକୁ ତାଙ୍କର ଜଣେ ସହକାରୀ ଦରକାର ପଡ଼ିଲା । ସେତେବେଳେ ଅନ୍ୟ କୌଣସି ଉପଯୁକ୍ତ ବ୍ୟକ୍ତିକୁ ନ ପାଇ ସେ ବାଧ୍ୟ ହୋଇ ନାରାୟଣିୟାଙ୍କୁ ଡକାଇଲେ ଓ ତାଙ୍କ ଅନୁରୋଧ ରକ୍ଷା କରି ତାଙ୍କୁ ଆଡ୍ୟାର୍‌ର ପରିସର ଭିତରେ ରହିବାକୁ ଅନୁମତି ମଧ୍ୟ ଦେଲେ । ତା ପରଠାରୁ ନାରାୟଣିୟା ଥିଓସଫିକାଲ ସୋସାଇଟିର 'ଏସୋଟେରିକ ସେକ୍‌ସନ୍' ବା ଗୁପ୍ତବିଦ୍ୟା ବିଭାଗର ଆସିଷ୍ଟାଣ୍ଟ ସେକ୍ରେଟାରୀ ଭାବରେ କାର୍ଯ୍ୟ କରିବାକୁ ଲାଗିଲେ ।

ନାରାୟଣିୟା ରହୁଥିବା ଏହି ଛୋଟ ଘରଟି ଥିଓସଫିକାଲ ସୋସାଇଟିର ମୁଖ୍ୟ ବଙ୍ଗଳାଠାରୁ ଖଣ୍ଡେ ଦୂରରେ ଅବସ୍ଥିତ । ଘରଟି ପୁରୁଣା ହେଲେ ବି ଚଳନୀୟ ଅବସ୍ଥାରେ ଥିଲା । ସେଠାକୁ ଆସିବାର ଅଳ୍ପ ଦିନ ପରେ କ୍ରିଷ୍ଣମୂର୍ତ୍ତିଙ୍କର ସବା ବଡ଼ ଭାଇ ଶିବରାମ ମାଡ୍ରାସର ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇ ସେଠାକୁ ଚାଲିଗଲେ ।

ଉଉଣୀଟି ଆଗରୁ ବାହା ହୋଇସାରିଥିଲା । ଏବେ କିଷ୍ଣମୂର୍ତ୍ତି ଓ ନିତ୍ୟ ଆଡ୍ଡାୟାର ଠାରୁ ଛଅ ମାଇଲ ଦୂରରେ ମୈଲପୁରଠାରେ ଥିବା ଏକ ସରକାରୀ ହାଇସ୍କୁଲରେ ନାମ ଲେଖାଇଲେ । ସବା ସାନଭାଇ ସଦାନନ୍ଦ ଘରେ ରହିଲା । ଶାରୀରିକ ଓ ମାନସିକ ବିକୃତି ଯୋଗୁଁ ପାଠ ପଢ଼ିବା ତ ଦୂରର କଥା, ସେ ନିଜ କାମ ମଧ୍ୟ ନିଜେ କରିପାରୁ ନ ଥିଲା । ଘର କଥା ବୁଝାଶୁଝା କରିବାକୁ ନାରାୟଣିୟାଙ୍କର ଗୋଟିଏ ବିଧବା ଉଉଣୀ ଆସି ପାଖରେ ରହିଲା ।

ଆଡ୍ଡାୟାରରେ ରହଣି ପରଠାରୁ କିଷ୍ଣମୂର୍ତ୍ତିଙ୍କ ଜୀବନ ଏକ ନୂଆ ମୋଡ଼ ନେବାରେ ଲାଗିଲା । ସେଇ ଓକାବୋକା, ମାନ୍ଦା ପିଲାଟିର ଜୀବନରେ ଏଭଳି କେତେକ ଘଟଣା ଘଟିବାକୁ ଯାଉଥିଲା ଯାହା କି କେହି କେବେ କଳ୍ପନା କରିପାରିବ ନାହିଁ । ନାରାୟଣିୟା ଓ ତାଙ୍କର ପିଲାମାନେ ଯେତେବେଳେ ଆଡ୍ଡାୟାର ଘରକୁ ଆସିଲେ ଲେଡ଼ବିଟର ସେତେବେଳେ ଇଂଲଣ୍ଡରେ ଥିଲେ । ସେଠାରୁ ଫେରି ସେ ୧୯୦୯, ଫେବୃଆରୀ ୧୦ ତାରିଖରେ ଆସି ଆଡ୍ଡାୟାରରେ ପହଞ୍ଚିଲେ । ସାଙ୍ଗରେ ତାଙ୍କର ଆସିଥିଲେ ଅରନେଷ୍ଟ ଉଡ୍ ନାମକ ଜଣେ ଇଂରେଜ ଭଦ୍ରବ୍ୟକ୍ତି । ସେ ଥିଲେ ଜଣେ ଥିଓସଫିଷ୍ଟ । ଆଡ୍ଡାୟାରରୁ ପ୍ରକାଶ ପାଉଥିବା 'ଦି ଥିଓସଫିଷ୍ଟ' ପତ୍ରିକାର ପ୍ରକାଶନରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସେ ଆନି ବେସାନ୍ତ ଓ ଲେଡ଼ବିଟରଙ୍କୁ ଅନ୍ୟାନ୍ୟ ଅଫିସ କାର୍ଯ୍ୟରେ ମଧ୍ୟ ସହାୟତା କରୁଥିଲେ ।

ଆଡ୍ଡାୟାରକୁ ଆସିବା ପରେ ପ୍ରତିଦିନ ଉପର ଓଳି ସମୁଦ୍ର-କୂଳକୁ ଯାଇ ଘଡ଼ିଏ ଲେଖାଁ ବସିବା କିଷ୍ଣମୂର୍ତ୍ତି ଓ ନିତ୍ୟଙ୍କର ଅଭ୍ୟାସରେ ପଡ଼ି ଯାଇଥିଲା । ସେଇଠି ବାଲିରେ ବସି ସେମାନେ ଦେଖନ୍ତି କେମିତି ଗୋରା ତକ ତକ, ଡେଙ୍ଗା, ଚଉଡ଼ା ସାହେବମାନେ ପାଣିରେ ପଶି ଗାଧଉଛନ୍ତି, ପହଁରୁଛନ୍ତି । ବେଳେବେଳେ କିଷ୍ଣମୂର୍ତ୍ତି ଓ ନିତ୍ୟ ବି ପାଣି କୂଳେ କୂଳେ ଗୋଡ଼ ବୁଡ଼ାଇ ଖେଳନ୍ତି ଆଉ ସଞ୍ଜ ଗଡ଼ିଗଲେ ଘରକୁ ଫେରି ଆସନ୍ତି । ଅନ୍ୟମାନଙ୍କ ସହିତ ଲେଡ଼ବିଟର ମଧ୍ୟ କେବେକେବେ ସମୁଦ୍ରକୁ ଗାଧୋଇବାକୁ ଆସନ୍ତି । ଏମିତି ଦିନେ

ଉପର ଓଳି ସମୁଦ୍ରରେ ଗାଧୋଇ ସାରି ଫେରିବାବେଳେ ତାଙ୍କର ଆଖି ପଡ଼ିଗଲା ବାଲି ଉପରେ ବସିଥିବା ଏଇ ପିଲା ଯୋଡ଼ିକଙ୍କ ଉପରେ । ଆଡ୍ୟାର୍‌ରେ ପହଞ୍ଚିବା ପରେ ଯଦିଓ ସେ ନାରାୟଣିୟାଙ୍କର ଏଇ ନୂଆ ରହିବା ବନ୍ଦୋବସ୍ତ ବିଷୟରେ ସବୁକଥା ଶୁଣିଥିଲେ ତଥାପି ତାଙ୍କର ପିଲାମାନଙ୍କୁ ଆଖିରେ ଦେଖି ନ ଥିଲେ । ସେ ଦିନ ସନ୍ଧ୍ୟାରେ ନିଜର ବଙ୍ଗଳାକୁ ଫେରିବା ପରେ ସେ ଅରନେଷ୍ଟ ଉଡ୍‌ଙ୍କୁ ଡାକି କହିଲେ ଯେ ସମୁଦ୍ର କୂଳରେ ସେ ଏମିତି ଯୋଡ଼ିଏ ପିଲାଙ୍କୁ ଦେଖିଲେ ଯାହାର ଅସାମାନ୍ୟ ଜ୍ୟୋତିବଳୟ ତାଙ୍କୁ ଚକିତ କରିଦେଲା । ସେ ଆହୁରି ଏକଥା ମଧ୍ୟ କହିଲେ ଯେ ସେ ଦିହିଁଙ୍କ ଭିତରୁ ବଡ଼ ପିଲାଟିର ଜ୍ୟୋତିବଳୟ ଏତେ ବଡ଼ ଓ ଦୀପ୍ତିମନ୍ତ ଥିଲା ଯେ ସେଭଳି ଜ୍ୟୋତିବଳୟ ସେ ଏ ପର୍ଯ୍ୟନ୍ତ ଅନ୍ୟ କାହାରି ଠାରେ ହେଲେ ଦେଖି ନାହାନ୍ତି । "ସତରେ କି ଅଦ୍ଭୁତ ସେ ଜ୍ୟୋତିବଳୟ ! ସ୍ୱାର୍ଥପରତାର ଲେଶମାତ୍ର ଚିହ୍ନ ବି ସେଥିରେ ନାହିଁ ।"

ସେତେବେଳକୁ ମହାମୁନି ମୈତ୍ରେୟ ନିକଟ ଭବିଷ୍ୟତରେ ପୃଥିବୀରେ ଆବିର୍ଭୂତ ହୋଇ ଏକ ମାନବକାୟା ଧାରଣ କରିବେ ବୋଲି ଜାଣି ଲେଡ଼ବିଟର ତାଙ୍କ ଉଦ୍ଦେଶ୍ୟରେ ଏକ ଉପଯୁକ୍ତ ମାନବ-ଶରୀର ବା ବାହନର (vehicle) ସନ୍ଧାନରେ ଥିଲେ । ସେଥିପାଇଁ ନିଜର ଅତୀନ୍ଦ୍ରିୟ ଶକ୍ତି ଖଟାଇ ସେ ଏକ ନିର୍ଦ୍ଦିଷ୍ଟ ବୟସ ସୀମାର କେତେକ ପିଲାଙ୍କର ଜ୍ୟୋତିବଳୟ ଓ ବିଗତ ଜନ୍ମ ବୃତ୍ତାନ୍ତକୁ ଅନୁଧ୍ୟାନ କରି ସେମାନଙ୍କୁ ତାଲିମ ଦେବାକୁ ନିଜ ପାଖରେ ଆଣି ରଖିଥିଲେ । ତାଙ୍କରି ଭିତରେ ଆମେରିକାର ହ୍ୟୁବର୍ଟ ଭାନ୍ ହୁକ୍ ବୋଲି ଗୋଟିଏ ତେର ବର୍ଷର ପିଲା ଥିଲା । ତା'ର ଆଧ୍ୟାତ୍ମିକ ଜୀବନ ନେଇ ଲେଡ଼ବିଟର ଖୁବ୍ ଆଶାୟୀ ଥିଲେ ଓ ସେ ଭବିଷ୍ୟତରେ ମହାମୁନିଙ୍କର ବାହନ ହୋଇପାରେ ବୋଲି ଆଶା ମଧ୍ୟ କରୁଥିଲେ । କିନ୍ତୁ ଏବେ ସମୁଦ୍ର କୂଳରେ ଦେଖିଥିବା ଏହି ନୂଆ ପିଲାଟିର ଅସାମାନ୍ୟ ଜ୍ୟୋତିବଳୟକୁ

ଦେଖି ତାଙ୍କ ଆନନ୍ଦର ସୀମା ରହିଲା ନାହିଁ । ତେଣୁ ସେ ଉଡ୍‌ ସାହେବଙ୍କୁ ଯେ କୌଣସି ପ୍ରକାରରେ ହେଲେ ଏଇ ନୂଆ ପିଲାଟି କିଏ ବୋଲି ଖୋଜ୍ ଲଗାଇବାକୁ ଅନୁରୋଧ କଲେ । ଅନେକ ଖୋଜାଖୋଜି କରି ଶେଷରେ ଯେତେବେଳେ ଉଡ୍‌ ଜାଣିବାକୁ ପାଇଲେ ଯେ ଲେଡ୍‌ବିଟରଙ୍କ ସନ୍ଧାନ ପାଇଥିବା ପିଲାଟି ହେଉଛି ନାରାୟଣିୟାଙ୍କ ପୁଅ ଖୋଦ୍ କ୍ରିଷ୍ଣମୂର୍ତ୍ତି, ସେତେବେଳେ ସେ ମନେ ମନେ ଖୁବ୍ ହସିଲେ । କାରଣ ସ୍କୁଲ ଭିତରେ ସେ ଯେ କ୍ରିଷ୍ଣମୂର୍ତ୍ତିଙ୍କର ନିର୍ବୋଧତା ଓ ସରଳତାର କାହାଣୀମାନ କେବଳ ଶୁଣିଥିଲେ ତା' ନୁହେଁ, ନିଜେ ପ୍ରତ୍ୟକ୍ଷରେ ତା'ର କେତେକ ଦୃଷ୍ଟାନ୍ତ ମଧ୍ୟ ପାଇଥିଲେ । ହେଲେ ଏଇ କଥା ଯେତେବେଳେ ସେ ଆସି ଲେଡ୍‌ବିଟରଙ୍କୁ ଜଣାଇଲେ ଲେଡ୍‌ବିଟର ସେ ସବୁକୁ ଆଦୌ କାନ ଦେଲେ ନାହିଁ । ବରଂ ଦୃଢ଼ କଣ୍ଠରେ ଜବାବ ଦେଲେ — "ଆରେ ଦେଖିବ ରହ, ସେଇ ପିଲାଟି ଭବିଷ୍ୟତରେ ଜଣେ ଅତି ବଡ଼ ଆଧ୍ୟାତ୍ମିକ ଗୁରୁ ହେବ···ବିଶ୍ୱବିଖ୍ୟାତ ବକ୍ତା ହେବ ।" ଏକଥା ଶୁଣି ଉଡ୍‌ଙ୍କର କୌତୂହଳ ଆହୁରି ବଢ଼ିଗଲା । ସେ ପଚାରିଲେ, "ବଡ଼ ? ମାନେ କେତେ ବଡ଼ ? କଣ ଆମ ଆନି ବେସାନ୍ତଙ୍କ ଭଳି ?"

—"ନା···ନା···ତାଙ୍କଠାରୁ ଆହୁରି ଢେର ଢେର ବଡ଼ ।" ଲେଡ୍‌ବିଟରଙ୍କ ସ୍ୱରରେ ନିଶ୍ଚିତତା ଓ ଦୃଢ଼ତାର ଭାବ ଫୁଟି ଉଠିଥିଲା ।

କ୍ରିଷ୍ଣମୂର୍ତ୍ତିଙ୍କର ଚେହେରା ସେତେବେଳକୁ ଥିଲା ଅତି ସାଧାରଣ । କେବଳ ବଡ଼ ବଡ଼ ଆଖି ଯୋଡ଼ିକର ଗଭୀର ସ୍ୱପ୍ନାବିଷ୍ଟ ଚାହାଣୀକୁ ଛାଡ଼ିଦେଲେ ବାକି ସବୁଥିରେ ଅଯତ୍ନର ଛାପ । ନହକା ଦେହର ହାଡ଼ୁଆ ଛାତିରେ ପିଞ୍ଜରା ଗଣି ହେଇଯାଉଥିଲା । ତହିଁରେ ପୁଣି ଛୁଆ ଦିନରୁ ଶ୍ୱାସ ବେମାରି । ଦାନ୍ତଗୁଡ଼ିକ ବଙ୍କା ଟେଡ଼ା, ମଇଳା; ଆଉ ତା' ସାଙ୍ଗକୁ ଲଣ୍ଡା ମୁଣ୍ଡର ପଛପଟେ 'ଠ' ଆକାରରେ ଚୁଟି ବେଣ୍ଟାଏ ।

ଉଡ୍‌ଙ୍କ ବ୍ୟତୀତ ରିଚାର୍ଡ଼ ବେଲଫୋର୍ କ୍ଲାର୍କ ନାମକ ଆଡ୍‌ୟାରରେ ରହୁଥିବା ଆଉ ଜଣେ ଇଂରେଜ ଥିଓସଫିଷ୍ଟଙ୍କୁ ମଧ୍ୟ ଲେଡ୍‌ବିଟର କ୍ରିଷ୍ଣମୂର୍ତ୍ତିଙ୍କ ସମ୍ପର୍କରେ ଭବିଷ୍ୟତବାଣୀ ଶୁଣାଇଥିଲେ । କଥା ହେଲା, ଲେଡ୍‌ବିଟରଙ୍କର ସେତେବେଳକୁ ପୂର୍ବମାନଙ୍କରେ ବିଶ୍ୱାସ

ହୋଇଯାଇଥିଲା ଯେ ଯଦି ସେମିତି କିଛି ଅଘଟଣ ନ ଘଟେ ତେବେ ଏହି କ୍ରିଷ୍ଣମୂର୍ତ୍ତି ହିଁ ଦିନେ ମହାମୁନି ମୈତ୍ରେୟଙ୍କର ବାହନ ରୂପେ ପରିଚିତ ହେବେ । କୃଷ୍ଣମୂର୍ତ୍ତିଙ୍କୁ ଠାବ କରିବାର କିଛିଦିନ ପରେ ଦିନେ ସକାଳୁ ଉଠି ଲେଡ଼ବିଟର କ୍ଲାର୍କଙ୍କୁ କହିଲେ ଯେ ନାରାୟଣିୟାଙ୍କ ପରିବାର ଆସି ଆଡ଼ାୟାରରେ ରହିବା ଅନ୍ତରାଳରେ ଏକ ବିଶେଷ ଉଦ୍ଦେଶ୍ୟ ନିହିତ ଅଛି ବୋଲି ସେ ମହାଗୁରୁ କୁତହୁମି *ଙ୍କ ଠାରୁ ଏକ ସନ୍ଦେଶ ପାଇଛନ୍ତି । ସେଥିରେ ମହାଗୁରୁ ଏକଥା ମଧ୍ୟ ଜଣାଇଛନ୍ତି ଯେ ଏ ଦୁଇଟିଯାକ ପିଲା ଭବିଷ୍ୟତରେ ଏକ ସ୍ୱତନ୍ତ୍ର ଧରଣର ଶିକ୍ଷା ପାଇ ବଢ଼ି ଉଠିବେ ଓ ଜଗତ ପ୍ରତି ନିଜର କର୍ତ୍ତବ୍ୟକୁ ଅତି ସୁଚାରୁ ରୂପେ ସମ୍ପାଦନ କରିବେ ।

ଯୋଗକୁ ଏ ଘଟଣାର କିଛିଦିନ ପରେ ନାରାୟଣିୟା ନିତ୍ୟଙ୍କର ବ୍ରତୋପନୟନ କରାଇଲେ ଓ ଅନ୍ୟ କେତେକ ଥିଓସଫିଷ୍ଟଙ୍କ ସହିତ ଲେଡ଼ବିଟରଙ୍କୁ ମଧ୍ୟ ନିମନ୍ତ୍ରଣ କଲେ । ସେହି ଅବସରରେ, କ୍ରିଷ୍ଣମୂର୍ତ୍ତିଙ୍କ ଅଜାଣତରେ ତାଙ୍କୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଗଭୀର ଭାବରେ ନିରୀକ୍ଷଣ କରିବାକୁ ଲେଡ଼ବିଟରଙ୍କୁ ସୁଯୋଗ ମିଳିଗଲା । ସେଦିନର ଉତ୍ସବ ଶେଷ ହେବା ବେଳକୁ ଲେଡ଼ବିଟରଙ୍କ ମନର ପୂର୍ବ ବିଶ୍ୱାସ ଏତେ ବଳବତ୍ତର ହୋଇ ଉଠିଲା ଯେ ଭବିଷ୍ୟତର କାର୍ଯ୍ୟପନ୍ଥା ପାଇଁ ସେ ନିଜକୁ ମନେ ମନେ ପ୍ରସ୍ତୁତ କରାଇନେଲେ । କିଛିଦିନ ପରେ ଦିନେ ଛୁଟି ଦେଖି ଲେଡ଼ବିଟର ନାରାୟଣିୟା ଓ କୃଷ୍ଣମୂର୍ତ୍ତିଙ୍କୁ ନିଜର ବଙ୍ଗଳା ଭିତରକୁ ଡକାଇଲେ । ସେଠାରେ କ୍ରିଷ୍ଣମୂର୍ତ୍ତିଙ୍କ ସହିତ ସାମାନ୍ୟ ପରିଚୟ

---

* ମହାଗୁରୁ କୁତହୁମି ଓ ମହାଗୁରୁ ମୌର୍ଯ୍ୟ, ଏହି ଦୁଇଜଣ 'ଆଡ଼େପ୍ଟ' ଥିଓସଫିକାଲ ସୋସାଇଟିର ତତ୍ତ୍ୱାବଧାନ ଦାୟିତ୍ୱରେ ରହି ତାହାର କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିଥାନ୍ତି । ଏହି ମହାଗୁରୁ ଦିହେଁ ତାଙ୍କର ମାନବକାୟାରେ ଜନବସତିଠାରୁ ବହୁ ଦୂରରେ ତିବ୍ବତର ଏକ ଦୁର୍ଗମ ସ୍ଥାନରେ ବାସ କରୁଥିଲେ । ମାଡ଼ାମ୍ ବ୍ଲାଭାସ୍କି ଥିଓସଫିକାଲ ସୋସାଇଟି ପ୍ରତିଷ୍ଠା କରିବା ପୂର୍ବରୁ ବହୁଥର ଆସି ଏହି ମହାଗୁରୁ ଦିହିଁଙ୍କୁ ସାକ୍ଷାତ କରିଥିବା କଥା ସେ ନିଜେ ସ୍ୱୀକାର କରିଛନ୍ତି ।

ହୋଇଯିବା ପରେ ତାଙ୍କୁ ନିଜ ପାଖରେ ଗୋଟିଏ ଚଉକିରେ ବସାଇ ତାଙ୍କ ମୁଣ୍ଡ ଉପରେ ହାତ ରଖି ନିଜର ଅଲୌକିକ ଶକ୍ତି ବଳରେ ତାଙ୍କର ବିଗତ ଜନ୍ମ ବୃତ୍ତାନ୍ତକୁ ଗୋଟି ଗୋଟି ବର୍ଣ୍ଣନା କରିବାକୁ ଲାଗିଲେ । ଏମିତି ଭାବରେ ଦୀର୍ଘକାଳ ଧରି ପ୍ରତି ଶନିବାର ଓ ରବିବାର ନାଗପ୍ପୁଣିସ୍ଥ ପୁଅକୁ ଧରି ସେଠାରେ ପହଞ୍ଚନ୍ତି ଓ ଲେଡ୍‌ବିଟରଙ୍କ କ୍ରମାନୁସାରେ କିଷ୍ଣମୂର୍ତ୍ତିଙ୍କର ପୂର୍ବ ଜନ୍ମଗୁଡ଼ିକ ସ୍ମରଣ କରିବାରେ ଲାଗନ୍ତି । ଏହିପରି ୧୯୧୦ ମସିହା ଶେଷ ସୁଦ୍ଧା ଲେଡ଼ବିଟର କିଷ୍ଣମୂର୍ତ୍ତିଙ୍କର ସର୍ବମୋଟ ବିଗତ ତିରିଶ ଗୋଟି ଜନ୍ମବୃତ୍ତାନ୍ତ ବର୍ଣ୍ଣନା ଶେଷକରି ସାରିଥିଲେ । ପ୍ରଥମେ ପ୍ରଥମେ ନାଗପ୍ପୁଣିସ୍ଥ ନିଜେ ସେଠାରେ ଉପସ୍ଥିତ ରହି ସେଗୁଡ଼ିକ ଟିପି ରଖୁଥିଲେ । ମାତ୍ର କିଛିଦିନ ପରେ ନିଜ କାମରେ ବ୍ୟସ୍ତ ରହିବା ହେତୁ ସେ ଆଉ ସେଠାକୁ ଆସିପାରିଲେ ନାହିଁ । ତେଣୁ ତାଙ୍କ ପରିବର୍ତ୍ତେ ଏଣିକି ଅରନେଷ୍ଟ ଉଡ୍ ଲେଡ଼ବିଟର ଯାହା ସବୁ ବର୍ଣ୍ଣନା କଲେ ତାକୁ ଟିପି ରଖିବାକୁ ଲାଗିଲେ । ଲେଡ଼ବିଟରଙ୍କ ଦ୍ୱାରା ବର୍ଣ୍ଣିତ ଏହି ଜନ୍ମବୃତ୍ତାନ୍ତ ଲିପିବଦ୍ଧ ହୋଇ ପ୍ରଥମେ 'ଦି ଥିଓସଫିଷ୍ଟ' ପତ୍ରିକାର ୧୯୧୦, ଏପ୍ରିଲ ସଂଖ୍ୟାଠାରୁ 'ରେଣ୍ଟ୍‌ସ୍ ଇନ୍ ଦି ଭେଲ୍ ଅଫ୍ ଟାଇମ୍' (Rents in the veil of time) ଶିରୋନାମାରେ କ୍ରମାନୁସାରେ ପ୍ରକାଶ ପାଇବାକୁ ଲାଗିଲା । ପରେ ଏକତ୍ର ସଂକଳିତ ହୋଇ ତାହା 'ଲାଇଭ୍‌ସ୍ ଅଫ୍ ଆଲକଓନ' ବା ଆଲକଓନଙ୍କ ଜୀବନାବଳୀ ନାମକ ପୁସ୍ତକରେ ପ୍ରକାଶିତ ହେଲା । ଏହି ଜନ୍ମବୃତ୍ତାନ୍ତରେ କିଷ୍ଣମୂର୍ତ୍ତି ଆଲକଓନ ନାମରେ ପରିଚିତ ଏବଂ ବିଗତ ଜନ୍ମଗୁଡ଼ିକରେ ଆନି ବେସାନ୍ତ, ନିତ୍ୟ ଓ ଲେଡ଼ବିଟର ବରାବର ତାଙ୍କ ସଂସ୍ପର୍ଶରେ ରହି ଆସିଥିବା କଥା ଏଥିରେ ଉଲ୍ଲେଖ ହୋଇଛି । ଲେଡ଼ବିଟରଙ୍କ ବର୍ଣ୍ଣନା ଅନୁଯାୟୀ ଏହି 'ଆଲକଓନ' ବା କୃଷ୍ଣମୂର୍ତ୍ତି ଖ୍ରୀ. ପୂ. ୨୨,୬୬୨ଠାରୁ ଆରମ୍ଭ କରି ଖ୍ରୀ. ୬୨୪ ମଧ୍ୟରେ ପୃଥିବୀର ବିଭିନ୍ନ ସ୍ଥାନରେ ବିଭିନ୍ନ ପରିବେଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ମତରେ ଆଲକଓନ ଥିଲେ ଏକ ଅତ୍ୟନ୍ତ ଉଚ୍ଚକୋଟୀର ଜୀବାତ୍ମା ଏବଂ କ୍ରମ ବିକାଶର ପଥରେ ସେ ଅନ୍ୟମାନଙ୍କ ଠାରୁ ଢେର ଆଗୁଆ ଥିଲେ ।

ଏଣେ ପ୍ରତି ଶନିବାର ଓ ରବିବାର ଲେଡ଼ବିଟରଙ୍କ ବଂଗଳାକୁ ଯାଇ ବସିବାକୁ କୃଷ୍ଣମୂର୍ତ୍ତିଙ୍କୁ ବଡ଼ ସଙ୍କୋଚ ଲାଗୁଥିଲା । ଏକେତ ସେ ଥିଲେ ଭୀଷଣ ଲାଜକୁଳା, ତହିଁରେ ପୁଣି ସବୁ ଭାରତୀୟଙ୍କ ପରି ତାଙ୍କ ମନରେ ବି ଇଂରେଜମାନଙ୍କ ପ୍ରତି ଗୋଟାଏ ଅହେତୁକ ଭୟ ରହିଥିଲା । ତାହାଛଡ଼ା କୃଷ୍ଣମୂର୍ତ୍ତିଙ୍କୁ ଇଂରାଜୀ ଭାଷା କିଛି ଆସୁ ନ ଥିଲା କି ଲେଡ଼ବିଟରଙ୍କୁ ତେଲେଗୁ ଜଣା ନ ଥିଲା । ତେଣୁ ଘଣ୍ଟା ଘଣ୍ଟା ଧରି ସେମାନେ ବଖରାଟି ଭିତରେ ଏକାଠି ବସି ରହୁଥିଲେ ସୁଦ୍ଧା କେହି କାହାର ସହିତ ମୁହଁ ଖୋଲି କଥା ହେବାର ବାଟ ନ ଥିଲା । ଏହି ଭାଷାଗତ ଦୁର୍ବଳତାଟା କୃଷ୍ଣମୂର୍ତ୍ତିଙ୍କ ବାଲ୍ୟ ଜୀବନରେ ଏକ ବଡ଼ ସମସ୍ୟା ଛିଡ଼ା କରାଇଥିଲା । ସ୍କୁଲରେ ସବୁ ପାଠ ଭିତରେ ଇଂରାଜୀ ଶିକ୍ଷାଟା ବିଶେଷ ଭାବରେ ତାଙ୍କ ପାଇଁ ଦୁଃସାଧ୍ୟକର ଥିଲା । ମୈଲାପୁରର ଯୋଉ ସ୍କୁଲରେ ସେ ନାମ ଲେଖାଇଥିଲେ ସେଠାରେ କେବଳ ଇଂରାଜୀ ଆଉ ତାମିଲ ଭାଷାରେ ପାଠପଢ଼ା ହେଉଥିଲା । ଆଉ, ଏ ଦୁଇଟିଯାକ ଭାଷା ଥିଲା ତାଙ୍କ ପାଇଁ ନୂଆ ଓ କଷ୍ଟକର । ତେଣୁ ଅନେକ ସମୟରେ କ୍ଲାସରେ ପଢ଼ା ହେଉଥିବା ପାଠକୁ ସେ ଆଦୌ ବୁଝିପାରୁ ନ ଥିଲେ ଆଉ ଯଦି ବା ବୁଝୁଥିଲେ ତାକୁ ତାମିଲ କିମ୍ବା ଇଂରାଜୀ ଭାଷାରେ ପ୍ରକାଶ କରିପାରୁ ନ ଥିଲେ । ଏଇଥିପାଇଁ ତାଙ୍କୁ ସ୍କୁଲରେ ଅନେକ ଶାସ୍ତି ମିଳୁଥିଲା, ମାଷ୍ଟରଙ୍କଠାରୁ ବେତମାଡ଼ ଖାଇବାକୁ ପଡ଼ୁଥିଲା । କିନ୍ତୁ କୋଉ ପଟୁ ହେଲେ ଅବସ୍ଥା ତାଙ୍କର ସୁଧୁରିବା ପରି ମନେ ହେଉ ନ ଥିଲା । ଥରେ ଥରେ ଏମିତି ବି ହେଉଥିଲା ଯେ ତାଙ୍କର ବୋକାମିରେ ଧୈର୍ଯ୍ୟହରା ହୋଇ ମାଷ୍ଟ୍ର ତାଙ୍କୁ କ୍ଲାସରୁ ତଡ଼ି ଦେଉଥିଲେ ଆଉ ସେ ଯେ ବାହାରେ ଛିଡ଼ା ହୋଇ ରହିଛନ୍ତି ସେ କଥା ପୂରା ଭୁଲି ଯାଉଥିଲେ । କୃଷ୍ଣମୂର୍ତ୍ତି ଏଣେ ଚୁପ୍‌ଚାପ୍ କବାଟ ସେ ପଟେ ଲୁହ ଗଡ଼େଇ ଛିଡ଼ା ହୋଇ ରହିଥାନ୍ତି । ପୁଣି କାହିଁ କେତେ ସମୟ ପରେ ଅନ୍ୟ ଗୋଟିଏ ପିଲାର ମୂର୍ଖାମି ଦେଖିଲେ ଯାଇ ମାଷ୍ଟରଙ୍କର କୃଷ୍ଣମୂର୍ତ୍ତିଙ୍କ କଥା ମନେ ପଡ଼ିଯାଏ । ସେ ତାଙ୍କୁ କ୍ଲାସ ଭିତରକୁ ଡକାଇ ଆଣନ୍ତି । ଆଉଥରେ ପୁଣି ଦିନେ ଦିନେ କ୍ଲାସରୁ ତଡ଼ା ଖାଇ ସେ ସେମିତି ବାହାରେ କବାଟ କୋଣରେ ଛିଡ଼ା ହୋଇ ରହିଥାନ୍ତି । ସ୍କୁଲ ଛୁଟି ହେଇଯାଏ; ମାଷ୍ଟ୍ର,

ପିଲା ଯେ ଯାହା ଘରକୁ ଫେରି ଯାଆନ୍ତି; କିନ୍ତୁ କ୍ରିଷ୍ଣମୂର୍ତ୍ତି ସେମିତି ଚୁପ୍‌ଚାପ୍ ଛିଡ଼ା ହୋଇ ରହିଥାନ୍ତି । କେତେବେଳକେ ଯାଇ ଭାଇକୁ ଖୋଜି ଖୋଜି ନିତ୍ୟ ଆସି ସେଠି ପହଞ୍ଚେ—ଭାଇର ଆଖିରୁ ଲୁହ ପୋଛି ଦେଇ ହାତ ଧରି ଘରକୁ ଡାକିନିଏ । ସାରା ସ୍କୁଲ ଜୀବନରେ ବୋଧହୁଏ ଏମିତି ଗୋଟିଏ ବି ଦିନ ନାହିଁ ଯୋଉ ଦିନ କି ସେ ବେତମାଡ଼ କି ଗାଳି ଅପମାନରୁ ବର୍ତ୍ତି ଯାଇଛନ୍ତି ।

ଇଆଡ଼େ କ୍ରିଷ୍ଣମୂର୍ତ୍ତିଙ୍କର ବିଗତ ଜନ୍ମବୃତ୍ତାନ୍ତକୁ ଭଲ କରି ଅନୁଧ୍ୟାନ କରି ସାରିବା ପରେ ଲେଡ଼ବିଟରେ ଏକରକମ ନିଶ୍ଚିତ ହୋଇଗଲେ ଯେ କ୍ରିଷ୍ଣମୂର୍ତ୍ତି ହିଁ ମହାମୁନିଙ୍କର ବାହନ ହୋଇ ପୃଥିବୀରେ ଜଗତ୍‌ଗୁରୁ ରୂପେ ପରିଚିତ ହେବେ । ମାତ୍ର ଲେଡ଼ବିଟରେ ଜାଣିଥିଲେ ଯେ ମହାମୁନିଙ୍କର ଚେତନା କ୍ରିଷ୍ଣମୂର୍ତ୍ତିଙ୍କ ଠାରେ ପ୍ରକଟିତ ହେବା ପୂର୍ବରୁ କ୍ରିଷ୍ଣମୂର୍ତ୍ତିଙ୍କୁ ଏକ ସ୍ୱତନ୍ତ୍ର ଧରଣର ଶିକ୍ଷା ଲାଭ କରିବାକୁ ହେବ ଏବଂ ତାଙ୍କର ଶରୀରକୁ ସେଥିଲାଗି ପ୍ରସ୍ତୁତ କରିବାକୁ ପଡ଼ିବ । ଆଉ ଏସବୁର ଦାୟିତ୍ୱ ରହିଥିଲା ସ୍ୱୟଂ ଲେଡ଼ବିଟରଙ୍କ ଉପରେ । ତେଣୁ ସେ ସୂକ୍ଷ୍ମ ସ୍ତରରେ ମହାଗୁରୁ କୁଥୁହୁମିଙ୍କ ସହିତ ସମ୍ପର୍କ ସ୍ଥାପନ କରି ତାଙ୍କରି ଆଦେଶ ଅନୁସାରେ କ୍ରିଷ୍ଣମୂର୍ତ୍ତିଙ୍କୁ ଗଢ଼ିବାରେ ଲାଗି ପଡ଼ିଲେ । ମହାଗୁରୁ ଲେଡ଼ବିଟରଙ୍କୁ ଏକଥା ମଧ୍ୟ କହିଥିଲେ ଯେ କ୍ରିଷ୍ଣମୂର୍ତ୍ତିଙ୍କ ପ୍ରସ୍ତୁତି ପଥରେ ନିତ୍ୟଙ୍କର ଏକ ବିଶେଷ ଭୂମିକା ରହିଛି । ତେଣୁ କ୍ରିଷ୍ଣମୂର୍ତ୍ତିଙ୍କ ସହିତ ନିତ୍ୟଙ୍କୁ ମଧ୍ୟ ପାଖରେ ରଖି ତାଙ୍କର ଖିଆପିଆ, ଚାଲି ଚଳନର ଅଭ୍ୟାସକୁ ବଦଳାଇବା ପାଇଁ ମହାଗୁରୁଙ୍କର ଆଦେଶ ରହିଥିଲା । କିନ୍ତୁ ଗୋଟିଏ ରକ୍ଷଣଶୀଳ ପରିବାରରୁ ପିଲା ଦୁଇଟିଙ୍କୁ ଉଠାଇ ଆଣି ତାଙ୍କର ଚାଲିଚଳନ, ବ୍ୟବହାର ଓ ରୁଚି ପ୍ରଭୃତିକୁ ଆଧୁନିକ ଢାଞ୍ଚାରେ ମାର୍ଜିତ କରାଇବା ଯେତିକି କଷ୍ଟକର ଥିଲା, ସେଥିଲାଗି ନାରାୟଣିୟାଙ୍କ ଅନୁମତି ପାଇବା ମଧ୍ୟ ସେତିକି ଦୁଃସାଧ୍ୟ ମନେ ହେଲା । ତେଣୁ ଉପଯୁକ୍ତ ସୁଯୋଗର ଅପେକ୍ଷାରେ ଲେଡ଼ବିଟରେ ଦିନ କାଟିବାରେ ଲାଗିଲେ । ଶେଷକୁ ଦିନେ ସ୍କୁଲର ଶିକ୍ଷକଙ୍କ ନିର୍ଦ୍ଦୟ ବ୍ୟବହାର ଯୋଗୁ ତାଙ୍କୁ ନିଜ କାର୍ଯ୍ୟ କରାଇ ନେବାକୁ ସୁଯୋଗ

ମିଳିଗଲା । ସେଦିନ ଶିକ୍ଷକ ଜଣକ ଏ ପିଲା ଦୁଇଟିଙ୍କୁ ଅତି ନିର୍ମମ ଭାବରେ ବେତରେ ପିଟିଥିଲେ । ଲେଡ୍‌ବିଟରେ ସେମାନଙ୍କୁ ଦେଖିବା ମାତ୍ରକେ ଜାଣିପାରିଲେ ଯେ ମାଡ଼ର ପ୍ରଭାବରେ ସେମାନଙ୍କର ଉପର ଚମ ସହିତ ଭିତରର ସୂକ୍ଷ୍ମ ଶରୀର (astral body) ସୁଦ୍ଧା ଭୀଷଣ ଆହତ ହୋଇଛି । ପିଲା ଦିହିଁଙ୍କ ଉପରେ ହୋଇଥିବା ଏହି ଅମାନୁଷିକତାକୁ ଦର୍ଶାଇ ସେ ପୁଅ ଦୁଇଟିଙ୍କୁ ସ୍କୁଲରୁ କାଢ଼ି ଆଣିବା ଲାଗି ନାରାୟଣିୟାଙ୍କୁ ପ୍ରବର୍ତ୍ତାଇଲେ । କିନ୍ତୁ ନାରାୟଣିୟା ବୁଝିଥିଲେ ଯେ ସରକାରୀ ସ୍କୁଲ କଲେଜର ଉଚ୍ଚଶିକ୍ଷା ବିନା ଭଲ ହାକିମ ଚାକିରୀ ଖଣ୍ଡେ ମିଳିବା କାଠିକର ପାଠ । ତେଣୁ ଲେଡ୍‌ବିଟରଙ୍କ ପ୍ରସ୍ତାବରେ ସେ ପ୍ରଥମେ ରାଜି ହେଲେ ନାହିଁ । କିନ୍ତୁ ପରେ ଯେତେବେଳେ ଲେଡ୍‌ବିଟର ତାଙ୍କୁ ବୁଝାଇଦେଲେ ଯେ ସରକାରୀ ସ୍କୁଲରୁ ବାହାରି ଆସିଲେ ଆନି ବେସାନ୍ତଙ୍କ ସାହାଯ୍ୟରେ ପୁଅମାନେ ତାଙ୍କର ବିଲାତ ଯାଇ ପାରିବେ, ସେଠାରେ ଉଚ୍ଚ ଶିକ୍ଷା ଲାଭ କରି ପାରିବେ, ସେତେବେଳକୁ ଯାଇ ସେ ରାଜି ହେଲେ ।

ସରକାରୀ ସ୍କୁଲରୁ ନାମ କଟାଇ କୃଷ୍ଣମୂର୍ତ୍ତି ଓ ନିତ୍ୟ ଆସି ଲେଡ୍‌ବିଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଲେ । ସେମାନଙ୍କୁ ଇଂରାଜୀ, ଗଣିତ, ସାହିତ୍ୟ ଆଦି ବିଷୟ ଶିକ୍ଷା ଦେବାଠୁ ଆରମ୍ଭ କରି ସେମାନଙ୍କ ଶୋଇବା, ବସିବାର ଠାଣି ପର୍ଯ୍ୟନ୍ତ ସବୁକଥା ଲେଡ୍‌ବିଟର ନିଜେ ହିଁ ବୁଝିବାକୁ ଲାଗିଲେ । ତାଙ୍କର ସେଇ ଚୁଟି ଗୋଟିକ କାଟି ବାଳକୁ ମୁଣ୍ଡ ଚାରିପଟେ ସମାନ ଭାବରେ ବଢ଼ାଇ କାନ୍ଧଯାକେ ଅଣାଇଲେ । ନିମ୍ବ ଦାନ୍ତକାଠି ଛାଡ଼ି ସେମାନେ ବ୍ରସ୍‌ରେ ଦାନ୍ତ ଘସିବା ଶିଖିଲେ । ତାଙ୍କର ଅଙ୍କାବଙ୍କା ଦାନ୍ତକୁ ପାତିଆ ଦେଇ ସାଇଜ୍‌କୁ ଅଣାଗଲା । ପ୍ରତିଦିନ ସେମାନେ ଦେହ, ବାଳ ଓ ନଖ ଆଦିକୁ ପରିଷ୍କାର କରିବାକୁ ଶିଖିଲେ । ଏହାଛଡ଼ା ବିଭିନ୍ନ ପ୍ରକାର ଶାରୀରିକ ବ୍ୟାୟାମ, ସାଇକେଲ ଚାଳନା ଓ ଟେନିସ୍ ଖେଳରେ ମଧ୍ୟ ତାଙ୍କୁ ଅଭ୍ୟସ୍ତ କରାଗଲା । ଆଗେ ଯେପରି ସେମାନେ ଜାକିଜୁକି ହୋଇ ଶୋଉଥିଲେ ତାହା ବନ୍ଦକରି ଦେହକୁ ସଳଖ ରଖି ଶୋଇବାକୁ ଶିକ୍ଷା ଦିଆଗଲା । ମୋଟ ଉପରେ କହିବାକୁ ଗଲେ ଲେଡ୍‌ବିଟର, କ୍ଲାର୍କ ଓ ଆଉ କେତେକ ସହଯୋଗୀ ନିଜର

ଯଥାଶକ୍ତି ଦେଇ ଏହି ପିଲା ଦୁଇଟିଙ୍କୁ ତିଆରିବାରେ ଲାଗି ପଡ଼ିଲେ । ହେଲେ ଏତେ କାମ ଭିତରେ ଲେଡ଼ବିଟରଙ୍କୁ ଯଦି କେଉଁ ଗୋଟିକ ସବୁଠୁ କଷ୍ଟସାଧ୍ୟ ମନେ ହେଉଥିଲା ତେବେ ସେଇଟା ହେଉଛି କ୍ରିଷ୍ଣମୂର୍ତ୍ତିଙ୍କୁ ପାଠ ପଢ଼ାଇବା । କ୍ରିଷ୍ଣମୂର୍ତ୍ତି ଅତ୍ୟନ୍ତ ବାଧ୍ୟ ସ୍ୱଭାବର ଥିଲେ ଓ ଲେଡ଼ବିଟରଙ୍କର ସବୁ କଥା ମାନିବାକୁ ପ୍ରସ୍ତୁତ ମଧ୍ୟ ଥିଲେ; ମାତ୍ର ପାଠପଢ଼ା ତାଙ୍କ ମୁଣ୍ଡରେ ଆଦୌ ପଶୁ ନ ଥିଲା । ଲେଡ଼ବିଟର ପଢ଼ାଇ ଚାଲିଥିବାବେଳେ ସେ ଅନେକ ସମୟରେ 'ହାଁ'ଟାଏ କରି ଝରକାବାଟେ ଫାଙ୍କା ଗୃହାଣୀରେ ବାହାରକୁ ଅନାଇ ରହୁଥିଲେ । ପାଟି ବୁଜି ରଖିବା ପାଇଁ ତାଙ୍କୁ ଯେତେ ତିଆରିଲେ ବି ସେଇଟା ତାଙ୍କ ଦ୍ୱାରା ହେଉ ନ ଥିଲା । କହିବା ମାତ୍ରକେ ଅବଶ୍ୟ ପାଟିଟା ବୁଜି ହୋଇଯାଉଥିଲା କିନ୍ତୁ ଟିକିଏ ପରେ ପୁଣି ଯୋଉ କଥାକୁ ସେଇ କଥା । ତାଗିଦା କରି କରି ଦିନେ ଲେଡ଼ବିଟରଙ୍କ ଧୈର୍ଯ୍ୟଚ୍ୟୁତି ଘଟିଲା । ହଠାତ୍ ଗୋଟାଏ ଚଟକଣା ଆସି କ୍ରିଷ୍ଣମୂର୍ତ୍ତିଙ୍କ ଗାଲରେ ବସିଗଲା । ବାସ୍—ସେତିକିରେ ହୋଇଗଲା; ସେଇ ମୁହୂର୍ତ୍ତରୁ ତାଙ୍କର ପାଟି ବୁଜି ହେଇ ରହିଲା ଆଉ ତା' ସହିତ ଲେଡ଼ବିଟରଙ୍କ ପ୍ରତି ତାଙ୍କ ହୃଦୟର ଭଲ ପାଇବାଟା ବି ବୁଜି ହୋଇଗଲା । ଆଗପରି ସେ ଆଉ ତାଙ୍କୁ ଭଲ ପାଇପାରିଲେ ନାହିଁ ।

କ୍ରିଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ପହଁରା ଶିଖାଇବା ଲାଗି ଲେଡ଼ବିଟର ପ୍ରତିଦିନ ସେମାନଙ୍କୁ ସମୁଦ୍ରକୁ ନେଇ ଯାଉଥିଲେ । ସମୁଦ୍ର ଭିତରେ ସେମାନେ ଯେଉଁଠି ପହଁରୁଥିଲେ ସେଇ ପାଖରେ ଗହ୍ୱରିଆ ଜାଗାଟିଏ ଥିଲା । ତା' ଉପର ଦେଇ ପହଁରିବାକୁ କ୍ରିଷ୍ଣମୂର୍ତ୍ତିଙ୍କୁ ବଡ଼ ଭୟ ଲାଗୁଥିଲା । ତେଣୁ ସେ ସଦାବେଳେ ସେଇ ଗର୍ତ୍ତଠାରୁ ନିଜକୁ ଜଗିରଖି ଦୂରେଇ ଦୂରେଇ ପହଁରୁଥିଲେ, କେବେହେଲେ ତା' ପାଖ ମାଡ଼ୁ ନ ଥିଲେ । କିନ୍ତୁ ତାଙ୍କ ଅଲକ୍ଷ୍ୟରେ ଲେଡ଼ବିଟର ସବୁ କଥା ଦେଖୁଥିଲେ । ଏମିତି ଲଗାତର କିଛିଦିନ ପହଁରିବା ପରେ ଦିନେ ସନ୍ଧ୍ୟା ହୋଇଆସୁଛି ହଠାତ୍ ଲେଡ଼ବିଟର ତାଙ୍କୁ ଘରୁ ଡାକି ନେଇ ସମୁଦ୍ରର ସେଇ ଗହ୍ୱରିଆ ସ୍ଥାନଟିକୁ ଖୋଜି ବାହାର କରିବାକୁ କହିଲେ । ବିଚରା କ୍ରିଷ୍ଣମୂର୍ତ୍ତିଙ୍କର

ଆଦେଶ ପାଳନ ବିନା ଆଉ ଗୃତ୍ୟ କଣ ? ବାଧ୍ୟହୋଇ ସେ ଲେଡ଼ବିଟରଙ୍କ ସଙ୍ଗେ ସମୁଦ୍ରକୁ ଗଲେ ଓ ସେହି ଗର୍ତ୍ତ ଉପର ଦେଇ ପହଁରି ଫେରିଲେ । ମନରୁ ତାଙ୍କର ଭୟ ଦୂର ହୋଇଗଲା । କୃଷ୍ଣମୂର୍ତ୍ତିଙ୍କ ମନରୁ ଭୟକୁ ସମ୍ପୂର୍ଣ୍ଣ ରୂପେ ପୋଛି ତାଙ୍କୁ ଏକ ନିର୍ଭୀକ, ପୂର୍ଣ୍ଣାଙ୍ଗ ମାନବ ଭାବରେ ଗଢ଼ିବା ଲେଡ଼ବିଟରଙ୍କ ଶିକ୍ଷାର ଏକ ବିଶେଷ ଉଦ୍ଦେଶ୍ୟ ଥିଲା । ଏଥିପାଇଁ ଯଦିଓ ତାଙ୍କୁ ଧୈର୍ଯ୍ୟର ସହିତ ଅନେକ ଦିନ ଅପେକ୍ଷା କରିବାକୁ ପଡ଼ିଥିଲା ତଥାପି ପରିଶେଷରେ ସେ କୃତକାର୍ଯ୍ୟ ହୋଇଥିଲେ ।

## ଆନି ବେସାନ୍ତ ଓ କୃଷ୍ଣମୂର୍ତ୍ତି

କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ମହାଗୁରୁଙ୍କର ଶିଷ୍ୟ ରୂପେ ଯୋଗ୍ୟ କରାଇବାକୁ ଲେଡ଼ବିଟର ଜୋର୍‌ସୋରେ ଲାଗି ପଡ଼ିଥିଲେ । ତେଣୁ ପିଲା ଦିହିଁଙ୍କର ନାନାଦି ପାଠ୍ୟକ୍ରମ ଓ ଶାରୀରିକ ଶିକ୍ଷା ମଧ୍ୟରେ ତାଙ୍କର ଆଧ୍ୟାତ୍ମିକ ଦିଗଟି ଯେପରି ଅବହେଳିତ ନ ହୁଏ ସେଥିପ୍ରତି ସେ କଡ଼ା ନଜର ରଖିଥିଲେ । ଶେଷରେ ୧୯୦୯ ମସିହା ଅଗଷ୍ଟ ୧ ତାରିଖ ରାତିରେ ପିଲା ଦିହେଁ ନିଦରେ ଶୋଇଥିବା ଅବସ୍ଥାରେ ତାଙ୍କର ସୂକ୍ଷ୍ମ ଶରୀରକୁ ଧରି ଲେଡ଼ବିଟର ମହାଗୁରୁ କୁତହୁମିଙ୍କ ନିକଟରେ ହାଜର କରାଇଲେ । ସେଠାରେ ମହାଗୁରୁ ପିଲା ଦିହିଁଙ୍କୁ ଶିଷ୍ୟତ୍ୱ ପ୍ରଦାନ କରିବା ପୂର୍ବରୁ ପ୍ରଥମେ କିଛି କାଳ ଶିକ୍ଷାନବିସ ଭାବରେ ରଖିବାକୁ ଚାହିଁଲେ । ସେଥିପାଇଁ ଲେଡ଼ବିଟର ପ୍ରତ୍ୟେକ ରାତିରେ ପନ୍ଦର କୋଡ଼ିଏ ମିନିଟ୍ ସକାଶେ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କର ସୂକ୍ଷ୍ମ ଶରୀରକୁ ଧରି ମହାଗୁରୁଙ୍କ ନିକଟରେ ହାଜର କରାଇଲେ । ମହାଗୁରୁ ସେମାନଙ୍କୁ ପନ୍ଦର ମିନିଟ ଧରି ବିଶଦ ଶିକ୍ଷା ଦେବାପରେ ପୁଣି ସେଇ ପୂରା କଥାଟାକୁ କୃଷ୍ଣମୂର୍ତ୍ତି ମନେ ରଖି ପାରିବା ଭଳି ଅଳ୍ପ କେତୋଟି ବାକ୍ୟରେ କହି ଦେଉଥିଲେ । ତହିଁଆରଦିନ ସକାଳେ ଥିଓସଫିକାଲ ସୋସାଇଟି ବଙ୍ଗଳାର ବାରଣ୍ଡାରେ ବସି କୃଷ୍ଣମୂର୍ତ୍ତି ପୂର୍ବ ରାତିରେ ପାଇଥିବା ଶିକ୍ଷାକୁ ମନେ ପକାଇ,

ଗୋଟିଏ ଖାତାରେ ଟିପି ରଖୁଥିଲେ । ପରେ ସେହି ଲେଖାଗୁଡ଼ିକ 'ଆଟ୍ ଦ ଫିଟ୍ ଅଫ୍ ଦ ମାଷ୍ଟର୍' ନାମକ ଏକ କ୍ଷୁଦ୍ର ଇଂରାଜୀ ପୁସ୍ତିକା ରୂପେ ପ୍ରକାଶ ପାଇଲା । ଏଥିରେ ରଚୟିତା କ୍ରିଷ୍ଣମୂର୍ତ୍ତିଙ୍କ ନାମ ଆଲକଓନ ବୋଲି ରଖାଯାଇଛି ।

କ୍ରିଷ୍ଣମୂର୍ତ୍ତିଙ୍କର ସର୍ବାଙ୍ଗୀଣ ଉନ୍ନତି ପାଇଁ ଲେଡ଼ବିଟର ଏହିପରି ଭାବରେ ଲାଗି ପଡ଼ିଥିବାବେଳେ ଆନି ବେସାନ୍ତ ଆଡ଼ାୟାରରେ ଉପସ୍ଥିତ ନ ଥିଲେ ସୁଦ୍ଧା ଲେଡ଼ବିଟର ତାଙ୍କୁ କ୍ରିଷ୍ଣମୂର୍ତ୍ତିଙ୍କ ବିଷୟରେ ଗୋଟି ଗୋଟି କରି ପ୍ରତ୍ୟେକଟି ଖବର ଚିଠି ଦ୍ୱାରା ନିୟମିତ ଜଣାଇ ଆସୁଥିଲେ । ଦୀର୍ଘ ସାତ ମାସର ଇଉରୋପ ଗସ୍ତ ଶେଷକରି ଆନି ବେସାନ୍ତ ଯେତେବେଳେ ଆସି ଆଡ଼ାୟାରରେ ପହଞ୍ଚିଲେ ସେତେବେଳକୁ ହେଲାଣି ୧୯୦୯, ନଭେମ୍ବର ୨୭ ତାରିଖ । ସେଦିନ ତାଙ୍କୁ ପାଛୋଟି ନେବାପାଇଁ ବହୁସଂଖ୍ୟକ ଥିଓସଫିଷ୍ଟ ମାଡ୍ରାସ ରେଳ ଷ୍ଟେସନରେ ଉପସ୍ଥିତ ଥିଲେ । ତାଙ୍କ ଭିତରେ ଲେଡ଼ବିଟର ମଧ୍ୟ ପିଲା ଦୁଇଟିଙ୍କୁ ଧରି ଆନି ବେସାନ୍ତଙ୍କୁ ଅପେକ୍ଷା କରି ରହିଥିଲେ ।

ଟ୍ରେନ୍ ପହଞ୍ଚିଲା । ଆନି ବେସାନ୍ତ ରେଳଡବାରୁ ଓହ୍ଲାଇଲେ କିନ୍ତୁ ତାଙ୍କ ଚାରିପଟେ ଗହଳି ଗହଳି ଏମିତି ଭିଡ଼ ଜମିଗଲା ଯେ କ୍ରିଷ୍ଣମୂର୍ତ୍ତି ଆଉ ଆଗକୁ ଯାଇ ପାରିଲେ ନାହିଁ । କେତେ ସମୟ ପରେ ଅତି କଷ୍ଟରେ ଠେଲାପେଲା ହୋଇ କେଇ ପାହୁଣ୍ଡ ଆଗେଇ ଆନି ବେସାନ୍ତଙ୍କ ପାଖରେ ପହଞ୍ଚିବାକୁ ଚେଷ୍ଟା କଲେ । ଲେଡ଼ବିଟର ତାଙ୍କ ହାତରେ ଆନି ବେସାନ୍ତଙ୍କୁ ପିନ୍ଧାଇ ଦେବାକୁ ଫୁଲମାଳଟିଏ ଆଗରୁ ଧରାଇ ଦେଇଥିଲେ । ବଡ଼ କଷ୍ଟରେ ଆନି ବେସାନ୍ତଙ୍କ ପାଖରେ ପହଞ୍ଚି ସେ କୌଣସିମତେ ମାଳଟିକୁ ତାଙ୍କ ବେକରେ ଗଳାଇ ଦେଲେ । ଯେତେଦୂର ସମ୍ଭବ ଆନି ବେସାନ୍ତ ଏକଥା ଲକ୍ଷ୍ୟ କରିପାରି ନ ଥିଲେ । ତା ପରେ କ୍ରିଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ଅନ୍ୟମାନଙ୍କ ସହିତ ଫେରିବାର ବ୍ୟବସ୍ଥା କରାଇ ଲେଡ଼ବିଟର ଆନି ବେସାନ୍ତଙ୍କ ସହିତ ଗୋଟିଏ ଗାଡ଼ିରେ ଆଡ଼ାୟାର ଆସିଲେ । ଆଡ଼ାୟାରରେ ପହଞ୍ଚିବା ପରେ ଦୁଇ ଭାଇଯାକ ଲେଡ଼ବିଟରଙ୍କ ନିର୍ଦ୍ଦେଶ ଅନୁଯାୟୀ ତାଙ୍କ ବଙ୍ଗଳା ଭିତରେ

ଅପେକ୍ଷା କରି ରହିଲେ । ପିଲାଦିନେ ସେମାନେ ଘରେ ଆନି ବେସାନ୍ତଙ୍କ ଫଟୋ ଦେଖିଥିଲେ, ଲେଡ୍‌ବିଟରଙ୍କଠାରୁ ତାଙ୍କ ବିଷୟରେ ଅନେକ କଥା ଶୁଣିଥିଲେ । ତାଙ୍କୁ ଥରେ ଭେଟିବା ପାଇଁ ମନରେ ତାଙ୍କର ପ୍ରବଳ ଇଚ୍ଛା ଥିଲା । ଲେଡ୍‌ବିଟର ସେତେବେଳକୁ ଥିଓସଫିକାଲ ସୋସାଇଟିର ମୁଖ୍ୟ ଦୋ' ତାଳ ବଙ୍ଗଳାରେ ଆନି ବେସାନ୍ତଙ୍କ ସହିତ ଏକାନ୍ତରେ କିଛି ଆଲୋଚନା କରୁଥିଲେ । ଯେତେବେଳେ ସେ କଥାବାର୍ତ୍ତା ସାରି ଦୋ'ମହଲାରୁ ଡାକ କହିଦେଲେ ଯେ ଶ୍ରୀମତୀ ବେସାନ୍ତ ସେମାନଙ୍କୁ ଦେଖିବାକୁ ଖୋଜୁଛନ୍ତି, ଏ ଦି ଭାଇଙ୍କୁ ଗୁନିଆ ଲାଗିଲା । ଏତେ ବଡ଼ ଜଣେ ଲୋକ···! କଣ ଯେ ପଚାରିବସିବେ କିଏ ଜାଣେ ? ଦୁରୁ ଦୁରୁ ଛାତିରେ ଯାହାତ ଉଠି ଉଠିକା ଶେଷରେ ଲେଡ୍‌ବିଟରଙ୍କ ସହିତ ଆନି ବେସାନ୍ତ ବସିଥିବା ବଖରା ଭିତରକୁ ପଶିଲେ । ଶ୍ରୀମତୀ ବେସାନ୍ତ ସେତେବେଳେ ବଖରା ମଝିରେ ଛିଡ଼ା ହୋଇଥିଲେ । ଏମାନେ ଯାଇ ତାଙ୍କୁ ଚିରାଚରିତ ପ୍ରଥାରେ ସାଷ୍ଟାଙ୍ଗ ପ୍ରଣାମ କଲେ । ସେ ସଙ୍ଗେ ସଙ୍ଗେ ତାଙ୍କୁ ତଳୁ ଉଠାଇ କୁଣ୍ଢାଇ ପକାଇଲେ । ସେଇ ମୁହୂର୍ତ୍ତରୁ ପରସ୍ପର ଭିତରେ ଏକ ମଧୁର ମମତାମୟ ସମ୍ପର୍କର ସୂତ୍ରପାତ ହେଲା । ପ୍ରଥମ ଦେଖାର ଦିନରୁ ହିଁ କୃଷ୍ଣମୂର୍ତ୍ତି ଆନି ବେସାନ୍ତଙ୍କୁ ଠିକ୍ ନିଜର ମାଆପରି ଭଲ ପାଇବାକୁ ଲାଗିଲେ । ପରସ୍ପର ପ୍ରତି ବିଶ୍ୱାସ ଓ ଅନନ୍ତ ପ୍ରେମର ଉତ୍ସଟି ଦିହିଁଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ସେମିତି ସତେଜ, ପ୍ରାଣବନ୍ତ ହୋଇ ରହିଥିଲା ।

ସେଥରକ ଆନି ବେସାନ୍ତ ଆଡ଼ାୟାରରେ ମାତ୍ର ତିନି ସପ୍ତାହ ରହିଲେ । ଆଉ ସେହି ତିନି ସପ୍ତାହଯାକ ପ୍ରତିଦିନ ସକାଳେ କୃଷ୍ଣମୂର୍ତ୍ତି ଓ ନିତ୍ୟ ତାଙ୍କୁ ଦେଖା କରିବା ପାଇଁ ତାଙ୍କ ବଙ୍ଗଳା ଭିତରକୁ ଆସୁଥିଲେ । ଆନି ବେସାନ୍ତଙ୍କର ସଦୟ ବ୍ୟବହାର ଓ ସ୍ନେହ ଶ୍ରଦ୍ଧାରେ ସତେ ଅବା ଦୁଇ ଭାଇ କିଣି ହୋଇ ଯାଇଥିଲେ । ସେହି ତିନି ସପ୍ତାହ ରହଣି କାଳ ଭିତରେ ଲେଡ୍‌ବିଟର ଆନି ବେସାନ୍ତଙ୍କ ସହିତ ପିଲା ଦୁଇଟିଙ୍କର ଭବିଷ୍ୟତ ରହଣି ବ୍ୟବସ୍ଥା ନେଇ କେତେକ ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରିଥିଲେ । ପରିଶେଷରେ ବନାରସ ଠାରେ ଅନୁଷ୍ଠିତ

ଥିଓସଫିକାଲ କନ୍‌ଭେନ୍‌ସନ୍‌ରେ ଯୋଗଦେବା ପାଇଁ ଆଡ଼ାୟାର ଛାଡ଼ିବା ପୂର୍ବରୁ ଆନ ବେସାନ୍ତ କ୍ରିଷ୍ଣମୂର୍ତ୍ତିଙ୍କୁ ଥିଓସଫିକାଲ ବଙ୍ଗଳା ଭିତରେ ରଖାଇବାର ବ୍ୟବସ୍ଥା କରିବାକୁ ଲେଡ଼ବିଟରଙ୍କୁ ପରାମର୍ଶ ଦେଇଗଲେ ଏବଂ ସେ ଯିବା ପରଦିନଠାରୁ ଲେଡ଼ବିଟର ସେହି ଅନୁଯାୟୀ କାର୍ଯ୍ୟ କରିବାକୁ ଆରମ୍ଭ କରିଦେଲେ । ଶ୍ରୀମତି ବେସାନ୍ତ ଆଡ଼ାୟାରରେ ଥିବା ଭିତରେ ହିଁ ପିଲା ଦୁଇଟିଙ୍କୁ ଥିଓସଫିକାଲ ସୋସାଇଟିର ଏସୋଟେରିକ ସେକ୍‌ସନ୍‌ର ସଭ୍ୟ କରାଇ ନେଇଥିଲେ । ତେଣୁ ସେହି ସଂଘର ନିୟମ ଅନୁଯାୟୀ ସେମାନଙ୍କୁ କେତେକ କଠୋର କଟକଣା ମାନି ଚଳିବାକୁ ପଡ଼ୁଥିଲା । ଲେଡ଼ବିଟର କିନ୍ତୁ ସେତିକରେ ସନ୍ତୁଷ୍ଟ ହେଲେ ନାହିଁ । କ୍ରିଷ୍ଣମୂର୍ତ୍ତିଙ୍କୁ ଯେଉଁ ମହତ ଉଦ୍ଦେଶ୍ୟ ନେଇ ପ୍ରସ୍ତୁତ କରାଯାଉଛି ସେଥିରେ ଯେପରି ଏତେ ଟିକିଏ ବି ଏପଟ ସେପଟ ନ ହୁଏ ସେ କଥା ସେ ଗୋଡ଼େ ଗୋଡ଼େ ଜଗିଥିଲେ । ଗୋଟିଏ କଥା ସେ ବରାବର ଅନୁଭବ କରୁଥିଲେ ଯେ କ୍ରିଷ୍ଣମୂର୍ତ୍ତିଙ୍କର ଅଖଣ୍ଡ ଶାରୀରିକ ତଥା ମାନସିକ ପବିତ୍ରତା ରକ୍ଷା କରିବା ପାଇଁ ତାଙ୍କୁ ସାଧାରଣ ଲୋକଙ୍କ ସଂସ୍ପର୍ଶରୁ ଦୂରେଇ ରଖିବାକୁ ପଡ଼ିବ । ତେଣୁ ପ୍ରଥମେ ତାଙ୍କୁ ନିଜ ଘର ତଥା ନାରାୟଣିୟାଙ୍କ କର୍ତ୍ତୃତ୍ୱରୁ ମୁକୁଳାଇବା ଲାଗି ସେ ଖୋଦ୍ ଆନ ବେସାନ୍ତ ବ୍ୟବହାର କରୁଥିବା କୋଠରୀରେ ତାଙ୍କର ରହିବାର ବ୍ୟବସ୍ଥା କଲେ । କହିବା ବାହୁଲ୍ୟ ଯେ ଆନ ବେସାନ୍ତ ଯିବା ପୂର୍ବରୁ ଲେଡ଼ବିଟରଙ୍କୁ ଏପରି କରିବାକୁ ପରାମର୍ଶ ଦେଇ ଯାଇଥିଲେ । ଏଭଳି କରିବା ଦ୍ୱାରା ଲେଡ଼ବିଟରଙ୍କୁ ଏଣିକି ଅନାୟାସରେ ଆପଣା ଦାୟିତ୍ୱ ତୁଲାଇବାରେ ଆଉ ଅସୁବିଧା ରହିଲା ନାହିଁ ।

ଆନ ବେସାନ୍ତଙ୍କ ବଖରାରେ ରହିବାକୁ ପିଲା ଦିହିଁଙ୍କୁ ଭାରି ଭଲ ଲାଗୁଥିଲା । କେବଳ ଖାଇବା ପାଇଁ ସେମାନେ ଯାହା ଘରକୁ ଆସୁଥିଲେ, ବାସ୍ ସେତିକି । ବାକି ସମୟତକ ତାଙ୍କର ଲେଡ଼ବିଟରଙ୍କ ସହିତ ଥିଓସଫିକାଲ ବଙ୍ଗଳାରେ କଟୁଥିଲା । ସେଠାରେ ରହିବାର ପ୍ରାୟ ଦଶ ଦିନ ପରେ କ୍ରିଷ୍ଣମୂର୍ତ୍ତି ନିଜର ମନକଥା ଜଣାଇ ଆନ ବେସାନ୍ତଙ୍କୁ

ଇଂରାଜୀରେ ଚିଠିଟିଏ ଦେଇଥିଲେ । ହୃଦୟର ସମସ୍ତ ଶ୍ରଦ୍ଧା, କୃତଜ୍ଞତା ଢାଳି ସେ ଚିଠିରେ ଲେଖିଥିଲେ,

ଆଦରର ମାଆ ମୋର,

ଆଜି ଏଇ ଚିଠିଟି ଲେଖିଲାବେଳେ ତୁମକୁ କଣ 'ମାଆ' ବୋଲି ଡାକିବାର ଅନୁମତି ମତେ ଦେବ ନାହିଁ ? ଏ ଦୁନିଆରେ କାହାରିକୁ ମାଆ ବୋଲି ଡାକିବାକୁ ବା ଭଲ ପାଇବାକୁ ମୋର ଯେ ଆଉ କେହି ହେଲେ ନାହିଁ ! ତମେ ଆମକୁ ଏତେ ନିବିଡ଼ ଭାବରେ ଭଲ ପାଅ ଯେ ମତେ ଠିକ୍ ମୋର ନିଜ ମାଆ ପରି ମନେ ହୁଅ । ଆମ ପ୍ରତି ତମ ମନରେ ଆହା କେତେ ଦୟା ଭରି ରହିଛି ସତେ ! ଆମକୁ ଘରୁ ଆଣି ତମେ ଯେ ଏଠି ତମର ନିଜ ବଖରାରେ ଶୋଇବାକୁ ଦେଇଛ, ସେଥିଲାଗି ଆମେ ଦିହେଁ ତମ ପାଖରେ ସଦା କୃତଜ୍ଞ । କିନ୍ତୁ ଆମେ ଏତିକି ଚାହୁଁ ଯେ ତମେ ଶୀଘ୍ର ଏଠାକୁ ଫେରିଆସ—ତାପାଇଁ ଆମକୁ ନିଜ ଘରକୁ ଯାଇ ଶୋଇବାକୁ ପଡ଼ୁ ପଛକେ । ଏଠିକାର ଲୋକମାନେ ଭାରି ଭଲ । ସେମାନେ ଆମ ପାଇଁ ଭାରି ସୁନ୍ଦର ସାଇକଲ ଯୋଡ଼ିଏ କିଣେଇ ଦେଇଛନ୍ତି । ଆଉ, ଜାଣ ମାଆ···ଯୁ ଭିତରେ ମୁଁ ବି ସାଇକଲ ଚଲେଇ ଶିଖିଚାଲିଣି । ସବୁଦିନ ମୁଁ ସାଇକଲ ଚଢ଼ି ବୁଲିବାକୁ ଯାଉଛି— ପୂରା ସାଢ଼େ ଏକତିରିଶ ମାଇଲ ଚଲେଇ ସାରିଲିଣି । ଆଜି ସଞ୍ଜକୁ ପୁଣି ଆହୁରି କେତେ ମାଇଲ ଅଧିକା ହେଇଯିବ ମୋର । ଏଠି ବେଳେବେଳେ ମୁଁ ତମକୁ ପ୍ରାର୍ଥନା ଗୃହରେ ଦେଖିବାକୁ ପାଉଛି । ଆଉ ରାତିରେ ମନେ ହେଉଛି ତମେ ଯେମିତି ମୋର ଏକଦମ୍ ପାଖେ ପାଖେ ଅଛ । ତମର ଜ୍ୟୋତିକୁ ମଧ୍ୟ ମୁଁ ଦେଖୁଛି ।

ଏ ଚିଠିରେ ତମକୁ ମୋର ବହୁତ ବହୁତ ସ୍ନେହ ପଠାଉଛି ।

ଇତି

ତମର ଅତି ଆପଣାର

କୃଷ୍ଣ

କ୍ରିଷ୍ଣମୂର୍ତ୍ତିଙ୍କ ବ୍ୟବହାର୍ଯ୍ୟ ଜିନିଷପତ୍ରର ପବିତ୍ରତା ରକ୍ଷା କରିବା ଲାଗି ଲେଡ୍‌ବିଟରେ ସବୁ ପ୍ରକାର ସତର୍କତା ଅବଲମ୍ବନ କରୁଥିଲେ । ସେ ଜାଣିଥିଲେ ଯେ ଜଣେ ବ୍ୟକ୍ତିର ଅନ୍ତର୍ନିହିତ ଭଲ ବା ମନ୍ଦ ଗୁଣ-ଗୁଡ଼ିକ ଖୁବ୍ ଶୀଘ୍ର ସେ ବ୍ୟବହାର କରୁଥିବା ଜଡ଼ ବସ୍ତୁ ମଧ୍ୟକୁ ଚୁମ୍ବକୀୟ ଶକ୍ତି ବଳରେ ପ୍ରବାହିତ ହୋଇ ଆସେ । ତାପରେ ତାହାକୁ ଅନ୍ୟ କେହି ସମ୍ବେଦନଶୀଳ ବ୍ୟକ୍ତି ବ୍ୟବହାର କଲେ ସେ ମଧ୍ୟ ସେହି ଗୁଣ ଦ୍ୱାରା ପ୍ରଭାବିତ ହୋଇଥାଏ । ତେଣୁ କ୍ରୃଷ୍ଣମୂର୍ତ୍ତି ବ୍ୟବହାର କରୁଥିବା ଟେନିସ୍ ର୍‌ୟାକେଟ୍, ସାଇକେଲ ଓ ଲୁଗାପଟା ପ୍ରଭୃତିକୁ କେବଳ ନିତ୍ୟାନନ୍ଦଙ୍କ ବ୍ୟତୀତ ଯେପରି ଅନ୍ୟ କେହି ବ୍ୟବହାର ନ କରନ୍ତି ସେଥିନେଇ ଲେଡ୍‌ବିଟରଙ୍କ କଡ଼ା ନିର୍ଦ୍ଦେଶ ଥିଲା । ଖାଲି ସେତିକି ନୁହେଁ, ତାଙ୍କ ସହିତ ମିଳାମିଶା କରିବା ପାଇଁ ମଧ୍ୟ ସେ ସମସ୍ତଙ୍କୁ ଅନୁମତି ଦେଉ ନଥିଲେ । ଲେଡ୍‌ବିଟରଙ୍କ ଏସବୁ ଟିକିନିଖି କଟକଣାରୁ ପୂର୍ବୋକ୍ତ ବାଳକ ହ୍ୟୁବର୍ଟ ମଧ୍ୟ ବାଦ୍ ଯାଇ ନ ଥିଲା । କାରଣ ହ୍ୟୁବର୍ଟର ଜ୍ୟୋତିବଳୟ ଦେଖି ଲେଡ୍‌ବିଟର ବୁଝିପାରିଥିଲେ ଯେ ସେ କ୍ରିଷ୍ଣମୂର୍ତ୍ତିଙ୍କ ପ୍ରତି ଭିତରେ ଭିତରେ ଈର୍ଷାପରାୟଣ ।

କ୍ରିଷ୍ଣମୂର୍ତ୍ତିଙ୍କୁ ଥିଓସଫିକାଲ ସୋସାଇଟିର ବଂଗଳାରେ ରଖାଇବା ପରେ ଓ ତାଙ୍କର ଜିନିଷପତ୍ର ଅଲଗା କରିଦେବା ପରେ ଲେଡ୍‌ବିଟରଙ୍କ ଦାୟିତ୍ୱ ଯେ ଶେଷ ହୋଇଗଲା ତା ନୁହେଁ । ଏଣିକି ସେ କ୍ରୃଷ୍ଣମୂର୍ତ୍ତିଙ୍କୁ ଧୀରେ ଧୀରେ ନାରାୟଣିୟାଙ୍କ ଘରର ସମସ୍ତ ପ୍ରଭାବରୁ ଦୂରେଇ ରଖିବାକୁ ଉଦ୍ୟମ କଲେ । କ୍ରୃଷ୍ଣମୂର୍ତ୍ତିଙ୍କର ଶୋଇବା ଜାଗା ତ' ସହଜେ ଆଗରୁ ଅଲଗା ହୋଇଥିଲା, ଏବେ ତାଙ୍କର ଖାଇବା ଜାଗା ଅଲଗା କରିବାକୁ ସେ ଉପାୟ ଖୋଜିଲେ । ପ୍ରଥମତଃ ସେ ଜାଣିଥିଲେ ଯେ ଘରେ ଲଙ୍କା, ତେଲ ମସଲାରେ ରନ୍ଧା ଖାଦ୍ୟ କ୍ରୃଷ୍ଣମୂର୍ତ୍ତିଙ୍କ ପାଇଁ ଆଦୌ ଉପଯୁକ୍ତ ନୁହେଁ । ତାଛଡ଼ା ଖାଇବା ଆଳରେ ତାଙ୍କୁ ବହୁ ସମୟ ପାଇଁ ନିଜ ଘରେ ମଧ୍ୟ ରହିବାକୁ ପଡ଼ୁଥିଲା । ତେଣୁ ଅନେକ ଉପାୟ ପାଞ୍ଚି ଶେଷରେ ସେ ଆଡ଼ାୟାରର ସ୍ୱତନ୍ତ୍ର ଭୋଜନାଳୟ 'ଧର୍ମଶାଳା'ରେ ପିଲା ଦୁହିଁଙ୍କର ଖାଇବାର ବ୍ୟବସ୍ଥା କରାଇଲେ । ଏହି

ଭୋଜନାଳୟଟି ସେତେବେଳେ କେବଳ ଆନି ବେସାନ୍ତ ଓ ତାଙ୍କର କେତେକ ବିଶିଷ୍ଟ ସହଯୋଗୀଙ୍କ ଭୋଜନ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । ସେଠାକାର ଖାଦ୍ୟ ସ୍ୱାସ୍ଥ୍ୟକର ପରିବେଶରେ ରନ୍ଧା ହେଉଥିଲା ଓ ତାହା ସରଳ, ପୁଷ୍ଟିକର ଥିଲା ।

ଲେଡ଼ବିଟରଙ୍କର ଏ ପ୍ରକାର ବନ୍ଦୋବସ୍ତ କିନ୍ତୁ ନାରାୟଣିୟାଙ୍କ ମନରେ ସନ୍ଦେହର ମଞ୍ଜି ବୁଣିବାରେ ଲାଗିଥିଲା । କୃଷ୍ଣମୂର୍ତ୍ତିଙ୍କୁ ନେଇ ଏମିତି ଗୁଡ଼ବାଡ଼, ବାଛବିଚାର ତାଙ୍କୁ ଆଦୌ ଭଲ ଲାଗୁ ନ ଥିଲା । ପିଲା ଦୁଇଟିଙ୍କୁ ପୁଣି କେମିତି ଘରକୁ ଫେରାଇ ଆଣିବେ ବୋଲି ସେ ବରାବର ମନ ଭିତରେ ଭାଳି ହେଉଥିଲେ । ଅବଶ୍ୟ ନିତ୍ୟଙ୍କୁ ଫେରାଇ ଦେବାରେ ଲେଡବିଟରଙ୍କର କୌଣସି ଆପତ୍ତି ନ ଥିଲା, କିନ୍ତୁ ଅଡ଼ୁଆ ହେଲା ଯେ ସାନ ଭାଇକୁ ଛାଡ଼ି ଏକା ରହିବାକୁ କୃଷ୍ଣମୂର୍ତ୍ତି ନାରାଜ ଥିଲେ । ତେଣୁ ଖାସ୍ ତାଙ୍କରି ପାଇଁ ସେ ନିତ୍ୟଙ୍କୁ ମଧ୍ୟ ଘରଠୁ ଅଲଗା ରଖିବାକୁ ବାଧ୍ୟ ହୋଇଥିଲେ । ଫଳରେ ନାରାୟଣିୟାଙ୍କ ମନରେ ସନ୍ଦେହ ବଢ଼ିବାକୁ ଲାଗିଲା ଯେ ଏମିତି କରି ବୋଧହୁଏ ଲେଡ଼ବିଟର ପୁଅମାନଙ୍କୁ ତାଙ୍କଠାରୁ ସବୁଦିନ ପାଇଁ ଛଡ଼ାଇ ନେବାର ମସୁଧା କରୁଛନ୍ତି । ଗୋଟିଏ ପଟେ ନାରାୟଣିୟାଙ୍କ ସ୍ୱାର୍ଥ ଓ ଅନ୍ୟ ପଟେ ଲେଡ଼ବିଟରଙ୍କର ଉଦ୍ଦେଶ୍ୟ କୃଷ୍ଣମୂର୍ତ୍ତିଙ୍କୁ ନେଇ ଏକ ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି କଲା ଓ ଶେଷକୁ ବାଧ୍ୟ ହୋଇ ଆନି ବେସାନ୍ତ ହସ୍ତକ୍ଷେପ କରି ସେ କନ୍ଦଳକୁ ଆପାତତଃ ସୁଧାରି ନେଲେ । ସେ ବର୍ଷ ନାରାୟଣିୟା ଥିଓସଫିକାଲ କନ୍‌ଭେନ୍‌ସନ୍‌ରେ ଯୋଗ ଦେବାକୁ ବନାରସ ଯାଇଥିଲେ । ସେଇଠି ଦିନେ ତାଙ୍କୁ ଡାକି ଆନି ବେସାନ୍ତ କୃଷ୍ଣମୂର୍ତ୍ତିଙ୍କ ଭବିଷ୍ୟତ ବିଷୟରେ ସବୁକଥା ଅତି ସୁନ୍ଦର ଭାବରେ ବୁଝାଇ କହିଲେ ଯେ ଜଗତର ସମୂହ କଲ୍ୟାଣ ନିମନ୍ତେ ମହାଗୁରୁଙ୍କ ତତ୍ତ୍ୱାବଧାନରେ ଆଧ୍ୟାତ୍ମିକ ପଥରେ ଆଗେଇବା ଲାଗି କୃଷ୍ଣମୂର୍ତ୍ତିଙ୍କୁ ଧୀରେ ଧୀରେ ନିଜର ଘର ପରିବାର ଓ ସମାଜର ସବୁ ବନ୍ଧନ, ପରମ୍ପରା ତୁଟାଇବାକୁ ପଡ଼ିବ । ଆଉ ସେଇ କାରଣରୁ ତାଙ୍କୁ ସବୁ ପ୍ରଥମେ ଘରଠାରୁ ଅଲଗା ରହିବାକୁ ପଡ଼ିବ । ଆନି ବେସାନ୍ତଙ୍କ ପ୍ରତି

ନାରାୟଣିୟାଙ୍କ ମନରେ ସଦାବେଳେ ଗଭୀର ଶ୍ରଦ୍ଧା ଓ ଭକ୍ତି ଭରି ରହିଥିଲା । ଏବେ ତାଙ୍କ କଥାର ଯୁକ୍ତିଯୁକ୍ତତା ହୃଦୟଙ୍ଗମ କରି ସେ ଖୁସି ମନରେ ତାଙ୍କର ସବୁ କଥାରେ ରାଜି ହୋଇଗଲେ । ଆଉ ପ୍ରକୃତରେ ବି ପରବର୍ତ୍ତୀ କେତେ ମାସ କାଳ ଲେଡ଼ବିଟରଙ୍କର କୌଣସି କଥାରେ ପ୍ରତିବାଦ କଲେ ନାହିଁ । ଫଳରେ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କର ସବୁତକ ସମୟ ଘର ପରିବେଶଠାରୁ ଦୂରରେ ହିଁ କଟିଲା । ଏପରିକି ସେ ବର୍ଷ ମାଆର ଶ୍ରାଦ୍ଧ ଦିନ ମଧ୍ୟ ସେମାନେ ମୋଟେ ଘଣ୍ଟାକ ପାଇଁ ଘରକୁ ଆସିପାରିଲେ । ଆଉ ଯୋଗ ଏମିତି ଯେ ସେମାନେ ଘରେ ପହଞ୍ଚିବା ବେଳକୁ ଶ୍ରାଦ୍ଧ କାମ ଶେଷ ହୋଇ ଯାଇଥିଲା । ଲେଡ଼ବିଟରଙ୍କ ନିର୍ଦ୍ଦେଶ ମାନି ସେମାନେ ପୁଣି ଖାଇବା ସମୟକୁ 'ଧର୍ମଶାଳା'କୁ ଫେରି ଆସିଲେ । ବାସ୍, ସେଇ ଥିଲା ତାଙ୍କର ଘରୋଇ, ସାମାଜିକ ପରିମଣ୍ଡଳରେ ଶେଷ ଯୋଗଦାନ, ଶେଷ ଉପସ୍ଥିତି ।

## ଦୀକ୍ଷା-ଗ୍ରହଣ

ବନାରସରେ ଥିବା ଅବସ୍ଥାରେ ଆନି ବେସାନ୍ତ ଦିନେ ଲେଡ଼ବିଟରଙ୍କଠାରୁ ଗୋଟିଏ ଟେଲିଗ୍ରାମ ପାଇଲେ । ସେଥିରେ ସେ ଜଣାଇଥିଲେ ଯେ ପୂର୍ବ ପାଞ୍ଚ ମାସ କାଳ କୃଷ୍ଣମୂର୍ତ୍ତିଙ୍କୁ ଶିକ୍ଷାନବିଶ ଭାବରେ ରଖି ଅନୁଧ୍ୟାନ କରିବା ପରେ ମହାଗୁରୁ କୁତହୁମି ତାଙ୍କୁ ଶିଷ୍ୟ ଭାବେ ଗ୍ରହଣ କରିବାକୁ ସମ୍ମତ ହୋଇଛନ୍ତି । ତେଣୁ ୧୯୧୦ ମସିହା ଜାନୁଆରି ୧୧ ତାରିଖକୁ ସ୍ଥିର ହୋଇଥିବା ଦୀକ୍ଷାଦାନ ଅବସରରେ ମହାଗୁରୁଙ୍କ ଘରେ ସୂକ୍ଷ୍ମ ଶରୀରରେ ଉପସ୍ଥିତ ରହି ଏ କାର୍ଯ୍ୟରେ ସହାୟତା କରିବାକୁ ସେ ଆନି ବେସାନ୍ତଙ୍କୁ ଅନୁରୋଧ ଜଣାଇଥିଲେ । ଏ ଟେଲିଗ୍ରାମ ପହଞ୍ଚିବାର କିଛିଦିନ ପରେ ଦ୍ୱିତୀୟ ଟେଲିଗ୍ରାମଟି ମଧ୍ୟ ଆସି ପହଞ୍ଚିଲା । ସେଥିରେ ପୁଣିଥରେ ସେଇକଥା ସ୍ମରଣ କରାଇ ଲେଡ଼ବିଟର ଲେଖିଥିଲେ—"ଆସନ୍ତା ୧୧ ତାରିଖକୁ ଦୀକ୍ଷାଦାନର

ସମସ୍ତ ଧାର୍ଯ୍ୟ ହୋଇଛି । ସ୍ୱୟଂ ସୂର୍ଯ୍ୟ (ମୈତ୍ରେୟ ବୋଧିସତ୍ତ୍ୱ) ସଶରୀରେ ଉପସ୍ଥିତ ରହି ସମସ୍ତ କାର୍ଯ୍ୟ ପରିଚାଳନା କରିବେ । ତାପରେ 'ସମ୍ବାଲ'କୁ * ଯିବା ନିମନ୍ତେ ନିର୍ଦ୍ଦେଶ ମିଳିଛି । ଏଥିପାଇଁ ପୂର୍ବ ୩୬ ଘଣ୍ଟା ଏକାନ୍ତବାସ ଆବଶ୍ୟକ ।"

ମହାଗୁରୁଙ୍କ ଶିଷ୍ୟତ୍ୱ ଲାଭ କରିବା ମନୁଷ୍ୟ ପକ୍ଷରେ କିଛି ସହଜକଥା ନୁହେଁ । ଏଥିପାଇଁ ଦରକାର ନିଖୁଣ ସ୍ୱାସ୍ଥ୍ୟ, ଅଖଣ୍ଡ ମାନସିକ ପବିତ୍ରତା, ସାର୍ବଜନୀନ ଅନୁକମ୍ପା, ସଚ୍ଚୋଟତା, ନିଃସ୍ୱାର୍ଥପରତା, କ୍ଷମାବେ ଦୟା ଓ ତା ସାଙ୍ଗକୁ ଏହି ଅନିତ୍ୟ ଜଗତ ପ୍ରତି ସମ୍ପୃର୍ଣ୍ଣ ନିର୍ଲିପ୍ତତା । କୃଷ୍ଣମୂର୍ତ୍ତିଙ୍କଠାରେ କେବଳ ସ୍ୱାସ୍ଥ୍ୟଟିକୁ ଛାଡ଼ିଦେଲେ ବାକି ସବୁ ଗୁଣ ପୂର୍ଣ୍ଣମାତ୍ରାରେ ଥିଲା । ଆଉ ଖାସ୍ ସେଇଥିପାଇଁ ସେ ମାତ୍ର ପାଞ୍ଚଟି ମାସ ଭିତରେ ଶିକ୍ଷାନବିଶରୁ ଉଠି ଶିଷ୍ୟ ପଦବାଚ୍ୟ ହୋଇ ପାରିଥିଲେ । ଲେଡ଼ବିଟର କହୁଥିଲେ ଯେ ତାଙ୍କ ଭଳି ଅନ୍ୟ କେହି ହେଲେ ଏ ପର୍ଯ୍ୟନ୍ତ ଏତେ ଅଳ୍ପଦିନ ଭିତରେ ଶିକ୍ଷାନବିଶରୁ ଉଠି ଶିଷ୍ୟତ୍ୱ ଲାଭ କରି ପାରି ନାହାନ୍ତି ।

ଦୀକ୍ଷା ଗ୍ରହଣ ଲାଗି ନିର୍ଦ୍ଧାରିତ ହୋଇଥିବା ଏହି ଦିବସଟି ଜ୍ୟୋତିଷୀ ଗଣନା ଅନୁସାରେ ଏକ ଅତି ପବିତ୍ର ତିଥି ଥିଲା । ସେଇ ଅଳ୍ପ କେତେ ଦିନ ପୂର୍ବରୁ ଜି: ଇ: ସଟ୍‌କ୍ଲିଫ୍ ନାମକ ଜଣେ ଜ୍ୟୋତିଷ 'ଦି ଥିଓସଫିଷ୍ଟ' ପତ୍ରିକାରେ ଲେଖିଥିଲେ ଯେ ୧୯୧୦, ଜାନୁଆରି ୧୧ ତାରିଖ ଦିନ କେତେକ ଗ୍ରହ ନକ୍ଷତ୍ରର ଏଭଳି ଏକ ଅଲୌକିକ ସଂଯୋଗ ଘଟୁଛି ଯାହା କି ଅତୀତରେ ଯୀଶୁ ଖ୍ରୀଷ୍ଟଙ୍କର ଜନ୍ମ ସମୟରେ ଘଟିଥିଲା । ତାଙ୍କ ମତରେ ଏଭଳି ତାରକା ସଂଯୋଜନ ଖୁବ୍ ବିରଳ ଏବଂ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ମଙ୍ଗଳମୟ ।

---

* ରାଜସ୍ଥାନର ଗୋବି ମରୁଭୂମିରେ 'ସମ୍ବାଲ' ନାମକ ଏଇ ମରୁଦ୍ୟାନଟି ଅବସ୍ଥିତ । ହିନ୍ଦୁ ଧର୍ମଗ୍ରନ୍ଥରେ ଏହାକୁ ସନତ୍‌କୁମାରଙ୍କ ବାସସ୍ଥାନ ବୋଲି ବର୍ଣ୍ଣନା କରାଯାଇଛି ।

ଏପଟେ ଜାନୁଆରି ୧୧ ତାରିଖର ଆୟୋଜନ ଲାଗି ଲେଡ଼ବିଟର ଖୁବ୍ ସତର୍କତାର ସହିତ ବନ୍ଦୋବସ୍ତ କରିବାରେ ଲାଗିପଡ଼ିଲେ । ବଛା ବଛା କେତେଜଣ ସହଯୋଗୀ ଥିଓସଫିଷ୍ଟଙ୍କୁ ଛାଡ଼ିଦେଲେ ଏକଥା ଅନ୍ୟ କାହାରିକୁ ହେଲେ କୁହାଯାଇ ନ ଥିଲା । ସେ ଦୁଇଦିନଯାକ ଅର୍ଥାତ୍ ୧୦ ତାରିଖ ସନ୍ଧ୍ୟାରୁ ୧୨ ତାରିଖ ପର୍ଯ୍ୟନ୍ତ କେହି ବାହାର ଲୋକ ଯେପରି ସେଠିକି ପଶି ପାରିବେ ନାହିଁ, ସେଥିପାଇଁ ଆନି ବେସାନ୍ତଙ୍କ ବଖରାକୁ ଯିବାକୁଥିବା ସିଡ଼ିରେ ତାଲା ପକାଇ ଦିଆଗଲା । ଉପର ମହଲାରେ ଶ୍ରୀମତୀ ବେସାନ୍ତଙ୍କ ବଖରା ଭିତରେ ଲେଡ଼ବିଟର କ୍ରିଷ୍ଣମୂର୍ତ୍ତିଙ୍କୁ ଧରି ୧୦ ତାରିଖ ସନ୍ଧ୍ୟାଠାରୁ ୧୨ ତାରିଖ ସକାଳ ପର୍ଯ୍ୟନ୍ତ ରହିଲେ । ବଖରା ବାହାରେ ନିତ୍ୟ ଓ କ୍ଲାର୍କ ଜଗି ବସିଲେ । ପୂରା ଦୁଇ ରାତି ଓ ଗୋଟାଏ ଦିନ ଲେଡ଼ବିଟର ଓ କ୍ରିଷ୍ଣମୂର୍ତ୍ତି ବଖରାରୁ ବାହାରକୁ ବାହାରିଲେ ନାହିଁ । କ୍ରିଷ୍ଣମୂର୍ତ୍ତି ଶୋଇଲେ ଆନି ବେସାନ୍ତଙ୍କ ଖଟ ଉପରେ ଓ ଲେଡ଼ବିଟର ଚଟାଣରେ । କ୍ଲାର୍କଙ୍କର ଡାଏରିରୁ ଜଣାଯାଏ ଯେ ଅଧିକାଂଶ ସମୟ ସେମାନେ ଶରୀରରେ ରହୁ ନ ଥିଲେ । ଖୁବ୍ କ୍ୱଚିତ ଶରୀରକୁ ଫେରୁଥିଲେ । କ୍ଲାର୍କ ଓ ନିତ୍ୟ ମଝିରେ ମଝିରେ ଉଷୁମ ଦୁଧ ନେଇ ତାଙ୍କ ବିଛଣା ପାଖରେ ରଖି ଦେଇ ଆସୁଥିଲେ । ଶରୀରକୁ ଫେରିବା ଅବସ୍ଥାରେ ସେମାନେ ବିଛଣା ପାଖରେ ରଖା ହୋଇଥିବା ଉଷୁମ ଦୁଧ ଟିକକ ପିଉଥିଲେ । ଦେହର ଶକ୍ତି ରକ୍ଷା ପାଇଁ ତାହା ଏକାନ୍ତ ଆବଶ୍ୟକ ଥିଲା । ଏତିକ ଛଡ଼ା ଏ ଜଗତ ସହିତ ସେମାନଙ୍କର ଅନ୍ୟ କୌଣସି ସମ୍ପର୍କ ନ ଥିଲା ।

୧୧ ତାରିଖ ସକାଳେ ବଖରା ବାହାରେ ଥାଇ କ୍ଲାର୍କ ଶୁଣିବାକୁ ପାଇଲେ ଯେ ଭିତରେ କ୍ରିଷ୍ଣମୂର୍ତ୍ତି କହୁଛନ୍ତି, "ମୋର ମନେ ଅଛି··· ହଁ···ହଁ···ମୋର ପୂରା ସବୁକଥା ମନେ ଅଛି ।" ତହିଁଆର ଦିନ ବଖରାରୁ ବାହାରି ଆସିବା ପରେ କ୍ରିଷ୍ଣମୂର୍ତ୍ତି ଆନି ବେସାନ୍ତଙ୍କ ନିକଟକୁ ନିଜର ଦୀକ୍ଷା-ଗ୍ରହଣର ଅନୁଭୂତି ବର୍ଣ୍ଣନା କରି ଚିଠିଟିଏ ଲେଖିଥିଲେ । ସେଥିରେ ଥିଲା—

"ପ୍ରଥମ ରାତ୍ରରେ ଯେତେବେଳେ ମୋର ଶରୀରରୁ ବାହାରି ମହାଗୁରୁଙ୍କ ନିକଟରେ ପହଞ୍ଚିଲି, ଦେଖିଲି, ମହାଗୁରୁ ମୌର୍ଯ୍ୟ ଓ ମହାଗୁରୁ ଦ୍ୱିଜଲ୍‌କୁଲ୍ ଆଗରୁ ଆସି ସେଠାରେ ଉପସ୍ଥିତ ଅଛନ୍ତି । ମହାଗୁରୁ ବଡ଼ ଶ୍ରଦ୍ଧାରେ ଅନେକ ସମୟ ଧରି ମୋ' ସହିତ କଥାବାର୍ତ୍ତା କଲେ ଆଜି ଏ ଦୀକ୍ଷା ଗ୍ରହଣର ଉଦ୍ଦେଶ୍ୟ କ'ଣ ଓ ସେଥିପାଇଁ ମତେ କ'ଣ କରିବାକୁ ହେବ, ସବୁ କଥା ବୁଝାଇଦେଲେ । ତା'ପରେ ସେଠାରୁ ଆମେ ସମସ୍ତେ ମିଶି ମହାମୁନି ମୈତ୍ରେୟଙ୍କ ନିକଟକୁ ଗଲୁ । ହଁ—ମୁଁ ଆଗରୁ ବି ଥରେ ସେଠାକୁ ଯାଇଥିଲି । ସେଠି ପହଞ୍ଚି ଦେଖିଲୁ ଯେ ଭେନେସିଆନ୍ ମହାଗୁରୁ, ମହାଗୁରୁ ଯୀଶୁ, ମହାଗୁରୁ କାଉଣ୍ଟ୍, ମହାଗୁରୁ ସେରାପିସ୍ ଓ ମହାଗୁରୁ ହିଲାରିଅନ୍ ପ୍ରଭୃତି କେତେ କେତେ ମହାଗୁରୁ ସେଠାରେ ଉପସ୍ଥିତ ଅଛନ୍ତି । ମହାଗୁରୁ ମୌର୍ଯ୍ୟ ଓ ମହାଗୁରୁ କୁଥୁହୁମି ମଧ୍ୟ ସେଠାରେ ଥିଲେ । ମଝିରେ ଗୋଟିଏ ଆସନରେ ମହାମୁନି ମୈତ୍ରେୟ ଉପବିଷ୍ଟ ଥିଲେ ଓ ଅନ୍ୟ ସମସ୍ତେ ତାଙ୍କ ଚାରିପଟେ ଅର୍ଦ୍ଧଚନ୍ଦ୍ର ଆକାରରେ ଠିଆ ହୋଇଥିଲେ । ମହାଗୁରୁ କୁଥୁହୁମି ଓ ମହାଗୁରୁ ଦ୍ୱିଜଲ୍‌କୁଲ ଯଥାକ୍ରମେ ମୋର ଡାହାଣ ଓ ବାମ ହାତ ଧରି ମତେ ମହାମୁନିଙ୍କ ସମ୍ମୁଖକୁ ଆଗେଇ ନେଇଗଲେ । ସେତେବେଳେ ତମେ ଓ ଅଙ୍କଲ (ଲେଡ଼ବିଟର) ଠିକ୍ ମୋର ପଛକୁ ଲାଗି ଠିଆ ହୋଇଥିଲ । ମହାମୁନି ମତେ ଚାହିଁ ଈଷତ୍ ହସି ମହାଗୁରୁଙ୍କୁ ପଚାରିଲେ, —"ଏ କାହାକୁ ତମେ ଏଠିକି ଆଣିଛ ?"

ମହାଗୁରୁ ଉତ୍ତର ଦେଇ କହିଲେ—"ଗ୍ରେଟ୍ ବ୍ରଦରହୁଡ୍‌ରେ ସାମିଲ ହେବାପାଇଁ ୟାଙ୍କର ବହୁତ ଆଗ୍ରହ ।"

—"କିନ୍ତୁ ସେଥିପାଇଁ ଯେ ଇଏ ପୂରା ଯୋଗ୍ୟ ଏ ବିଷୟରେ ତମେ ନିଶ୍ଚିତ ତ ?"

—"ହଁ, ନିଶ୍ଚୟ ।"

—"ସେ ଯେଉଁ ପଥରେ ପ୍ରବେଶ କରିବାକୁ ଯାଉଛନ୍ତି ସେ ପଥରେ ତମେ ତାଙ୍କୁ ଆଗେଇ ନେଇ ପାରିବ ତ ?"

—"ହଁ—ପାରିବ ।"

ମହାମୁନି ପୁଣି ପ୍ରଶ୍ନ କଲେ—"ଆମର ପ୍ରଥା ଅଛି ଯେ ପ୍ରତ୍ୟେକ ପ୍ରାର୍ଥୀଙ୍କ ଲାଗି ଦୁଇଜଣ ମହାନ ଭ୍ରାତା (higher Brethern)ଙ୍କର ସମର୍ଥନ ଦରକାର । ଏହାଙ୍କ ପାଇଁ ସେପରି ସମର୍ଥନ ଦେବାକୁ କେହି ରାଜି ଅଛନ୍ତି କି ?"

ସାଙ୍ଗେ ସାଙ୍ଗେ ମହାଗୁରୁ ଦ୍ୱିଜଲକୁଲ କହିଲେ—"ହଁ, ମୁଁ ପ୍ରସ୍ତୁତ ଅଛି ।"

ତା'ପରେ ମହାମୁନି ପୁଣି କହିଲେ — "ୟାଙ୍କର ବୟସ ଏବେ ଖୁବ୍ କମ୍ । ତେଣୁ ବାହ୍ୟ ଜଗତରେ ରହୁଥିବା ଆମ ବ୍ରଦରହୁଡ୍‌ର କୌଣସି ସଦସ୍ୟ ତାଙ୍କର ଯତ୍ନ ନେବାକୁ ଓ ଏହି ମହତ୍ ଉଦ୍ଦେଶ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ରାଜି ଅଛନ୍ତି କି ?"

ସାଙ୍ଗେ ସାଙ୍ଗେ ତମେ ଓ ଅଙ୍କଲ ଆଗେଇ ଆସି ମହାମୁନିଙ୍କୁ ପ୍ରଣାମ ଜଣାଇ କହିଲ — "ହଁ, ଆମେ ଦହେଁ ତାଙ୍କର ଯତ୍ନ ନେବାକୁ ରାଜି ।"

ସେ ପୁଣି ପଚାରିଲେ — "ତମ ଦହିଁଙ୍କ ହୃଦୟରେ ଏହାଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା, ସ୍ନେହ ଅଛି ତ ? କାରଣ ତା'ର ଦ୍ୱାରା କେବଳ ଏହି କାର୍ଯ୍ୟ ସହଜସାଧ୍ୟ ହୋଇପାରିବ ।"

ଏକଥା ଶୁଣି ତମେ ଦହେଁ ଉତ୍ତର ଦେଲ ଯେ ବିଗତ ଅନେକ ଜନ୍ମ ଧରି ଆମ ହୃଦୟରେ ଏହାଙ୍କ ପ୍ରତି ସ୍ନେହଶ୍ରଦ୍ଧା ରହି ଆସିଛି ଓ ଏ ଜନ୍ମରେ ମଧ୍ୟ ରହିଛି । ତମଠୁ ଏକଥା ଶୁଣିବା ପରେ ମୋ' ଆଡ଼େ ଚାହିଁ ମହାମୁନି ପ୍ରଥମ କରି ପଚାରିଲେ — "ତମେ କଣ ଏ ମହାନ ଭ୍ରାତାଦ୍ୱୟଙ୍କୁ ଭଲ ପାଅ ? ତମେ କଣ ସେମାନଙ୍କ ନିର୍ଦ୍ଦେଶକୁ ଆନନ୍ଦ ମନରେ ଗ୍ରହଣ କରି ପାରିବ ?"

ତତ୍‌କ୍ଷଣାତ୍ ମୁଁ ଉତ୍ତର ଦେଲି— "ହଁ, ନିଶ୍ଚୟ···ମୁଁ ସେମାନଙ୍କୁ ମୋର ଅନ୍ତର ଦେଇ ଭଲ ପାଏ ।"

ସେ ପୁଣି ପଚାରିଲେ — "ଅନନ୍ତକାଳରୁ ଅନନ୍ତ କାଳ ଧରି ବ୍ୟାପ୍ତ ଭାତୃଭାବ (Brotherhood)ରେ ସାମିଲ ହେବାକୁ ସତରେ କଣ ତମେ ଇଚ୍ଛା କରୁଛ ?"

—"ମୁଁ ନିଜକୁ ଏଥିଲାଗି ଯୋଗ୍ୟ କରିବାକୁ ଚାହେଁ ।"

—"ଏହି ଭ୍ରାତୃଭାବର ଉଦ୍ଦେଶ୍ୟ କ'ଣ, ତାହା ତୁମେ ଜାଣ କି ?"

—"ହଁ, ପୃଥିବୀର କଲ୍ୟାଣ ସାଧନ ଦ୍ୱାରା 'ଲୋଗସ୍'ର (ସୌରମଣ୍ଡଳକୁ ନିୟନ୍ତ୍ରଣ କରୁଥିବା ପଦ୍ଧତି) କାର୍ଯ୍ୟରେ ସହାୟତା କରିବା ଏହାର ଧର୍ମ ଅଟେ ।"

ମହାମୁନି ପୁଣି ପଚାରିଲେ—"ତେବେ କଣ ତୁମେ ଏଣିକି ନିଜକୁ ସମ୍ପୂର୍ଣ୍ଣ ରୂପେ ଭୁଲି ଯାଇ ଜଗତର ମଙ୍ଗଳ ନିମନ୍ତେ ତୁମର ସମସ୍ତ ଜୀବନ, ଶକ୍ତି ଓ ସାମର୍ଥ୍ୟକୁ ଉତ୍ସର୍ଗ କରିଦେବା ଲାଗି ଶପଥ ନେଇ ପାରିବ ? ସ୍ୱୟଂ ବିଶ୍ୱନିୟନ୍ତା ଯେଭଳି ଶ୍ରଦ୍ଧା, କରୁଣାରେ ପରିପୂର୍ଣ୍ଣ ତୁମେ କଣ ଠିକ୍ ସେହିଭଳି ପ୍ରେମମୟ ହୋଇପାରିବ ?"

—"ମହାଗୁରୁଙ୍କ ସହାୟତାରେ ମୁଁ ନିଶ୍ଚୟ ପାରିବି ।"

—"ତୁମକୁ ଯାହା ସବୁ ଗୁପ୍ତ ରଖିବାକୁ ନିର୍ଦ୍ଦେଶ ଦିଆଯିବ ତାକୁ ଗୁପ୍ତ ରଖିବାର ଶପଥ ନେଇ ପାରିବ କି ?"

—"ହଁ, ମୁଁ ଶପଥ ନେଉଛି ।"

ତାପରେ ସେ ମତେ ଅନେକ ପ୍ରକାରର କାମଶରୀରୀ (astral) ବସ୍ତୁ ଦେଖାଇଲେ ଓ ସେଗୁଡ଼ିକ ପ୍ରକୃତରେ କଣ ତାହା ମୁଁ ତାଙ୍କୁ ଜଣାଇଲି । କେଉଁ କାମଶରୀର (astral body)ଗୁଡ଼ିକ ଜୀବିତ ବ୍ୟକ୍ତିର ଓ କେଉଁଗୁଡ଼ିକ ମୃତବ୍ୟକ୍ତିର, କିଏ ପ୍ରକୃତ ମନୁଷ୍ୟ ଓ କେଉଁ ଗୋଟିକ ମନୁଷ୍ୟ ଭାବନାରୁ ପ୍ରସୂତ ରୂପ, କିଏ ପ୍ରକୃତ ମହାଗୁରୁ ଓ କୋଉଟା ମହାଗୁରୁଙ୍କର ରୂପ ଛବି—ଏସବୁ କଥା ମୁଁ ତାଙ୍କୁ ଜଣାଇଲି । ତାପରେ ସେ ମତେ ଅନେକଗୁଡ଼ିଏ ଘଟଣା ଦେଖାଇ ତହିଁରେ ମୁଁ କିଭଳି ସହାୟତା କରିପାରିବି ସେ କଥା ପଚାରିଲେ । ମୁଁ ମୋର ପାରୁପର୍ଯ୍ୟନ୍ତ ତାଙ୍କର ସବୁକଥାର ଉତ୍ତର ଦେଲି । ସେଇଠୁ ସେ ମତେ ମୋର ସବୁଠାରୁ ବଡ଼ ଶତ୍ରୁ (ସ୍କୁଲ ମାଷ୍ଟ୍ର), ଯେ କି ଅତି ନିଷ୍ଠୁର ପ୍ରକୃତିର ଥିଲେ ଆଉ ମତେ ଓ ମୋର ସାନ ଭାଇକୁ ବହୁବାର କଷ୍ଟ ଦେଇଛନ୍ତି,

ତାଙ୍କର ଗୋଟିଏ ରୂପ ଦେଖାଇ ପଚାରିଲେ—"ଇଏ ଯଦି କେବେ ତମର ସାହାଯ୍ୟ ଲୋଡ଼ିବେ ତେବେ ତମେ ତାଙ୍କୁ ସାହାଯ୍ୟ କରିବ କି ?"

ମହାଗୁରୁମାନଙ୍କ ଉପସ୍ଥିତିରେ ମନରେ ମୋର ଆଜି କୌଣସି ଘୃଣା କି ବିଦ୍ୱେଷର ଭାବ ନ ଥିଲା । ମୁଁ କହିଲି—"ହଁ ମୁଁ ନିଶ୍ଚୟ ସାହାଯ୍ୟ କରିବି ।"

ଶେଷକୁ ସେ ହସହସ ମୁହଁରେ କହିଲେ ଯେ ମୋର ଉତ୍ତର-ଗୁଡ଼ିକ ଖୁବ୍ ସନ୍ତୋଷଜନକ ହୋଇଛି । ତାପରେ ଅନ୍ୟାନ୍ୟ ମହାଗୁରୁଙ୍କୁ ଚାହିଁ ସେ ପଚାରିଲେ—"କଣ, ଏଙ୍କୁ ଆମ ସାଥୀରେ ଗ୍ରହଣ କରିବାରେ ସମସ୍ତଙ୍କ ସମ୍ମତି ଅଛି ତ ?" ସମସ୍ତେ ଏକ ସଙ୍ଗରେ ସମ୍ମତି ଜଣାଇଲେ ।

ମହାମୁନି ମୋଠାରୁ ଦୃଷ୍ଟି ଫେରାଇ ସମ୍ରାଟ ଦିଗକୁ ଚାହିଁ କହିଲେ—"ହେ ପ୍ରାଣ ଓ ଆଲୋକର କର୍ତ୍ତା ! ଆପଣଙ୍କ ଅନୁମତି ନେଇ ଆପଣଙ୍କ ନାମରେ ମୁଁ ଏହି କାର୍ଯ୍ୟ ସମ୍ପାଦନ କରୁଛି ।' ଏ କଥା କହିବା ମାତ୍ରକେ ତାଙ୍କର ମଥା ଉପରେ ଶୁଭ୍ର ଉଜ୍ଜ୍ୱଳ ତାରକାଟିଏ ଝଟକି ଉଠିଲା ଓ ତାହାର ଉଭୟ ପାର୍ଶ୍ୱରେ ଦୁଇଟି ପ୍ରତିମୂର୍ତ୍ତି ଶୂନ୍ୟରେ ଉଦ୍‌ଭାସିତ ହେଲେ । ସେଥିରୁ ଗୋଟିଏ ଥିଲା ପ୍ରଭୁ ଗୌତମ ବୁଦ୍ଧଙ୍କର ଓ ଅନ୍ୟଟି ମହାଗୁରୁଦେବଙ୍କର । ମହାମୁନି ମୈତ୍ରେୟ ମୋ ଆଡ଼କୁ ବୁଲିପଡ଼ି ମୋ ଜୀବାତ୍ମାର ପ୍ରକୃତ ନାମ ଧରି ଡାକିଲେ, ଆଉ ମୋ ମଥା ଉପରେ ହାତ ରଖି କହିଲେ—"ସେହି ଏକଙ୍କ (One) ଶିକ୍ଷାଦାତା ଯାହାଙ୍କର ତାରକା ଆମ ଉପରେ ଉଦ୍‌ଭାସିତ, ତାଙ୍କର ନାମରେ ମୁଁ ତୁମକୁ ଭ୍ରାତୃଭାବ ଓ ଅନନ୍ତ ଜୀବନର ସ୍ରୋତରେ ସାମିଲ କରୁଛି । ତମେ ଯେଭଳି ଜଣେ ଯୋଗ୍ୟ ଓ ସାହାଯ୍ୟକାରୀ ସଦସ୍ୟ ହୋଇ କାର୍ଯ୍ୟ କର ସେଥିପ୍ରତି ସର୍ବଦା ଧ୍ୟାନ ରଖିଥିବ । ଯେହେତୁ ତମେ ଏ ମହାନ ସ୍ରୋତରେ ପ୍ରବେଶ କରି ପାରିଛ ତେଣୁ ତମେ ଏଣିକି ସମ୍ପୂର୍ଣ୍ଣ ନିରାପଦ । ଏଥର ତମେ ଏଠାରେ ଆଉ ପାରିରେ ପହଞ୍ଚି ପାରିବ ।"

ଏହାପରେ ମହାମୁନି ମତେ ମହାଜ୍ଞାନର ସାରତତ୍ତ୍ୱ ପ୍ରଦାନ କଲେ ଏବଂ ହ୍ୱାଇଟ୍ ବ୍ରଦରହୁଡ଼ର କୌଣସି ସଦସ୍ୟଙ୍କୁ ଦେଖିଲେ କିପରି ଚିହ୍ନି ପାରିବି ତାର ରହସ୍ୟ ମଧ୍ୟ ବତାଇଦେଲେ । କିନ୍ତୁ ଏସବୁ କଥା ଅନ୍ୟ କାହାରି ଆଗରେ ପ୍ରକାଶ ନ କରିବାକୁ ମଧ୍ୟ ସେ ନିର୍ଦ୍ଦେଶ ଦେଲେ । × × × ଶେଷରେ ସେଠାରେ ଉପସ୍ଥିତ ଥିବା ମହାଗୁରୁଗଣ ଜଣ ଜଣ ହୋଇ ମତେ କୁଇଁ ଆଶୀର୍ବାଦ ଜଣାଇଲେ ଓ ମହାମୁନି ମୈତ୍ରେୟ ମଧ୍ୟ ମତେ ଆଶୀର୍ବାଦ ପ୍ରଦାନ କଲେ । ସେଇଠୁ ସେହି ଉଜ୍ଜ୍ୱଳ ତାରକାଟି କୁଆଡ଼େ ଉଭେଇ ଗଲା । ଆମେ ସମସ୍ତେ ଫେରି ଆସିଲୁ । ନିଦରୁ ଉଠିଲା ବେଳକୁ ମତେ ଖୁବ୍ ଆନନ୍ଦ ଲାଗୁଥିଲା ଓ ସବୁକିଛୁ ଆପଦମୁକ୍ତ ମନେ ହେଉଥିଲା ।

ତା ପରେ ପରେ ଖୁବ୍ ଶୀଘ୍ର ମୁଁ ପୁଣି ଥରେ ଶୋଇ ପଡ଼ିଲି । ସେ ପୁରାଦିନଟା ମୁଁ ଶରୀରରୁ ବାହାରେ ହିଁ ରହିଲି । ସେତିକବେଳେ ମୁଁ ବୌଦ୍ଧିକ ସ୍ତର (Buddhic plane) ସମ୍ପର୍କରେ ଶିକ୍ଷା ଲାଭ କଲି । ବୌଦ୍ଧିକ କାୟା ଓ ମାୟାବୀ ରୂପ କିପରି ଗଢ଼ାଯାଏ ସେ କଥା ଜାଣିଲି । କିନ୍ତୁ ଯେହେତୁ ସେ ସବୁ ଅନେକଗୁଡ଼ିଏ ସ୍ତର ଦେଇ ଆସିଥାଏ ତେଣୁ ମୋର ଏହି ବର୍ତ୍ତମାନର ମସ୍ତିଷ୍କ ପକ୍ଷରେ ସେସବୁକୁ ସ୍ପଷ୍ଟ ଭାବରେ ମନେ ରଖିବା ସମ୍ଭବ ହେଉନାହିଁ ।

ତହିଁ ପରଦିନ ରାତିରେ ମତେ ରାଜେଶ୍ୱରଙ୍କୁ ଭେଟିବା ଲାଗି ନିଆଗଲା । ବାସ୍ତବିକ ମୋର ଯେତେ ଯାହା ଅନୁଭୂତି ତା ଭିତରେ ସେଇଟା ହିଁ ହେଲା ସବୁଠାରୁ ବଳି ଚମକପ୍ରଦ ଓ ଅଭୂତପୂର୍ବ । କାରଣ ସେ ହେଉଛନ୍ତି ଜଣେ ବାଳକ—ମୋ ଠାରୁ ବିଶେଷ ବଡ଼ ହେବେ ନାହିଁ । କିନ୍ତୁ ତାଙ୍କ ପରି ଏତେ ସୁନ୍ଦର, ଧୀସ୍ଥିମନ୍ତ ଓ ମହିମାମୟ ରୂପ ମୁଁ ଆଜିଯାକେ କାହାରି ହେଲେ ଦେଖି ନାହିଁ । ସେ ହସିଦେଲେ ସତେ ଅବା ଦିବ୍ୟ ସୂର୍ଯ୍ୟାଲୋକ ଝଟକି ଉଠୁଥିଲା । ସେ ଥିଲେ ଅଥଳ ସାଗର ସଦୃଶ ଶକ୍ତିମାନ, କ୍ଷଣକେ ଲାଗି ସୁଦ୍ଧା କିଛି ହେଲେ ତାଙ୍କର ପ୍ରତିରୋଧ କରିପାରିବ ନାହିଁ । ଆଉ ତାରି ସାଙ୍ଗକୁ ସେ ଥିଲେ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ । ସେଇଥି ପାଇଁ ଖାସ୍ ତାଙ୍କ ପ୍ରତି ମୋ ମନରେ ତିଳେ ମାତ୍ର

ଉପସ୍ଥିତ ନ ଥିଲି । ସେ ଯେଉଁ ରୂପେଲ ତାରକାଟିକୁ ଆମେ ଦେଖିଥିଲୁ ତାହା ଥିଲି ସ୍ବାମୀଙ୍କର ଗୋଟିଏ ଅଂଶ । କିନ୍ତୁ ଏକଥା ନୁହେଁ ଯେ ସେତେବେଳେ ତାରକାଟିକୁ ସେ ସ୍ଥାନକୁ ପଠା ହୋଇଥିଲା, କାରଣ ସେ ଯେ ସଦା ସର୍ବଦା ସର୍ବତ୍ର ବିଦ୍ୟମାନ । ସେ ସମୟରେ କେବଳ ଏତିକି ମାତ୍ର କରାଯାଇଥିଲା ଯାହା ଦ୍ୱାରା ଆମେ ତାଙ୍କୁ ଦେଖିବାକୁ ସମର୍ଥ ହୋଇଥିଲୁ । ଯେତେବେଳେ ଆମେ ତାଙ୍କୁ ଦେଖି ପାରୁନାହିଁ ସେତେବେଳେ ସୁଦ୍ଧା ସେ ଠିକ୍ ସେହି ସ୍ଥାନରେ ରହିଥାନ୍ତି । ତାପରେ ସେ ମତେ କହିଲେ ଯେ ଅତୀତରେ ମୁଁ ଖୁବ୍ ଉପରକୁ ଉଠିପାରିଛୁ ଏବଂ ଭବିଷ୍ୟତରେ ଯେପରି ମୁଁ ଆହୁରି ଢେର୍ ଉପରକୁ ଉଠିବି ! ଯଦି ଭବିଷ୍ୟତରେ କେତେବେଳେ ମୋର କାର୍ଯ୍ୟ ମତେ ଦୁଃସାଧ୍ୟକର ମନେହେବ ସେତେବେଳେ ମୁଁ ତାଙ୍କର ଉପସ୍ଥିତିକୁ ମନେ ପକାଇବି । ତେବେ ଯାଇ ମୁଁ ଦେଖିପାରିବି ଯେ ତାଙ୍କର ଶକ୍ତି ସଦାସର୍ବଦା ମୋ ପଛେ ପଛେ ରହିଛି , ସେହି ଶୁଭ୍ର ତାରକାଟି ମୋ ଉପରେ ଝଟକୁଛି । ଏତିକି କହି ହାତ ଟେକି ସେ ମତେ ଆଶୀର୍ବାଦ କଲେ । ତାଙ୍କଠାରୁ ବିଦାୟ ନେଇ ଆମେ ଫେରି ଆସିଲୁ । ତାଙ୍କ ପଛ ପଟେ ତିନିଜଣ ଜ୍ୟୋତିର୍ମୟ ପୁରୁଷ ଛିଡ଼ା ହୋଇ ରହିଥିଲେ । କିନ୍ତୁ ମୋର ଆଖିଯୋଡ଼ିକ ସାରାକ୍ଷଣ ତାଙ୍କଠାରେ ଏପରି ଲାଗି ରହିଥିଲା ଯେ ଏ ତିନିଜଣଙ୍କୁ ମୁଁ ଲକ୍ଷ୍ୟ କରିପାରି ନ ଥିଲି । ସେ ସ୍ଥାନକୁ ଯିବା ଓ ଫେରିବା ବାଟରେ ଅନେକ ପ୍ରକାଣ୍ଡକାୟ ଧ୍ୱଂସାବଶେଷ ଓ ଏକ ବିରାଟ ସେତୁ ଦେଖିଲି । ସେ ସବୁ ଏତେ ଭିନ୍ନ ଧରଣର ଥିଲା ଯେ ସେପରି ଜିନିଷ ମୁଁ ଆଗରୁ କେବେ ଦେଉଁଠି ଦେଖି ନାହିଁ । ମୁଁ କିନ୍ତୁ ଖାଲି ତାଙ୍କର କଥା ଭାବି ହେଉଥିଲି । ଏସବୁ ପ୍ରତି ମୋର ବିଶେଷ ଦୃଷ୍ଟି ନ ଥିଲା ।”

କୃଷ୍ଣମୂର୍ତ୍ତି ଲେଖିଥିବା ଉପରୋକ୍ତ ବର୍ଣ୍ଣନା ସାଙ୍ଗକୁ ଆନି ବେସାନ୍ତ ବନାରସରୁ ସ୍ୱତନ୍ତ୍ର ଭାବରେ ଲେଖିଥିବା ଉକ୍ତ ଦୀକ୍ଷା-ଗ୍ରହଣ ବେଳର ଅନୁଭୂତି ପୁରାପୁରି ମେଳ ଖାଇ ଯାଉଥିଲା । ସେଥିରେ ଗୋଟିଏ ଜାଗାରେ ସେ ଲେଖିଥିଲେ—“ତାପରେ ସେଇ ସମ୍ଭାଳ···ସେଠାରେ ରାଜେଶ୍ୱରଙ୍କ

ଉପସ୍ଥିତ···ପିଲଟି ଆମର କି ଚମତ୍କାର ଦିଶୁଥିଲା ସତେ ! ଠିକ୍ ଯୀଶୁଙ୍କର ପିଲାଦିନର ରୂପ । ତାର ସେଇ ବଡ଼ ବଡ଼ ପ୍ରଶାନ୍ତ ସ୍ୱପ୍ନାବିଷ୍ଟ ଆଖି ଯୋଡ଼ିକ ପ୍ରେମ ଓ ଆସ୍ଥାରେ କି ଅପୂର୍ବ ଦିଶୁଥିଲା ! ସେ କଣ ସତରେ ସେଗୁଡ଼ିକ ସବୁ ମନେ ରଖି ପାରିଥିବ ?"

ଏହି ଘଟଣା ପରଠାରୁ ସତକୁ ସତ କ୍ରିଷ୍ଣମୂର୍ତ୍ତିଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । ସତେ ଅବା ଜୀବନ ତାଙ୍କର ନବୀନ ମହିକ ନେଇ ନୂଆ ହୋଇ ଆରମ୍ଭ ହେଲା । ତାଙ୍କ ଭାଷାରେ "ମୋର ଏହି ନୂଆ ଜୀବନରେ ମୁଁ ଦେଖୁଛି ସମସ୍ତେ କେତେ ବେଶୀ ଦରଦୀ, ଦୟାଳୁ । ମହାମୁନି ମୈତ୍ରେୟ, ମହାଗୁରୁଗଣ, ପୁଣି ଆଡ଼ାୟାରରେ ସେମାନଙ୍କର ମହତ୍ କାର୍ଯ୍ୟରେ ନିଯୁକ୍ତ ହୋଇଥିବା ସଦସ୍ୟମାନେ କେଡ଼େ ଦୟାଳୁ ସତେ ! ମୁଁ ଆଜି ପର୍ଯ୍ୟନ୍ତ ଏ ଲୋକମାନଙ୍କୁ ଯେପରି ରୂପରେ ଜାଣିଥିଲି, ତାଠାରୁ ଏମାନେ ଯେ ସଂପୂର୍ଣ୍ଣ ଭିନ୍ନ ତାହା ମୁଁ ଏବେ ବୁଝି ପାରୁଛି । ଏମିତିକି ମୋ ନିଜର ବାପା ବି ବର୍ତ୍ତମାନ ମୋ ଆଖିରେ ବଦଳି ଯାଇଛନ୍ତି । ସବୁ ଜିନିଷ କେଡ଼େ ସୁନ୍ଦର ପାଲଟି ଯାଇଛି । ମୁଁ ଯେପରି ଏଥିପାଇଁ ସୁଯୋଗ୍ୟ ଓ ଉପଯୁକ୍ତ ହୁଏ ସେତିକି ହିଁ ମୋର କାମନା ।"

## 'ଅର୍ଡ଼ର୍ ଅଫ୍ ଦି ରାଇଜିଂ ଷ୍ଟାର୍'

କ୍ରିଷ୍ଣମୂର୍ତ୍ତିଙ୍କ ଶାରୀରିକ ଓ ମାନସିକ ବିକାଶ ସହିତ ତାଙ୍କର ପରିବେଶ ଉପରେ ମଧ୍ୟ ବିଶେଷ ଧ୍ୟାନ ଦେବାକୁ ମହାଗୁରୁଙ୍କର ତାଗିଦା ଥିଲା । ତାଙ୍କର ଖାଇବା, ପିଇବା, ବସିବା ଉଠିବା ଇତ୍ୟାଦି କିଭଳି ଢାଞ୍ଚାରେ ହେବା ଉଚିତ, ସେ କଣ କରିବା ଉଚିତ ଓ ଅନୁଚିତ ଏସବୁ ନିର୍ଦ୍ଦେଶ ଲେଡ଼ବିଟର ସୂକ୍ଷ୍ମସ୍ତରରେ ମହାଗୁରୁଙ୍କଠାରୁ ଆଣି ସେହି ଅନୁସାରେ କ୍ରିଷ୍ଣମୂର୍ତ୍ତିଙ୍କୁ ସଜାଡ଼ିବାରେ ଲାଗିଥିଲେ । ତାଙ୍କର ମାନସିକ

ଅଭିବୃଦ୍ଧି ନିମନ୍ତେ ଏକ ପବିତ୍ର ମମତାମୟ ପରିବେଶ ସୃଷ୍ଟି କରିବାକୁ ପରାମର୍ଶ ଦେଇ ମହାଗୁରୁ କହୁଥିଲେ ଯେ ପିଲା ଦିହେଁ ଏଣିକି ତାଙ୍କର ପୂର୍ବ ପରିବେଶ ଠାରୁ ଏକ ସମ୍ପୂର୍ଣ୍ଣ ଭିନ୍ନ ପରିବେଶରେ ବଢ଼ିବା ଆବଶ୍ୟକ। ଏତେ କାଳ ଧରି ସେମାନେ ଯେଭଳି ଭାବରେ ବିଧୃତା, ଅବିଶ୍ୱାସ, ଅପରିଚ୍ଛନ୍ନତା, ଅନିୟମ ଓ ଅବହେଳା ଭିତରେ ବଢ଼ି ଆସିଲେ ସେ ସବୁକୁ ସମ୍ପୂର୍ଣ୍ଣ ରୂପେ ବାଦ ଦେଇ ବଢ଼ିବା ଆବଶ୍ୟକ। ଏଣିକି ତାଙ୍କ ପାଇଁ ଲୋଡ଼ା ଅତିରିକ୍ତ ପବିତ୍ର ପରିବେଶଟିଏ ଯେଉଁଠାରେ କି ପ୍ରେମ, ଆନନ୍ଦ ଓ ବିଶ୍ୱାସ ଭରି ରହିଥିବ, ଆଉ ସେହି ପରିବେଶରେ ସେମାନେ ନିୟମାନୁବର୍ତ୍ତିତା, ପରିଚ୍ଛନ୍ନତା ଓ ମାନସିକ ପବିତ୍ରତା ଭିତରେ ବଢ଼ି ଉଠିବା ଆବଶ୍ୟକ। ସେ ଆହୁରି ମଧ୍ୟ କହିଥିଲେ ଯେ ପରିବେଶର ମନ୍ଦ ପାଶବିକ ପ୍ରଭାବ ତଥା ନାନାଦି ବିପଦ ଆପଦରୁ ମୁକ୍ତ ରହିବା ଲାଗି ପିଲା ଦିହିଁଙ୍କୁ ଯଥାସମ୍ଭବ ଆନି ବେସାନ୍ତଙ୍କ ପାଖେ ପାଖେ ରଖାଇବା ଉଚିତ। ତାଦ୍ୱାରା ସେମାନେ ଶ୍ରୀମତି ବେସାନ୍ତଙ୍କ ମହାନ ଜ୍ୟୋତିବଳୟର ସଂସ୍ପର୍ଶରେ ଆସି କେବଳ ଯେ ନିରାପଦ ରହିବେ ସେତିକି ନୁହେଁ ସର୍ବଦା ପବିତ୍ର ମଧ୍ୟ ରହିବେ।

କିନ୍ତୁ ମହାଗୁରୁଙ୍କର ଏହି ନିର୍ଦ୍ଦେଶକୁ ସ୍ୱଚ୍ଛନ୍ଦରେ କାର୍ଯ୍ୟକାରୀ କରାଇବା ଦିଗରେ ନାରାୟଣିୟା ପୁଣି ଏକ ପ୍ରତିବନ୍ଧକ ଆଣି ଛିଡ଼ା କଲେ। ପୁଅର ଉଜ୍ଜ୍ୱଳ ଆଧ୍ୟାତ୍ମିକ ଭବିଷ୍ୟତ ଓ ତା ପ୍ରତି ମହାଗୁରୁଙ୍କର ସଦିଚ୍ଛା ଓ ଆଶୀର୍ବାଦ ସମ୍ପର୍କରେ ଯଦିଓ ସେ ଅଳ୍ପ ବହୁତେ ଜାଣିଥିଲେ ତଥାପି ପୁଅ ଦିହିଁଙ୍କୁ ପୂରାପୂରି ହାତଛଡ଼ା କରି ଦେବାକୁ ତାଙ୍କର ଆଦୌ ଇଚ୍ଛା ନ ଥିଲା। ତେଣୁ ସେ ଲେଡ଼ବିଟରଙ୍କ କାମରେ ବାରମ୍ବାର ହସ୍ତକ୍ଷେପ କରି ପିଲାମାନଙ୍କୁ କୌଣସିମତେ ଘରକୁ ଫେରାଇ ଆଣିବାକୁ ଚେଷ୍ଟା ଆରମ୍ଭ କରିଦେଲେ। ଦୁର୍ଯ୍ୟୋଗକୁ ସେତିକିବେଳେ ପୁଣି ସାରା ଭାରତରେ ଲେଡ଼ବିଟରଙ୍କ ଚରିତ୍ର ନେଇ ଜୋର୍‌ସୋରରେ ଅପପ୍ରଚାର ଚାଲିଥିଲା। ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କୁ ଧରି ଆଧ୍ୟାତ୍ମିକତା ନାମରେ ସେ ଯୌନ ବ୍ୟଭିଚାର ଶିକ୍ଷା ଦେଉଛନ୍ତି, ତାଙ୍କର ଚରିତ୍ର ନଷ୍ଟ କରୁଛନ୍ତି, ଇତ୍ୟାଦି ବହୁ ଜଘନ୍ୟ ଅପବାଦକୁ

ବିଶ୍ୱାସ କରି ସେତେବେଳେ ଅନେକେ ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଏବେ ସେଇ ମଉକାର ସୁଯୋଗ ନେଇ ଓ କେତେକ ଧର୍ମାନ୍ଧ ଇଂରେଜ ବିରୋଧୀ ବ୍ୟକ୍ତିଙ୍କ କଥାରେ ଭଳି ଯାଇ ନାରାୟଣିୟା ନିଜ ପୁଅମାନଙ୍କୁ ଫେରାଇ ଦେବା ଲାଗି ଲେଡ଼ବିଟରଙ୍କୁ ବ୍ୟସ୍ତ କରିବାରେ ଲାଗିଲେ ।

ନାରାୟଣିୟାଙ୍କର ଏଭଳି ଅବୁଝାପଣ ଦେଖି ଲେଡ଼ବିଟର ପ୍ରଥମେ ଦିନାକେତେ ତାଙ୍କ କଥାକୁ ଟାଳି ଦେଇଥିଲେ । କିନ୍ତୁ ସେଥିରେ ବି ନାରାୟଣିୟାଙ୍କର ଜିଦ ନ କମିବାରୁ ଦିନେ ସେ ତାଙ୍କୁ ପାଖକୁ ଡାକି ଭଲରେ ଭଲରେ ସବୁକଥା ବୁଝାଇ ବସିଲେ । ହେଲେ ନାରାୟଣିୟା ତ ସହଜେ ଥିଲେ ଏକଜିଦିଆ, ଲେଡ଼ବିଟରଙ୍କର ଯେତେକ କଥା ସବୁ ତାଙ୍କ ପାଖରେ ଓଲଟା ଫଳ ଦେଲା । ସେ ବିଚାରିଲେ ଯେ ଏ ସବୁ ହେଉଛି ପିଲା ଦିହିଁଙ୍କୁ ତାଙ୍କଠାରୁ ଛଡ଼ାଇ ନେବାପାଇଁ ଏକ ନୂଆ ଚାଲ୍ । ଶେଷକୁ ଆଉ ଧର୍ଯ୍ୟ ଧରି ନ ପାରି ଲେଡ଼ବିଟର ଦିନେ ତାଙ୍କୁ ଠେକ୍‌ଠୋକ୍ ଜଣାଇଦେଲେ ଯେ ବର୍ତ୍ତମାନ ପରିସ୍ଥିତିରେ କିଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ଘରକୁ ଫେରାଇବା ଆଉ ସମ୍ଭବପର ନୁହେଁ । ଲେଡ଼ବିଟର ଓ ନାରାୟଣିୟାଙ୍କ ଭିତରେ ଗଣ୍ଡଗୋଳ ବେଳକୁ ବେଳ ବଢ଼ି ଚାଲିଲା । ନାରାୟଣିୟାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ପିଲା ଦିଓଟିଙ୍କୁ କେମିତି ଲେଡ଼ବିଟରଙ୍କ କବଳରୁ ମୁକ୍ତ କରିବେ । ତେଣୁ ନାନା ଆଳ ଦେଖାଇ ସେ ଲେଡ଼ବିଟରଙ୍କ ନାମରେ ଆନି ବେସାନ୍ତଙ୍କ ଆଗରେ ବାରମ୍ବାର ଫେରିଦ ହେଲେ । ଶେଷକୁ ଆଉ ଅନ୍ୟ କୌଣସି ଉପାୟ ନ ଦେଖି ଆନି ବେସାନ୍ତ ସ୍ଥିର କଲେ ଯେ ନାରାୟଣିୟାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ପିଲାମାନଙ୍କୁ ଲେଡ଼ବିଟରଙ୍କ-ଠାରୁ କାଢ଼ି ଆଣି ନିଜ ତତ୍ତ୍ୱାବଧାନରେ ରଖିବେ । ସେହି ଅନୁସାରେ ଦଲିଲ ତିଆରି ହେଲା । ସେଥିରେ ପିଲା ଦୁଇଟିଙ୍କର ସମ୍ପୂର୍ଣ୍ଣ ଅଭିଭାବକତ୍ୱ ନାରାୟଣିୟା ଆନି ବେସାନ୍ତଙ୍କ ହାତରେ ଟେକିଦେଲେ । କେବଳ ଏତିକି ମାତ୍ର ସର୍ତ୍ତ ରହିଲା ଯେ ଆନି ବେସାନ୍ତଙ୍କର ଅକସ୍ମାତ୍ ମୃତ୍ୟୁ ଘଟିଲେ ଦଲିଲଟି ଆପଣାଛାଏଁ ରଦ୍ଦ ହୋଇଯିବ ଓ ନାବାଳକ

ପିଲା ଦୁହେଁ ପୁଣି ନିଜ ବାପା ପାଖକୁ ଫେରିଯିବେ । ଏକଥା ଯିନା କାଗଜପତ୍ରରେ ହୋଇଗଲା କିନ୍ତୁ ଆନି ବେସାନ୍ତ ମନ ଭିତରେ ଜାଣିଥିଲେ ଯେ ପିଲା ଦୁହିଁଙ୍କର ପ୍ରକୃତ ଅଭିଭାବକ ସେହି ଲେଡ଼ବାଟର ହିଁ ରହିବେ । ତେଣୁ କେବଳ ନାରାୟଣିୟାଙ୍କ ଦେଖାନ୍ତକୁ ସେ ସ୍ଥିର କଲେ ଯେ ସେଇ ଦୁଇ ବର୍ଷଟା ସେ ଭାରତରେ ରହି ପିଲାମାନଙ୍କୁ ପାରୁପର୍ଯ୍ୟନ୍ତେ ନିଜ ଆଖି ଆଗରେ ରଖିବେ ଓ ସମସ୍ତ ଅପପ୍ରଚାରର ମୁହଁ ବନ୍ଦ କରିବେ ।

ବାସ୍ତବରେ ଲେଡ଼ବାଟରଙ୍କୁ ନେଇ ଏହି ଅପବାଦ ଆନି ବେସାନ୍ତଙ୍କ ମନରେ କୌଣସି ସନ୍ଦେହ ସୃଷ୍ଟିକରି ନ ଥିଲା । ମହାଗୁରୁଙ୍କ ଶିଷ୍ୟତ୍ୱ ଲାଭକରି ଜଗତର କଲ୍ୟାଣ ସାଧନ ଉଦ୍ଦେଶ୍ୟରେ କାର୍ଯ୍ୟ କରୁଥିବା ଲେଡ଼ବାଟରଙ୍କ ପରି ଜଣେ ମହାନ ବ୍ୟକ୍ତିଙ୍କ ବିରୁଦ୍ଧରେ ଏଭଳି କୁତ୍ସା ରଟନା ଯେ କପୋଳକଳ୍ପିତ ମାତ୍ର, ଏ କଥା ସେ ଖୁବ୍ ଭଲ ଭାବରେ ବୁଝିଥିଲେ । ତେଣୁ ଉପର ଦେଖାନ୍ତକୁ ଯଦିଓ ସେ ପିଲା ଦୁହିଁଙ୍କୁ ପାଖେ ପାଖେ ରଖିଥିଲେ ଓ ନିଜର ସମୟ ଦେଇ ସେମାନଙ୍କୁ ରୋଜ୍ ସକାଳେ ଘଣ୍ଟାଏ ଲେଖାଁ ଇଂରାଜୀ-ସାହିତ୍ୟ, ସେକ୍ସପିଅର ନାଟକ ଓ ରୁଡ୍ୟାର୍ଡ୍ କିପ୍ଲିଙ୍ଗଙ୍କର ଜଙ୍ଗଲ କାହାଣୀ ପ୍ରଭୃତି ପଢ଼ାଉଥିଲେ ତଥାପି ସେମାନଙ୍କର ପ୍ରକୃତ ଦାୟିତ୍ୱ ନ୍ୟସ୍ତ ଥିଲା ଲେଡ଼ବାଟରଙ୍କ ଉପରେ ।

ସେହି ବର୍ଷ (୧୯୧୦) ସେପ୍ଟେମ୍ବର ମାସରେ ଆନି ବେସାନ୍ତ ପ୍ରଥମ ଥର ପାଇଁ ପିଲା ଦୁହିଁଙ୍କୁ ନିଜ ସାଥିରେ ବନାରସ ନେଇଗଲେ । ସେତେବେଳେ ସେଠାର 'ସେଣ୍ଟ୍ରାଲ ହିନ୍ଦୁ କଲେଜ'ର ଅଧ୍ୟକ୍ଷ ରୂପେ କାର୍ଯ୍ୟ କରୁଥିଲେ ବତିଶ ବର୍ଷ ବୟସ୍କ ଇଂରେଜ ଥିଓସଫିଷ୍ଟ — ଜର୍ଜ ଅରୁଣ୍ଡେଲ । ଶ୍ରୀଯୁକ୍ତ ଅରୁଣ୍ଡେଲ ଆନି ବେସାନ୍ତଙ୍କର ଅତି ପ୍ରିୟ ଶିଷ୍ୟ ଥିଲେ ଏବଂ ଲେଡ଼ବାଟରଙ୍କ ପ୍ରତି ମଧ୍ୟ ତାଙ୍କ ମନରେ ଯଥେଷ୍ଟ ଶ୍ରଦ୍ଧା ରହିଥିଲା । ଆନି ବେସାନ୍ତ କୃଷ୍ଣମୂର୍ତ୍ତିଙ୍କୁ ନେଇ ତାଙ୍କ ସହିତ ପରିଚୟ କରାଇଦେବା ପରେ ସେ କୃଷ୍ଣମୂର୍ତ୍ତିଙ୍କ ଦ୍ୱାରା ଗଭୀର ଭାବରେ ଆକର୍ଷିତ ହୋଇଥିଲେ ଏବଂ ଖୁବ୍ ଅଳ୍ପଦିନ ମଧ୍ୟରେ ଉଭୟଙ୍କ ପରିଚୟ ଘନିଷ୍ଠ ବନ୍ଧୁତ୍ୱରେ ପରିଣତ ହୋଇଥିଲା । ବନାରସଠାରେ ଥିବାବେଳେ

କୃଷ୍ଣମୂର୍ତ୍ତି ଜୀବନରେ ପ୍ରଥମ ଥର ପାଇଁ ଏକ ଆଧ୍ୟାତ୍ମିକ ଉଦ୍‌ଯୋଗ କରିଥିଲେ । ସେତେବେଳେ ସେ ଜର୍ଜ ଅରୁଣ୍ଡେଲ ଓ ତାଙ୍କ ସହିତ ଅନ୍ୟ ଦୁଇଜଣ ଥିଓସଫିଷ୍ଟଙ୍କୁ ଏକାଠି କରି ନିଜେ ମହାଗୁରୁଙ୍କଠାରୁ ଲାଭ କରିଥିବା ଶିକ୍ଷାରେ ସେମାନଙ୍କୁ ଦୀକ୍ଷିତ କରାଇବାର ଏକ ଉଦ୍ୟମ କରିଥିଲେ । କୃଷ୍ଣମୂର୍ତ୍ତିଙ୍କର ଏ ପ୍ରକାର ସ୍ୱତଃସ୍ଫୂର୍ତ୍ତ ଉତ୍ସାହ ଦେଖି ଆନି ବେସାନ୍ତଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ମନେ ମନେ ଧରିନେଲେ ଯେ ମହାଗୁରୁଙ୍କ ଶିକ୍ଷାକୁ ପୃଥିବୀରେ ଅବତାରଣା କରିବା ଲାଗି ଭାବୀ ଜଗଦ୍‌ଗୁରୁଙ୍କର ଏହା ହେଉଛି ପ୍ରଥମ ପ୍ରସ୍ତୁତି ।

କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ଓ ବ୍ୟକ୍ତିତ୍ୱରେ ବିଶେଷ ଅନୁପ୍ରାଣିତ ହୋଇ ତହିଁଆର ବର୍ଷ — ୧୯୧୧ ମସିହା, ଜାନୁଆରି ୧୧ ତାରିଖରେ, କୃଷ୍ଣମୂର୍ତ୍ତିଙ୍କ ଦୀକ୍ଷା-ଗ୍ରହଣର ପ୍ରଥମ ବାର୍ଷିକୀ ଅବସରରେ ଅରୁଣ୍ଡେଲ 'ଅର୍ଡ଼ର୍ ଅଫ୍ ଦ ରାଇଜିଂ ସନ୍' ନାମରେ ଏକ ଆଧ୍ୟାତ୍ମିକ ଅନୁଷ୍ଠାନ ଗଢିଲେ । କୃଷ୍ଣମୂର୍ତ୍ତିଙ୍କୁ ଜଗଦ୍‌ଗୁରୁ ଭାବରେ ପରିଚିତ କରାଇ ତାଙ୍କର ଶିକ୍ଷାକୁ ସମଗ୍ର ପୃଥିବୀରେ ପ୍ରସାର କରାଇବା ଉକ୍ତ ଅନୁଷ୍ଠାନର ମୂଳ ମନ୍ତ୍ର ଥିଲା । କିନ୍ତୁ କିଛି ଅଳ୍ପଦିନ ଭିତରେ ଆନି ବେସାନ୍ତ ଓ ଲେଡ଼ବିଟରଙ୍କର ସହଯୋଗ ଲାଭକରି ଏହା ଏକ ଆନ୍ତର୍ଜାତିକ ଅନୁଷ୍ଠାନରେ ପରିଣତ ହେଲା । କୃଷ୍ଣମୂର୍ତ୍ତିଙ୍କୁ ଅନୁଷ୍ଠାନର ମୁଖ୍ୟ ଭାବରେ ନିଯୁକ୍ତ କରାଗଲା ଓ କାର୍ଯ୍ୟ ତୁଲାଇବାକୁ ଅରୁଣ୍ଡେଲ ତାଙ୍କର ବ୍ୟକ୍ତିଗତ ସେକ୍ରେଟାରୀ ରହିଲେ । ଲେଡ଼ବିଟର ଓ ଆନି ବେସାନ୍ତ ଅନୁଷ୍ଠାନର ଦୁଇ ତତ୍ତ୍ୱାବଧାରକ ଭାବେ କାର୍ଯ୍ୟ କରିବାକୁ ଲାଗିଲେ । ଅନୁଷ୍ଠାନର ନାମକୁ ସାମାନ୍ୟ ବଦଳାଇ 'ଅର୍ଡ଼ର୍ ଅଫ୍ ଦ ରାଇଜିଂ ଷ୍ଟାର୍ ଇନ୍ ଦ ଇଷ୍ଟ୍' ରଖାଗଲା ଓ ଏହାର ସଭ୍ୟ ସଂଖ୍ୟା ଓ ପାଣ୍ଠି ବଢ଼ାଇବାକୁ ବିଭିନ୍ନ ଦେଶରେ ଜୋର୍‌ସୋର୍ ଉଦ୍ୟମ କରାଗଲା । ବଡ଼ ଆଶ୍ଚର୍ଯ୍ୟର କଥା ଯେ ମାତ୍ର ଅଳ୍ପ କେତୋଟି ବର୍ଷ ଭିତରେ ଅନୁଷ୍ଠାନର ଲୋକପ୍ରିୟତା ଏତେ ବଢ଼ିଗଲା ଯେ ତାହାର ସଭ୍ୟ ସଂଖ୍ୟା ଆସି ଷୋହଳ ହଜାରକୁ ଛୁଇଁବା ସଙ୍ଗେ ସଙ୍ଗେ ବିପୁଳ ପରିମାଣରେ ଅର୍ଥ ଓ ଭୂ-ସମ୍ପତ୍ତି ଅନୁଷ୍ଠାନ ନାମରେ ଗଚ୍ଛିତ ହେବାରେ ଲାଗିଲା । ଏହାର କିଛିଦିନ ପରେ ଅନୁଷ୍ଠାନ

ତରଫରୁ 'ହେରାଲ୍ଡ୍ ଅଫ୍ ଦ ଷ୍ଟାର୍' ନାମକ ଏକ ତ୍ରୈମାସିକ ପତ୍ରିକା ଆଡ଼ାୟାରରୁ ପ୍ରକାଶ ପାଇବାକୁ ଲାଗିଲା । ମୋଟ ଉପରେ କହିବାକୁ ଗଲେ ଉକ୍ତ ଅନୁଷ୍ଠାନର ପ୍ରତିଷ୍ଠା ଓ ପ୍ରସାର ପ୍ରତ୍ୟେକ ଥିଓସଫିଷ୍ଟଙ୍କ ମନରେ ଏକ ନୂତନ ଭବିଷ୍ୟତର ଆଶା ସଞ୍ଚାର କଲା ।

## ଲଣ୍ଡନରେ କୃଷ୍ଣମୂର୍ତ୍ତି

ବନାରସରେ କୃଷ୍ଣମୂର୍ତ୍ତିଙ୍କର ସ୍ୱତଃପ୍ରବୃତ୍ତ ଆଗ୍ରହ ଓ ଥିଓସଫିଷ୍ଟମାନଙ୍କ ମଧ୍ୟରେ ତାଙ୍କର ଲୋକପ୍ରିୟତା ଦେଖି ଆନି ବେସାନ୍ତ ଜାଣିଲେ ଯେ ଏଣିକି କୃଷ୍ଣମୂର୍ତ୍ତିଙ୍କୁ କେବଳ ଭାରତ ଭିତରେ ଆବଦ୍ଧ ନ ରଖି ଧୀରେ ଧୀରେ ବାହାର ଦୁନିଆ ସହିତ ପରିଚିତ କରାଇବାକୁ ହେବ, ତାଙ୍କୁ ବିଭିନ୍ନ ଦେଶର ସଂସ୍ପର୍ଶରେ ଆସିବାକୁ ହେବ ଏବଂ ସେମାନଙ୍କର ଚାଲି ଚଳନ ସହିତ ମଧ୍ୟ ଅଭ୍ୟସ୍ତ ହେବାକୁ ପଡ଼ିବ । ଏହିସବୁ ଉଦ୍ଦେଶ୍ୟ ଆଖି ଆଗରେ ରଖି ସେ ବର୍ଷ ଇଂଲଣ୍ଡ ଯିବାବେଳେ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ମଧ୍ୟ ସାଥୀରେ ନେଇ ଯିବାକୁ ଆନି ବେସାନ୍ତ ଠିକଣା କଲେ ଓ ସେଥିପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲେ । ଇତି ମଧ୍ୟରେ ଲେଡ଼ବିଟରଙ୍କର ଅକ୍ଳାନ୍ତ ପରିଶ୍ରମର ଫଳସ୍ୱରୂପ ପିଲା ଦିହିଁଙ୍କ ଚେହେରା ଓ କଥାବାର୍ତ୍ତାରେ ଅନେକ ପରିବର୍ତ୍ତନ ଆସି ଯାଇଥିଲା ସତ କିନ୍ତୁ ଇଉରୋପ ଯାତ୍ରା ପୂର୍ବରୁ ସେମାନଙ୍କ ପୋଷାକ ପରିପାଟୀରେ ଆହୁରି ଅନେକ କିଛି ପରିବର୍ତ୍ତନର ଆବଶ୍ୟକତା ଥିଲା । ତେଣୁ ଆନି ବେସାନ୍ତ ସେମାନଙ୍କ ପାଇଁ ବରାଦ ଦେଇ ବିଲାତି କାଇଦାରେ ପ୍ୟାଣ୍ଟ୍, ସାର୍ଟ ଓ କୋଟ୍ ପ୍ରଭୃତି ତିଆରି କରାଇଲେ, ସେମାନଙ୍କ ପାଇଁ ଜୋତା ମୋଜା କିଣାଇଦେଲେ । ବ୍ରତୋପନୟନ ସମୟରେ କାନରେ କରାଯାଇଥିବା ଫୋଡ଼କୁ ସିଲାଇ କରିବା ଲାଗି ଗୋଟିଏ ଅପରେସନ ମଧ୍ୟ କରାଇଲେ । ପ୍ରକୃତରେ ଏ ଅପରେସନ ପାଇଁ ଲେଡ଼ବିଟର ହିଁ ବେଶୀ

ଜୋର ଦେଉଥିଲେ । ସେ ଦର୍ଶାଇଥିଲେ ଯେ ମହାତ୍ମାନଙ୍କର ମାଧ୍ୟମ ବା ବାହନ ରୂପେ ପ୍ରସ୍ତୁତ ହେଉଥିବା ଶରୀରରେ କୌଣସି ପ୍ରକାରର ଖୁଣ ବା ବିକୃତି ରହିବା ବାଞ୍ଛନୀୟ ନୁହେଁ । ଲେଡ୍‌ବିଟରଙ୍କ କଥାରେ ରାଜି ହୋଇ ଆନି ବେସାନ୍ତ ପିଲା ଦୁହିଁଙ୍କର ଅପରେସନର ବ୍ୟବସ୍ଥା କରାଇଲେ । ହେଲେ ନିତ୍ୟଙ୍କ ଅପରେସନ ସିନା ସୁରୁଖୁରୁରେ ସରିଗଲା, କୃଷ୍ଣମୂର୍ତ୍ତିଙ୍କ ବେଳକୁ କିନ୍ତୁ ଭାରି ଅସୁବିଧା ହେଲା । ଅପରେସନ ପୂର୍ବରୁ କାନର ଚମକୁ ବଧିର କରିବା ପାଇଁ ତାଙ୍କୁ ଯେଉଁ ଇଞ୍ଜେକସନ୍ ଦିଆଗଲା ତାହା ଆଦୌ କାମ ଦେଲା ନାହିଁ । ତେଣୁ ଅପରେସନ ସମୟରେ ତାଙ୍କୁ ଭୀଷଣ ଯନ୍ତ୍ରଣା ହେଲା । ଶେଷକୁ ତାଙ୍କର ବିକଳ ସହି ନ ପାରି ଆନି ବେସାନ୍ତ ନିଜେ ତାଙ୍କର ଦୁଇ ହାତକୁ ମୁଠାଇ ଧରି ମାନସିକ ଶକ୍ତି ବଳରେ ଯନ୍ତ୍ରଣାକୁ ନିଜଆଡ଼କୁ ଟାଣି ଆଣିବାକୁ ଚେଷ୍ଟା କଲେ । ହେଲେ ଅଦ୍ଭୁତ କଥା, ତାଙ୍କର ମାନସିକ ଶକ୍ତି କୃଷ୍ଣମୂର୍ତ୍ତିଙ୍କ ଉପରେ କୌଣସି ଫଳ ଦେଲା ନାହିଁ । ସେମିତି ଭୟଙ୍କର ଯନ୍ତ୍ରଣା ଭିତରେ ଅପରେସନ ଶେଷ ହେଲା ।

କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ଯଥାସମ୍ଭବ ପ୍ରସ୍ତୁତ କରାଇ ଆନି ବେସାନ୍ତ ୧୯୧୧, ଏପ୍ରିଲ ୨୨ ତାରିଖ ଦିନ ଜାହାଜ ଯୋଗେ ଇଉରୋପ ଯାତ୍ରା ଆରମ୍ଭ କଲେ । ତାଙ୍କ ଅନୁରୋଧରେ ଇଂଲଣ୍ଡରେ ପହଞ୍ଚିବା ପରେ ପିଲା ଦୁଇଜଣଙ୍କ କଥା ଦେଖାଶୁଣା କରିବା ପାଇଁ ଅରୁଣ୍ଡେଲ ମଧ୍ୟ କଲେଜରୁ କିଛି ମାସ ଛୁଟି ନେଇ ସେମାନଙ୍କ ସାଙ୍ଗରେ ଯାଇଥିଲେ । ସେମାନଙ୍କର ଏହି ଗୁରୁଜଣିଆ ଗ୍ରୁପ୍ ଦଳଟି ମେ’ ମାସ ୫ ତାରିଖ ଦିନ ଆସି ଲଣ୍ଡନ ଷ୍ଟେସନ୍‌ରେ ପହଞ୍ଚିଲା । ସେଥରକ ଆନି ବେସାନ୍ତଙ୍କ ସହିତ କୃଷ୍ଣମୂର୍ତ୍ତି ଆସୁଥିବା ଖବର ଲଣ୍ଡନରେ ଥିବା ଥିଓସଫିଷ୍ଟମାନଙ୍କ ଭିତରେ ଏକ ବିଶେଷ ଉନ୍ମାଦନା ଖେଳାଇ ଦେଇଥିଲା । ସେହି ସମୟରେ ‘ଦି ଥିଓସଫିଷ୍ଟ’ ପତ୍ରିକାରେ ଲେଡ୍‌ବିଟର୍ ପ୍ରଦତ୍ତ ‘ଆଲ୍‌କିଓନଙ୍କ ଜୀବନାବଳୀ’ କ୍ରମାନ୍ୱୟରେ ପ୍ରକାଶ ପାଇବାରେ ଲାଗିଥିଲା । ତାକୁ ପଢ଼ି ସେମାନଙ୍କ ମନରେ କୃଷ୍ଣମୂର୍ତ୍ତିଙ୍କୁ ଦେଖିବା ଲାଗି ପ୍ରବଳ କୌତୂହଳ ଲାଗି ରହିଥିଲା ।

ତେଣୁ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ସେଦିନ ଲଣ୍ଡନ ଷ୍ଟେସନରେ ବହୁ ସଂଖ୍ୟକ ଥିଓସଫିଷ୍ଟ ଆସି ରୁଣ୍ଡ ହୋଇଥିଲେ ।

କୃଷ୍ଣମୂର୍ତ୍ତି ଟ୍ରେନରୁ ଓହ୍ଲାଇଲେ । ବେଢ଼ଙ୍ଗିଆ ବେଶ—ପ୍ୟାଣ୍ଟ, କୋଟ୍, ଜୋତା ମୋଜା ସାଙ୍ଗକୁ କାନ୍ଧଯାକେ ଲମ୍ବ କଳା ମଚମଚ ବାଳ । ଆଉ ବିଶାଳ କଳା କଳା ଆଖି ଯୋଡ଼ିକରେ କେମିତି ଗୋଟାଏ ଫାଙ୍କା ଚାହାଣି । ଲୋକମାନେ ଅବାକ ହୋଇ ଚାହିଁ ରହିଲେ ସେ ରୂପକୁ । ଶୁଣାଯାଏ ଯେ ତାଙ୍କର ଭିତରୁ ଜଣେ ମହିଳା ସେଇଠି କୃଷ୍ଣମୂର୍ତ୍ତିଙ୍କୁ ଦେଖି ଦେଖି ହଠାତ୍ ମୂର୍ଚ୍ଛା ହୋଇ ପଡ଼ିଗଲେ । ସେହି ମହିଳାଜଣଙ୍କ ଠାରେ ଅଲୌକିକ ଦୃଷ୍ଟି ଥିବା କଥା ସମସ୍ତେ ଜାଣିଥିଲେ । ପରେ ପଚରା ଯିବାରୁ ସେ କହିଲେ ଯେ କୃଷ୍ଣମୂର୍ତ୍ତିଙ୍କର ଜ୍ୟୋତିବଳୟ ଏତେ ଶକ୍ତିଶାଳୀ ଥିଲା ଯେ ତାର ଧାକ୍କାରେ ସେ ଚେତା ହରାଇ ବସିଲେ ।

ଲଣ୍ଡନରେ ପହଞ୍ଚିବା ପରେ ପ୍ରଥମ କିଛିଦିନ ପାଇଁ ଶ୍ରୀମତୀ ବେସାନ୍ତ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ନିଜର ଜଣେ ଅନ୍ତରଙ୍ଗ ବନ୍ଧୁ, ଶ୍ରୀମତୀ ବ୍ରାଇଟ୍‌ଙ୍କ ଘରେ ରଖାଇଲେ । ସହଜେ ତ କୃଷ୍ଣମୂର୍ତ୍ତି ଥିଲେ ଲାଜକୁଳା, ତହିଁରେ ପୁଣି ଇଏ ବିଦେଶ ଭୂଇଁ । ବଡ଼ ଶୋଚନୀୟ ଅବସ୍ଥା ! ଆନି ବେସାନ୍ତ ଅଧିକାଂଶ ସମୟ କାମରେ ଏଣେ ତେଣେ ବ୍ୟସ୍ତ ରହୁଥିଲେ ଆଉ ଅରୁଣ୍ଡେଲ ବି ଅନେକ ସମୟରେ ପାଖରେ ରହିପାରୁ ନ ଥିଲେ । ତେଣୁ କେବଳ ନିତ୍ୟଟିକୁ ଛାଡ଼ିଦେଲେ ସେ ଅନ୍ୟ କାହାରି ସହିତ ମନ ଖୋଲି କଥା ଭାଷା ହୋଇପାରୁ ନ ଥିଲେ । ଏହି ସମୟକୁ ତାଙ୍କର ପରିଚୟ ହୋଇଥିଲା ଜଣେ ଥିଓସଫିଷ୍ଟ ଭଦ୍ର ମହିଳା ଲେଡ଼ି ଏମିଲି ଲିଉଟିନ୍‌ସଙ୍କ ସହିତ । ଲେଡ଼ି ଏମିଲିଙ୍କ ବୟସ ସେତେବେଳକୁ ଛତିଶ । ତାଙ୍କର ସ୍ୱାମୀ ଭାରତରେ କିଛି ବର୍ଷ ପାଇଁ ଆର୍କିଟେକ୍ଟ ଭାବରେ କାର୍ଯ୍ୟ କରି ପ୍ରଚୁର ସୁନାମ ଅର୍ଜନ କରିଥିଲେ । ପରବର୍ତ୍ତୀ ଜୀବନରେ କୃଷ୍ଣମୂର୍ତ୍ତି ଏହି ଏମିଲିଙ୍କୁ ଠିକ୍ ନିଜର ମାଆ ଭଳି ଜ୍ଞାନ କରିଥିଲେ ଓ ଏମିଲି ମଧ୍ୟ ତାଙ୍କୁ ନିଜ ପୁଅଟି ପରି ଦେଖୁଥିଲେ ।

ଇଂଲଣ୍ଡକୁ ଆସି ସୁଦ୍ଧା କୃଷ୍ଣମୂର୍ତ୍ତି ଓ ନିତ୍ୟ ଲେଡ଼ବିଟରଙ୍କ ନିର୍ଦ୍ଦେଶ ଅନୁଯାୟୀ ଜୀବନ ଯାପନ କରୁଥିଲେ । ଲେଡ଼ବିଟର ସେମାନଙ୍କ ଉଦ୍ଦେଶ୍ୟରେ ଲେଖି ପଠାଇଥିବା ଦୈନନ୍ଦିନ ରୁଟିନ୍ ଅନୁସାରେ ନିୟମିତ ଭାବରେ ପାଠ ପଢ଼ା, ଶାରୀରିକ ବ୍ୟାୟାମ, ଟେନିସ୍ ଖେଳା ଓ ସାଇକଲ ଚାଳନା ପ୍ରଭୃତି ଅଭ୍ୟାସକୁ ଜାରି ରଖିଥିଲେ । ଆଉ ସେମାନଙ୍କର ଦୈନନ୍ଦିନ ଜୀବନର ବିବରଣୀକୁ ଆନି ବେସାନ୍ତ ବରାବର ଚିଠି ଦ୍ୱାରା ଲେଖି ଲେଡ଼ବିଟରଙ୍କ ନିକଟକୁ ପଠାଉଥିଲେ । କିନ୍ତୁ ସବୁ ଭିତରେ ଯୋଉ ଜିନିଷଟି କୃଷ୍ଣମୂର୍ତ୍ତିଙ୍କୁ ସବୁଠାରୁ କଷ୍ଟ ଦେଉଥିଲା ତାହା ହେଲା ସେଠାକାର ଖାଦ୍ୟ । ମୂଳରୁ ତ ତାଙ୍କର ହଜମ ଶକ୍ତି ଭଲ ନ ଥିଲା, ଏବେ ଇଂଲଣ୍ଡକୁ ଆସିବା ପରେ ତାଙ୍କୁ ପ୍ରତିଦିନ ଗ୍ଲାସ ପରେ ଗ୍ଲାସ ଦୁଧ ପିଇବାକୁ ଓ ଅଣ୍ଡା ଖାଇବାକୁ ବାଧ୍ୟ କରାଗଲା । ଏତେ କଥା ଖାଇ ହଜମ କରିବାର ସାଧ୍ୟ ତାଙ୍କର ନ ଥିଲା କି ସେଥିରୁ ନିସ୍ତାର ମିଳିବାର ଉପାୟ ମଧ୍ୟ ନ ଥିଲା । ଖାଇବାବେଳେ ଶ୍ରୀମତୀ ବେସାନ୍ତ ଖାଇବା ଟେବୁଲ ପାଖରେ ବସି ରହି କଠୋର ଦୃଷ୍ଟିରେ ତାଙ୍କୁ ଚାହିଁ ରହୁଥିଲେ, କାରଣ ମହାଗୁରୁଙ୍କ ନିର୍ଦ୍ଦେଶରେ ଲେଡ଼ବିଟର ଖାଦ୍ୟର ଯେଉଁ ତାଲିକା ପ୍ରସ୍ତୁତ କରି ପଠାଉଥିଲେ ତାକୁ କୃଷ୍ଣମୂର୍ତ୍ତିଙ୍କୁ ଖୁଆଇବା ତାଙ୍କର ଦାୟିତ୍ୱ ଥିଲା । ଫଳ ଭିତରେ ଏତିକି ହେଲା ଯେ ପେଟ ଫାମ୍ପି ଯନ୍ତ୍ରଣାରେ କୃଷ୍ଣମୂର୍ତ୍ତିଙ୍କୁ ରାତି ରାତି ଅନିଦ୍ରା ରହିବାକୁ ପଡ଼ିଲା । ହେଲେ ତଥାପି ମୁକ୍ତି କାହିଁ ? ସକାଳ ହେବା ମାତ୍ରକେ ପୁଣି ସେଇ ରୁଟିନ୍‌ବନ୍ଧା ଖାଦ୍ୟ ।

ଇଂଲଣ୍ଡରେ ଚାରିମାସ ରହଣି ଭିତରେ ଆନି ବେସାନ୍ତ ଲଣ୍ଡନର କୁଇନ୍‌ସ ହଲ୍‌ଠାରେ ତିନି ଗୋଟି ଭାଷଣ ଦେଇଥିଲେ । ସେହି ଭାଷଣଗୁଡ଼ିକରେ ସେ ଭାବୀ ଜଗତ୍‌ଗୁରୁଙ୍କର ଆଗମନ ଓ ତାଙ୍କର ଉଦ୍ଦେଶ୍ୟ ଉପରେ ଆଲୋକପାତ କରିଥିଲେ । ଗଭୀର ଉତ୍ସାହଭରେ ଏଇସବୁ କଥା କହି ଯାଉଥିବାବେଳେ ଆଖି ଦୁଇଟି ତାଙ୍କର ଏକ ଅଲୌକିକ ତେଜରେ ଜଳୁଥିଲା । ସେଦିନ ସଭାରେ ଉପସ୍ଥିତ ଥିବା ଶ୍ରୋତାମାନେ କହନ୍ତି ଯେ ତାଙ୍କର ସେହି ବକ୍ତୃତାରେ ଏଭଳି ଅପୂର୍ବ

ଆକର୍ଷଣୀ ଶକ୍ତି ଥିଲା ଯାହାକି ସାରା ଶ୍ରୋତାମଣ୍ଡଳୀକୁ ଚମତ୍କୃତ କରି ଦେଇଥିଲା । ଏହାର ଅଳ୍ପ ଦିନ ପରେ, ମେ' ମାସ ୨୮ ତାରିଖ ଦିନ, ସେ 'ଅର୍ଡ଼ର ଅଫ୍ ଦି ରାଇଜିଂ ଷ୍ଟାର'ର କେତେକ ସଦସ୍ୟଙ୍କୁ ଏକାଠି କରି ସେମାନଙ୍କ ସମ୍ମୁଖରେ କ୍ରିଷ୍ଣମୂର୍ତ୍ତି ଗୋଟିଏ ଭାଷଣ ଦେବେ ବୋଲି ବ୍ୟବସ୍ଥା କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ଏପରି କରିବା ଦ୍ୱାରା କ୍ରିଷ୍ଣମୂର୍ତ୍ତିଙ୍କର ସଙ୍କୋଚ କଟିଯିବ ଏବଂ ଭବିଷ୍ୟତରେ ଜନସାଧାରଣରେ ଭାଷଣ ଦେବାବେଳେ ସେ ଆଉ ଅପ୍ରସ୍ତୁତ ବୋଧ କରିବେ ନାହିଁ । ସେଦିନ ଜୀବନରେ ପ୍ରଥମ ଥର ପାଇଁ ଭାଷଣ ଦେବାକୁ ଯାଇ କ୍ରିଷ୍ଣମୂର୍ତ୍ତିଙ୍କୁ ଭାରି ଗ୍ଲାନିଆ ଲାଗୁଥିଲା । ତେଣୁ ଯାହାସବୁ ସେ କହିବେ ବୋଲି ମନେ ମନେ ସ୍ଥିର କରିଥିଲେ କହିଲାବେଳକୁ ସେଥିରୁ ପ୍ରାୟ ଅଧେ ଖଣ୍ଡେ ଭୁଲି ବି ଗଲେ । ତଥାପି ତାଙ୍କର ଭାଷଣ ସମସ୍ତଙ୍କୁ ବେଶ୍ ଆକୃଷ୍ଟ କରିଥିଲା, ଆଉ ମଞ୍ଚ ଉପରେ ଛିଡ଼ା ହୋଇ ସେ ନିଜେ ବି ଖୁବ୍ ସୁନ୍ଦର ଦିଶୁଥିଲେ । ଶ୍ରୋତାଗଣ ତାଙ୍କ ବ୍ୟକ୍ତିତ୍ୱରେ ହିଁ ମୁଗ୍ଧ ହୋଇ ଯାଇଥିଲେ ।

ଏହା ପରେ ପରେ ଆନି ବେସାନ୍ତଙ୍କ ନିର୍ଦ୍ଦେଶରେ କ୍ରିଷ୍ଣମୂର୍ତ୍ତିଙ୍କୁ ପୁଣି ଥରେ ଏକାଧ୍ୟ ଭାଷଣ ଦେବାକୁ ପଡ଼ିଲା । ଏଥର କିନ୍ତୁ ତାଙ୍କ ସମ୍ମୁଖରେ ଉପସ୍ଥିତ ଥିଲେ 'ଷ୍ଟାର' ଅନୁଷ୍ଠାନର ପ୍ରାୟ ଦୁଇଶହ ଯାକେ ସଭ୍ୟ । ଆଉ ପୂର୍ବ ଥର ଭଳି ଏଥର ମଧ୍ୟ ସମୁହ ଶ୍ରୋତାଗଣ ମନ୍ତ୍ରମୁଗ୍ଧ ଭଳି ସଭାରେ ବସି ରହି ତାଙ୍କର ଭାଷଣ ଶୁଣିଥିଲେ । ସେଦିନ କ୍ରିଷ୍ଣମୂର୍ତ୍ତିଙ୍କର ତେଜସ୍ୱିତା ଓ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ପାଇ ଆନି ବେସାନ୍ତଙ୍କ ମନରେ ଦୃଢ଼ ବିଶ୍ୱାସ ହୋଇ ଯାଇଥିଲା ଯେ କ୍ରିଷ୍ଣମୂର୍ତ୍ତିଙ୍କର ଆଧ୍ୟାତ୍ମିକ ପଥରେ ଏହି ଭାଷଣଟି ଏକ ଶକ୍ତ ମୂଳଦୁଆ ହୋଇ ଛିଡ଼ା ହେବ । ତାଙ୍କର ଏ ଅନ୍ଦାଜ ଭୁଲ ନ ଥିଲା । କାରଣ ସେହି ଭାଷଣ ପରଠାରୁ ଅନେକ ଥିଓସଫିଷ୍ଟ ଖୋଲାଖୋଲି ଭାବରେ କ୍ରିଷ୍ଣମୂର୍ତ୍ତିଙ୍କର ଗୁଣକୀର୍ତ୍ତନ କରିବାକୁ ଆରମ୍ଭ କରିଦେଲେ, ପ୍ରଶଂସା ଓ ସମ୍ମାନରେ ତାଙ୍କୁ ପୋତି ପକାଇଲେ । ମାତ୍ର ପିଲାବୟସରୁ ଏତେ ମାନମର୍ଯ୍ୟାଦା କ୍ରିଷ୍ଣମୂର୍ତ୍ତିଙ୍କୁ ଟିକିଏ ହେଲେ ଛୁଇଁ ପାରି ନ ଥିଲା । ତାଙ୍କର

ପୂର୍ବ ନଶ୍ୱରତା ସେମିତି ଅକ୍ଷତ, ଅକ୍ଷୁଣ୍ଣ ରହିଥିଲା । ଷୋହଳ ବର୍ଷ ବୟସରୁ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ୁଥିବା ଭକ୍ତି, ସମ୍ମାନ, ଠିକ୍ ପଦ୍ମ ପତ୍ରରେ ପାଣି ପରି ତାଙ୍କଠାରୁ ଝରି ପଡ଼ୁଥିଲା ।

## ଏକ ଅଲୌକିକ ଘଟଣା

ଇଂଲଣ୍ଡରୁ ଫେରିବା ପରେ ୧୯୧୧ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ ଏକ ଥିଓସଫିକାଲ କନ୍‌ଭେନ୍‌ସନ୍‌ରେ ଯୋଗଦେବା ପାଇଁ ଆନି ବେସାନ୍ତ ଓ ଲେଡ଼ବିଟର ଏ ଦୁଇ ଭାଇଙ୍କୁ ସାଥିରେ ଧରି ବନାରସ ଗଲେ । ସେ ବର୍ଷ ସମ୍ମିଳନୀରେ ଥିଓସଫିଷ୍ଟମାନଙ୍କ ସହିତ ବହୁସଂଖ୍ୟକ 'ଷ୍ଟାର' ସଦସ୍ୟ ମଧ୍ୟ ଉପସ୍ଥିତ ଥିଲେ । ସେହିଠାରେ ସମ୍ମିଳନୀର ଗୋଟିଏ ସଭାରେ ଜଣେ ଷ୍ଟାର ସଭ୍ୟ ପ୍ରସ୍ତାବ ଦେଲେ ଯେ ସେ ବର୍ଷ ନୂଆ ହୋଇ ଅନୁଷ୍ଠାନରେ ଯୋଗ ଦେଇଥିବା ବ୍ୟକ୍ତିମାନଙ୍କୁ କୃଷ୍ଣମୂର୍ତ୍ତି ନିଜ ହାତରେ ସଦସ୍ୟ ସାର୍ଟିଫିକେଟ୍ ପ୍ରଦାନ କରିବେ । ପ୍ରସ୍ତାବଟି ସମସ୍ତଙ୍କ ମନକୁ ଭାରି ପାଇଲା ଏବଂ ସଙ୍ଗେ ସଙ୍ଗେ ନିଷ୍ପତ୍ତି ନିଆଗଲା ଯେ ଆସନ୍ତା ୨୮ ତାରିଖ ଦିନ ସବୁ ଷ୍ଟାର ସଭ୍ୟଙ୍କ ଉପସ୍ଥିତିରେ କୃଷ୍ଣମୂର୍ତ୍ତି ନୂଆ ସଦସ୍ୟମାନଙ୍କୁ ସେମାନଙ୍କର ସାର୍ଟିଫିକେଟ ପ୍ରଦାନ କରିବେ । ଡିସେମ୍ବର ୨୮ ତାରିଖ ସନ୍ଧ୍ୟା ଛଅଟାରେ ସଭା ଆରମ୍ଭ ହେଲା । ଭାରତୀୟ ଓ ଇଉରୋପୀୟ ମିଶି ସର୍ବମୋଟ ଚାରିଶହ ପାଖାପାଖି ସଭ୍ୟ ହଲରେ ଉପସ୍ଥିତ ଥିଲେ । ହଲର ଗୋଟିଏ ପଟକୁ ଚଉକିରେ ବସିଥିଲେ ଲେଡ଼ବିଟର, ଆନି ବେସାନ୍ତ, ନିତ୍ୟ ଏବଂ ଅନୁଷ୍ଠାନର କେତେକ ବଡ଼ ବଡ଼ ସଭ୍ୟ । ଅନ୍ୟମାନେ ସମସ୍ତେ ତଳେ ଦରିରେ ବସିଥିଲେ । ଏ ସମସ୍ତଙ୍କୁ ସାମନା କରି ଆଗରେ ଛିଡ଼ା ହୋଇଥିଲେ କୃଷ୍ଣମୂର୍ତ୍ତି ଓ ତାଙ୍କ ନିକଟରେ ଷ୍ଟାର ଅନୁଷ୍ଠାନର ଭାରତୀୟ ଶାଖା

ପ୍ରତିନିଧି ଶ୍ରୀଯୁକ୍ତ ତେଲଙ୍ଗ୍ । କଥା ଥିଲା, ସାର୍ଟିଫିକେଟ୍ ଗ୍ରହଣ କରିବାକୁ ଥିବା ସଭ୍ୟମାନେ ଧାଡ଼ି ବାନ୍ଧି ଜଣ ଜଣ କରି ଆସି ଆପଣା ସାର୍ଟିଫିକେଟକୁ ଶ୍ରୀଯୁକ୍ତ ତେଲଙ୍ଗ୍ଙ୍କ ହାତରେ ଦେବେ ଆଉ ତେଲଙ୍ଗ୍ ଉକ୍ତ ସଭ୍ୟଙ୍କର ନାମ ବଡ଼ ପାଟିରେ ଉଚ୍ଚାରଣ କରି ସାର୍ଟିଫିକେଟ୍ ଖଣ୍ଡିକ କୃଷ୍ଣମୂର୍ତ୍ତିଙ୍କ ହାତକୁ ବଢ଼ାଇ ଦେବେ ଏବଂ କୃଷ୍ଣମୂର୍ତ୍ତି ତାକୁ ନିଜ ହାତରେ ସେହି ସଭ୍ୟଙ୍କୁ ପ୍ରଦାନ କରିବେ । କୃଷ୍ଣମୂର୍ତ୍ତିଙ୍କ ହାତରୁ ସାର୍ଟିଫିକେଟ ପାଇବା ଲୋଭରେ କେତେକ ପୁରୁଣା ସଭ୍ୟ ନିଜ ପାଖରେ ଥିବା ସାର୍ଟିଫିକେଟ ଫେରାଇ ଦେଇ ତାହାକୁ ପୁଣିଥରେ ନୂଆକରି କୃଷ୍ଣମୂର୍ତ୍ତିଙ୍କ ହାତରୁ ଗ୍ରହଣ କରିବାକୁ ଅନୁମତି ଚାହିଁଲେ ।

ପ୍ରଥମ ଦୁଇ ତିନିଜଣ ସଭ୍ୟ ଏହିପ୍ରକାର ସାର୍ଟିଫିକେଟ ଗ୍ରହଣ କରି ନିଜ ସ୍ଥାନକୁ ଫେରିଆସି ବସିଲେ । ତା' ପର ସଭ୍ୟ ଜଣକ ଉଠି କୃଷ୍ଣମୂର୍ତ୍ତିଙ୍କ ଆଡ଼କୁ ଯିବାକୁ ବାହାରିଛନ୍ତି ହଠାତ୍ ହଲ ଭିତରେ ଏକ ଅଦ୍ଭୁତ ପରିବର୍ତ୍ତନ ଆସିବା ଭଳି ମନେ ହେଲା । ଯେ ଯାହା ସ୍ଥାନରେ ବସି ରହି ଅନୁଭବ କରିବାକୁ ଲାଗିଲେ ଯେ ସଭା ଗୃହ ଭିତରଟା ଏକ ପ୍ରଚଣ୍ଡ ଶକ୍ତିରେ ଭରି ଉଠିଛି । ତାଙ୍କର ମନେ ହେଲା ସତେ ଯେପରି ସେହି ତୀବ୍ର ଶକ୍ତି କୃଷ୍ଣମୂର୍ତ୍ତିଙ୍କ ଦେହରୁ ବାହାରି ହଲ୍‌ରେ ଫେଡିଯାଉଛି । ଭିତରେ ବସିଥିବା ପ୍ରତ୍ୟେକ ସଦସ୍ୟ ସେହି ଶକ୍ତିର ସ୍ପନ୍ଦନକୁ ଅତି ସ୍ପଷ୍ଟ ଭାବରେ ଅନୁଭବ କରୁଥିଲେ । କେହି କାହାରିକୁ କିଛି କହିବା ଅବସ୍ଥାରେ ନ ଥିଲେ । ସେ ଶକ୍ତିର ପ୍ରଭାବରେ ସାର୍ଟିଫିକେଟ ନେବାକୁ ଉଠିଥିବା ବ୍ୟକ୍ତି ଜଣକ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ — ଭାବ ବିହ୍ୱଳ ହୋଇ କୃଷ୍ଣମୂର୍ତ୍ତିଙ୍କ ପାଦତଳେ ଲମ୍ବିହୋଇ ପଡ଼ିଗଲେ । ତା'ପରେ ଜଣ ଜଣ ହୋଇ ପ୍ରତ୍ୟେକ ସଭ୍ୟ ମନ୍ତ୍ର ମୁଗ୍‌ଧ ଭଳି ନିଜ ସ୍ଥାନରୁ ଉଠି ଆସି କୃଷ୍ଣମୂର୍ତ୍ତିଙ୍କ ପାଦ ତଳେ ସାଷ୍ଟାଙ୍ଗ ପ୍ରଣାମ କରିବାକୁ ଆରମ୍ଭ କରିଦେଲେ । କେତେଜଣଙ୍କ ଆଖିରୁ ଧାର ଧାର ଲୁହ ଗଡ଼ି ଯାଉଥିଲା । ଯୁବାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଅନୁଭବ କରୁଥିଲେ ଯେ ସେହି ଅଫୁରନ୍ତ, ପ୍ରଚଣ୍ଡ ଶକ୍ତି ସାଙ୍ଗକୁ ଏକ ଦିବ୍ୟ ଆଶୀର୍ବାଦର ଧାରା ମଧ୍ୟ ସେମାନଙ୍କ ଉପରେ

ଝରିବାରେ ଲାଗିଛି । ସେମାନେ ଆଉ କିଛି ଚିନ୍ତା କରିବା ଅବସ୍ଥାରେ ନ ଥିଲେ । ଯେଉଁମାନଙ୍କର କୌଣସି ସାର୍ଟିଫିକେଟ ନେବାର ନ ଥିଲା, ସେମାନେ ବିକଳ ହୋଇ ନିଜର 'ଷ୍ଟାର' ବ୍ୟାଜ୍‌ଗୁଡ଼ିକୁ ଦେହରୁ ଉଖାରି ତେଲଙ୍ଗଙ୍କ ହାତକୁ ବଢ଼ାଇଦେଲେ ଯାହାଦ୍ୱାରା କି ସେମାନେ ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ହାତରୁ କିଛି ଗ୍ରହଣ କରିବାର ସୁଯୋଗ ପାଇବେ ।

ହସହସ ମୁହଁରେ କୃଷ୍ଣମୂର୍ତ୍ତି ନିଜ ସ୍ଥାନରେ ଛିଡ଼ା ହୋଇ ରହିଥାନ୍ତି । ମୁହଁରୁ ତାଙ୍କର ଗଭୀର ପ୍ରଶାନ୍ତି ଓ ଦୀପ୍ତି ଝରୁଥାଏ । ଜଣ ଜଣ କରି ପ୍ରଣାମ କରୁଥିବା ବ୍ୟକ୍ତିର ମୁଣ୍ଡ ଉପରେ ତାଙ୍କର ହାତଟି ଆଶୀର୍ବାଦ ଭଙ୍ଗୀରେ ଟେକା ହୋଇ ରହିଥାଏ । କାହାରି ତୁଣ୍ଡରେ କଥା ନ ଥାଏ । ଶେଷକୁ ନିତ୍ୟ ଆଉ ସମ୍ଭାଳି ହୋଇ ରହି ପାରିଲେ ନାହିଁ । ନିଜ ସ୍ଥାନରୁ ଉଠି ଆସି ସେ ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲେ । କିଛି ସମୟ ପରେ ସମସ୍ତେ ଯେ ଯାହା ସ୍ଥାନକୁ ଫେରି ଆସି ବସିଲେ । କୃଷ୍ଣମୂର୍ତ୍ତି କଣ କହିବେ ବୋଲି ସମସ୍ତେ ଆକୁଳ ଭାବରେ ଚାହିଁ ରହିଲେ । ହଲ୍ ଭିତରେ ଏକ ଅଖଣ୍ଡ ନୀରବତା ବିରାଜୁଥିଲା । ଆଶୀର୍ବାଦ ଭଙ୍ଗୀରେ ଡାହାଣ ହାତଟିକୁ ଟେକି କୃଷ୍ଣମୂର୍ତ୍ତି ଭାବଗମ୍ଭୀର ସ୍ୱରରେ କହିଉଠିଲେ—"ଜଗତକର୍ତ୍ତାଙ୍କ ଆଶୀର୍ବାଦ ଆପଣମାନଙ୍କ ଉପରେ ସଦାସର୍ବଦା ଏମିତି ଝରୁଥାଉ ।" ଧୀରେ ଧୀରେ ସେ ଅପୂର୍ବ ଶକ୍ତି ସଭାଗୃହରୁ ଅପସରି ଗଲା । ସମସ୍ତେ ପ୍ରକୃତିସ୍ଥ ହେଲେ । ସଭା ଶେଷ ହେଲା ।

ଏହି ଘଟଣା ପରଠାରୁ ପ୍ରତିବର୍ଷ ଡିସେମ୍ବର ୨୮ ତାରିଖଟି ଷ୍ଟାର ଅନୁଷ୍ଠାନର ଏକ ପବିତ୍ର ଦିବସ ରୂପେ ଗଣା ହେଲା । ସେଦିନର ଅଭୂତପୂର୍ବ ଘଟଣାଟି ଆନି ବେସାନ୍ତ ଓ ଲେଡ୍‌ବିଟରଙ୍କ ମନର ବିଶ୍ୱାସକୁ ଆହୁରି ଦୃଢ଼ୀଭୂତ କଲା ଯେ କୃଷ୍ଣମୂର୍ତ୍ତିଙ୍କ ଶରୀର ମହାମୁନି ମୈତ୍ରେୟଙ୍କ ଦ୍ୱାରା ଅନୁମୋଦିତ ହୋଇଛି ଓ ବର୍ତ୍ତମାନଠାରୁ ହିଁ ସେ ଉକ୍ତ ଶରୀର ଭିତରେ ନିଜର ପ୍ରଭାବ ପକାଇବାକୁ ଆରମ୍ଭ କଲେଣି ।

ଏହାର ଦୁଇଦିନ ପରେ, ଡିସେମ୍ବର ୩୦ ତାରିଖ ଦିନ ଅନ୍ୟ ଏକ ସଭାରେ କୃଷ୍ଣମୂର୍ତ୍ତିଙ୍କ ଉପସ୍ଥିତିରେ ପୁଣି ଥରେ ସେହି ଶକ୍ତି, ସେହି ଦିବ୍ୟ ପ୍ରକାଶନର ପୁନରାବୃତ୍ତି ଘଟିଲା । ସେ ଦିନର ସଭାରେ ଅନ୍ୟମାନଙ୍କ ଭିତରେ ହ୍ୟୁବର୍ଟ ଓ ତାଙ୍କର ମାଆ ଉପସ୍ଥିତ ଥିଲେ, ଆଉ ସେ ଦିହେଁ ମଧ୍ୟ ନିଜକୁ ସମ୍ଭାଳି ନ ପାରି କୃଷ୍ଣମୂର୍ତ୍ତିଙ୍କ ପାଦ ତଳେ ଅସି ଲୋଟି ପଡ଼ିଲେ ।

ବନାରସର ଏହି ଘଟଣାଟି ଖୁବ୍ ଶୀଘ୍ର ନାରାୟଣିୟାଙ୍କ କାନକୁ ଗଲା । କିନ୍ତୁ ଏଥିରେ ସେ ଖୁସି ହେବେ କଣ ଓଲଟି ଉତ୍ତ୍ୟକ୍ତ ହୋଇ ଉଠିଲେ । ସେ ଭାବିଲେ ଯେ ଏତେ ଅଳ୍ପ ବୟସରୁ ତାଙ୍କ ପୁଅକୁ ଯଦି ଏଭଳି ଭକ୍ତି ସମ୍ମାନ ଦିଆଯାଏ, ତାକୁ ନେଇ ଏଡ଼େ ଉଚ୍ଚ ଆଧ୍ୟାତ୍ମିକ ଆସନରେ ପ୍ରତିଷ୍ଠିତ କରାଯାଏ ତେବେ ଆମ ଦେଶର ଲୋକେ ତାଙ୍କୁ ଥଟ୍ଟା କରିବା ହିଁ ସାର ହେବ ସିନା ! ତା ଛଡ଼ା ସେ ଏକଥା ମଧ୍ୟ ଖବର ପାଇଲେ ଯେ ଆନି ବେସାନ୍ତଙ୍କ ସହିତ ହୋଇଥିବା ଚୁକ୍ତିର ଖିଲାପ କରାଯାଇ ତାଙ୍କ ଦୃଷ୍ଟି ଅନ୍ତରାଳରେ ଲେଡ଼ବିଟରର କୁଆଡ଼େ ପିଲାମାନଙ୍କ ସହିତ ଅବାଧରେ ମିଳାମିଶା କରୁଛନ୍ତି । ଏଭଳି ପରିପ୍ରେକ୍ଷୀରେ ନାରାୟଣିୟା କ୍ରୋଧାନ୍ୱିତ ହୋଇ ଶେଷକୁ ମକଦ୍ଦମା କରି ପୁଅ ଦିହିଁଙ୍କୁ ଆନି ବେସାନ୍ତଙ୍କ ତତ୍ତ୍ୱାବଧାନରୁ ଫେରାଇ ଆଣିବେ ବୋଲି ଧମକ ଦେଇ ଚିଠିଟିଏ ଲେଖିଲେ । ଚିଠି ପଢ଼ି ଆନି ବେସାନ୍ତ ବୁଝିଲେ ଯେ ଅବସ୍ଥା ସଙ୍ଗୀନ୍ । ପିଲା ଦିହେଁ ସେ ଯାଏଁ ନାବାଳକ—ଆଇନ ଅନୁସାରେ ତାଙ୍କ ଉପରେ ନାରାୟଣିୟାଙ୍କର ପୂର୍ଣ୍ଣ ଅଧିକାର ରହିଛି । ତେଣୁ ସେ କୌଣସିମତେ ନାରାୟଣିୟାଙ୍କୁ ପାଖକୁ ଡାକି ବୁଝାସୁଝା କରାଇ ପିଲା ଦିହିଁଙ୍କୁ ନିଜ ସାଥିରେ ଉଚ୍ଚ ଶିକ୍ଷା ପାଇଁ ଇଂଲଣ୍ଡ ନେଇ ଯିବାକୁ ରାଜି କରାଇଲେ । ଉଚ୍ଚ ଶିକ୍ଷାର ଲୋଭରେ ନାରାୟଣିୟା ତାଙ୍କ କଥାରେ ରାଜି ହୋଇଗଲେ ଏବଂ ସେ କହିବା ଅନୁଯାୟୀ ଆଇନଗତ କାଗଜରେ ଦସ୍ତଖତ ମଧ୍ୟ ଦେଇଦେଲେ । କିନ୍ତୁ ଗୋଟିଏ ବିଷୟରେ ସେ ଥିଲେ ନାଛୋଡ଼ବନ୍ଦା । ଲେଡ଼ବିଟରଙ୍କ ସହିତ ଯେପରି ପିଲାମାନଙ୍କର କୌଣସି ସମ୍ପର୍କ ନ ରହେ—ଏପରି କି ଚିଠିପତ୍ର ଦିଆନିଆରେ ମଧ୍ୟ ନୁହେଁ—

ସେତକ ନାରାୟଣିୟା ଅଡ଼ି ବସିଲେ । ଆନି ବେସାନ୍ତ ଆଉ ଅନ୍ୟ ଉପାୟ ନ ଦେଖି ତାଙ୍କ ସର୍ତ୍ତରେ 'ହଁ' ମାରିଲେ ।

ଏଣେ କୃଷ୍ଣମୂର୍ତ୍ତିଙ୍କର ଦ୍ୱିତୀୟ ଦୀକ୍ଷା-ଗ୍ରହଣର ସମୟ ପାଖେଇ ଆସୁଥାଏ । ଲେଡ଼ବିଟର ସେଇ ଉପଲକ୍ଷେ ତାଙ୍କୁ ପ୍ରସ୍ତୁତ କରାଇବାକୁ କିଛି ମାସ ଏକାନ୍ତରେ ରଖି ଶିକ୍ଷା ଦେବାକୁ ଉଟକାମଣ୍ଡଠାରେ ଗୋଟିଏ ଜାଗା ବାଛିଥିଲେ । ଏବେ ନାରାୟଣିୟାଙ୍କ ଏକସିଙ୍ଗିଆ ମତିଗତି ଦେଖି ସେ ବୁଝିଲେ ଯେ ଭାରତ ଭିତରେ କୌଣସି ସ୍ଥାନରେ କୃଷ୍ଣମୂର୍ତ୍ତିଙ୍କୁ ରଖିବା ତାଙ୍କ ପକ୍ଷେ ନିରାପଦ ହେବ ନାହିଁ । ତେଣୁ ଭାରତ ବାହାରେ ସେଭଳି ଏକ ସ୍ଥାନର ସନ୍ଧାନ କରିବାକୁ ସେ ଆଗଭୁରା ଇଉରୋପ ଚାଲିଗଲେ । ସେ ଯିବା ପରେ ପରେ ନାରାୟଣିୟା କିଛି ଦିନ ଲାଗି ଆଡ଼ୟାରରୁ ବାହାରକୁ ଯାଇଥିବା ଅବସ୍ଥାରେ ଦିନେ କାହାକୁ କିଛି ନ ଜଣାଇ ଆନି ବେସାନ୍ତ ଚୁପ୍‌ଚାପ୍ ପିଲା ଦୁଇଟିଙ୍କୁ ଧରି ବମ୍ବେ ଚାଲି ଆସିଲେ ଓ ଅଳ୍ପଦିନ ଭିତରେ ସେଠାରୁ ଜାହାଜ ଧରି ଇଂଲଣ୍ଡ ଯାତ୍ରା କଲେ । ସେ ଜାଣିଥିଲେ ଯେ ଏଣିକି ନାରାୟଣିୟା ଆଡ଼ୟାରରେ ରହିଲେ କୃଷ୍ଣମୂର୍ତ୍ତିଙ୍କ ବିଷୟରେ ବରାବର ଖବର ରଖିବେ ଓ ମଝିରେ ମଝିରେ କିଛି ନା କିଛି ଆଳ କାଢ଼ି ତାଙ୍କ କାମରେ ଗଣ୍ଡଗୋଳ କରିବେ । ତେଣୁ ସେ ଆଶଙ୍କାକୁ ଏଡ଼ାଇବାକୁ ଯାଇ ସେହି ଜାହାଜରୁ ହିଁ ଚିଠି ଲେଖି ତାଙ୍କୁ ତତ୍‌କ୍ଷଣାତ୍ ଆଡ଼ୟାର ଘର ଛାଡ଼ି ଚାଲି ଯିବାକୁ ଆଦେଶ ଦେଲେ । ତାହା ସହିତ ସେ ଏକଥା ମଧ୍ୟ ଜଣାଇଦେଲେ ଯେ ପିଲା ଦିହେଁ ତାଙ୍କର ପାଠ ପଢ଼ା ପୂରା ଶେଷ କରିବା ପର୍ଯ୍ୟନ୍ତ ଇଂଲଣ୍ଡରେ ହିଁ ରହିବେ—ଭାରତକୁ ଫେରିବେ ନାହିଁ ।

## କଚେରିରେ ଫଇସଲା

ଇଟାଲିର ସିସିଲି ଦ୍ୱୀପରେ ଟାଓରମିନା ନାମକ ଏକ ଛୋଟ ସହର । ଲେଡ଼ବିଟର ସେହି ସ୍ଥାନଟିକୁ ଉପଯୁକ୍ତ ମନେକରି କୃଷ୍ଣମୂର୍ତ୍ତିଙ୍କୁ

ସେଠାକୁ ଆଣିବା ଲାଗି ଆନି ବେସାନ୍ତଙ୍କ ପାଖକୁ ଇଂଲଣ୍ଡ ଖବର ପଠାଇଲେ । ଖବର ପାଇ ଆନି ବେସାନ୍ତ ଆଉ ବିଳମ୍ବ ନ କରି କ୍ରୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ଧରି ଟାଓରମିନା ଅଭିମୁଖେ ବାହାରି ପଡ଼ିଲେ । ଦ୍ୱିତୀୟ ଦୀକ୍ଷା-ଗ୍ରହଣର ପ୍ରସ୍ତୁତି ଲାଗି କ୍ରୃଷ୍ଣମୂର୍ତ୍ତିଙ୍କୁ ସେଠାରେ ଲେଡ଼ବିଟରଙ୍କ ସହିତ ପୂରା ଚାରି ମାସ କଟାଇବାକୁ ପଡ଼ିଲା । ଏଣେ ଭାରତରେ ଆନି ବେସାନ୍ତଙ୍କ ଚିଠି ପାଇ ନାରାୟଣିୟାଙ୍କ ମୁଣ୍ଡକୁ ରାଗ ଚଢ଼ିଗଲା । ତା ଛଡ଼ା ଟାଓରମିନାଠାରେ ଲେଡ଼ବିଟରଙ୍କ ସହିତ କ୍ରୃଷ୍ଣମୂର୍ତ୍ତି ଏକାଠି ରହୁଛନ୍ତି ବୋଲି ଖବର ମଧ୍ୟ କୋଉବାଟେ ଆସି ତାଙ୍କ କାନରେ ପଡ଼ିଲା । ତେଣୁ ତାଙ୍କର ସବୁତକ ରାଗ ଯାଇ ଠୁଳ ହେଲା ଆନି ବେସାନ୍ତଙ୍କ ଉପରେ । ସେ ମନେ ମନେ ପଣ କଲେ— ଯେ କୌଣସି ପ୍ରକାରେ ହେଉ ପଛେ, କୋର୍ଟ କଚରିର ଆଶ୍ରୟ ନେଇ, ପୁଅମାନଙ୍କୁ ଆନି ବେସାନ୍ତଙ୍କଠାରୁ ଛଡ଼ାଇ ଆଣିବେ···ତାଙ୍କୁ ପାନେ ଦେବେ ! ଆଉ ସତକୁ ସତ ନିଜର ନିଷ୍ପତ୍ତି ଆନି ବେସାନ୍ତଙ୍କୁ ଚିଠିରେ ଜଣାଇ ଦେଇ ଏପଟେ ସେ ମାନ୍ଦ୍ରାସ ହାଇକୋର୍ଟରେ ତାଙ୍କ ନାମରେ ମକଦ୍ଦମା ଦାଏର କଲେ । ଏ ଚିଠି ପାଇ ଆନି ବେସାନ୍ତଙ୍କର ଭୟ ହେଲା କାଳେ କ୍ରୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ଭାରତ ଆଣିଲେ ନାରାୟଣିୟା ସେମାନଙ୍କୁ ତାଙ୍କଠାରୁ ଝୁଣ୍ଟାଇ ନେବେ । ତେଣୁ ଟାଓରମିନାରୁ ଫେରିବା ପରେ ସେ ପିଲା ଦୁହିଁଙ୍କୁ ନିଜ ସାଥିରେ ଭାରତ ନ ଆଣି ଇଂଲଣ୍ଡରେ ଜଣେ ବିଶ୍ୱସ୍ତ ବନ୍ଧୁଙ୍କ ଘରେ ଲୁଚାଇ ରଖିଲେ । ସେମାନଙ୍କର ଏହି ଅଜ୍ଞାତବାସ କଥା ଲେଡ଼ବିଟର, ଲେଡ଼ି ଏମିଲି, ଅରୁଣ୍ଡେଲ ପ୍ରଭୃତି କେତେକ ବନ୍ଧୁଙ୍କୁ ଛାଡ଼ି ଅନ୍ୟ କାହାରିକୁ ଜଣାଯାଇ ନ ଥିଲା ।

କ୍ରୃଷ୍ଣମୂର୍ତ୍ତିଙ୍କୁ ନେଇ ଆନି ବେସାନ୍ତ ଓ ନାରାୟଣିୟାଙ୍କ ଭିତରେ ଏ ପ୍ରକାର ଟଣା ଓଟରା ଓ କଳି କଜିଆ ଚାଲିଥିଲାବେଳେ କ୍ରୃଷ୍ଣମୂର୍ତ୍ତିଙ୍କର ସବୁତକ ଦରଦ ଓ ସହାନୁଭୂତି ଆନି ବେସାନ୍ତଙ୍କ ଉପରେ ଅଜାଡ଼ି ହୋଇ ପଡ଼ୁଥିଲା । ଆନି ବେସାନ୍ତଙ୍କ ନାମରେ ହୋଇଥିବା କେସ୍ ଓ ବିଭିନ୍ନ ଅପପ୍ରଚାରରେ ସେ ଭୀଷଣ ବ୍ୟଥିତ ହୋଇ ପଡ଼ୁଥିଲେ । ନିଜର ମନକଥା ଖୋଲି ସେତିକିବେଳେ ଇଂଲଣ୍ଡରୁ ଆନି ବେସାନ୍ତଙ୍କ ପାଖକୁ

ଯୋଉ ଚିଠିଟି ସେ ଦେଇଥିଲେ ସେଥିରେ ମାଆ ପ୍ରତି ପୁଅର ଅମାପ ଦରଦ ବଡ଼ ହୃଦୟସ୍ପର୍ଶୀ ହୋଇ ଫୁଟି ଉଠିଥିଲା । ସେ ଲେଖିଥିଲେ—

୫ ଜାନୁଆରି, ୧୯୧୩

ଅତି ଆପଣାର, ଅତି ଆଦରର ମାଆ ମୋର,

ମୋର ଅକ୍ଷର ଏବେ ଗୋଲ ଗୋଲ, ସୁନ୍ଦର ହୋଇ ଆସିଲାଣି ବୋଲି ତମେ ମତେ ଗତ ଚିଠିରେ ଯୋଉ ଲେଖିଛ ତାକୁ ପଢ଼ି ମତେ କି ଯେ ଆନନ୍ଦ ଲାଗିଲା କଣ କହିବି ! ତମେ ଦେଖିବ, ଏଣିକି ମୁଁ ଆହୁରି ହୁସିଆର ହୋଇ ଆହୁରି ସୁନ୍ଦର କରି ଚିଠି ଲେଖିବି ।

ସତରେ ମାଆ, ତମେ ଏବେ କି ଭୟଙ୍କର ଦୁର୍ଦ୍ଦିନ ଭିତର ଦେଇ ଯାଉଛ । ମୋର ମନ ଡାକୁଛି ଏତିକବେଳେ ମୁଁ ହୋଇଲେ ତମ ପାଖରେ ରହି ତମ ପାଇଁ କିଛି କରିପାରନ୍ତି ! ଏ ବୟସରେ ବି ତମକୁ ଯେ ଏମିତି କଦର୍ଯ୍ୟ ଲୋକମାନଙ୍କ ସହିତ ଯୁଝିବାକୁ ପଡ଼ୁଛି ଏଥିପାଇଁ ତମକୁ କେତେ କଷ୍ଟ ଲାଗୁ ନ ଥିବ କହିଲ ? ଏସବୁ କେମିତି ଶୀଘ୍ର ସରି ଯାଆନ୍ତା କି ହୋଇଲେ ! ମୁଁ ଯେ ତମକୁ ପ୍ରାଣ ଦେଇ ଭଲ ପାଏ, କେତେ ଶ୍ରଦ୍ଧା ଭକ୍ତି କରେ—ଠିକ୍ ମୋ ନିଜର ମାଆ ପରି ମନେ କରେ, ଏକଥା ତ ତମେ ଭଲ କରି ଜାଣ । ହୋଇପାରେ, ଆଗକୁ ତମର ପଞ୍ଚମ ଦୀକ୍ଷା ଲାଭ କରିବାକୁ ଅଛି ବୋଲି ତମକୁ ଏଭଳି କଠିନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ୁଛି । ତମକୁ ଏସବୁ ଖୁବ୍ ବାଧୁଥିବ ନିଶ୍ଚୟ । କିନ୍ତୁ ମାଆ ଗୋଟିଏ କଥା ଜାଣିବ—ଏ ସାରା ପୃଥିବୀଟା ତମ ବିରୁଦ୍ଧରେ ଉଠିଲେ ସୁଦ୍ଧା ତମର ଏଇ ପୁଅ ତାର ଅତି ଆଦରର ଅତି ଆପଣାର ମାଆକୁ କଦାପି···କଦାପି ପାଖରୁ ଦୂରେଇ ଦେବ ନାହିଁ ।

ଶେଷରେ ମୋର ଅନେକ ଅପାସୋରା ସ୍ମୃତି ସହ ଏତିକିରେ ରହୁଛି ।

ତମର ସେଇ ଆଦରର
ସଦା ଅନୁରକ୍ତ ପୁଅ
କ୍ରିଷ୍ଣ

୧୯୧୩ ମସିହା ମାର୍ଚ୍ଚ ୨୦ ତାରିଖରେ ମାଡ୍ରାସ ହାଇକୋର୍ଟରେ ନାରାୟଣିୟା କରିଥିବା କେସ୍‌ର ପ୍ରଥମ ତାରିଖ ପଡ଼ିଲା । ତାଙ୍କର ଏହି କେସ୍ ଯେ ବ୍ୟକ୍ତିଗତ ଭାବରେ କ୍ରିଷ୍ଣମୂର୍ତ୍ତି ଓ ନିତ୍ୟଙ୍କ ଅଭିଭାବକତ୍ୱକୁ ନେଇ ଆନି ବେସାନ୍ତଙ୍କ ବିରୁଦ୍ଧରେ ଥିଲା ତା ନୁହେଁ । ଏଥିରେ ସେ ଲେଡ୍‌ବିଟରଙ୍କ ଚରିତ୍ରଗତ ଅପବାଦ କଥା ଉଠାଇ ସାରା ଥିଓସଫିକାଲ ସୋସାଇଟିର ସ୍ଥିତି ଉପରେ ଆଞ୍ଚ ଆସିବା ଭଳି କେତେକ ଗୁରୁତର ଅଭିଯୋଗ ମଧ୍ୟ କରିଥିଲେ । ସେ କରିଥିବା ଅଭିଯୋଗ ମଧ୍ୟରୁ ଗୋଟିଏ ବଡ଼ ଅଭିଯୋଗ ଥିଲା ଯେ କ୍ରିଷ୍ଣମୂର୍ତ୍ତିଙ୍କୁ ଏଇ ପିଲା ବୟସରୁ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର ଅବତାର ଭାବରେ ପରିଚିତ କରାଇବା ଦ୍ୱାରା ତାଙ୍କୁ ଭବିଷ୍ୟତରେ ଲୋକ ସମାଜରେ ହାସ୍ୟାସ୍ପଦ ହେବାକୁ ପଡ଼ିବ । ସେ ଆହୁରି ମଧ୍ୟ ଯୁକ୍ତି କରିଥିଲେ ଯେ ଆନି ବେସାନ୍ତ ତାଙ୍କର ଏହି ନିରୀହ ବୋକା ପୁଅଟିକୁ ନେଇ ତା'ଠାରେ ଆଧ୍ୟାତ୍ମିକ ପ୍ରତିଭା ଥିବା କଥା ମିଛଟାକୁ ପ୍ରଚାର କରି ତା'ର ଜୀବନକୁ ନଷ୍ଟ କରିବାରେ ଲାଗିଛନ୍ତି । ପ୍ରକୃତରେ ନିଜ ପୁଅର ବିଦ୍ୟା ବୁଦ୍ଧି ଓ ପାରଦର୍ଶିତା ଉପରେ ନାରାୟଣିୟାଙ୍କର ଏତେ କମ୍ ଭରସା ଥିଲା ଯେ 'ଆଟ୍ ଦ ଫିଟ୍ ଅଫ୍ ଦ ମାଷ୍ଟର୍' ପୁସ୍ତିକାଟିକୁ କ୍ରିଷ୍ଣମୂର୍ତ୍ତି ନିଜେ ଲେଖିଛନ୍ତି ବୋଲି ନାରାୟଣିୟା ଶେଷ ପର୍ଯ୍ୟନ୍ତ ବିଶ୍ୱାସ କରିପାରି ନ ଥିଲେ ।

ଆବଶ୍ୟକୀୟ ଅନୁସନ୍ଧାନ ଓ ସାକ୍ଷ୍ୟ ଗ୍ରହଣ ପରେ ମାଡ୍ରାସ ହାଇକୋର୍ଟ ରାୟ ଦେଲା ଯେ ଆନି ବେସାନ୍ତ ଓ ଲେଡ୍‌ବିଟରଙ୍କ ବିରୁଦ୍ଧରେ ନାରାୟଣିୟାଙ୍କର ସମସ୍ତ ଅଭିଯୋଗ ମିଥ୍ୟା ଓ ମନଗଢ଼ା । ପୁଅ ଦୁହିଁଙ୍କୁ ନିଜ ପାଖକୁ ଫେରାଇ ଆଣିବା ଲାଗି ଏହା ତାଙ୍କର ଏକ ଚାଲ୍ । କିନ୍ତୁ ତାହା ସଙ୍ଗେ ସଙ୍ଗେ ହାଇକୋର୍ଟ ଏ କଥା ମଧ୍ୟ ସ୍ପଷ୍ଟ କରିଦେଲା ଯେ ପିତା ହିସାବରେ ନାରାୟଣିୟାଙ୍କର ପୁଅମାନଙ୍କ ଉପରେ ପୂର୍ଣ୍ଣ ଅଧିକାର ରହିଛି ଓ ସେ ଇଚ୍ଛା କଲେ ସେମାନଙ୍କୁ ନିଜ ପାଖକୁ ଫେରାଇ ନେଇ ପାରିବେ । ରାୟର ଏହି ଶେଷ ଅଂଶଟି ଆନି ବେସାନ୍ତଙ୍କ ମସ୍ତକରେ ସତେ ଅବା ବଜ୍ରପାତ କଲା । କୌଣସି ପରିସ୍ଥିତିରେ ସୁଦ୍ଧା ସେ କ୍ରିଷ୍ଣମୂର୍ତ୍ତିଙ୍କୁ ଫେରାଇଦେବାକୁ ପ୍ରସ୍ତୁତ ନ ଥିଲେ । ତେଣୁ

ବାଧ୍ୟ ହୋଇ ସେ ମାଡ୍ରାସ ରାୟକୁ ବିରୋଧ କରି ଲଣ୍ଡନ ଜୁଡ଼ିସିଆଲ କମିଟିର ପ୍ରିଭି କାଉନସିଲ ନିକଟରେ ଏକ ଅପିଲ କଲେ । ଏହା ହେଉଛି ୧୯୧୩ ଡିସେମ୍ବର ମାସର କଥା । ସେତେବେଳକୁ କ୍ରିଷ୍ଣମୂର୍ତ୍ତିଙ୍କ ବୟସ ଅଠର ପାରି ହୋଇଗଲାଣି ଓ ସେ ସାବାଳକ ହେଲେଣି । ତେଣୁ ତାଙ୍କର ନିଜସ୍ୱ ମତ ବର୍ତ୍ତମାନ କୋର୍ଟ ବିଚାରର ପରିସରଭୁକ୍ତ । ପରିଶେଷରେ ଉଭୟ ପକ୍ଷର ଜବାବ-ସୁଆଲ ଓ କ୍ରିଷ୍ଣମୂର୍ତ୍ତିଙ୍କର ମତାମତ ଗ୍ରହଣ ପରେ ୧୯୧୪ ଜାନୁଆରି ୨୭ ତାରିଖ ଦିନ ପ୍ରିଭି କାଉନସିଲ ତା'ର ରାୟ ଜଣାଇଲା ଯେ କ୍ରିଷ୍ଣମୂର୍ତ୍ତି ଏଣିକି ନିଜ ଇଚ୍ଛା ଅନୁଯାୟୀ ଆନିବେସାନ୍ତଙ୍କ ସହିତ ଇଂଲଣ୍ଡରେ ରହିପାରିବେ ଏବଂ ତାଙ୍କର ଇଚ୍ଛା ବିରୁଦ୍ଧରେ ନାରାୟଣିୟା ତାଙ୍କୁ ନିଜ ପାଖକୁ ନେଇ ଯାଇ ପାରିବେ ନାହିଁ । ପ୍ରିଭି କାଉନସିଲର ଏହି ରାୟ ଦ୍ୱାରା ମାଡ୍ରାସ କୋର୍ଟର ପୂର୍ବୋକ୍ତ ରାୟ ରଦ୍ଦ ହୋଇଗଲା ଏବଂ ପୁଅକୁ ଫେରି ପାଇବାର ସମସ୍ତ ଆଶା ନାରାୟଣିୟାଙ୍କର ସେଇଠି ଅନ୍ତ ଲଭିଲା ।

ନାରାୟଣିୟାଙ୍କ ମକଦ୍ଦମାରୁ ମୁକ୍ତ ହୋଇ ଆନି ବେସାନ୍ତ ଓ ଲେଡ଼ବିଟର ଆଶ୍ୱସ୍ତ ହେଲେ । ମକଦ୍ଦମା ଚାଲିଥିବା ବେଳେ ସେମାନେ କ୍ରିଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ କିଛି ମାସ ପାଇଁ ଫ୍ରାନ୍‌ସ ଉପକୂଳବର୍ତ୍ତୀ ଟାରେଞ୍ଜିଭିଲ ନାମକ ଗୋଟିଏ ସ୍ଥାନକୁ ପଠାଇ ଦେଇଥିଲେ । ସେଠାରେ ତାଙ୍କ କଥା ଦେଖାଶୁଣା କରିବା ପାଇଁ ସାଙ୍ଗରେ ଯାଇଥିଲେ ଲେଡ଼ବିଟରଙ୍କର ଜଣେ ଅନୁରକ୍ତ ଶିଷ୍ୟ ତଥା ଥିଓସଫିଷ୍ଟ—ଶ୍ରୀ ଜିନରାଜ ଦାସ । ସେ ଥିଲେ ଜଣେ ସିଂହଳୀ ଭଦ୍ରବ୍ୟକ୍ତି । ଲେଡ଼ବିଟରଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ଜୀବନର ଶେଷ ପର୍ଯ୍ୟନ୍ତ ଥିଓସଫିର କାର୍ଯ୍ୟରେ ନିୟୋଜିତ ରହିଥିଲେ । ଟାରେଞ୍ଜିଭିଲ ଠାରେ ଥିବା ସମୟରେ କ୍ରିଷ୍ଣମୂର୍ତ୍ତି ଷ୍ଟାର ଅନୁଷ୍ଠାନର ପତ୍ରିକା 'ହେରାଲ୍ଡ଼ ଅଫ୍ ଦି ଷ୍ଟାର୍' ପାଇଁ ନିୟମିତ ସମ୍ପାଦକୀୟ ଲେଖୁଥିଲେ । ସେତେବେଳକୁ କୁମାରୀ ଡଡ୍ ନାମରେ ଜଣେ ଅତି ଧନୀ ଆମେରିକୀୟ ମହିଳା ଏହି ପତ୍ରିକା ପାଇଁ ସମସ୍ତ ପ୍ରକାର ଆର୍ଥିକ ସହାୟତା ଦେଉଥିଲେ । ପ୍ରଚୁର ସମ୍ପତ୍ତିର ଅଧିକାରିଣୀ ଏହି ମହିଳା ଜଣକ ଆଣ୍ଟ୍ରୁ ଗର୍ଣ୍ଣି ବାଟରେ ପଙ୍ଗୁ

ହୋଇ ପଡ଼ିଥିଲେ । କିନ୍ତୁ ଘଟଣାକ୍ରମେ ଶ୍ରୀମତୀ ବେସାନ୍ତଙ୍କର ସଂସ୍ପର୍ଶରେ ଆସି ସେ ଯେ କେବଳ ଥିଓସଫିକାଲ ସୋସାଇଟିର କାର୍ଯ୍ୟ ଲାଗି ନିୟମିତ ଅର୍ଥଦାନ କରି ଆସୁଥିଲେ ସେତିକି ନୁହେଁ, କୃଷ୍ଣମୂର୍ତ୍ତିଙ୍କର ନିଜସ୍ୱ ବ୍ୟବହାର ଓ ରକ୍ଷଣାବେକ୍ଷଣ ଲାଗି ବ୍ୟାଙ୍କରୁ ବାର୍ଷିକ ୫୦୦ ପାଉଣ୍ଡ ପାଇବେ ବୋଲି ବ୍ୟବସ୍ଥା ମଧ୍ୟ କରିଯାଇଥିଲେ । ଏହି ଅର୍ଥ କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଏକ ବଡ଼ ସହାୟ ହୋଇ ଶେଷ ପର୍ଯ୍ୟନ୍ତ ରହି ଯାଇଥିଲା । ଏହା ଛଡ଼ା କୃଷ୍ଣମୂର୍ତ୍ତିଙ୍କ ପାଇଁ ସେ ଗୋଟିଏ ମଟର ଗାଡ଼ି ମଧ୍ୟ କିଣାଇ ଦେଇଥିଲେ ଓ ଲଣ୍ଡନରେ ଥିବା ନିଜର ଘର ଖଣ୍ଡିକ ଦୁଇ ଭାଇଙ୍କ ବ୍ୟବହାର ପାଇଁ ରଖି ଯାଇଥିଲେ ।

କୃଷ୍ଣମୂର୍ତ୍ତି ଘରେଞ୍ଜିଭିଲାଠାରେ ଥିବାବେଳେ ଲେଡ଼ବିଟର ଦିନେ ଏକ ସୂତ୍ରରୁ ଖବର ପାଇଲେ ଯେ ନାରାୟଣିୟା ମକଦ୍ଦମାରେ ବିଫଳ ହୋଇ ଏବେ ପୁଅକୁ ତାଙ୍କର ଇଉରୋପରୁ ଅପହରଣ କରି ଭାରତ ନେଇ ଆସିବାର ଯୋଗାଡ଼ରେ ଅଛନ୍ତି । ଏ ଖବର ପାଇ ସେ ବ୍ୟସ୍ତହୋଇ କୃଷ୍ଣମୂର୍ତ୍ତି ଓ ନିତ୍ୟଙ୍କୁ ପୁଣିଥରେ ଟାଓରମିନା ପଠାଇ ଦେଲେ । ସେହିଠାରେ ଦିନକର ଘଟଣା । ସନ୍ଧ୍ୟାବେଳେ ବନ୍ଧୁମାନଙ୍କ ଗହଣରେ କୃଷ୍ଣମୂର୍ତ୍ତି ହୋଟେଲର ବଖରା ଭିତରେ ବସିଥିଲେ । ସାମନାରେ ତାଙ୍କର ଗ୍ରେଟ ଟେବୁଲଟି ଉପରେ ଗୌତମ ବୁଦ୍ଧଙ୍କର ଗୋଟିଏ ଛବି ଥୁଆ ହୋଇଥିଲା । ସମସ୍ତଙ୍କ ଅଲକ୍ଷରେ କୃଷ୍ଣମୂର୍ତ୍ତି ଅନେକ ସମୟ ଧରି ସେଇ ଛବିଟିକୁ ଏକ ଲୟରେ ଚାହିଁ ରହିଥିଲେ । ଏମିତି ଅନେକ ବେଳ କଟିବା ପରେ ହଠାତ୍ ଛବିଟିରୁ ମୁହଁ ଉଠାଇ କିଛି ଆବିଷ୍କାର କରିବା ଭଙ୍ଗୀରେ ସେ କହି ଉଠିଲେ, "ଜାଣିଛ, ଭଗବାନ ବୁଦ୍ଧ ଏବେ ଏଇଠାରେ ହିଁ ଅଛନ୍ତି ।" ଏତିକି କହୁ କହୁ ତାଙ୍କର ମୁଖମଣ୍ଡଳ କେମିତି ଅଦ୍ଭୁତ ଭାବରେ ବଦଳିବାରେ ଲାଗିଲା । ଚଉକିରୁ ଉଠିପଡ଼ି ସେ ଝଡ଼ ବେଗରେ ବଖରା ବାହାରକୁ ଛୁଟିଗଲେ । ଅନ୍ୟମାନେ କିଛି ବୁଝି ନ ପାରି ଯେ ଯାହା ସ୍ଥାନରେ ସେମିତି ବସି ରହିଲେ । କିଛି ସମୟ ପରେ ସେ ପୁଣି ବଖରା ଭିତରକୁ ଫେରିଲେ ଓ କହିଲେ ଯେ ସେ ପରିଷ୍କାର ଦେଖିଛନ୍ତି ଭଗବାନ ବୁଦ୍ଧ ସେଇଠି ତାଙ୍କର

ପାଖରେ ଆସି ଛିଡ଼ା ହୋଇଥିଲେ । କୃଷ୍ଣମୂର୍ତ୍ତିଙ୍କ ଆଖିର ସେ ବିଚିତ୍ର ଗୃହ୍ଣାଣୀକୁ ଦେଖି ଅନ୍ୟମାନେ ସ୍ପଷ୍ଟ ବୁଝି ପାରିଲେ ଯେ ସେ ନିଶ୍ଚିତ ରୂପେ କିଛି ଗୋଟାଏ ଅପାର୍ଥିବ, ଦିବ୍ୟ ଅନୁଭୂତି ଲାଭ କରିଛନ୍ତି । ସେଦିନର ଏହି ଘଟଣାଟି ସମସ୍ତଙ୍କ ମନରେ ଏକ ଗଭୀର କୌତୂହଳ ସୃଷ୍ଟି କରିଥିଲା । ସେମାନେ ଯଦିଓ ଜାଣିଥିଲେ ଯେ କୃଷ୍ଣମୂର୍ତ୍ତି ମୂଳରୁ ଭଗବାନ ବୁଦ୍ଧଙ୍କ ପ୍ରତି ଆକୃଷ୍ଟ ତଥାପି ଏଭଳି ଭାବରେ ଅନୁନ୍ଦକ ତାଙ୍କର ଉପସ୍ଥିତିକୁ ସେଠାରେ ଅନୁଭବ କରିବେ ବୋଲି କେହି କେବେ କଳ୍ପନା କରି ନ ଥିଲେ ।

## ନିର୍ବିକାର ସେବା ସାଥିକୁ ସୌଖୀନତା

୧୯୧୪ ମସିହା ପୃଥିବୀ ଇତିହାସରେ ଏକ ଅବିସ୍ମରଣୀୟ ବର୍ଷ । ସେହି ବର୍ଷ ଜର୍ମାନୀର କାଇଜର ନିଜର ଜାତ୍ୟାଭିମାନକୁ ସାରା ଜଗତରେ ଜାହିର କରିବାକୁ ଦିଗ୍‌ବିଜୟର ସ୍ୱପ୍ନ ନେଇ ମହାସମରର ଡାକରା ଦେଲେ । ଅଷ୍ଟ୍ରିୟାରୁ ଆରମ୍ଭ କରି ସାରା ଇଉରୋପ ଖୁବ୍ ଶୀଘ୍ର ଏହି ଯୁଦ୍ଧରେ ସାମିଲ ହୋଇଗଲା । ଆଉ ସେଥି ସହିତ ଇଉରୋପ ମହାଦେଶର ସମଗ୍ର ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନରେ ମଧ୍ୟ ଘୋର ଆଲୋଡ଼ନ ସୃଷ୍ଟି ହେଲା ।

କୃଷ୍ଣମୂର୍ତ୍ତି ସେତେବେଳକୁ ଲଣ୍ଡନଠାରୁ ଅଳ୍ପ ଦୂରରେ ବୁଦେ ନାମକ ଏକ ସହରରେ ରହି ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଆନି ବେସାନ୍ତଙ୍କର ଧାରଣା ଥିଲା ଯେ କୃଷ୍ଣମୂର୍ତ୍ତିଙ୍କୁ ଭବିଷ୍ୟତରେ ଜଣେ ଉତ୍ତମ ବକ୍ତା ରୂପେ ପରିଚିତ କରାଇବାକୁ ହେଲେ ଅକ୍‌ସଫୋର୍ଡ଼ କିମ୍ବା ସେଭଳି କୌଣସି ପ୍ରଖ୍ୟାତ ଅନୁଷ୍ଠାନରୁ ଶିକ୍ଷା ଲାଭ କରିବା ତାଙ୍କ ପକ୍ଷରେ ନିହାତି ଆବଶ୍ୟକ । ସେଥିପାଇଁ ସେ ୧୯୧୨ ମସିହାରେ ଇଂଲଣ୍ଡ ଆସିଥିବା ସମୟରେ ଏହି

ଦୁଇ ଭାଇଙ୍କ ଲାଗି ଇଂଲଣ୍ଡର ପ୍ରସିଦ୍ଧ 'ନିଉ କଲେଜ'ରେ ନାମ ଲେଖାଇବାକୁ ଦୁଇଟି ଦରଖାସ୍ତ ପକାଇଥିଲେ । ମାତ୍ର ସମସ୍ୟା କ୍ରମେ କଲେଜର ଅଧକ୍ଷ ଯେତେବେଳେ ଜାଣିବାକୁ ପାଇଲେ ଯେ ସେହି ପିଲା ଦୁଇଟିଙ୍କୁ ନେଇ କଚେରୀରେ ମକଦ୍ଦମା ହୋଇଥିଲା ଓ ଅନେକ ଗଣ୍ଡଗୋଳ ଲାଗିଥିଲା, ସେତେବେଳେ ସେ ତାଙ୍କର ଦରଖାସ୍ତ ଦୁଇଟିକୁ ନାକଚ କରି ଦେଇଥିଲେ । ଆନି ବେସାନ୍ତଙ୍କ ଅନୁରୋଧକୁ ଭ୍ରୂକ୍ଷେପ ନ କରି ସେ ରୋକଠୋକ କହି ଦେଇଥିଲେ ଯେ ଜଣେ 'ଅଣ-ସାହେବ ଜଗତଗୁରୁଙ୍କ' ପାଇଁ ତାଙ୍କ କଲେଜରେ କୌଣସି ସ୍ଥାନ ନାହିଁ । ତେଣୁ କଲେଜ ଆଶା ଛାଡ଼ି ଆନି ବେସାନ୍ତ କୃଷ୍ଣମୂର୍ତ୍ତିଙ୍କୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇ ସିଧା ସଳଖ ଅକ୍ସଫୋର୍ଡରେ ଭର୍ତ୍ତି କରାଇବାକୁ ଲାଗି ପଡ଼ିଥିଲେ । ତା ସାଙ୍ଗକୁ ପୁଣି ତାଙ୍କ ନିର୍ଦ୍ଦେଶରେ କୃଷ୍ଣମୂର୍ତ୍ତିଙ୍କୁ ସଂସ୍କୃତ ଶିକ୍ଷା ଦେବା ପାଇଁ ଶିବ ରାଓ ନାମକ ଜଣେ ସଂସ୍କୃତ ବିଶାରଦ ଭାରତରୁ ଆସି ବୃଟେନରେ ପହଞ୍ଚିଥାନ୍ତି । କିନ୍ତୁ ଏତେ ସବୁ ଭିତରେ କୃଷ୍ଣମୂର୍ତ୍ତିଙ୍କ ମନ ପଢ଼ାପଢ଼ିରେ ଆଦୌ ଲାଗୁ ନ ଥାଏ । ଯୋଗକୁ ପୁଣି ସେତେବେଳକୁ ଆନି ବେସାନ୍ତଙ୍କ କୃପାରୁ ତାଙ୍କ ପାଇଁ ମୋଟର ସାଇକଲଟିଏ କିଣାଇ ଦିଆ ଯାଇଥାଏ । କଳ କବ୍‌ଜା, ଗାଡ଼ି ମଟରରେ ତ ତାଙ୍କର ପିଲାଟି ଦିନରୁ ଶ୍ରଦ୍ଧା ଥିଲା । ତେଣୁ ଏବେ ପାଠ ପଢ଼ିବେ କଣ ତାଙ୍କର ଅଧିକାଂଶ ସମୟ ସେଇ ମୋଟର ସାଇକେଲକୁ ଧୂଆପୋଛା କରିବା, ତାର ଇଞ୍ଜିନ୍‌କୁ ଖୋଲି ଟୁଣ୍‌ଟାଣ୍‌ କରିବାରେ ହିଁ କଟୁଥିଲା । ତାହାଛଡ଼ା ମନରେ ତାଙ୍କର ଭାରି ଇଚ୍ଛା ଥିଲା କେମିତି ଏ ଜାଗା ଛାଡ଼ି ଯାଇ ଯୁଦ୍ଧରେ ଆହତ ହୋଇଥିବା ଲୋକମାନଙ୍କର ଟିକିଏ ସେବା ଶୁଶ୍ରୂଷା କରିବେ । ଜର୍ଜ ଅରୁଣ୍ଡେଲ ସେତେବେଳକୁ ଏକ ସରକାରୀ ହସ୍‌ପିଟାଲରେ ରହି ଅବୈତନିକ ଭାବରେ ଆହତ ବ୍ୟକ୍ତିମାନଙ୍କର ସେବା କରୁଥିବା ଖବର ତାଙ୍କ କାନରେ ପଡ଼ିଥିଲା । ତେଣୁ ସେ ମଧ୍ୟ କେମିତି ସେଇ ସୁଯୋଗ ପାଆନ୍ତେ ତା'ର ବାଟ ଖୋଜୁଥିଲେ । କିନ୍ତୁ ଦୁଃଖର କଥା ଯେ ବର୍ଣ୍ଣବୈଷମ୍ୟ ନୀତିରେ ବିଶ୍ୱାସ ରଖିଥିବା ଶ୍ୱେତକାୟମାନେ କୃଷ୍ଣମୂର୍ତ୍ତିଙ୍କୁ ସେତକ କରିବାର ସୁଯୋଗ ଦେଲେ ନାହିଁ । ଜଣେ ଏସୀୟ ଲୋକ ଆସି ଯେ ଗୋରା ଲୋକମାନଙ୍କର ସେବା କରିବ, ଏକଥା ସେମାନେ ଆଦୌ

ଗ୍ରହଣ କରିପାରିଲେ ନାହିଁ । ତେବେ ଅତି ଦୟା ପରବଶ ହୋଇ ସେମାନେ କୃଷ୍ଣମୂର୍ତ୍ତିଙ୍କୁ ହସ୍ପିଟାଲର ଗୋଟିଏ ଘରେ ମଇଳା ସଫା କରିବା କାମଟିଏ ଯୋଗାଇ ଦେଲେ । କୃଷ୍ଣମୂର୍ତ୍ତି ଥିଲେ ଆଜୀବନ ନିରାମିଷାଶୀ । କିନ୍ତୁ ଏବେ ତାଙ୍କୁ ଗୋଟିଏ ଘରେ ପଶି ତା'ର ସେ ଦୁର୍ଗନ୍ଧମୟ ଆଇଁଷ କଣ୍ଟା, ମାଂସ, ହାଡ଼ ପ୍ରଭୃତି ନିଜ ହାତରେ ସଫା କରିବାକୁ ହେଲା । ତେଲ ଚକଟା ଭୂଇଁକୁ ହାତରେ ଘଷି ଘଷି ସଫା କରିବାକୁ ପଡ଼ିଲା । କିନ୍ତୁ ଅଦ୍ଭୁତ କଥା, ସେଥିପ୍ରତି ତାଙ୍କ ମନରେ ତିଳେ ମାତ୍ର ବିକାର ନ ଥିଲା । ବରଂ ଏ କାମ କରିବାରେ ସେ ଏକ ବିଶେଷ ଆନନ୍ଦ ଲାଭ କରୁଥିଲେ । କିନ୍ତୁ ଦୁର୍ଯୋଗକୁ ଏ କାମ ବି ତାଙ୍କ ହାତରେ ଆଉ ବେଶି ଦିନ ରହିଲା ନାହିଁ । ହସ୍ପିଟାଲରେ ତାଙ୍କର ସାହାଯ୍ୟ ଆଉ ଦରକାର ନାହିଁ ବୋଲି ଦର୍ଶାଇ କର୍ତ୍ତୃପକ୍ଷ ତାଙ୍କୁ କାମରୁ ବାହାର କରିଦେଲେ ।

ନିରାଶ ହୋଇ କୃଷ୍ଣମୂର୍ତ୍ତି ପୁଣି ବ୍ରୁଡେକୁ ଫେରିଲେ । ଅକ୍ସଫୋର୍ଡ଼ ପରୀକ୍ଷାର ଦିନ ପାଖେଇ ଆସୁଥିଲା । ତାଙ୍କୁ ଘରୋଇ ଭାବେ ପଢ଼ାଇବାକୁ ଆନି ବେସାନ୍ତ ଲଣ୍ଡନର ଜଣେ ଦକ୍ଷ ଶିକ୍ଷକଙ୍କୁ ନିଯୁକ୍ତ କରିଥିଲେ । ବ୍ରୁଡେରେ କଟାଇଥିବା ସେଇ ମାସ କେତୋଟି କୃଷ୍ଣମୂର୍ତ୍ତିଙ୍କ ପାଇଁ ଦୁର୍ବିସହ ହୋଇ ପଡ଼ିଥିଲା । ସାଙ୍ଗରେ ତାଙ୍କର କଥାଭାଷା କରିବା ପାଇଁ କେହି ସମବୟସୀ ନ ଥିଲେ । ଏପରିକି କାଳେ ତାଙ୍କ ପାଠ ପଢ଼ାରେ ଗୋଳମାଳ ହେବ ବୋଲି ଆନି ବେସାନ୍ତ କାହାରିକି ସେଠାକୁ ଆସିବାକୁ ଅନୁମତି ଦେଉ ନ ଥିଲେ । ନିଃସଙ୍ଗତାରେ ବ୍ୟତିବ୍ୟସ୍ତ ହୋଇ କୃଷ୍ଣମୂର୍ତ୍ତିଙ୍କ ଅନ୍ତର ବାରମ୍ବାର ବିଦ୍ରୋହ କରି ଉଠୁଥିଲା—'ଓଃ କାହିଁକି ଭଲା ସେମାନେ ମତେ ବାଛି ଆଣି ଏମିତି କଲବଲ କରୁଛନ୍ତି ?'

୧୯୧୭ ମସିହା ଏପ୍ରିଲ ମାସରେ କୃଷ୍ଣମୂର୍ତ୍ତି ଲଣ୍ଡନକୁ ଫେରି ଟିକିଏ ଆଶ୍ୱସ୍ତ ହେଲେ । ସେଠାରେ ପହଞ୍ଚିବାର ଖୁବ୍ ଅଳ୍ପ ଦିନ ଭିତରେ ତାଙ୍କର ବନ୍ଧୁତ୍ୱ ଗଢ଼ି ଉଠିଲା ଜଣେ ଅତି ସମ୍ଭ୍ରାନ୍ତ ଇଂରେଜ ବାରିଷ୍ଟର—ହାରଲ୍ଡ଼ ବାଲି ଉଇଭରଙ୍କ ସହିତ । ଏଇ ନୂଆ ବାରିଷ୍ଟର ବନ୍ଧୁ ଜଣକ ସ୍ୱଭାବତଃ ଖୁବ୍ ସଉଖିନିଆ ଥିଲେ ଏବଂ ଥିଓସଫିକାଲ ସୋସାଇଟିର ନୈଷ୍ଠିକ ସଭ୍ୟ ହୋଇଥିଲେ ସୁଦ୍ଧା ସୁନ୍ଦର ସୁନ୍ଦର

ପୋଷାକ, ଦାମୀ ଦାମୀ ଜିନିଷ କିଣିବାରେ ତାଙ୍କର ବଡ଼ ଝୁଙ୍କ ଥିଲା । ତାଙ୍କ ସଂସ୍ପର୍ଶରେ ଆସି କୃଷ୍ଣମୂର୍ତ୍ତିଙ୍କ ମନରେ ମଧ୍ୟ ପରିଧାନର ରୁଚି ଓ ସୁନ୍ଦର ପୋଷାକ ପ୍ରତି ଅନୁରାଗ ଜାତ ହେଲା । ସାର୍ଟ ସହିତ ଟାଇକୁ କିପରି ସୁନ୍ଦର ଗଣ୍ଠିରେ ବନ୍ଧା ଯାଏ ଓ ଜୋତାକୁ କିପରି ଚକ୍ ଚକ୍ କରି ପାଲିସ୍ କରାଯାଏ, ଏସବୁ ଶିକ୍ଷା କୃଷ୍ଣମୂର୍ତ୍ତି ତାଙ୍କଠାରୁ ପାଇଥିଲେ । ପାଠ ପଢ଼ାରୁ ଟିକିଏ ଫୁରୁସତ ମିଳିଲେ ସେ ଓ ନିତ୍ୟ ଯାଇ ସେଣ୍ଟ ବାରିଷ୍ଟରଙ୍କ ଘରେ ହାଜର ହୋଇ ଯାଉଥିଲେ । ଆଉ ବାରିଷ୍ଟର ଜଣକ ସାଙ୍ଗେ ସାଙ୍ଗେ ଏ ଦୁଇ ଭାଇଙ୍କୁ ଧରି ଲଣ୍ଡନର ଦୋକାନ ବୁଲିବାକୁ ବାହାରି ପଡ଼ୁଥିଲେ । ଦିନଟା ସାରା ବଜାରଯାକ ବୁଲି ବସ୍ତ୍ର ବସ୍ତ୍ର ସଉଖିନିଆ ଜିନିଷ ଦେଖିବା ଓ କିଣିବାରେ ସେମାନଙ୍କ ସମୟ କଟୁଥିଲା । ତାଙ୍କର ପ୍ରଭାବରେ କୃଷ୍ଣମୂର୍ତ୍ତିଙ୍କ ମନ କ୍ରମଶଃ ଆଭରଣ ଓ ସାଜସଜ୍ଜା ଆଡ଼କୁ ଢଳିବାରେ ଲାଗିଥିଲା ।

୧୯୧୭ ମସିହା ଏପ୍ରିଲ ମାସ ସୁଦ୍ଧା ଜଣା ପଡ଼ିଗଲା ଯେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର କୌଣସି କଲେଜ କୃଷ୍ଣମୂର୍ତ୍ତିଙ୍କୁ ସ୍ଥାନ ଦେବାର ସପକ୍ଷରେ ନାହାନ୍ତି । ତାଙ୍କର 'ଜଗତ୍‌ଗୁରୁ' ପାଲଟିବା କଥାଟାକୁ ସେମାନେ ଏତେ ତିରସ୍କାର ସୂଚକ ଭଙ୍ଗୀରେ ଗ୍ରହଣ କରୁଥିଲେ ଯେ ସେଭଳି ଯୁବକକୁ ନିଜ କଲେଜରେ ସ୍ଥାନ ଦେଲେ ସେମାନଙ୍କର ବଦନାମ ହେବ ବୋଲି ସେମାନେ ବିଶ୍ୱାସ କରୁଥିଲେ । ଅକ୍ସଫୋର୍ଡରୁ ନିରାଶ ହୋଇ ଫେରିବା ପରେ କୃଷ୍ଣମୂର୍ତ୍ତି କେମ୍ବ୍ରିଜ୍ ଓ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ବସିଲେ । କିନ୍ତୁ କୋଉ ଗୋଟିକରେ ସୁଦ୍ଧା କୃତକାର୍ଯ୍ୟ ହୋଇପାରିଲେ ନାହିଁ । ଯେତେ ମନ ଦେଇ ପଢ଼ିଥିଲେ ସୁଦ୍ଧା ଥରେ ପରୀକ୍ଷା ହଲ୍‌ରେ ପଶିଗଲା ପରେ ତାଙ୍କର ଆଉ କିଛି ମନେପଡ଼େ ନାହିଁ । ଥରେ ଥରେ ଏମିତି ବି ହୋଇଛି ଯେ ଖାତାରେ ସେ ଗୋଟିଏ ସୁଦ୍ଧା ଅକ୍ଷର ଲେଖିପାରି ନାହାନ୍ତି— ଗୋଟାପଣେ ଅଲେଖା ଖାତା ଦେଇ ହଲ୍‌ରୁ ବାହାରି ଆସିଛନ୍ତି । ତାଙ୍କର ଏପରି ବାରମ୍ବାର ବିଫଳତାରେ ଯଦି ତାଙ୍କୁ କିଛି ସବୁଠାରୁ ଅଧିକ କଷ୍ଟ ଦେଉଥିଲା ତାହା ହେଲା ଆନି ବେସାନ୍ତଙ୍କର ଦୁଃଖ । କିନ୍ତୁ ଉପାୟ ବା

କଣ ? ନିତ୍ୟଙ୍କ ଅବସ୍ଥା କିନ୍ତୁ କ୍ରିଷ୍ଣମୂର୍ତ୍ତିଙ୍କ ପରି ଶୋଚନୀୟ ନ ଥିଲା । ବଡ଼ ଭାଇ ଅପେକ୍ଷା ସେ ତେର ବୁଦ୍ଧିମାନ ଥିଲେ ଓ ଯାହା କିଛି ପଢୁଥିଲେ ସବୁ ମନେ ରଖି ପାରୁଥିଲେ । ତେଣୁ ୧୯୧୮ ମସିହାରେ କ୍ରିଷ୍ଣମୂର୍ତ୍ତି ମାଟ୍ରିକୁଲେସନ୍ ପରୀକ୍ଷାରେ ଫେଲ ହେଲା ବେଳକୁ ନିତ୍ୟ ଖୁବ୍ ଭଲ ନମ୍ବର ରଖି ପାସ୍ କରି ଦୁଇ ବର୍ଷ ଆଇନ ପଢ଼ିବାକୁ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ ।

ଜନ୍ମ ବେଳଠାରୁ ନିତ୍ୟଙ୍କର ଗୋଟିଏ ଆଖିରେ ସାମାନ୍ୟ ଦୋଷ ରହିଥିଲା ଓ ସେହି ଆଖିଟିରେ ସେ ଭଲ ଦେଖିପାରୁ ନ ଥିଲେ । ଏବେ ପଢ଼ାପଢ଼ିର ପରିଶ୍ରମରେ ସେହି ଆଖି ଦୋଷ ହଠାତ୍ ଖୁବ୍ ବଢ଼ିଗଲା । ବଡ଼ ବଡ଼ ଡାକ୍ତରମାନେ ପରୀକ୍ଷା କରି କହିଲେ ଯେ ଏ ଦୋଷ ତାଙ୍କର ଜନ୍ମଗତ ହୋଇଥିବାରୁ ଡାକ୍ତରୀ ବିଦ୍ୟାରେ ତାହାକୁ ଭଲ କରିବାର ଉପାୟ ନାହିଁ । ପ୍ରାଣପ୍ରିୟ ନିତ୍ୟଙ୍କର ଏ ଦୁର୍ଦ୍ଦଶା କ୍ରିଷ୍ଣମୂର୍ତ୍ତିଙ୍କୁ ବ୍ୟଥିତକରି ପକାଇଲା । ଭାଇର କଷ୍ଟ ସହି ନ ପାରି ସେ ନିଜର ଆଧ୍ୟାତ୍ମିକ ଶକ୍ତି ଖଟାଇ ନିତ୍ୟଙ୍କ ଆଖିକୁ ଭଲ କରିବାକୁ ଚେଷ୍ଟା ଆରମ୍ଭ କଲେ । ଆଶ୍ଚର୍ଯ୍ୟ କଥା, ମାତ୍ର କିଛି ମାସ ଭିତରେ ନିତ୍ୟଙ୍କ ଖରାପ ଆଖିଟିରେ ଦୃଷ୍ଟିଶକ୍ତି ପୁଣି ଫେରିବାକୁ ଲାଗିଲା ଓ ସେହି ଆଖିରେ ସେ ସ୍ପଷ୍ଟ ଦେଖି ଓ ପଢ଼ି ପାରିଲେ । ଲଣ୍ଡନ ଡାକ୍ତରମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏଭଳି ରୋଗ ଭଲ କରିବାର ଶକ୍ତି କ୍ରିଷ୍ଣମୂର୍ତ୍ତିଙ୍କଠାରେ ଆରମ୍ଭରୁ ହିଁ ରହିଥିଲା । କେବେ କେବେ ସେ ଲୋକମାନଙ୍କର ମୁଣ୍ଡ ବିନ୍ଧା, ଦାନ୍ତ ବିନ୍ଧା ଆଦି ଗୁରୁତ ବଡ଼ ବେମାରୀ ଭଲ କରିଦେଇ ପାରୁଥିଲେ । ମାତ୍ର ନିଜର ଲାଜକୁଳା ସ୍ୱଭାବ ହେତୁ ସେ ଏକଥା ପ୍ରାୟ କାହାରି ଆଗରେ ପ୍ରକାଶ କରୁ ନ ଥିଲେ ।

କେବଳ ଶାରୀରିକ ପୀଡ଼ା କାହିଁକି, ମାନସିକ ଆଘାତ ବା ଦୁଃଖରେ ଭାଙ୍ଗିପଡ଼ି କେହି ଯେତେବେଳେ ତାଙ୍କ ନିକଟରେ ମନ କଥା ଜଣାଉଥିଲା, ସେ ଅତି ଚମତ୍କାର ଭାବରେ ଦରଦ ଓ ସହାନୁଭୂତିର ସହିତ ତା'ର ମାନସିକ ବେଦନାକୁ ମଧ୍ୟ ଉପଶମ କରି ପାରୁଥିଲେ । ୧୯୧୮ ମସିହା ମେ' ମାସର କଥା । ଲେଡ଼ି ଏମିଲି ଯେତେବେଳେ

'ହେରାଲ୍ଡ଼' ପତ୍ରିକାର ସମ୍ପାଦନା କାର୍ଯ୍ୟ ବୁଝୁଥିଲେ । ଥରେ ସେ ନିଜର ଅସାବଧାନତା ହେତୁ ଲେଡ଼ବଟରର ଜରୁରୀ ମନେ କରୁଥିବା ଗୋଟିଏ ପ୍ରବନ୍ଧକୁ ପତ୍ରିକାରେ ସ୍ଥାନ ଦେବାକୁ ଭୁଲିଗଲେ । ତାଙ୍କର ଏଭଳି ଦାୟିତ୍ୱହୀନତାରେ ବିରକ୍ତ ହୋଇ ଲେଡ଼ବଟର ତାଙ୍କୁ ତୁରନ୍ତ ସମ୍ପାଦନା କାର୍ଯ୍ୟ ଛାଡ଼ିଦେବାକୁ ଆଦେଶ ଦେଲେ । ଲେଡ଼ବଟରଙ୍କର ଏ ଆଦେଶ ତାଙ୍କ ମନରେ ଭୀଷଣ ଆଘାତ ଦେଲା । ଏକ ସାମାନ୍ୟ ଭୁଲ ପାଇଁ ଯେ ଲେଡ଼ବଟର ତାଙ୍କୁ ଏତେ କଠୋର ଦଣ୍ଡ ଦେବେ ଏ କଥା ସେ ଭାବିପାରି ନ ଥିଲେ । ଦୁଃଖରେ ଭାଙ୍ଗିପଡ଼ି ସେ ନିଜର ମନ କଥା ଜଣାଇ କ୍ରିଷ୍ଣମୂର୍ତ୍ତିଙ୍କୁ ଚିଠିଟିଏ ଲେଖିଲେ । ତା'ର ଜବାବରେ କ୍ରିଷ୍ଣମୂର୍ତ୍ତି ଯାହା ଲେଖିଥିଲେ ତାହା ଥିଲା ଯେତିକି ହୃଦୟସ୍ପର୍ଶୀ ସେତିକି ଦରଦଭରା । ଏମିଲିଙ୍କୁ ବୁଝାଇ ସେ ଲେଖିଥିଲେ—

"......ଏ ଘଟଣାଟି ଯେ ତମକୁ ଏପରି ଦୋହଲାଇ ଦେଲା ସେଥିରେ ବାସ୍ତବିକ ମୁଁ ଭାରି ଖୁସି । ଏମିତି ସବୁ ଘଟଣାରେ ହିଁ ମଣିଷର ବ୍ୟକ୍ତିତ୍ୱ ଭୂଲୁଣ୍ଠିତ ହୋଇପାରେ ସିନା ! ! କିନ୍ତୁ ଏତିକି ମୁଁ ନିଃସନ୍ଦେହରେ କହିପାରେ ଯେ କେବଳ ଏହାରି ଦ୍ୱାରା ହିଁ ମଣିଷ ଈଶ୍ୱରଙ୍କର ପ୍ରକୃତ ସେବା ଲାଗି ଯୋଗ୍ୟ ହୋଇଥାଏ...ଆମ ଥିଓସଫିଷ୍ଟ-ମାନଙ୍କଠାରେ ଏଇ ବ୍ୟକ୍ତିତ୍ୱ ଜିନିଷଟା ସତରେ ଏକ ଅଭିଶାପ । ତେଣୁ ସେଭଳି ବ୍ୟକ୍ତିତ୍ୱକୁ ତମେ କେବେହେଲେ ନିଜଠାରେ ମୁଣ୍ଡ ଟେକିବାକୁ ଦିଅ ନାହିଁ । ଏ ଜୀବନଟା କେବଳ ଦୁଃଖ ଯାତନାରେ ଭରା, ଆଉ ସେଇ ଯାତନା ଭିତର ଦେଇ ଗଲେ ଯାଇ ମଣିଷ ଉପରକୁ ଉଠି ପାରିବ, ଶାନ୍ତି ଲଭ କରିପାରିବ । ବର୍ତ୍ତମାନର ଏଇ ଘଟଣାର ସୁଯୋଗ ନେଇ ନିଜକୁ କଷ୍ଟ ଭିତରେ ଯିବାକୁ ଛାଡ଼ିଦିଅ — ତାକୁ ଭେକ ବସ ନାହିଁ ।"

ଆର୍ଥିକ ପ୍ରାଚୁର୍ଯ୍ୟ ଓ ବିଳାସ କାଇଦାରେ ବଢ଼ୁଥିଲେ ସୁଦ୍ଧା କ୍ରିଷ୍ଣମୂର୍ତ୍ତି ସଦାବେଳେ ନିଜ ହାତରେ ନିଜ କାମ କରିବାକୁ ଭଲ ପାଉଥିଲେ । ବ୍ୟବହାର କରୁଥିବା ପ୍ରତ୍ୟେକଟି ଜିନିଷକୁ ସେ ଅତି ଯତ୍ନର ସହିତ ରଖୁଥିଲେ । ତାହା ମଟର ଗାଡ଼ି ହେଉ କି ଫ୍ଲୋଟ କଲମଟିଏ ହେଉ, ତା' ପ୍ରତି ତାଙ୍କର ହତାଦର ଭାବ କେବେହେଲେ ଆସୁ ନ ଥିଲା ।

କିନ୍ତୁ ଏ ସବୁ ସତ୍ତ୍ୱେ ମୋହ ବୋଲି ଗୋଟିଏ ଜିନିଷ ତାଙ୍କଠାରେ ଆଦୌ ନ ଥିଲା । ଆତ୍ମ-ପରଭାବ ନ ରଖି ଅନ୍ୟମାନଙ୍କୁ ସାହାଯ୍ୟ କରିବାକୁ ସେ ସଦାବେଳେ ଆଗଭର ହେଉଥିଲେ । ଥରେ ଲଣ୍ଡନରେ ଥିବାବେଳେ ଯମୁନା ଦାସ ଦ୍ୱାରକାନାଥ ନାମକ ଜଣେ ଧନୀ କପଡ଼ା ବ୍ୟବସାୟୀ ତାଙ୍କୁ ଦେଖା କରିବାକୁ ଆସିଥିଲେ । ଅଳ୍ପ ସମୟ କଥାବାର୍ତ୍ତା ଭିତରେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ଗଢ଼ି ଉଠିଲା । ତହିଁ ଆର ଦିନ ସକାଳୁ କୃଷ୍ଣମୂର୍ତ୍ତିଙ୍କ ସାଥିରେ ପୁଣି କିଛି ସମୟ କଟାଇବାକୁ ଦ୍ୱାରକାନାଥ ଆସି ତାଙ୍କ ଘରେ ପହଞ୍ଚିଲେ । ବଖରା ଭିତରେ ଅଚାନକ ପଶିଯାଇ ସେ ଯାହା ଦେଖିଲେ ସେଥିରେ ଅବାକ୍ ହୋଇ ପଡ଼ିଲେ । କୃଷ୍ଣମୂର୍ତ୍ତି ସେତେବେଳକୁ ଭୂଇଁଠାରେ ଚକାମାରି ବସି ଏକ ଧ୍ୟାନରେ ନିଜର ଜୋତା ହଳକ ପାଲିସ୍ କରିବାରେ ଲାଗିଥିଲେ । ଯେଉଁ ମହାପୁରୁଷ ଦିନେ ଜଗଦ୍‌ଗୁରୁ ହେବେ, ସଂସାରକୁ ମୁକ୍ତିର ମାର୍ଗ ପ୍ରଦର୍ଶନ କରିବେ, ତାଙ୍କୁ ମନ ପ୍ରାଣ ଢାଳିଦେଇ ଏମିତି ଜୋତା ପାଲିସ୍ କରୁଥିବାର ଦେଖି ଦ୍ୱାରକାନାଥଙ୍କ ବିସ୍ମୟର ସୀମା ରହିଲା ନାହିଁ । ଜୋତା ସଫା କରିବା ପାଇଁ ଲୋକଟିଏ କାହିଁକି ରଖୁ ନାହାନ୍ତି ବୋଲି ପଚାରିବାରେ କୃଷ୍ଣମୂର୍ତ୍ତି ଜବାବ ଦେଲେ ଯେ ଅନ୍ୟ ଯେକୌଣସି ଲୋକଠାରୁ ସେ ନିଜେ ଏ କାମ ଯଥେଷ୍ଟ ବେଶୀ ଦକ୍ଷତାର ସହିତ କରି ପାରିବେ । ତା'ପରେ ଦ୍ୱାରକାନାଥ ପିନ୍ଧିଥିବା ଜୋତା ଆଡ଼କୁ ଚାହିଁ ସେ କହିଲେ ଯେ ସେ ଯଦି ଅନୁମତି ଦେବେ ତେବେ ତାଙ୍କ ଜୋତା ହଳକ ବି ସେ ଏମିତି ସୁନ୍ଦର ଚକ୍ ଚକ୍ କରି ଥୋଇଦେବେ ଯେ ସେଭଳି ପାଲିସ୍ ଆଗରୁ କେବେହେଲେ ହୋଇ ନ ଥିବ ।

କୃଷ୍ଣମୂର୍ତ୍ତିଙ୍କର ଏ ପ୍ରକାର ଆଚରଣରେ ସେ ଦିନ ଦ୍ୱାରକାନାଥ ମୁଗ୍‌ଧହୋଇ ଯାଇଥିଲେ । କାରଣ କୃଷ୍ଣମୂର୍ତ୍ତିଙ୍କ ପ୍ରତିଭା ଓ ଭବିଷ୍ୟତର କର୍ମପନ୍ଥା ବିଷୟରେ ବହୁ ଚର୍ଚ୍ଚା ଶୁଣି ସେ ଖାସ୍ ତାଙ୍କୁ ଦର୍ଶନ କରିବା ପାଇଁ ଭାରତରୁ ଏତେ ବାଟ ଆସିଥିଲେ । ମାତ୍ର ସେ ଦିନର ଘଟଣା ପରେ ଜଣେ ଭାବୀ ଜଗତଗୁରୁଙ୍କ ସମ୍ବନ୍ଧରେ ମନରେ ତାଙ୍କର ଯେତେ ଯାହା ଧାରଣା ସୃଷ୍ଟି ହୋଇଥିଲା ସେ ସବୁ କାହିଁ ଓଲଟ ପାଲଟ ହୋଇଗଲା ।

# ବ୍ୟକ୍ତିତ୍ୱର ପ୍ରଥମ ଝଲକ

୧୯୨୦ ମସିହାରେ କ୍ରିଷ୍ଣମୂର୍ତ୍ତି ଜୀବନର ଶେଷଥର ପାଇଁ ମାଟ୍ରିକ ପରୀକ୍ଷାରେ ବସିଲେ । ହେଲେ ଏଥର ବି କୌଣସି ଲାଭ ହେଲା ନାହିଁ— ଗୋଟାପଣେ ଅଲେଖା ଖାତା ଦେଇ ନିରାଶ ମନରେ ସେ ପରୀକ୍ଷା ହଲରୁ ଲେଉଟି ଆସିଲେ । ଏବେ ଆନି ବେସାନ୍ତଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ଏଭଳି ବାରମ୍ବାର ପରୀକ୍ଷା ଦେବାର କୌଣସି ମୂଲ୍ୟ ନାହିଁ, କାରଣ ଜୀବନଯାକ ଯେତେ ଚେଷ୍ଟାକଲେ ସୁଦ୍ଧା କ୍ରିଷ୍ଣମୂର୍ତ୍ତି କଦାପି ପାସ୍ କରିପାରିବେ ନାହିଁ । ତେଣୁ ପରୀକ୍ଷା ଚିନ୍ତା ମନରୁ ଛାଡ଼ି ଏଣିକି ସେ କ୍ରିଷ୍ଣମୂର୍ତ୍ତିଙ୍କୁ ଫରାସୀ ଭାଷା ଶିଖାଇବା ଉଦ୍ଦେଶ୍ୟରେ ପାରିସ ପଠାଇବାର ବ୍ୟବସ୍ଥା କଲେ । ଆଉ ପ୍ରକୃତରେ ମଧ୍ୟ ଏହି ଫରାସୀ ଭାଷା ତାଙ୍କୁ ଭବିଷ୍ୟତ ଜୀବନରେ, ବିଶେଷ କରି ପାଶ୍ଚାତ୍ୟ ଦେଶ-ଗୁଡ଼ିକରେ ବୁଲି ଭାଷଣ ଦେବା ସମୟରେ ଖୁବ୍ ସାହାଯ୍ୟ କରିଥିଲା ।

ପାରିସଠାରେ ମାଡ଼ାମ୍ ଡ଼'ମାଞ୍ଜିଆରଲି ନାମକ ଜଣେ ଭଦ୍ର ମହିଳାଙ୍କ ଉପରେ କ୍ରିଷ୍ଣମୂର୍ତ୍ତିଙ୍କୁ ଫରାସୀ ଭାଷା ଶିଖାଇବାର ଦାୟିତ୍ୱ ଦିଆଯାଇଥିଲା । ଏହି ଭଦ୍ର ମହିଳା ଜଣକ ଏକ ସମ୍ଭ୍ରାନ୍ତବଂଶୀୟ ତଥା ଉନ୍ନତ ରୁଚିକଳା ସମ୍ପନ୍ନ ବ୍ୟକ୍ତି ଥିଲେ । ତେଣୁ କ୍ରିଷ୍ଣମୂର୍ତ୍ତିଙ୍କୁ ଭାଷା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସେ ଅନେକ ସମୟରେ ତାଙ୍କୁ ସାଥିରେ ଧରି ପାରିସର ପ୍ରସିଦ୍ଧ ଆର୍ଟ ଗାଲେରି, ସୂକ୍ଷ୍ମକଳା ପ୍ରଦର୍ଶନୀ ଓ ବାଲି ନୃତ୍ୟ ଥିଏଟର ପ୍ରଭୃତି ବୁଲାଇ ଦେଖାଉଥିଲେ । କ୍ରିଷ୍ଣମୂର୍ତ୍ତିଙ୍କୁ ସେ ଠିକ୍ ନିଜର ପୁଅ ଭଳି ଜ୍ଞାନ କରୁଥିଲେ ଏବଂ ତାଙ୍କର ଦୁଇ ଝିଅ କ୍ରିଷ୍ଣମୂର୍ତ୍ତିଙ୍କ ସମବୟସୀ ହୋଇଥିବାରୁ ତାଙ୍କ ମଧ୍ୟରେ ବନ୍ଧୁତା ବି ବଢ଼ି ଉଠିଥିଲା । ସେଠାରେ କଟାଇଥିବା ଦିନ କେତୋଟି କ୍ରିଷ୍ଣମୂର୍ତ୍ତିଙ୍କ ପାଇଁ ଖୁବ୍ ଆନନ୍ଦଦାୟକ ଥିଲା । କାରଣ ପ୍ରଥମତଃ ପାଠ ପଢ଼ାର ଝିନ୍‌ଝଟ ନଥିଲା, ତା ଛଡ଼ା ପୁଣି ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲି ଦେଖିବାରେ କ୍ରିଷ୍ଣମୂର୍ତ୍ତିଙ୍କର ଏକ ବିଶେଷ ଆଗ୍ରହ ରହିଥିଲା । ସେଠାରେ ଦିନେ ସନ୍ଧ୍ୟାରେ କେତେକ ବନ୍ଧୁଙ୍କ ସାଥିରେ କ୍ରିଷ୍ଣମୂର୍ତ୍ତି ଗୋଟିଏ ବଡ଼ ହୋଟେଲକୁ ଯାଇଥିଲେ ।

ହୋଟେଲ ଭିତରେ ଗୋଟିଏ କକ୍ଷରେ ରୁଲେଟ୍ ଖେଳ ଚାଲିଥିଲା । ଖେଳର ନିୟମ ଅନୁଯାୟୀ ଗୋଟିଏ ବଲ୍, ଘୂରୁଥିବା ଏକ ଚକ୍ର ଭିତରେ ଯେଉଁ ନମ୍ବର ଘରେ ପଡ଼ିବ ତା'ର ଉପରେ ବାଜି ଲଗାଇଥିବା ବ୍ୟକ୍ତି ଜଣକ ସେଇ ଅନୁସାରେ ଟଙ୍କା ଜିତିବ ବା ହାରିବ । କୃଷ୍ଣମୂର୍ତ୍ତି ବଡ଼ ଆଗ୍ରହର ସହିତ ଖେଳ ଟେବୁଲ ପାଖରେ ବସି ଖେଳକୁ ଲକ୍ଷ୍ୟ କରୁଥିଲେ । ସାଥିରେ ତାଙ୍କର ଥିଲେ ଜଣେ ବନ୍ଧୁ—କ୍ୟାପ୍‌ଟେନ୍ ମାକ୍‌ସ ଓ୍ୱାରଡ଼ଲ୍ । ଏତିକବେଳେ ମଜା ଦେଖିବା ପାଇଁ କୃଷ୍ଣମୂର୍ତ୍ତି ଓ୍ୱାରଡ଼ଲଙ୍କୁ କହିଲେ ଯେ ଯଦି ମାନସିକ ଶକ୍ତି ଖଟାଇ ବଲ୍‌ଟିକୁ ନିଜ ଅକ୍ତିଆରକୁ ଅଣା ଯାଇପାରିବ ତେବେ ତ' ତାରି ଉପରେ ବାଜି ଲଗାଇ ଅଜସ୍ର ଟଙ୍କା ଜିଣି ଯାଇହେବ । ପ୍ରସ୍ତାବଟା ଓ୍ୱାର୍‌ଡ଼ଲଙ୍କ ମନରେ କୌତୁହଳ ଜାତ କଲା । ସଙ୍ଗେ ସଙ୍ଗେ ଦୁଇଜଣଯାକ ବନ୍ଧୁ ଖେଳରେ ବାଜି ଲଗାଇବାକୁ ଉଠି ଆସିଲେ । ତା' ପରବର୍ତ୍ତୀ ଘଟଣା ବର୍ଣ୍ଣନା କରି କୃଷ୍ଣମୂର୍ତ୍ତି ଲେଖିଛନ୍ତି, "ମାନସିକ ଶକ୍ତି ଖଟାଇ ମୁଁ ଏକ ପ୍ରାକୃତିକ ଶକ୍ତି (elemental)କୁ ଟେବୁଲ ମଝିରେ ରଖି ତାରି ସାହାଯ୍ୟରେ ବଲଟିକୁ କେବଳ ୩, ୪ ବା ୫ ନମ୍ବର ଘରେ ପକାଇବାର କଳ୍ପନା କଲି । ସତକୁ ସତ ସେଇଟା କାମ ଦେଲା, ଆଉ ସେମିତି କରି ଆମେ ପ୍ରାୟ ଶହେ ଫ୍ରାଙ୍କ୍ ପାଖାପାଖି ଜିଣିଲୁ...ଏଇଟା ଗୋଟାଏ ନିଶା ପରି ମନେ ହେବାକୁ ଲାଗିଲା × × ×"

କୃଷ୍ଣମୂର୍ତ୍ତି ପ୍ୟାରିସରେ ପହଞ୍ଚିବା ପରେ ପରେ କେତେକ ଜଣାଶୁଣା ମହଲରେ ତାଙ୍କୁ ନେଇ ଅନେକ ପ୍ରକାରର ଚର୍ଚ୍ଚା ଜମି ଉଠିଲା । ଆନି ବେସାନ୍ତ ଓ ଲେଡ଼ବିଟର କିପରି ତାଙ୍କୁ ସୁଦୂର ଭାରତରୁ ଆବିଷ୍କାର କରି ଆଣିଥିଲେ, ସେ କିଭଳି ଅଦୃଶ୍ୟ ମହାଗୁରୁଙ୍କଠାରୁ ଦୀକ୍ଷା ଲାଭ କରିଥିଲେ ଇତ୍ୟାଦି ଇତ୍ୟାଦି ନାନା କାହାଣୀ ଲୋକମାନଙ୍କ କାନରେ ପଡ଼ିଥିଲା । ତେଣୁ ସେଭଳି ଗୋଟିଏ ବ୍ୟକ୍ତିକୁ ଦେଖିବାର କୌତୁହଳ ଏଡ଼ାଇ ନ ପାରି ବେଳ ଅବେଳରେ ଲୋକମାନେ ଆସି ତାଙ୍କ ପାଖରେ ଭିଡ଼ ଜମାଉଥିଲେ । କିନ୍ତୁ ଥରେ କୃଷ୍ଣମୂର୍ତ୍ତିଙ୍କୁ ଦେଖିନେବା ପରେ ସେମାନଙ୍କ ଭିତରୁ ଅଧିକାଂଶ ତାଙ୍କର ଚେହେରା,

ପୋଷାକ ପରିଚ୍ଛଦ ଆଦି ନେଇ ମନେ ମନେ ଯେଉଁ କଳ୍ପନା କରିଥିଲେ ସେସବୁ ଓଲଟ ପାଲଟ ହୋଇଯାଇଥିଲା । ସାଧୁ ସନ୍ନ୍ୟାସୀର ବେଶ ନ ଥାଇ ଆଧୁନିକ ପୋଷାକ ପିନ୍ଧା ଅଳ୍ପ ବୟସ୍କ ଯୁବକଟିର ନିଶାଦ ନିଷ୍କପଟ ଗୃହିଣୀ ସେମାନଙ୍କୁ ହତାଶ କରିଦେଲା । ତାଙ୍କର ସେ ରୂପକୁ ଚାହିଁ କେତେଜଣ ଟାହି ଟାପରା ମଧ କରିବାକୁ ଛାଡ଼ି ନ ଥିଲେ—'ଆରେ, ଏଇ ଟୋକାକୁ ନେଇ ପୁଣି ଏତେ କଥା ଶୁଣା ଯାଉଥିଲା...' ହସରେ ସେମାନେ ଫାଟି ପଡ଼ୁଥିଲେ ।

କୃଷ୍ଣମୂର୍ତ୍ତି ବୟସରେ ଯେତେ ବଢ଼ିଲେ ସୁଦ୍ଧା ତାଙ୍କର ସ୍ୱପ୍ନାବିଷ୍ଟ ସ୍ୱଭାବରେ କୌଣସି ପରିବର୍ତ୍ତନ ହେଉ ନ ଥିଲା । ଅନେକ ସମୟରେ ସେ ସେହି ପିଲାଦିନର ସ୍ୱଭାବ ନେଇ ଝରକା ବାହାରେ ନୀଳ ଆକାଶ, ମେଘ, ଗଛଲତା, ପାହାଡ଼ ଆଡ଼େ ଚାହିଁ ନିଜ ଭିତରେ କାହିଁ କୁଆଡ଼େ ହଜି ଯାଉଥିଲେ । ପ୍ୟାରିସରେ ଥିବାବେଳେ ଦିନକର ଅନୁଭୂତି ବର୍ଣ୍ଣନା କରି ସେ ଏଇ କଥା ଲେଖିଛନ୍ତି, "ଅଦ୍ଭୁତ ଭାବରେ ସେଇ ଦିନଟା ସାରା ମୁଁ ନିତାନ୍ତ ସ୍ୱପ୍ନ ବିହ୍ୱଳ ଅବସ୍ଥାରେ କଟାଇଲି । ସାଧାରଣତ ଅନ୍ୟ ଦିନମାନଙ୍କରେ ମୁଁ ଯେପରି ଥାଏ ତା'ଠାରୁ ଢେର ଢେର ବେଶି ସ୍ୱପ୍ନାବିଷ୍ଟ ଥିଲି । ଭଗବାନ ବୁଦ୍ଧଙ୍କ ଭାବନାରେ ଅନ୍ତରଟା ମୋର ଉଚ୍ଛଳ ଉଠୁଥିଲା । ସେତେବେଳେ କିଛି କରିବା ଅବସ୍ଥାରେ ମୁଁ ଆଉ ନ ଥିଲି । ବାଧ୍ୟ ହୋଇ ଉଠି ଧ୍ୟାନରେ ବସିଲି ।"

ବୁଦ୍ଧଙ୍କ ପ୍ରତି କୃଷ୍ଣମୂର୍ତ୍ତିଙ୍କ ମନରେ ସଦାସର୍ବଦା ଏକ ଅହେତୁକ ଶ୍ରଦ୍ଧା ଭାବ ରହିଥିଲା । ବୁଦ୍ଧଙ୍କର କୌଣସି ଛବି ଦେଖିଲେ ବା ତାଙ୍କ ବିଷୟରେ କିଛି ପଢ଼ିଲେ ସେ ବିହ୍ୱଳ ହୋଇ ଉଠୁଥିଲେ । ତାଙ୍କ ଡାଏରୀରେ ଥରେ ସେ 'ଦି ବୁଦ୍ଧଜ୍ ଓ୍ୱେ ଅଫ୍ ଭର୍ଚ୍ଚ୍ୟୁ' ବହିରୁ ତାଙ୍କୁ ଖୁବ୍ ଭଲ ଲାଗିଥିବା କେତୋଟି ଧାଡ଼ି ଟିପି ରଖିଥିଲେ—'ମୁଁ ହେଉଛି ସର୍ବଜୟୀ, ସର୍ବଜ୍ଞାତା; ମୁଁ ଅନାସକ୍ତ, ଅକଳୁଷିତ; ଅପ୍ରତିହତ, କାମନାକୁ ଧ୍ୱଂସ କରି ମୁଁ ସର୍ବମତେ ମୁକ୍ତ । କାହାକୁ ମୋର ଗୁରୁ ବୋଲି କହିବି— ମୁଁ ନିଜେ ହିଁ ମୋର ପଥ ବାଛି କାଢ଼ିଛି ।'

ଏଥି ଭିତରେ ଲେଡ଼ବିଟର ଭାରତରେ ଡ. ରାଜଗୋପାଲାଚାର୍ଯ୍ୟ ନାମକ ଆଉ ଜଣେ ଯୁବକଙ୍କର ସନ୍ଧାନ ପାଇଥିଲେ । ଏହି ରାଜଗୋପାଲାଚାର୍ଯ୍ୟ କୃଷ୍ଣମୂର୍ତ୍ତିଙ୍କର ସମବୟସୀ ଥିଲେ ଏବଂ ବିଦ୍ୟା ବୁଦ୍ଧିରେ ଖୁବ୍ ତୀକ୍ଷ୍ଣ ଥିଲେ । ତାଙ୍କର ଉନ୍ନତ ଜ୍ୟୋତି-ବଳୟକୁ ଅନୁଧ୍ୟାନ କରି ଲେଡ଼ବିଟର ଜାଣି ପାରିଥିଲେ ଯେ ଏହି ଯୁବକ ଜଣକ ବିଗତ ଜନ୍ମରେ ଆଧ୍ୟାତ୍ମିକ ସ୍ତରରେ ଅନେକ ଅଗ୍ରଗତି କରିଥିଲେ ଓ ପରବର୍ତ୍ତୀ ଜନ୍ମଗୁଡ଼ିକରେ ତାଙ୍କର ଆହୁରି ଉନ୍ନତି କରିବାର ଆଶା ରହିଛି । ଏଣେ ରାଜଗୋପାଲ ମଧ୍ୟ ଲେଡ଼ବିଟରଙ୍କ ସଂସ୍ପର୍ଶରେ ଆସି ଥିଓସଫିକାଲ ସୋସାଇଟିରେ ଯୋଗ ଦେଇ ଖୁବ୍ ଅଳ୍ପକାଳ ମଧ୍ୟରେ ନିଜକୁ ଲେଡ଼ବିଟରଙ୍କର ଜଣେ ଏକାନ୍ତ ଅନୁରକ୍ତ ଶିଷ୍ୟ ଭାବରେ ପରିଚିତ କରାଇ ପାରିଥିଲେ । ୧୯୨୦ ମସିହାରେ କୃଷ୍ଣମୂର୍ତ୍ତି ପ୍ୟାରିସରେ ଥିବାବେଳେ ଲେଡ଼ବିଟର ରାଜଗୋପାଳଙ୍କୁ ଲଣ୍ଡନ ଆଣି କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ତାଙ୍କର ନାମ ଲେଖାଇଲେ । ସେତେବେଳକୁ ତାଙ୍କର ଭବିଷ୍ୟତ ଜୀବନ ନେଇ ଲେଡ଼ବିଟରଙ୍କର ଉଜ୍ଜ୍ୱଳ ଆଶା ଦେଖି ତାଙ୍କର ଘନିଷ୍ଠ ବ୍ୟକ୍ତିମାନଙ୍କ ଭିତରେ ଫୁସୁରୁଫାସର ଆରମ୍ଭ ହୋଇ ଯାଇଥିଲା ଯେ ଏହି ରାଜଗୋପାଲ ଦିନେ କୃଷ୍ଣମୂର୍ତ୍ତିଙ୍କର ଏକ ବଡ଼ ପ୍ରତିଦ୍ୱନ୍ଦ୍ୱୀ ହୋଇ ମୁଣ୍ଡ ଟେକିବେ । କେହି କେହି ପୁଣି ଭାବୁଥିଲେ ଯେ ରାଜଗୋପାଲଙ୍କ ପରି ଜଣେ ଉଦୀୟମାନ ପ୍ରତିଭାର ସନ୍ଧାନ ପାଇବା ପରେ ଲେଡ଼ବିଟର ଓ ଆନି ବେସାନ୍ତ ଏଣିକି ହୁଏତ କୃଷ୍ଣମୂର୍ତ୍ତିଙ୍କଠାରୁ ସମସ୍ତ ଉତ୍ସାହ ହରାଇ ବସିବେ । ତେଣୁ ଏଭଳି ପରିସ୍ଥିତିରେ କୃଷ୍ଣମୂର୍ତ୍ତି-ରାଜଗୋପାଳଙ୍କ ସମ୍ପର୍କ କିଭଳି ମୋଡ଼ ନେବ ତାହା ଦେଖିବାକୁ ସମସ୍ତେ ଅପେକ୍ଷା କରିଥିଲେ ।

ସେହି ବର୍ଷ ଅକ୍ଟୋବର ମାସରେ ପ୍ୟାରିସରୁ ଫେରିବା ପରେ ଲଣ୍ଡନଠାରେ କୃଷ୍ଣମୂର୍ତ୍ତିଙ୍କର ପରିଚୟ କରାଇ ଦିଆଗଲା ରାଜଗୋପାଲଙ୍କ ସହିତ । ଏହା ପୂର୍ବରୁ ସେ ରାଜଗୋପାଲଙ୍କ ପ୍ରତିଭା ଓ ତୀକ୍ଷ୍ଣ ବିଦ୍ୟା ବୁଦ୍ଧି ସମ୍ପର୍କରେ ବହୁତ କିଛି ଶୁଣିଥିଲେ । କିନ୍ତୁ ତାଙ୍କ ପ୍ରତି ଈର୍ଷାନ୍ୱିତ ହେବା ପରିବର୍ତ୍ତେ ପ୍ରଥମ ଦିନରୁ ହିଁ ସେ ତାଙ୍କୁ ଅତି ଆପଣାର କରି ନେଇଥିଲେ ।

ତାଙ୍କର ବିଶ୍ୱାସ ଥିଲା ଯେ ଭବିଷ୍ୟତରେ ଆଧ୍ୟାତ୍ମିକ ପଥରେ ଜଗତର କଲ୍ୟାଣ ନିମନ୍ତେ ରାଜଗୋପାଳ ତାଙ୍କର ସହାୟତା କରିବେ । ବିଧିତା ପରିବର୍ତ୍ତେ ଉଭୟଙ୍କର ବନ୍ଧୁତ୍ୱ ଦେଖି କେତେଜଣ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ମାତ୍ର ଲେଡ଼ବିଟର ଓ ଆନି ବେସାନ୍ତ ଏଥିରେ ବିଶେଷ ଆନନ୍ଦିତ ହୋଇଥିଲେ ।

ଲଣ୍ଡନରେ ପହଞ୍ଚିବାର ଅଳ୍ପ କିଛି ଦିନ ପରେ କୃଷ୍ଣମୂର୍ତ୍ତିଙ୍କୁ ଭୟଙ୍କର ବ୍ରୋଙ୍କାଇଟିସ୍ ଧରିଲା । ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ ସେଠାରୁ ଅଳ୍ପ ଦୂରବର୍ତ୍ତୀ ଆର୍ଣ୍ଣିବସ୍ ନାମକ ଏକ ସ୍ଥାନକୁ ବିଶ୍ରାମ ଲାଗି ପଠାଇ ଦିଆଗଲା । ପ୍ରଥମତଃ ତାଙ୍କୁ ଲଣ୍ଡନର ଲୋକଗହଳି, ହୋ' ହାଲ୍ଲା ଆଦୌ ଭଲ ଲାଗୁ ନ ଥିଲା । ତେଣୁ ଏହି ନିର୍ଜନ, ରମଣୀୟ ସ୍ଥାନଟି ତାଙ୍କ ପାଇଁ ଏକ ବଡ଼ ଆଶୀର୍ବାଦ ସ୍ୱରୂପ ହେଲା । ପ୍ରାକୃତିକ ପରିବେଶରେ ଘେରା ଏଇ ଛୋଟ ସହରଟି ଲୋକ ଗହଳିଠାରୁ ଦୂରରେ ଏକ ସ୍ନିଗ୍ଧ ବାତାବରଣରେ ଅବସ୍ଥିତ । ସେଠାର ତିନି ସପ୍ତାହ ରହଣି କୃଷ୍ଣମୂର୍ତ୍ତିଙ୍କ ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲା । ସେଠାରେ ଥିବା ଅବସ୍ଥାରେ ତାଙ୍କ ବ୍ୟକ୍ତିତ୍ୱରେ ଏଭଳି ଏକ ଆମୂଳ ପରିବର୍ତ୍ତନ ଘଟିଥିଲା ଯାହାର ତାତ୍ପର୍ଯ୍ୟ କ ତାଙ୍କର ଭବିଷ୍ୟତ ଜୀବନ ଲାଗି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ସେଇ କେତେ ଦିନର ନିର୍ଜନତା ଓ ଏକାକୀତ୍ୱରେ ତାଙ୍କର ଅନ୍ତର କ୍ରମଶଃ ଉନ୍ମୀଳିତ ହେବାରେ ଲାଗିଥିଲା । ସେ ନିଜକୁ ନିଜେ ବୁଝିବାକୁ ଚେଷ୍ଟା କରୁଥିଲେ । ଲେଡ଼ବିଟର ଓ ଆନି ବେସାନ୍ତଙ୍କ ତତ୍ତ୍ୱାବଧାନରେ ସେ ଯେଉଁ ମହତ ଉଦ୍ଦେଶ୍ୟ ସାଧନ ନିମନ୍ତେ ନିରୂପିତ ହୋଇଥିଲେ ସେହି ମହତ୍ ଉଦ୍ଦେଶ୍ୟର ପନ୍ଥା, ଲକ୍ଷସ୍ଥଳୀ ଓ କର୍ମକ୍ଷେତ୍ର ଏ ସମସ୍ତ ଯେ କେବଳ ଆତ୍ମ-ଅନୁଧ୍ୟାନରେ ନିହିତ ଏକଥା ସେ ଉପଲବ୍ଧି କରିବାକୁ ଆରମ୍ଭ କରିଥିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ଆପଣାକୁ ଅତି ଗଭୀର ଭାବରେ ଅନୁଧ୍ୟାନ କରିବା ଦ୍ୱାରା ହିଁ ଜୀବନର ଲକ୍ଷ୍ୟସାଧିତ ହୋଇପାରିବ । ଆଉ ତା'ର ପରଠାରୁ କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଅବିରତ ସଜାଗତା ଓ ଆତ୍ମ-ନିରୀକ୍ଷଣର ଏକ ଅଭିନବ ପ୍ରକ୍ରିୟା ଆରମ୍ଭ ହେଲା । ପରବର୍ତ୍ତୀ ଜୀବନରେ ତାଙ୍କର ଦର୍ଶନତତ୍ତ୍ୱର ଏକ ବିଶେଷ ପର୍ଯ୍ୟାୟ 'ଆପଣାକୁ

ବୁଝିବା ଉପରେ’ ପର୍ଯ୍ୟବସିତ । ତାଙ୍କ ଭାଷାରେ ‘ଅନ୍ୟକୁ ସାହାଯ୍ୟ କରିବା ପାଇଁ ହେଲେ ମୋ ନିଜଠାରେ ପ୍ରଥମେ ଅସୀମ ସହାନୁଭୂତି, ହୃଦୟଙ୍ଗମତା ଓ ଅପରିସୀମ ଶ୍ରଦ୍ଧା, ପ୍ରେମ ରହିବା ଆବଶ୍ୟକ ।’

ବ୍ରୋଙ୍କାଇଟିସ୍‌ରୁ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବା ପରେ କ୍ରିଷ୍ଣମୂର୍ତ୍ତି ପୁଣି ପାରିସ୍‌କୁ ଫେରିଲେ । ସେଠାରେ ଥାଇ ଦିନେ ସେ ଖବର ପାଇଲେ ଯେ ନିତ୍ୟ ଭୀଷଣ ଅସୁସ୍ଥ — କଫରେ ତାଙ୍କର ରକ୍ତ ପଡ଼ୁଛି । ଏକଥା ଶୁଣି ସେ ବ୍ୟସ୍ତ ହୋଇ ପଡ଼ିଲେ ଓ ସଙ୍ଗେ ସଙ୍ଗେ ନିତ୍ୟଙ୍କୁ ପାରିସ ଚାଲି ଆସିବାକୁ ଖବର ପଠାଇଲେ । ପାରିସରେ ପହଞ୍ଚିବା ପରେ ଡାକ୍ତର ପରୀକ୍ଷା କରି କହିଲେ ଯେ ନିତ୍ୟଙ୍କୁ ଯକ୍ଷ୍ମାରୋଗ ଧରିଛି ; ଯେଉଁଥିରେ ତାଙ୍କର ଗୋଟିଏ ଫୁସ୍‌ଫୁସ୍ ପୂରା ଆକ୍ରାନ୍ତ ହୋଇ ସାରିଲାଣି; ତୁରନ୍ତ ଚିକିତ୍ସା, ଉପଯୁକ୍ତ ଖାଦ୍ୟ ଓ ବିଶ୍ରାମ ବିନା ଏହା ଶରୀରରେ ମାଡ଼ି ଯିବାର ଆଶଙ୍କା ରହିଛି । ଡାକ୍ତରଙ୍କ ପରାମର୍ଶ ନେଇ କ୍ରିଷ୍ଣମୂର୍ତ୍ତି ନିତ୍ୟଙ୍କୁ ପାରିସ ପାଖରେ ଏକ ସ୍ୱାସ୍ଥ୍ୟକର ସ୍ଥାନକୁ ପଠାଇଦେଲେ । ସେଠାରେ ଦୀର୍ଘ ଦୁଇ ମାସ କାଳ ପୁଷ୍ଟିକର ଖାଦ୍ୟ ଓ ପ୍ରଚୁର ବିଶ୍ରାମ ପାଇ ନିତ୍ୟ ଧୀରେ ଧୀରେ ସୁସ୍ଥ ହେବାକୁ ଲାଗିଲେ । ସେହି ବର୍ଷ (୧୯୨୧) ଜୁଲାଇ ମାସରେ ପାରିସଠାରେ ‘ବିଶ୍ୱ ଥିଓସଫିକାଲ ସମ୍ମିଳନୀ’ ଓ ଠିକ୍ ତା ପରେ ପରେ ‘ଅର୍ଡ଼ର ଅଫ୍ ଦି ଷ୍ଟାର୍’ର ବାର୍ଷିକ ସମ୍ମିଳନୀର ଆୟୋଜନ ହୋଇଥିଲା । ଭାଗ୍ୟକୁ ସେତେବେଳକୁ ନିତ୍ୟ ଯଥେଷ୍ଟ ସୁସ୍ଥ ହୋଇ ସାରିଥିଲେ ଓ ପାରିସର ସମ୍ମିଳନୀରେ ଯୋଗ ଦେବାକୁ ଡାକ୍ତର ତାଙ୍କୁ ଅନୁମତି ଦେଇଥିଲେ ।

ସେତେବେଳକୁ ଷ୍ଟାର ଅନୁଷ୍ଠାନର ସଭ୍ୟ ସଂଖ୍ୟା ବୃଦ୍ଧି ପାଇ ମୋଟ ତିରିଶ ହଜାର ପାଖାପାଖି ହୋଇ ସାରିଥିଲା ଆଉ ଉକ୍ତ ସମ୍ମିଳନୀରେ ଯୋଗ ଦେବାକୁ ବିଭିନ୍ନ ସ୍ଥାନରୁ ପ୍ରାୟ ଦୁଇ ହଜାରରୁ ଊର୍ଦ୍ଧ୍ୱ ସଭ୍ୟ ଆସି ପାରିସରେ ପହଞ୍ଚିଥିଲେ । ଆନି ବେସାନ୍ତ ଓ କ୍ରିଷ୍ଣମୂର୍ତ୍ତି ମିଳିତ ଭାବରେ ସମ୍ମିଳନୀକୁ ଉଦ୍‌ଘାଟନ କରିବା ପରେ କ୍ରିଷ୍ଣମୂର୍ତ୍ତି ସମବେତ ଜନତା ଉଦ୍ଦେଶ୍ୟରେ ଫରାସୀ ଭାଷାରେ କ୍ରମାନ୍ୱୟରେ କେତୋଟି ଭାଷଣ ଦେଇଥିଲେ । ସେଥର ତାଙ୍କର ଭାଷଣ ଶୈଳୀ,

ବକ୍ତୃତାର ଦମ୍ଭ ଓ ତେଜଷ୍କ୍ରିୟତା ଉପସ୍ଥିତ ସଭ୍ୟମାନଙ୍କ ମଧ୍ୟରେ ଏକ ଶିହରଣ ସୃଷ୍ଟି କରିଥିଲା । ତାଙ୍କର ଭାଷଣରୁ ଜଣା ପଡ଼ୁଥିଲା ଯେ ଅବା ତାଙ୍କ ଜୀବନ ଦର୍ଶନରେ ଏକ ଆମୂଳ ରୂପାନ୍ତର ଘଟି ଯାଇଛି । ପୂର୍ବର ଭାଷଣଗୁଡ଼ିକ ଅପେକ୍ଷା ଏଥରକ ଭାଷଣର ଶୈଳୀ ମଧ୍ୟ ଭିନ୍ନ ଥିଲା । ଭାଷଣରୁ ତାଙ୍କର ସ୍ପଷ୍ଟ ସୂଚିତ ହେଉଥିଲା ଯେ ମନୁଷ୍ୟଠାରେ ଥିବା ସେହି ଅପ୍ରକାଶିତ ଦିବ୍ୟସତ୍ତାକୁ ସେ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରୁଛନ୍ତି ।

କୃଷ୍ଣମୂର୍ତ୍ତିଙ୍କ ଅନୁରୋଧରେ ସେ ବର୍ଷ ପ୍ରଥମ ଥର ପାଇଁ ସମ୍ମିଳନୀରେ କୌଣସି ପ୍ରକାର ଆନୁଷ୍ଠାନିକ ପରମ୍ପରା ପାଳନ କରାଯାଇ ନଥିଲା । ପ୍ରଥା ପରମ୍ପରାକୁ ବାରଣ କରି ସେ କହିଥିଲେ ଯେ ଯେତେ ସୁନ୍ଦର ଓ ଯେତେ ମନଲୋଭା ହେଉ ନା କାହିଁକି, ପରମ୍ପରା ମାନବକେ ଗତିକୁ ରୋଧ କରିଦିଏ; ତା' ଉପରେ କବାଟ ବାନ୍ଧିଦିଏ, କାର୍ଯ୍ୟର ପରିସରକୁ ସୀମାବଦ୍ଧ କରି ପକାଏ । ତେଣୁ ସତ୍ୟର ଅବତାରଣା ଲାଗି କୌଣସି ପ୍ରକାର ଧର୍ମମତ ବା ପରମ୍ପରା ମନୁଷ୍ୟକୁ କୌଣସି କ୍ଷେତ୍ରରେ ସାହାଯ୍ୟ କରିପାରେ ନାହିଁ । ବରଂ ଏଥିପାଇଁ ତା' ଲାଗି ଆବଶ୍ୟକ ଏକ ସମ୍ପୂର୍ଣ୍ଣ ମୁକ୍ତ ମନ ଯାହା କି ସବୁ ଆଡ଼ୁ, ସବୁ ଦିଗରୁ ମେଲା ଖୋଲା ଥିବ । ପୂର୍ବ ବିଶ୍ୱାସ, ବଦ୍ଧ ଧାରଣା ଓ ମନ ଭିତରର ଭାବକୁ ସାଥିକରି କେହି କେବେ ସତ୍ୟର ଅନୁସନ୍ଧାନ କରିପାରେ ନାହିଁ । କାରଣ ଏ ସବୁ ଜିନିଷ ମନକୁ ଏକ ରୁଦ୍ଧ କୋଠରୀ ଭଳି କରିଦିଏ, ସୀମିତ କରିଦିଏ, ତା' ଉପରେ ଘୋଡ଼ଣୀ ଢାଙ୍କି ତାକୁ ଆବୃତ କରିଦିଏ ।

ସମ୍ମିଳନୀ ଶେଷ ହେବା ବେଳକୁ ଶାରୀରିକ ପରିଶ୍ରମ ଓ ମାନସିକ ଉତ୍ତେଜନା ଯୋଗୁ ନିତ୍ୟଙ୍କଠାରେ ପୁଣିଥରେ ଅସୁସ୍ଥତାର ଲକ୍ଷଣ ଦେଖାଗଲା । ଦେହରେ ବରାବର ଜ୍ୱର ଲାଗି ରହିଲା । ସେ କାଳରେ ଯକ୍ଷ୍ମା ରୋଗର ତ ଏକମାତ୍ର ଚିକିତ୍ସା ଥିଲା ସୁଷମ ଖାଦ୍ୟ ଓ ପ୍ରଚୁର ବିଶ୍ରାମ । ତେଣୁ ଡାକ୍ତରଙ୍କ ପରାମର୍ଶରେ ତାଙ୍କୁ ପୁଣି ସୁଇଜରଲାଣ୍ଡର ଆଲ୍‌ପସ ପର୍ବତମାଳାର ମଣ୍ଟେସାନୋରେ ଥିବା ଏକ ବିଶ୍ରାମ ନିବାସକୁ ନିଆଗଲା । ସାଙ୍ଗରେ ଗଲେ କୃଷ୍ଣମୂର୍ତ୍ତି ଓ ରାଜଗୋପାଳ । ସେଠାର ଅନୁକୂଳ

ଜଳବାୟୁ ଓ କୃଷ୍ଣମୂର୍ତ୍ତିଙ୍କର ଅକ୍ଳାନ୍ତ ସେବା ଫଳରେ ନିତ୍ୟଙ୍କ ସ୍ୱାସ୍ଥ୍ୟରେ ଦ୍ରୁତ ଉନ୍ନତି ଦେଖା ଦେଲା । ପରିଶେଷରେ ନଭେମ୍ବର ମାସରେ ତିନିହେଁ ସେ ଜାଗା ଛାଡ଼ି ସହରକୁ ଫେରିବାକୁ ଡାକ୍ତରଙ୍କ ଅନୁମତି ପାଇଲେ ।

## ବାପ ପୁଅଙ୍କ ଶେଷ ଭେଟ

ଆନି ବେସାନ୍ତଙ୍କ ପୂର୍ବକଳ୍ପିତ ଯୋଜନା ଅନୁଯାୟୀ ୧୯୨୧ ମସିହା ଡିସେମ୍ବର ୩ ତାରିଖ ଦିନ କୃଷ୍ଣମୂର୍ତ୍ତି ଓ ନିତ୍ୟ ଇଂଲଣ୍ଡରୁ ଫେରି ବମ୍ବେରେ ପହଞ୍ଚିଲେ । ଦୀର୍ଘ ଦଶବର୍ଷ ପରେ ସେମାନେ ପୁଣି ଭାରତ ଭୂଇଁରେ ପାଦ ଦେଲେ । ଦେଶ ଛାଡ଼ି ଗଲାବେଳେ ଦିହେଁ ଥିଲେ ପିଲା — ଏହା ଭିତରେ ଅନେକ କିଛି ବଦଳି ଯାଇଥିଲା, ସେମାନେ କେତେ କେତେ ଅନୁଭୂତି ଭିତର ଦେଇ ଯାଇଥିଲେ, ତାଙ୍କ ବ୍ୟକ୍ତିତ୍ୱରେ କେତେ ପରିବର୍ତ୍ତନ ଆସିଥିଲା । ବିଗତ ଦଶ ବର୍ଷଯାକ ସେମାନଙ୍କର ଘର ଓ ପରିବାର ସହିତ ଆଦୌ କୌଣସି ସମ୍ପର୍କ ନ ଥିଲା ।

କୃଷ୍ଣମୂର୍ତ୍ତି ଓ ନିତ୍ୟ ବମ୍ବେରେ ପହଞ୍ଚିବା ପୂର୍ବରୁ ଆନି ବେସାନ୍ତ ଓ ଶ୍ରୀମତୀ ମାର୍ଜିଆରଲି ଆଗରୁ ଆସି ତାଙ୍କ ପାଇଁ ସେଠାରେ ଅପେକ୍ଷା କରି ରହିଥିଲେ । ତା'ର ଅଳ୍ପ କିଛି ମାସ ପୂର୍ବରୁ ଶ୍ରୀମତୀ ମାର୍ଜିଆରଲିଙ୍କ ସ୍ୱାମୀଙ୍କର ମୃତ୍ୟୁ ଘଟିଥିଲା ତେଣୁ ଏଣିକି ସେ ନିଜର ସମସ୍ତ ସମୟ କୃଷ୍ଣମୂର୍ତ୍ତି ଓ ଥିଓସଫିକାଲ ସୋସାଇଟିର ସେବାରେ ଢାଳିଦେବାର ସିଦ୍ଧାନ୍ତ ନେଇ ଭାରତକୁ ଆସିଥିଲେ । ବମ୍ବେରେ ପହଞ୍ଚିବା ପରେ କୃଷ୍ଣମୂର୍ତ୍ତି ଓ ନିତ୍ୟ ଲୋକମାନଙ୍କ ମନରୁ ଅଯଥା କୌତୁହଳ ଏଡ଼ାଇବା ପାଇଁ ଖୁବ୍ ଶୀଘ୍ର ନିଜର ବିଲାତି ପାଣ୍ଟ କୋଟ୍ ପାଲଟି ଭାରତୀୟ ପୋଷାକ ପିନ୍ଧିନେଲେ ଓ ଆଗଭଳି ପୁଣି ଭୂଇଁରେ ଚକାମାରି ବସି କଦଳୀ ପତ୍ରରେ ଖାଇବା ଅଭ୍ୟାସ ଆରମ୍ଭ କରିଦେଲେ । ବମ୍ବେରେ ମାତ୍ର ଅଳ୍ପ କିଛିଦିନ

କଟାଇ ସେମାନେ ସମଷ୍ଟେ ବନାରସ ବାଟ ଦେଇ ଆସି ଆଡ୍ଡାୟାରରେ ପହଞ୍ଚିଲେ ।

ଘରତ ଛାଡ଼ିବା ପରଠାରୁ ଏ ଯାଏଁ କ୍ରିଷ୍ଣମୂର୍ତ୍ତି ଓ ନିତ୍ୟ ନାରାୟଣିୟାଙ୍କୁ ଭେଟିବାର ସୁଯୋଗ ପାଇ ନ ଥିଲେ । ନାରାୟଣିୟା ଏତେବେଳକୁ ମାନ୍ଦ୍ରାସର ତ୍ରିପ୍ଲିକେନ୍‌ଠାରେ ନିଜର ବଡ଼ ପୁଅ ବୋହ୍ନଙ୍କ ପାଖରେ ରହୁଥିଲେ । ଶେଷରେ ୧୯୨୨ ମସିହା ଜାନୁଆରି ମାସରେ ସେମାନେ ତାଙ୍କୁ ଦେଖା କରିବାକୁ ତ୍ରିପ୍ଲିକେନ୍ ଗଲେ । ଘରେ ପହଞ୍ଚି କ୍ରିଷ୍ଣମୂର୍ତ୍ତି ଓ ନିତ୍ୟ ଯାଇ ବାପାଙ୍କ ପାଦ ଛୁଇଁ ସାଷ୍ଟାଙ୍ଗ ପ୍ରଣାମ କଲେ । ନାରାୟଣିୟା କିନ୍ତୁ ତତ୍‌କ୍ଷଣାତ ସେଠାରୁ ଉଠି ପଡ଼ି ନିଜର ଗୋଡ଼ ଧୋଇବାକୁ ଚାଲିଗଲେ । କଥା ହେଲା, ଏତେଦିନ ଯାକେ ପୁଅ ହିଁ ଯେ ତାଙ୍କର କୌଣସି ଖବର ରଖି ନାହାନ୍ତି, ବିଦେଶରେ ରହି ଅଜାତି ହାତରେ ଖାଇଛନ୍ତି, ଆପଣା ଧର୍ମ ହରାଇ ବସିଛନ୍ତି—ବାପାଙ୍କ ସହିତ ତାଙ୍କର ଆଉ କି ସମ୍ପର୍କ ? ଯୋଉ ପୁଅମାନଙ୍କୁ ଫେରାଇ ଆଣିବା ପ୍ରୟାସରେ ସେ ଏତେ ମାଲି ମକଦ୍ଦମା କରିଥିଲେ, ଆନି ବେସାନ୍ତ ଓ ଥିଓସଫିକାଲ ସୋସାଇଟିର ନୈତିକତା ବିରୁଦ୍ଧରେ ପ୍ରଶ୍ନ ଉଠାଇଥିଲେ, ଆଜ ସେଇ ପୁଅମାନଙ୍କୁ ଏତେ ପାଖରେ ପାଇ ସୁଦ୍ଧା ସେ ଖୁସି ହୋଇପାରି ନ ଥିଲେ । ସେଠାରେ ଅଳ୍ପ ସମୟ କଟାଇ ଦୁଇ ଭାଇ ପୁଣି ଆଡ୍ଡାୟାର ଫେରି ଆସିଲେ ।

ଯଦିଓ କ୍ରିଷ୍ଣମୂର୍ତ୍ତି ନିଜ ଡାଏରିରେ ଉପରୋକ୍ତ ଘଟଣାଟି ବର୍ଣ୍ଣନା କରିଛନ୍ତି, ତାଙ୍କର ବଡ଼ ଭଉଣୀ ଶାରଦା ଦେବୀଙ୍କଠାରୁ ଏ ବିଷୟରେ ଏକ ସମ୍ପୂର୍ଣ୍ଣ ଭିନ୍ନ ବୟାନ ଶୁଣିବାକୁ ମିଳେ । ସେ କହନ୍ତି ଯେ ଥିଓସଫିକାଲ ସୋସାଇଟିରୁ ସମ୍ପର୍କ ଛିନ୍ନ କରିବା ପରେ ନାରାୟଣିୟାଙ୍କୁ କ୍ରିଷ୍ଣମୂର୍ତ୍ତି ବା ନିତ୍ୟଙ୍କ ବିଷୟରେ ଆଉ କୌଣସି ଖବର ଜଣାଇ ଦିଆଯାଉ ନ ଥିଲା । ଏତେ ବର୍ଷ ପରେ ପୁଅମାନେ ପୁଣି ଫେରି ଆସିବାର ସମ୍ବାଦ ଯେତେବେଳେ ସେ ବାହାର ଲୋକଙ୍କ ଠାରୁ ପାଇଲେ, ଖୁସି ଓ ଆନନ୍ଦରେ କାନ୍ଦି ପକାଇଲେ ଓ ପୁଅମାନଙ୍କ ଆସିବା ବାଟକୁ ଚାହିଁ ରହିଲେ । କ୍ରିଷ୍ଣମୂର୍ତ୍ତି ଓ ନିତ୍ୟ ଆସି ତାଙ୍କର ପାଦ ଛୁଇଁ ପ୍ରଣାମ

କରିବା ମାତ୍ରକେ ସେ ଆନନ୍ଦ ଗଦଗଦ ହୋଇ ପୁଅ ଦୁହିଁଙ୍କୁ କୁଣ୍ଢାଇ ଧରି ଖାଲି କାନ୍ଦିବାରେ ଲଗିଲେ । ନାରାୟଣିୟାଙ୍କ ଗୋଡ଼ ଧୋଇବା କଥା ପଚାରିବାରେ ଶାରଦା ଦେବୀ କହିଲେ ଯେ ନାରାୟଣିୟା ବହୁମୂତ୍ର ରୋଗରେ ଭୋଗୁଥିବାରୁ ବାରମ୍ବାର ପରିସ୍ରା କରିବାକୁ ଯାଉଥିଲେ ଓ ସେହି କାରଣରୁ ଗୋଡ଼ ଧୋଇଥିବେ । ସେ ଯାହା ହେଉନା କାହିଁକି, ସେହି ଥିଲା ବାପ-ପୁଅଙ୍କ ଭିତରେ ଶେଷ ଦେଖା । ଏହାର ଦୁଇବର୍ଷ ପରେ ୧୯୨୪ ମସିହାରେ ନାରାୟଣିୟାଙ୍କର ମୃତ୍ୟୁ ଘଟିଲା ।

କୃଷ୍ଣମୂର୍ତ୍ତିଙ୍କର ଆଧ୍ୟାତ୍ମିକ ଜୀବନ ସମ୍ପର୍କରେ ସେତେବେଳେ ଆଡ୍ୟାରରେ ଏତେ ଜୋରସୋର ପ୍ରଚାର ହୋଇଥିଲା ଯେ ତାଙ୍କ ସହିତ ଦେଖା କରିବା ପାଇଁ ଅଧିକାଂଶ ଦିନ ଲୋକେ ଆସି ଘର ଆଗରେ ଭିଡ଼ କରୁଥିଲେ । ସେମାନଙ୍କ ଭିତରୁ କେତେକ ନିଜ ଜୀବନର ନାନାଦି ମନସ୍ତାତ୍ତ୍ୱିକ ସମସ୍ୟା ନେଇ ଆଲୋଚନା କରିବାକୁ ଆସୁଥିଲେ ଓ ଆଉ କେତେକ କେବଳ ତାଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ଆସୁଥିଲେ । ଲୋକମାନଙ୍କ ଏତାଦୃଶ ଆଗ୍ରହରେ କୃଷ୍ଣମୂର୍ତ୍ତି ଅନେକ ସମୟରେ ଅପ୍ରସ୍ତୁତ ହୋଇ ପଡ଼ୁଥିଲେ । ସେମାନଙ୍କର ଭକ୍ତି ଓ ସମ୍ମାନ ତାଙ୍କ ଭିତରେ ଗର୍ବ, ଅହଙ୍କାର ଆଣିବା ତ ଦୂରର କଥା ବରଂ ତାଙ୍କଠାରେ ସଙ୍କୋଚ ଭାବ ସୃଷ୍ଟି କରୁଥିଲା । ସେତିକିବେଳେ ଗୋଟିଏ ଚିଠିରେ ସେ ଲେଖିଥିଲେ —'ଏଠିକାର ଲୋକମାନେ ମତେ ଦର୍ଶନ କରିବାକୁ, ମୋ' ସହିତ କଥାଭାଷା କରିବାକୁ ଅଥବା ମୋର ଉପଦେଶ ଶୁଣିବାକୁ ବଡ଼ ତତ୍ପର ହୋଇ ଉଠିଛନ୍ତି । ଭଗବାନ ହିଁ କେବଳ ଜାଣନ୍ତି ସେମାନେ କାହିଁକି ଏମିତି କରୁଛନ୍ତି, ମୁଁ ନିଜେ ବି ସେ କଥା ବୁଝିପାରୁ ନାହିଁ...... ଏପରିକି ସ୍ୱୟଂ ଆନି ବେସାନ୍ତ ବି ମୋ' ସହିତ କଥାବାର୍ତ୍ତା କଲାବେଳେ ବଡ଼ ମନଧ୍ୟାନ ଦେଇ ମୋ' କଥା ସବୁ ଶୁଣୁଛନ୍ତି ଓ କହୁଛନ୍ତି ଯେ ମୁଁ କୁଆଡ଼େ ଦିନେ ତାଙ୍କର ବଡ଼ ସାହାଯ୍ୟରେ ଆସିବି ।'

# ଗୁଜବ ଓ ଟାହ୍ନଟାପର୍ ଘେରରେ କୃଷ୍ଣମୂର୍ତ୍ତି

୧୯୨୨ ମସିହା ଏପ୍ରିଲ ମାସରେ ଅଷ୍ଟ୍ରେଲିଆର ସିଡ଼ନୀ ଠାରେ ଲେଡ଼ବିଟର ଥିଓସଫିକାଲ ସୋସାଇଟିର ଏକ ବିଶେଷ ସମ୍ମିଳନୀର ଆୟୋଜନ କରିଥିଲେ । ସେଥିରେ ଯୋଗଦେବା ପାଇଁ କୃଷ୍ଣମୂର୍ତ୍ତି, ନିତ୍ୟ ଓ ଜିନରାଜ ଦାସ ପ୍ରଭୃତି ଅଷ୍ଟ୍ରେଲିଆ ଅଭିମୁଖେ ଜଳଯାତ୍ରା କରି ଏପ୍ରିଲ ୨ ତାରିଖରେ ସିଡ଼୍ନୀରେ ପହଞ୍ଚିଲେ । ଭାରତୀୟ ରାଜନୀତିରେ ବ୍ୟସ୍ତ ରହି ଆନି ବେସାନ୍ତ ସେଥର ସମ୍ମିଳନୀରେ ଯୋଗ ଦେଇପାରି ନ ଥିଲେ । ସିଡ଼ନୀ ଠାରେ ଲେଡ଼ବିଟର ଓ କୃଷ୍ଣମୂର୍ତ୍ତିଙ୍କ ମଧ୍ୟରେ ଏକ ଦୀର୍ଘ ବ୍ୟବଧାନ ପରେ ସାକ୍ଷାତ ହେଲା । ଲେଡ଼ବିଟର ସେତେବେଳକୁ ସମଗ୍ର ଅଷ୍ଟ୍ରେଲିଆର ଲିବେରାଲ କାଥଲିକ ଚର୍ଚ୍ଚର ମୁଖ୍ୟ ପାଦ୍ରୀ ଭାବେ ଅଧିଷ୍ଠିତ ଥିଲେ ଓ ତାଙ୍କର ଜଣେ ପ୍ରିୟ ଶିଷ୍ୟ ଜେମ୍ସ ୱେଜଉଡ଼୍‌ଙ୍କୁ ସିଡ଼୍ନୀ କାଥଲିକ ଚର୍ଚ୍ଚର ମୁଖ୍ୟ ପାଦ୍ରୀ ପଦବୀରେ ଅବସ୍ଥାପିତ କରାଇଥିଲେ । ବୃଳିଶ ବର୍ଷ ବୟସ୍କ ଏହି ୱେଜଉଡ଼ ସ୍ୱଭାବତଃ ଅତ୍ୟନ୍ତ ଉଚ୍ଚାକାଂକ୍ଷୀ ଥିଲେ ଏବଂ ଥିଓସଫିକାଲ ସୋସାଇଟିରେ ଯୋଗ ଦେଇ ତାହାର ଜେନେରାଲ ସେକ୍ରେଟାରୀ ଭାବରେ ମଧ୍ୟ କିଛି କାଳ କାର୍ଯ୍ୟ କରିଥିଲେ ।

ସିଡ଼୍ନୀରେ ପହଞ୍ଚିବା ପରେ ଲେଡ଼ବିଟରଙ୍କ ଅନୁରୋଧରେ କୃଷ୍ଣମୂର୍ତ୍ତି ସେଠା କାଥଲିକ ଚର୍ଚ୍ଚର କେତେକ ଅଧିବେଶନରେ ଯୋଗ ଦେଇଥିଲେ । ମାତ୍ର ସେଠାରେ ପାଳନ କରାଯାଉଥିବା ବର୍ଣ୍ଣାଢ଼୍ୟ ପ୍ରଥା ପରମ୍ପରାକୁ ଦେଖି ତାଙ୍କ ମନରେ ଘୋର ଦୁଃଖ ହୋଇଥିଲା । ଦିନେ ଏମିତି ଗୋଟିଏ ବର୍ଣ୍ଣାଢ଼୍ୟ ଅଧିବେଶନରେ ଦୀର୍ଘ ଅଢ଼େଇ ଘଣ୍ଟା କାଳ ବସି ବସି ଅତିଷ୍ଠ ହୋଇ ଫେରିବା ପରେ ଲେଡ଼ି ଏମିଲିଙ୍କୁ ଲେଖିଥିଲେ,

"ଜଣେ ପାଦ୍ରୀ ଭାବରେ ଲେଡ଼ବିଟର ସେହି ପ୍ରଥା ପରମ୍ପରାଗୁଡ଼ିକୁ ଅତି ଚମତ୍କାର ଢଙ୍ଗରେ ପାଳନ କରୁଥିଲେ । କିନ୍ତୁ ତମେ ତ ଜାଣ ମାଆ, ମୁଁ କୌଣସି ପ୍ରକାରେ ହେଲେ ପରମ୍ପରାବାଦୀ ନୁହେଁ, ଆଜି

ଏଇସବୁ ମନ୍ତ୍ରପାଠ, ସ୍ତୁତିମିନ୍ତି, ପୋଷାକ ପରିଚ୍ଛଦର ଆଡ଼ମ୍ବରକୁ ମୁଁ ଆଦୌ ପସନ୍ଦ କରେ ନାହିଁ । ହେଲେ ମୁଁ ସେମାନଙ୍କୁ ବିରୋଧ କରିବାକୁ ଯାଉ ନାହିଁ । ଏମିତି କରିବାରେ କେତେକ ଲୋକ ଆନନ୍ଦ ପାଆନ୍ତି, ତେଣୁ ଏସବୁକୁ ବାରଣ ବା ବିରୋଧ କରିବାକୁ ମୋର ବା କି ଅଧିକାର ଅଛି କହ ?''

ବାସ୍ତବରେ ସିଡ଼୍‌ନିରେ ବିତାଇଥିବା ସେହି ଦିନ କେତୋଟି କୃଷ୍ଣମୂର୍ତ୍ତିଙ୍କ ପାଇଁ ବଡ଼ ଦୟନୀୟ ଥିଲା । ସେ ନା' ଲେଡ଼ବିଟରଙ୍କ ସ୍ତୁତିମିନ୍ତିରେ ଭାଗ ନେଇ ପାରୁଥିଲେ ନା' ଥିଓସଫିକାଲ ସୋସାଇଟିର ସଭ୍ୟମାନଙ୍କର ଅଯଥା ମାନ ସମ୍ମାନରୁ ନିଜକୁ ବଞ୍ଚାଇ ପାରୁଥିଲେ । ଯୋଗକୁ ପୁଣି ସେ ସେଠାରେ ପହଞ୍ଚିବା ପରେ ପରେ ଲେଡ଼ବିଟରଙ୍କ ଶତ୍ରୁପକ୍ଷର ପ୍ରବୋଚନାରେ କୃଷ୍ଣମୂର୍ତ୍ତିଙ୍କୁ କେନ୍ଦ୍ର କରି ଜନସାଧାରଣରେ ଏକ ପ୍ରକାର ଗୁଜବ ଖେଳି ଯାଇଥିଲା । ସେ ଭବିଷ୍ୟତରେ 'ଜଗତ ଗୁରୁ' ହେବେ ବୋଲି କଥାଟା ଲୋକଙ୍କ ଭିତରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । କେତେକ ସ୍ଥାନୀୟ ସମ୍ବାଦପତ୍ରରେ ତାଙ୍କୁ ଆକ୍ଷେପ କରି ପ୍ରତିଦିନ ନୂଆ ନୂଆ ଖବର ଛପା ହେବାରେ ଲାଗିଥିଲା । ବାଟରେ ଘାଟରେ ତାଙ୍କୁ ଦେଖିଲେ ଲୋକେ ନିଜ ନିଜ ଭିତରେ ଛୁଗୁଲେଇ କଥାସବୁ କହି ତାଙ୍କ ଜୀବନକୁ ଅତିଷ୍ଠ କରି ପକାଉଥିଲେ । ସେଇକଥା ଜଣାଇ କୃଷ୍ଣମୂର୍ତ୍ତି ଥରେ ଗୋଟିଏ ଚିଠିରେ ଲେଖିଥିଲେ, "ଓଃ ଭଗବାନ, ଏସବୁ ଧୃଷ୍ଟତା ମତେ କି ଯେ କଦର୍ଯ୍ୟ ଲାଗୁଛି ! ରାସ୍ତାରେ ଗଲାବେଳେ ଲୋକମାନେ ମତେ ଆଙ୍ଗୁଳି ଦେଖାଇ ପରସ୍ପର ଭିତରେ ଠାଟ୍ଟାଠଟ୍ଟା ହେଉଛନ୍ତି । ଦିନେ ଯାଉ ଯାଉ ବାଟରେ ଶୁଣିଲି ପିଲାଟିଏ ତା'ର ସାଥୀକୁ ଡାକି କହୁଛି—'ଆରେ ଦେଖ୍‌ରେ, ଖବରକାଗଜରେ ତ୍ରାଣକର୍ତ୍ତା ବୋଲି ଯାହା କଥା ବାହାରିଛି, ସେଇ ଟୋକା ଯାଉଛି ପରା ।' ଏତିକି କହି ସେମାନେ ବିଦ୍ରୂପ ଢଙ୍ଗରେ ହସି ହସି ଲୋଟିଗଲେ । ବୋଧହୁଏ, ଯଦି ମୁଁ ସେଠାରେ ନ ଥାଆନ୍ତି କି ଏସବୁରେ ସମ୍ପୃକ୍ତ ନ ଥାଆନ୍ତି ତେବେ ମୁଁ ବି ସେମିତି ହସିଥାନ୍ତି ନିଶ୍ଚୟ ।...ପୁଣି ଆଉ ଦିନେ ମୁଁ ବାଟରେ ଯାଉ ଯାଉ ଶୁଣିଲି ଜଣେ କିଏ କହୁଛି—

'ଆରେ ହେ, ସେଇ ଯୋଉ ଲୋକଟାର ଭିତରଣଟା ଜନ୍ମ କଥା ବାହାରିଥିଲା, ସେଇ ଯାଉଛିରେ ଦେଖ୍ ।' ମୋର ମନେ ହେଲା ସତେ ଅବା ମୁଁ ସେଇଠି ରାସ୍ତାରେ ଟଳି ପଡ଼ିବି । ଓଃ ଭଗବାନ, ଏସବୁକୁ ମୁଁ କି ଯେ ଘୃଣା କରେ ! ଏଭଳି ପ୍ରଚାର ମତେ କି ଯେ କଷ୍ଟ ଦେଉଛି ! ଏକୁ କ୍ଷିଁ ଧରି ପୁଣି ମତେ ସାରା ଜୀବନ ଚାଲିବାକୁ ହେବ ! ଓଃ ମୁଁ କଣ ଯେ କରିଥିଲି ମତେ ଏସବୁ ଭୋଗିବାକୁ ପଡ଼ୁଛି ।"

ଅଷ୍ଟ୍ରେଲିଆକୁ ଦୀର୍ଘ ଜଳଯାତ୍ରା ଓ ସିଡ଼୍ନୀ ସମ୍ମିଳନୀର ପରିଶ୍ରମ ନିତ୍ୟଙ୍କ ସ୍ୱାସ୍ଥ୍ୟକୁ ପୁଣି ଖରାପ କରିଦେଲା । ସିଡ଼୍ନୀରେ ଡାକ୍ତର ପରୀକ୍ଷା କରି କହିଲେ ଯେ ଯକ୍ଷ୍ମା ରୋଗ ଦେହ ଭିତରେ ଖୁବ୍ ବ୍ୟାପି ଯାଇଛି ଓ ସେଥିରେ ତାଙ୍କର ଦୁଇଟିଯାକ ଫୁସ୍‌ଫୁସ୍ ଆକ୍ରାନ୍ତ ହୋଇ ସାରିଛି । ତେଣୁ ତାଙ୍କୁ ଖୁବ୍ ଶୀଘ୍ର ଇଉରୋପ ନେଇଯିବାକୁ ସେ ଉପଦେଶ ଦେଲେ । କିନ୍ତୁ ଆମେରିକା ଥିଓସଫିକାଲ ସୋସାଇଟିର ଜେନେରାଲ ସେକ୍ରେଟାରୀ ଶ୍ରୀ ୱାରିଂଟନ ସେମାନଙ୍କୁ ସିଧା ଇଉରୋପ ନ ଫେରି ବାଟରେ କାଲିଫର୍ଣ୍ଣିଆ ପ୍ରଦେଶର ସୁରମ୍ୟ ଉପତ୍ୟକା— ଓହାଇ ଠାରେ କିଛି ଦିନ ବିଶ୍ରାମ ନେବାକୁ ନିମନ୍ତ୍ରଣ ଜଣାଇଲେ । ସାନଫ୍ରାନ୍‌ସିସ୍କୋ ଠାରୁ ଅଶୀ ମାଇଲ ଦୂରରେ ସମୁଦ୍ର ପତ୍ତନଠାରୁ ପ୍ରାୟ ଦେଢ଼ ହଜାର ଫୁଟ ଉପରେ ଅବସ୍ଥିତ ଏହି ଓହାଇ ଉପତ୍ୟକା ନିତ୍ୟଙ୍କ ପାଇଁ ସବୁ ଦୃଷ୍ଟିରୁ ଏକ ଉତ୍କୃଷ୍ଟ ବିଶ୍ରାମ ସ୍ଥାନ ହୋଇପାରିବ ବୋଲି ଦର୍ଶାଇ ୱାରିଂଟନ ଏହି ବ୍ୟବସ୍ଥା କରିଥିଲେ ।

ୱାରିଂଟନଙ୍କ ଅନୁରୋଧ ରକ୍ଷା କରି ନିତ୍ୟଙ୍କୁ ସାଥିରେ ଧରି କୃଷ୍ଣମୂର୍ତ୍ତି ୧୯୨୨ ଜୁଲାଇ ମାସରେ ଓହାଇରେ ପହଞ୍ଚିଲେ । ଉପତ୍ୟକାର ସୁଦୂର ବିସ୍ତାରୀ କମଳା ବଗିଚା ଭିତରେ ସେମାନଙ୍କ ରହିବା ପାଇଁ ଦୁଇଟି ଛୋଟ ଛୋଟ ପଲ୍ଲୀଭବନର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଖିଆପିଆର ଯତ୍ନ ନେବାକୁ ୱାରିଂଟନ ଲୋକ ମଧ୍ୟ ଯୋଗାଡ଼ କରି ରଖିଥିଲେ । ଅଷ୍ଟ୍ରେଲିଆର ଅଶାନ୍ତ

ଉତ୍ତେଜନା ପରେ ଓହାଇର ନିର୍ଜନ ପରିବେଶ କୃଷ୍ଣମୂର୍ତ୍ତିଙ୍କ ପାଇଁ ଏକ ବଡ଼ ଆଶୀର୍ବାଦ ସ୍ୱରୂପ ଥିଲା । ଉପତ୍ୟକାର ଚାରିପଟେ ବେଢ଼ାଇ ମୁଣ୍ଡ ଟେକିଥିବା ଉଚ୍ଚ ପର୍ବତମାଳା, ତାର ପାଦଦେଶରେ ବିସ୍ତୃତ ଘନ ପାଇନ ବଣ ପ୍ରଭୃତି କୃଷ୍ଣମୂର୍ତ୍ତିଙ୍କ ସ୍ୱପ୍ନବିଭୋର ମନକୁ ଅତିରେ ମୋହି ନେଲା । ସେ ଜାଗାଟି ତାଙ୍କୁ ଏତେ ଭଲ ଲାଗିଲା ଯେ ତହିଁ ଆର ବର୍ଷ ଆନି ବେସାନ୍ତ ତାଙ୍କ ପାଇଁ ଠିକ୍ ସେହି ସ୍ଥାନରେ ଏକ ବଡ଼ କୋଠାଘର ସହ ଚାରି ଏକର ପାଖାପାଖି ଜମି କିଣିନେଲେ । ଘରଟିର ନାଆଁ ରହିଲା 'ଆର୍ଯ୍ୟ ବିହାର' ଆଉ ପୂର୍ବର ଛୋଟ ପଲ୍ଲୀଭବନଟିକୁ ଡକାଗଲା 'ପାଇନ୍ କଟେଜ୍ ।'

ଓହାଇରେ ବିଶ୍ରାମ ନେଇ ସୁଦ୍ଧା ନିତ୍ୟଙ୍କ ସ୍ୱାସ୍ଥ୍ୟରେ କୌଣସି ଉନ୍ନତି ଦେଖା ନ ଦେବାରୁ ସେମାନେ ବାଧ୍ୟ ହୋଇ ସେଠାର ଜଣେ ବିଶିଷ୍ଟ ଚିକିତ୍ସକ—ଡାକ୍ତର ଆବ୍ରାମ୍ସ୍‌ଙ୍କ ସାହାଯ୍ୟ ଲୋଡ଼ିଲେ । ଡାକ୍ତର ଆବ୍ରାମ୍ସ ସେତେବେଳେ 'ଅସିଲୋକ୍ଲାଷ୍ଟ' ନାମକ ଏକ ନୂତନ ବୈଦ୍ୟୁତିକ ଯନ୍ତ୍ର ଉଦ୍ଭାବନ କରି ତା'ର ସାହାଯ୍ୟରେ ଏକ ଅଭିନବ ଉପାୟରେ ରୋଗ ଭଲ କରିବାର ସୁନାମ ଅର୍ଜନ କରିଥିଲେ । ଯନ୍ତ୍ରଟିକୁ ନେଇ ସେ ରୋଗୀର ଶରୀରରେ ଖଞ୍ଜି ଏକ ବିଶେଷ ଉପାୟରେ ରୋଗାକ୍ରାନ୍ତ ଅଙ୍ଗକୁ ବିଦ୍ୟୁତ ତରଙ୍ଗ ପଠାଇ କାନସର, ଯକ୍ଷ୍ମା, ସିଫିଲସ୍ ପ୍ରଭୃତି କେତେକ ଦୁଃସାଧ୍ୟ ରୋଗକୁ ଆରୋଗ୍ୟ କରି ପାରୁଥିଲେ ବୋଲି ତାଙ୍କର ପ୍ରସିଦ୍ଧି ଥିଲା ।

ନିତ୍ୟଙ୍କ ରକ୍ତକୁ ପରୀକ୍ଷା କରି ଆବ୍ରାମ୍ସ୍ ଜଣାଇଲେ ଯେ ତାଙ୍କର ବାମ ଫୁସ୍‌ଫୁସ୍ ଓ ଦୁଇଟିଯାକ କିଡ୍‌ନି ଯକ୍ଷ୍ମାରେ ଆକ୍ରାନ୍ତ ହୋଇଛି । ତେଣୁ ତାଙ୍କର ପରାମର୍ଶରେ ନିତ୍ୟ ସେଠାରୁ ପଇଁଚାଳିଶ ମିନିଟ୍ ସକାଳେ ଯାଇ ଅସିଲୋକ୍ଲାଷ୍ଟରେ ଚିକିତ୍ସିତ ହେବାକୁ ଆରମ୍ଭ କଲେ । ଏମିତି ଚିକିତ୍ସା ପୂରା କୋଡ଼ିଏ ଦିନ ଧରି ଚାଲିବା ପରେ ପୁଣି ଥରେ ନିତ୍ୟଙ୍କର ରକ୍ତ ପରୀକ୍ଷା କରି ସେ ଜଣାଇଲେ ଯେ ଚିକିତ୍ସା ଦ୍ୱାରା ନିତ୍ୟଙ୍କ ଦେହରୁ ଯକ୍ଷ୍ମା ଜୀବାଣୁ ସମ୍ପୂର୍ଣ୍ଣ ରୂପେ ଦୂର ହୋଇପାରିଛି ଓ ଏଣିକି ସେ ରୋଗମୁକ୍ତ । ଏକଥା ଶୁଣି କୃଷ୍ଣମୂର୍ତ୍ତି ମଧ୍ୟ କୌତୂହଳ ପରବଶ ହୋଇ ନିଜର ରକ୍ତ

ପରୀକ୍ଷା ପାଇଁ ଡାକ୍ତରଙ୍କ ନିକଟକୁ ପଠାଇଲେ । ପରୀକ୍ଷା କରି ଡାକ୍ତର ଜଣାଇଲେ ଯେ କ୍ରିଷ୍ଣମୂର୍ତ୍ତିଙ୍କର ଅନ୍ତନାଳୀ ଓ ବାମ ଫୁସ୍‌ଫୁସ୍‌ରେ କାନସର ଏବଂ ନାକ ଓ ପ୍ଲୀହାରେ ସିଫିଲସ୍ ଜୀବାଣୁ ରହିଛି । ଡାକ୍ତରଙ୍କ ରିପୋର୍ଟ ପାଇ କ୍ରିଷ୍ଣମୂର୍ତ୍ତି ନିଜେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ପିଲା ଦିନରୁ ତାଙ୍କର ନାକରେ ସବୁବେଳେ କିଛି ନା କିଛି ଦୋଷ ଲାଗି ରହିଥିଲା । ବେଳେ ବେଳେ ନାକରୁ ରକ୍ତ ପଡ଼ୁଥିଲା । ଯେତେ ଚେଷ୍ଟା କଲେ ସୁଦ୍ଧା ଡାକ୍ତରମାନେ ରୋଗ ଧରି ପାରୁ ନ ଥିଲେ । ଏବେ ଆବ୍ରାମ୍‌ସ୍‌ଙ୍କର ଯନ୍ତ୍ର ଓ ଚିକିତ୍ସା ପଦ୍ଧତି ଉପରେ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଆସିଗଲା ଓ ସେ ମଧ୍ୟ ଗୋଟିଏ ଅସିଲୋକ୍ଲାଷ୍ଟ ଯନ୍ତ୍ର ମଗାଇ ସେଥିରେ ଚିକିତ୍ସିତ ହେବାକୁ ଲାଗିଲେ । ଆଉ ସତକୁ ସତ ଅଳ୍ପ ଦିନ ଭିତରେ ତାଙ୍କର ମନେହେଲା ଯେ ତାଙ୍କର ନାକ ରୋଗ କ୍ରମଶଃ ଭଲ ହେବାରେ ଲାଗିଛି ।

## 'ସେ ମୂଳଆଟି ମୁଁ, ପୁଣି ତା'ର ଗଇଁତ ବି ମୁଁ'

ଓହାଇରେ ଥିବାବେଳେ କ୍ରିଷ୍ଣମୂର୍ତ୍ତି ନିୟମିତ ସକାଳେ ଓ ସନ୍ଧ୍ୟାରେ ଧ୍ୟାନ କରୁଥିଲେ । ଏଇ ଧ୍ୟାନ କରିବା ଅଭ୍ୟାସଟା ତାଙ୍କର ବହୁ ଦିନରୁ, ଅର୍ଥାତ୍ ଥିଓସଫିକାଲ ସୋସାଇଟିରେ ଯୋଗଦେବା ଦିନଠାରୁ ଥିଲା । ଏବେ ସେ କ୍ରମଶଃ ଲକ୍ଷ୍ୟ କରିବାକୁ ଲାଗିଲେ ଯେ ମନଟା ତାଙ୍କର ସଦାବେଳେ ଏକ ଅପୂର୍ବ ଆନନ୍ଦମୟ ଅବସ୍ଥାରେ ରହୁଛି ଏବଂ ଅନ୍ତରରେ ସଦାବେଳେ ମହାମୁନି ମୈତ୍ରେୟଙ୍କର ଭାବନା ଲାଗି ରହୁଛି—ମନର ଅସ୍ଥିରତା, ଚଞ୍ଚଳତା ସତେ ଅବା କୁଆଡ଼େ ଉଭେଇ ଯାଇଛି ଓ ତା ପରିବର୍ତ୍ତେ ଅନ୍ତରଟା ଏକଦମ୍ ନୀରବ, ପ୍ରଶାନ୍ତ ହୋଇ ଯାଇଛି ।

ଏଭଳି ଅବସ୍ଥାରେ କିଛି ଦିନ କଟିଗଲା । ସେତେବେଳେ ତାଙ୍କ ପାଖରେ ନିତ୍ୟ ଓ ଓ୍ୱାରିଂଟନଙ୍କ ବ୍ୟତୀତ 'ପାଇନ କଟେଜ'ର ତତ୍ତ୍ୱାବଧାରକଙ୍କ ସମ୍ପର୍କୀୟା ରୋଜାଲିଣ୍ଡ ଉଇଲିୟମସ୍ ବୋଲି ଜଣେ ଊନେଇଶୀ ବର୍ଷ ବୟସ୍କା ମହିଳା ରହୁଥିଲେ । ସେହି ସମୟରେ ଏ ତିନି ଜଣଙ୍କ ଉପସ୍ଥିତିରେ କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଏଭଳି ଏକ ଅଭୂତପୂର୍ବ ଘଟଣା ଘଟିଥିଲା ଯାହାର ପ୍ରତ୍ୟକ୍ଷ ଅନୁଭୂତି ଏ ତିନିଜଣଯାକଙ୍କୁ ସ୍ତମ୍ଭୀଭୂତ କରି ପକାଇଥିଲା । ତାହା ଥିଲା ୧୯୨୨ ମସିହା ଅଗଷ୍ଟ ୧୭ ତାରିଖର ଘଟଣା । ସେଦିନର ସେହି ଅପୂର୍ବ ଅନୁଭୂତିର ବିବରଣୀ ନିତ୍ୟ ଆନି ବେସାନ୍ତଙ୍କୁ ଲେଖିଥିବା ଏକ ଚିଠିରୁ ମିଳେ—

ସେଦିନ ସନ୍ଧ୍ୟାବେଳେ ସେମାନେ ଲକ୍ଷ୍ୟ କଲେ ଯେ କୃଷ୍ଣମୂର୍ତ୍ତି କାହିଁକି ବଡ଼ କ୍ଳାନ୍ତ ଓ ଦୁର୍ବଳ ଦିଶୁଛନ୍ତି, ବଡ଼ ଅସ୍ଥିର ମନେ ହେଉଛନ୍ତି । ଦେଖିଲାବେଳକୁ କୃଷ୍ଣମୂର୍ତ୍ତିଙ୍କର ବେକଦଣ୍ଡାର ପଛପଟେ ଠିକ୍ ମଝିକୁ କରି ବଡ଼ ଗୁଳି ଆକାରରେ ଠାଏ ଫୁଲି ଭୀଷଣ ଦରଜ ହୋଇଛି । ଦିନଟା ସେମିତି କଟିଗଲା । ପୁଣି ତହିଁ ଆରଦିନ ଜଳଖିଆ ଖାଇବା ପରେ ସେମାନେ ଲକ୍ଷ୍ୟ କଲେ ଯେ କୃଷ୍ଣମୂର୍ତ୍ତିଙ୍କର ଅସୁସ୍ଥତା ଧୀରେ ଧୀରେ ବଢ଼ିବାକୁ ଆରମ୍ଭ କଲା । ଆଉ କିଛି ସମୟ ପରେ ଏକ ତୀବ୍ର ଯନ୍ତ୍ରଣାରେ ଛଟପଟ ହୋଇ ସେ ଖଟ ଉପରେ ଗଡ଼ିବାକୁ ଲାଗିଲେ ।

ତାଙ୍କର କଷ୍ଟ ଦେଖି ରୋଜାଲିଣ୍ଡ ବ୍ୟସ୍ତ ହୋଇ ତାଙ୍କ ପାଖରେ ବସି ପଡ଼ି କୋଉଠି କଷ୍ଟ ହେଉଛି ବୋଲି ପଚାରିଲେ । କିନ୍ତୁ ଯନ୍ତ୍ରଣାରେ କୃଷ୍ଣମୂର୍ତ୍ତି ଏତେ ଛଟପଟ ହେଉଥିଲେ ଯେ କୌଣସି ଉତ୍ତର ଦେଇପାରିଲେ ନାହିଁ । ଯନ୍ତ୍ରଣାରେ ଗୁଡ଼ିପିଡ଼ି ହୋଇ ସେ ଖାଲି ବିକଳରେ କାନ୍ଦିବାକୁ ଲାଗିଲେ । ବେଳେବେଳେ ଗୋଟାପଣେ ଥରି ଉଠୁଥିଲେ, ହାତ ପାପୁଲିକୁ ମୁଠା ମୁଠା କରି ପକାଉଥିଲେ, ଦାନ୍ତରେ ଜାବ ପଡ଼ି ଯାଉଥିଲା । ପୁଣି କେତେବେଳେ ଚିତ୍କାର କରି କହୁଥିଲେ ଯେ ଦେହ ଭିତରଟା ତାଙ୍କର ପ୍ରବଳ ଜ୍ୱରରେ ଜଳି ଉଠୁଛି । ରୋଜାଲିଣ୍ଡ ତାଙ୍କୁ ଆଶ୍ୱସ୍ତ କରିବାକୁ ଚେଷ୍ଟା କଲେ ସେ ତାଙ୍କୁ ହାତରେ ଆଡ଼େଇ ଦେଉଥିଲେ । ଆଖିରୁ ତାଙ୍କର ଏକ ବିଚିତ୍ର

ଚେତନାର ଭାବ ଫୁଟି ଉଠୁଥିଲା । କୃଷ୍ଣମୂର୍ତ୍ତିଙ୍କୁ ଲକ୍ଷ୍ୟ କରି ଓ୍ୱାଶିଂଟନ ବୁଝି ପାରିଲେ ଯେ ତାଙ୍କ ଭିତରେ ଏକ ଆଧ୍ୟାତ୍ମିକ ପ୍ରକ୍ରିୟା ଚାଲିଛି । ସାଂସାରିକ ସ୍ତରର ଊର୍ଦ୍ଧ୍ୱରେ ଥିବା କୌଣସି ଏକ ପ୍ରଭାବ ତାଙ୍କ ଭିତରେ କାର୍ଯ୍ୟ କରୁଛି । ପୂର୍ବ ସକାଳ ଓଳିଟା କୃଷ୍ଣମୂର୍ତ୍ତି ସେମିତି ତୀବ୍ର ଯନ୍ତ୍ରଣାରେ ଛଟପଟ ହେବାରେ ଲାଗିଲେ ଓ ମଝିରେ ମଝିରେ କମ୍ପିଲା ପରି ହୋଇ ପାଖରେ ବସିଥିବା ଲୋକଙ୍କୁ ହାତରେ ଆଡ଼େଇ ଦେଉଥିଲେ । ଖାଲି ବାରମ୍ବାର କହୁଥିଲେ ଯେ ଏକ ପ୍ରଚଣ୍ଡ ଉତ୍ତାପରେ ତାଙ୍କର ସର୍ବାଙ୍ଗ ଜଳି ଉଠୁଛି ଓ ଅନ୍ୟମାନେ ଏଭଳି ଗୁଡ଼ିଆ ହୋଇଯାଉଥିବାରୁ ତାଙ୍କ ଦେହ ଭିତରଟା କଣ ହୋଇଯାଉଛି । ସେତେବେଳକୁ ତାଙ୍କର ପୂର୍ଣ୍ଣ ଚେତା ନ ଥିଲା କାରଣ ମଝିରେ ମଝିରେ ସେ ଆଡ୍ୟାର ବିଷୟରେ ଓ ସେଠାକାର ଲୋକମାନଙ୍କ ବିଷୟରେ ଏମିତି କଥାସବୁ କହୁଥିଲେ ସତେ ଯେପରି ସେମାନେ ସେଇଠି ଉପସ୍ଥିତ ଅଛନ୍ତି । ତା ପରେ କିଛି ସମୟ ପାଇଁ ପୁଣି ଏକଦମ୍ ଚୁପ୍‌ଚାପ୍ । ଯେତେବେଳେ ପରଦା ଟିକିଏ ଖସ୍‌ଖାସ୍ ହେଉଥିଲା କି ଝରକା ଟିକିଏ ଖୁଡ଼୍‌ଖାଡ଼୍ ହେଉଥିଲା, ସେ ପୁଣି ଚମକି ଉଠୁଥିଲେ ଆଉ ବଡ଼ ବିକଳ ହୋଇ ଶାନ୍ତିଭଙ୍ଗ ନ କରି ଚୁପ୍‌ଚାପ୍ ରହିବାକୁ ଆକୁଳ ହେଉଥିଲେ । ସେ ଅତି ମାତ୍ରାରେ ଶବ୍ଦକାତର ହୋଇ ଉଠିଥିଲେ ।

ମଧ୍ୟାହ୍ନ ଭୋଜନ ବେଳକୁ ଅବସ୍ଥା ଟିକିଏ ଭଲ ହେବା ପରି ଜଣାଗଲା । ସବୁଜଣଯାକ ଏକାଠି ବସି ଖାଇଲେ । କିନ୍ତୁ ଖିଆ ସରିବାର ଅଳ୍ପ କେତେ ମିନିଟ୍ ଯାଇଛି କି ନାହିଁ ପୁଣି ସେହି ଯନ୍ତ୍ରଣା ଆରମ୍ଭ ହୋଇଗଲା, ପୁଣି ସେହି ଅସହ୍ୟ ବେଦନା, ଜଳିବା ପରି ଅନୁଭବ, ଆଉ ତୀବ୍ର ସମ୍ବେଦନଶୀଳତା । ଯାହା ବା ଟିକିଏ ଖାଇଥିଲେ ସେତକ ବି ପେଟରେ ରହିଲା ନାହିଁ । ସେଦିନ ରାତିରେ ବି ସେମିତି ସେ କିଛି ହେଲେ ଖାଇପାରିଲେ ନାହିଁ । ତା ପରି ଦିନଟାଯାକ ଠିକ୍ ସେଇଆ ଘଟିଲା— ବରଂ ଯନ୍ତ୍ରଣାର ମାତ୍ରା ପୂର୍ବଦିନ ଅପେକ୍ଷା ବଢ଼ିବା ପରି ମନେ ହେଲା ।

୨୦ ତାରିଖ ରବିବାର ସୁଦ୍ଧା ତାଙ୍କର ସମ୍ବେଦନଶୀଳତା ଏତେ ମାତ୍ରାରେ ବଢ଼ି ଯାଇଥିଲା ଯେ କେହି ତାଙ୍କ ବଖରା ଭିତରକୁ ପଶି

ଆସିଲେ ସେ ତାଙ୍କ ଖଟ ଉପରୁ ଡେଇଁ ପଡ଼ୁଥିଲେ । ଅଧିକାଂଶ ସମୟ ଆଡ଼ୀୟାର ବିଷୟରେ ଗପିବାରେ ଲଗିଥିଲେ ଆଉ ମଝିରେ ମଝିରେ କହୁଥିଲେ, "ନା...ନା...ମୁଁ ଭାରତକୁ ଫେରିଯିବାକୁ ଚାହେଁ...କାହିଁକି ସେମାନେ ମତେ ଏଠିକି ଆଣିଲେ ? ମୁଁ କେଉଁଠି ଅଛି ମୁଁ ନିଜେ ଜାଣିପାରୁ ନାହିଁ...ଏବେ ମୁଁ କେଉଁଠି ଅଛି ?" ସେ ଦିନ ସନ୍ଧ୍ୟା ପ୍ରାୟ ଛଅଟା ବେଳକୁ ହଠାତ୍ ନିତ୍ୟ, ରୋଜାଲିଣ୍ଡ ଓ ଓ୍ୱାରିଂଟନ ଅନୁଭବ କଲେ ଯେ ସେ ଘରଟି ଏକ ପ୍ରଚଣ୍ଡ ଶକ୍ତିରେ ଫାଟି ପଡ଼ୁଛି ଆଉ ସେ ଶକ୍ତି କୃଷ୍ଣମୂର୍ତ୍ତିଙ୍କୁ ମଧ୍ୟ ବଶୀଭୂତ କରି ପକାଇଛି । ସେତେବେଳେ ସେ କାହାରିକୁ ହେଲେ ନିଜ ପାଖ ମାଡ଼ିବାକୁ ଦେଉ ନ ଥିଲେ । ଅତି ବିକଳ ଭାବରେ କହୁଥିଲେ ଯେ ଘରଆଡ଼ ଖୁବ୍ ଅପରିଷ୍କାର ଦିଶୁଛି । ବିଛଣା, ବଖରା ଓ ତାଙ୍କ ପାଖରେ ଥିବା ଲୋକମାନେ ପ୍ରତ୍ୟେକେ ତାଙ୍କୁ ଖୁବ୍ ମଇଳା ମନେ ହେଉଛନ୍ତି । ତା'ପରେ ଆତୁର କଣ୍ଠରେ କାନ୍ଦି କାନ୍ଦି କହୁଥିଲେ ଯେ ସେ ଜଙ୍ଗଲକୁ ଚାଲିଯିବାକୁ ଚାହାନ୍ତି । ସେତେବେଳକୁ ନିଜ ଖଟ ଛାଡ଼ି ସେ ବଖରାଟିର ଗୋଟିଏ ଅନ୍ଧାରିଆ କୋଣରେ ବସି କାନ୍ଦିବାରେ ଲଗିଥାନ୍ତି ଆଉ ଏଇସବୁ କଥା କହୁଥାନ୍ତି ।

ସେମାନେ ରହୁଥିବା ପଲ୍ଲୀଭବନର ଠିକ୍ ସାମନାରେ ଗୋଟିଏ 'ପିପ୍‌ପରି' ଗଛ ଥିଲା । ଗଛଟି ବେଶୀଦିନର ନୁହଁ । ତା'ର କଅଁଳ ସବୁଜ ପତ୍ର ଗହଳରେ ସେତେବେଳକୁ ବଉଳ ଭରି ଯାଇଥିଲା । ହାଲୁକା ପବନରେ ତା'ର ମିଠା ମହକ ଭାସି ଆସୁଥିଲା । ସୂର୍ଯ୍ୟ ଅସ୍ତ ହେବାର ଘଣ୍ଟାଏ ପାଖାପାଖି ହେବ । ଗଛଟା ସେ ଗୁଇଗୁଇଆ ଆଲୁଅରେ ବଡ଼ ମନୋହର ଦିଶୁଥିଲା । ହଠାତ୍ ଓ୍ୱାରିଂଟନଙ୍କ ମନକୁ କଣ ଆସିଲା, ସେ କୃଷ୍ଣମୂର୍ତ୍ତିଙ୍କୁ ଯାଇ ସେଇ ପିପ୍‌ପର ଗଛ ମୂଳେ ବସିବାକୁ ପ୍ରବର୍ତ୍ତାଇଲେ । କୃଷ୍ଣମୂର୍ତ୍ତି ତାଙ୍କ କଥାରେ ରାଜିହୋଇ ଗଛ ମୂଳକୁ ଯାଇ ବସିଲେ ।

ସନ୍ଧ୍ୟା ଘନେଇ ଆସୁଥିବା ଆକାଶରେ ତାରା ଭର୍ତ୍ତି । ଚାରିଆଡ଼ ନିସ୍ତବ୍ଧ, ନିଥର । ବଉଳଭରା ଗଛ ତଳେ କୃଷ୍ଣମୂର୍ତ୍ତି ବସିଥାନ୍ତି । କିଛି ବେଳ ପରେ ସେ ମନ୍ତ୍ର ମୁଗ୍ଧ ଭଳି କହି ଉଠିଲେ, 'ଆଃ...କାହିଁକି ମତେ ଏଯାଏଁ ଏଠିକି ଆଣି ନ ଥିଲ କହିଲ ?' ତା'ପରେ ପୁଣି ସବୁ

ଚୂପ୍‌ଚାପ୍ । କିଛି ସମୟ ବିତିଯିବା ପରେ ସେ ଧୀରେ ଧୀରେ ଆଡ୍ଡ୍ୟାରର ଉପାସନା କକ୍ଷରେ ପାଠ କରାଯାଉଥିବା ମନ୍ତ୍ର ଉଚ୍ଚାରଣ କରିବାରେ ଲାଗିଲେ । ତା'ପରେ ପୁଣି କିଛି ସମୟ ଲାଗି ନୀରବ ହୋଇଗଲେ । ଅଗ୍ନନକ ନିତ୍ୟଙ୍କର ମନେ ପଡ଼ିଗଲା ୧୯୧୪ ମସିହାରେ ଟାଓରମିନାର ସେହି ଅପୂର୍ବ ଅନୁଭୂତି । ସେତେବେଳେ ଗୌତମ ବୁଦ୍ଧଙ୍କର ଛବିଟିକୁ ନିମଗ୍ନ ହୋଇ ଚାହିଁ ରହିବା ପରେ ସେ ଯେପରି ବୁଦ୍ଧଙ୍କର ଉପସ୍ଥିତିକୁ ଅନୁଭବ କରିଥିଲେ ଠିକ୍ ସେହିଭଳି ଏକ ଅନୁଭବ ତାଙ୍କ ମନରେ ଜାଗି ଉଠିଲା । କୃଷ୍ଣମୂର୍ତ୍ତିଙ୍କୁ ପିପ୍‌ପଳ ଗଛ ମୂଳେ ଧ୍ୟାନମଗ୍ନ ଅବସ୍ଥାରେ ଦେଖି ତାଙ୍କର ମନେ ହେଲା ସତେ ଅବା ଅଶ୍ୱତ୍ଥ ଗଛ ମୂଳେ ତଥାଗତ ଧ୍ୟାନରେ ବସିଛନ୍ତି । ଏକ ଅନନ୍ତ ଶାନ୍ତି ସମଗ୍ର ଉପତ୍ୟକାକୁ ବ୍ୟାପିଇ ଭରି ଉଠିଥିଲା । ନିତ୍ୟଙ୍କର ମନେ ହେଲା ସତେ ଯେପରି ଭଗବାନ ବୁଦ୍ଧଙ୍କର ଆଶୀର୍ବାଦ ପୁଣିଥରେ କୃଷ୍ଣମୂର୍ତ୍ତିଙ୍କ ଉପରେ ଝରିବାରେ ଲାଗିଛି ।

ନିଷ୍ପଲକ ଦୃଷ୍ଟିରେ, ସମସ୍ତେ ସେଇଆଡ଼େ ଚାହିଁ ରହିଥାନ୍ତି । ହଠାତ୍ ନିତ୍ୟ ଦେଖିଲେ ସେଇ ମୁହୂର୍ତ୍ତକ ଲାଗି ଏକ ଉଜ୍ଜ୍ୱଳ ଶୁଭ୍ର ତାରକା ପିପ୍‌ପଳ ଗଛ ଉପରେ ଝଟକି ଉଠିଲା । ସେ ବୁଝି ପାରିଲେ ଯେ କୃଷ୍ଣମୂର୍ତ୍ତିଙ୍କ ଶରୀର ମହାମୁନିଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ହେଉଛି । ପରିଶେଷରେ ଏକ ଦିବ୍ୟଶକ୍ତିର ଉପସ୍ଥିତି ଅତି ସ୍ପଷ୍ଟ ଭାବରେ ଅନୁଭୂତ ହେଉଥିଲା । ନିତ୍ୟ ଜାଣିପାରିଲେ ଯେ ସ୍ୱୟଂ ମହାମୁନି ସେଠାରେ ଆତ୍ମପ୍ରକାଶ କରିଛନ୍ତି । ଯଦିଓ ଆଖିକୁ ସେ ସବୁ କିଛି ଦିଶୁ ନ ଥିଲା ତଥାପି ସେ ଦିବ୍ୟ ଗରିମାକୁ ହୃଦୟ ସ୍ପଷ୍ଟ ରୂପେ ଅନୁଭବ କରୁଥିଲା । ଅନ୍ତରରେ ଏକ ଗଭୀର ଭକ୍ତିଭାବ ଉଦ୍ରେକ ହେଉଥିଲା । ନିତ୍ୟ ଆଉ ନିଜକୁ ସମ୍ଭାଳି ରଖି ପାରିଲେ ନାହିଁ । ସେହିଠାରେ ଆଣ୍ଠୁ ମାଡ଼ି ବସି ପ୍ରାର୍ଥନା କରିବାକୁ ତାଙ୍କ ଭିତରୁ ଏକ ସ୍ୱତଃସ୍ଫୂର୍ତ୍ତ ପ୍ରେରଣା ଜାଗି ଉଠିଲା ।

ନିତ୍ୟ ମୁହଁ ବୁଲାଇ ବେଜାଲଣ୍ଟଙ୍କ ଆଡ଼େ ଚାହିଁଲେ । ତାଙ୍କୁ ଦେଖି ମନେ ହେଲା ସେ ଯେପରି ଏକ ବିରଳ ଦୃଶ୍ୟ ଦେଖୁଛନ୍ତି ।

ତାଙ୍କ ମୁହଁର ଭାବ ଅଦ୍ଭୁତ ଭାବରେ ବଦଳି ଯାଇଥିଲା । ଏତିକିବେଳେ ରୋଜାଲିଣ୍ଡ ହଠାତ୍ ପାଟି କରି ଉଠିଲେ, 'ତମେ ସବୁ ତାଙ୍କୁ ଦେଖି ପାରୁଛ ? ଦେଖି ପାରୁଛ ?' ଜନ୍ମ ଜନ୍ମ ଧରି ମଣିଷ ଯେଉଁ ଦିବ୍ୟ ଦର୍ଶନର ଅଭିଳାଷରେ ଅପେକ୍ଷା କରିଥାଏ, ସେହି ଦର୍ଶନ ବର୍ତ୍ତମାନ ରୋଜାଲିଣ୍ଡ ଲାଭ କଲେ । ମହାମୁନି ବୋଧିସତ୍ତ୍ୱ (ମୈତ୍ରେୟ)ଙ୍କୁ ସେ ଏବେ ପାର୍ଥିବ ଚକ୍ଷୁରେ ଦେଖିବାକୁ ପାଇଲେ । ତାଙ୍କ ମୁଖର ସେ ପରିବର୍ତ୍ତିତ ଦିବ୍ୟଚ୍ଛବି ଏତେ ସ୍ପଷ୍ଟ ଥିଲା ଯେ ନିତ୍ୟ ତାକୁ ଜୀବନର ଶେଷ ପର୍ଯ୍ୟନ୍ତ ଭୁଲି ପାରି ନ ଥିଲେ । ତାଙ୍କୁ ଦେଖି ମନେ ହେଉଥିଲା ଯେ ମହାମୁନି ରୋଜାଲିଣ୍ଡଙ୍କୁ ଯେପରି କିଛି କହୁଛନ୍ତି । ରୋଜାଲିଣ୍ଡଙ୍କ ମୁହଁରୁ ଏକ ଅପୂର୍ବ ଆଭା ଉଦ୍ଭାସିତ ହେଉଥିଲା । ତା'ପରେ କିଛି ଗୋଟାଏ ଶପଥ କରିବା ଠାଣିରେ ସେ ବଡ଼ ପାଟିରେ କହି ଉଠିଲେ, 'ହଁ...ହଁ ମୁଁ କରିବି । ମୁଁ ନିଶ୍ଚୟ କରିବି ।' ଦୂରରେ ଗନ୍ଧର୍ବମାନଙ୍କର ସ୍ୱର୍ଗୀୟ ସଙ୍ଗୀତର ମୂର୍ଚ୍ଛନା କାନରେ ବାଜୁଥିଲା । ଏମିତି ପ୍ରାୟ ଅଧଘଣ୍ଟା ଧରି ଲାଗି ରହିଲା । ଆଉ ତା'ରି ମଝିରେ ମଝିରେ ଗଦ ଗଦ କଣ୍ଠରେ ରୋଜାଲିଣ୍ଡ କହୁଥିଲେ—'ହେଇ, ସେଠି ଦେଖି ପାରୁଛ ? ଶୁଣି ପାରୁଛ ସେ ସଙ୍ଗୀତର ମୂର୍ଚ୍ଛନା ?...'

ଏତିକିବେଳେ ହଠାତ୍ ଦେଖିଲାବେଳକୁ କୃଷ୍ଣମୂର୍ତ୍ତି ଗଛମୂଳରୁ ଉଠି ସେମାନଙ୍କ ଆଡ଼କୁ ଆଗେଇ ଆସୁଛନ୍ତି । ତାଙ୍କୁ ଦେଖି ରୋଜାଲିଣ୍ଡ ପୁଣି ପାଟିକରି ଉଠିଲେ, 'ହେଇ ଦେଖ, ସେ ଆସୁଛନ୍ତି...ଯାଇ ତାଙ୍କୁ ନେଇ ଆସ, ତାଙ୍କୁ ପାଗ୍ଲେଟି ଆଣ ।' ଏତିକି କହି ସେ ସେଇଠି ଚେତା ହରେଇ ଢଳି ପଡ଼ିଲେ । କିଛି ସମୟ ପରେ ଚେତା ଆସିବା ବେଳକୁ ତାଙ୍କର ଆଉ କିଛି ହେଲେ ସେସବୁ ମନେ ନ ଥିଲା । କେବଳ ସେ ଧ୍ୱନିର ମୂର୍ଚ୍ଛନା ଯାହା କାନରେ ରହି ଯାଇଥିଲା ସେତିକି ।

ଘରି ଘଣ୍ଟା ସାରା କୃଷ୍ଣମୂର୍ତ୍ତି ସେଇ ପିମ୍ପର ଗଛ ମୂଳେ ଧ୍ୟାନରେ କଟାଇଦେଲେ । ସନ୍ଧ୍ୟାବେଳକୁ ରୋଜାଲିଣ୍ଡ ଦେଖିଲେ ଯେ ତିନୋଟି ମୂର୍ତ୍ତି ଆସି କୃଷ୍ଣମୂର୍ତ୍ତିଙ୍କୁ ସାଙ୍ଗରେ ଧରି କୁଆଡ଼େ ଚାଲିଗଲେ । କିନ୍ତୁ ତାଙ୍କର ଜଡ଼ ଶରୀରଟା ସେମିତି ଗଛମୂଳେ ବସି ରହିଥାଏ ।

ସେହି ଦିନଠାରୁ ପ୍ରତି ସନ୍ଧ୍ୟାରେ କ୍ରିଷ୍ଣମୂର୍ତ୍ତି ପିପ୍‌ପଳ ଗଛ ମୂଳେ ବସି ଧ୍ୟାନ କରିବାକୁ ଆରମ୍ଭ କଲେ ।

ନିଜର ବିଚିତ୍ର ଅଧ୍ୟାତ୍ମ ଅନୁଭୂତିକୁ ବର୍ଣ୍ଣନା କରି କ୍ରିଷ୍ଣମୂର୍ତ୍ତି ସ୍ୱୟଂ ଯାହା ଲେଖିଛନ୍ତି ତାହା ନିତ୍ୟଙ୍କର ଉପରୋକ୍ତ ବର୍ଣ୍ଣନାଠାରୁ ଆହୁରି ଚମତ୍କାରପ୍ରଦ ଓ ଅଦ୍ଭୁତ । ସେ ଲେଖିଛନ୍ତି—

"ଅଗଷ୍ଟ ମାସ ୩ ତାରିଖଠାରୁ ପ୍ରତ୍ୟହ ସକାଳେ ପ୍ରାୟ ଅଧ ଘଣ୍ଟା ଲାଗି ମୁଁ ନିୟମିତ ଧ୍ୟାନରେ ବସୁଥିଲି । ଅଦ୍ଭୁତ ଭାବରେ ସେତେବେଳେ ମୁଁ ଅତି ଅନାୟାସରେ ମୋର ଚିତ୍ତ ସ୍ଥିର ରଖି ପାରୁଥିଲି ଓ କେଉଁଠାରେ ମୋର ଦୃଷ୍ଟି ରହି ଯାଉଛି ସେକଥା ଜାଣି ପାରୁଥିଲି । ତା'ପରେ ବିଗତ ବର୍ଷଗୁଡ଼ିକରେ ମୋ ମନ ଭିତରେ ଜମିଥିବା ସମସ୍ତ ଅବାଞ୍ଛିତ ସ୍ମୃତିକୁ ପୂରାପୂରି ପୋଛିଦେବା ଲାଗି ମୁଁ ଏକ ସଜ୍ଞାନ ପ୍ରଚେଷ୍ଟା ଆରମ୍ଭ କଲି । ମୋର ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ମାର୍ଗ ଓ ଉପାୟ ଖୋଜିବାକୁ ଦୃଢ଼ତାର ସହିତ ଲାଗିପଡ଼ିଲି । ଆଉ ଏକଥା ମଧ୍ୟ ମୁଁ ଅନୁଭବ କଲି ଯେ ଏଥିପାଇଁ ମତେ ସର୍ବ ପ୍ରଥମେ ମୋ ଶରୀରର ବିଭିନ୍ନ ସ୍ତରକୁ ବୌଦ୍ଧିକ ସ୍ତର (ଚେତନାର ସର୍ବୋଚ୍ଚତମ ସ୍ତର) ସହିତ ସମତାଳ କରିବାକୁ ପଡ଼ିବ । ତେଣୁ ସର୍ବପ୍ରଥମେ ବୌଦ୍ଧିକ ସ୍ତରରେ ମୋର ଜୀବାତ୍ମା କଣ ଚାହେଁ ସେତିକ ଖୋଜି କାଢ଼ିବା ପରେ ମୋର ବିଭିନ୍ନ ଶରୀର ମଧ୍ୟରେ ଏକ ସମନ୍ୱୟ ଆଣିବା ଲାଗି ମତେ ସେଗୁଡ଼ିକୁ ବୌଦ୍ଧିକ ସ୍ତର ସହିତ ସମତାଳରେ ସ୍ଥାପିତ କରିବାକୁ ପଡ଼ିବ । ତା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ମୁଁ ଆବିଷ୍କାର କଲି ଯେ ମହାମୁନି ମୈତ୍ରେୟ ଓ ମହାଗୁରୁମାନଙ୍କର ସେବା କରିବା ବୌଦ୍ଧିକ ସ୍ତରରେ ମୋର ସବୁଠାରୁ ବଡ଼ ଇଚ୍ଛା ଅଟେ । ଏଇ କଥା ମନରେ ଦୃଢ଼ ନିଶ୍ଚୟ କରିବା ପରେ ମୁଁ ମୋର ବିଭିନ୍ନ ସ୍ତରର ଶରୀରକୁ ନିୟନ୍ତ୍ରଣ କରି ତାହାକୁ ଆଧ୍ୟାତ୍ମିକ ପଥରେ ଚାଲିବା କରାଇବାକୁ ଓ ସେହି ପଥରେ ପରିଚାଳିତ କରାଇବାକୁ ଲାଗିଲି । ସେହି ତିନି ସପ୍ତାହ

ଧରି ମୁଁ ମୋ ମନରେ ମହାମୁନି ମୈତ୍ରେୟଙ୍କର ଛବିକୁ ଅନବରତ ଧାରଣ କରି ତା'ର ଉପରେ ଧ୍ୟାନ ଲଗାଇବାକୁ ଲାଗିଲି । ଦେଖିଲି, ଖୁବ୍ ଅକ୍ଳେଶରେ ମୁଁ ସେତିକି କରିପାରୁଛି ଓ ଏଥି ସଙ୍ଗେ ସଙ୍ଗେ ଅନ୍ତରଟା ମୋର ଏକ ଅଖଣ୍ଡ ପ୍ରଶାନ୍ତି ଓ ପବିତ୍ରତାରେ ଭରି ଉଠୁଛି । ମୋ ଜୀବନର ସକଳ ଦୃଷ୍ଟିଭଙ୍ଗୀ ବଦଳିବାରେ ଲାଗିଛି ।"

କୃଷ୍ଣମୂର୍ତ୍ତିଙ୍କର ଏଇ ବର୍ଣ୍ଣନା ସାଙ୍ଗରେ ତାଙ୍କର ପୂର୍ବୋକ୍ତ ଅଜ୍ଞାତପୂର୍ବ ପ୍ରକ୍ରିୟାର ଯଥେଷ୍ଟ ସମ୍ପର୍କ ରହିଥିଲା । ଓହାଇରେ ଆରମ୍ଭ ହୋଇଥିବା ସେହି ପ୍ରକ୍ରିୟା ତାଙ୍କର ବ୍ୟକ୍ତିତ୍ୱ ଓ ଆଧ୍ୟାତ୍ମିକତାର ଏକ ପରିପୂରକ ଥିଲା । ପ୍ରକ୍ରିୟାର ଅନୁଭୂତିକୁ ବର୍ଣ୍ଣନା କରି ସେ ଆଉ ଗୋଟିଏ ଜାଗାରେ ଲେଖିଥିଲେ—

"ସେଦିନ ଥିଲା ଅଗଷ୍ଟ ୧୭ ତାରିଖ । ମୋ ବେକର ପଛ ପାଖରେ ଏତେ ଜୋର୍‌ରେ ଯନ୍ତ୍ରଣା ଉଠିଲା ଯେ ବାଧ୍ୟ ହୋଇ ମୋର ଧ୍ୟାନର ସମୟ ପନ୍ଦର ମିନିଟ୍ ଲେଖାଁ କମାଇଦେଲି । କିନ୍ତୁ ଧୀରେ ଧୀରେ ସେ ଯନ୍ତ୍ରଣା କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଲା । ଆଉ ୧୯ ତାରିଖ ଦିନ ସେ କଷ୍ଟ ଚରମ ସୀମାରେ ପହଞ୍ଚିଗଲା । ଯନ୍ତ୍ରଣାର ଜ୍ୱାଳାରେ ମୁଁ ଆଉ କିଛି ଭାବିବା ଅବସ୍ଥାରେ ନ ଥିଲି କି କିଛି କରିବା ଅବସ୍ଥାରେ ବି ନ ଥିଲି । ଶେଷକୁ ମୋର ଅବସ୍ଥା ଦେଖି ବନ୍ଧୁମାନେ ମତେ ବିଛଣାକୁ ପଠେଇ ଦେଲେ । ତାଙ୍କ କଥାରେ ଯଦିଓ ମୁଁ ବିଛଣାରେ ପଡ଼ି ରହିଥିଲି ତଥାପି ମୋ ଚାରିପଟେ ଯାହା ଯାହା ଘଟୁଥିଲା, ମୁଁ ସ୍ପଷ୍ଟ ଜାଣିପାରୁଥିଲି । କିନ୍ତୁ ମୋର ସଂଜ୍ଞା ନ ଥିଲା, ପ୍ରତିଦିନ ମଧ୍ୟାହ୍ନ ସମୟକୁ ଯାଇ ମୁଁ ପ୍ରକୃତିସ୍ଥ ହେଉଥିଲି । ପ୍ରଥମ ଦିନ ଯେତେବେଳେ ମୁଁ ସେପରି ଅବସ୍ଥାରେ ଥିଲି ଓ ମୋର ଚାରିକଡ଼େ ଘଟୁଥିବା ଘଟଣା ବିଷୟରେ ସଚେତନ ଥିଲି ସେତେବେଳେ ମୋ ଜୀବନର ସବୁଠାରୁ ଚମକପ୍ରଦ ଘଟଣାଟି ଅନୁଭବ କରିଥିଲି ।

ଆଗରେ ମୋର ମୂଲିଆଟିଏ ରାସ୍ତା ମରାମତି କାମ କରୁଥିଲା । ସେ ମୂଲିଆଟି ଥିଲା ମୁଁ ନିଜେ, ତା ହାତରେ ଥିବା ଗଇଁତିଟି ଥିଲା ମୁଁ ।

ପୁଣି ଗଇଁତି ପାହାରରେ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ପଡ଼ୁଥିବା ପଥର ଖଣ୍ଡ, ଭୂଇଁରେ ଗଜୁରିଥିବା ଘାସର କଅଁଳ ଶିଷା, ଲୋକଟିର ପାଖରେ ଥିବା ସେ ଗଛ—ସେ ସବୁ ଥିଲା ମୋର ଅଂଶ, ମୋର ସତ୍ତା । ସେ ମୂଲଆର ଯେତେ ଯାହା ଅନୁଭବ, ତା'ର ଭାବନା, ମୋଠାରେ ବି ଦେଖା-ଦେଉଥିଲା । ସାମନା ଗଛ ଭିତରେ ଶିରଶିର ହୋଇ ବହିଯାଉଥିବା ପବନକୁ ମୁଁ ଅନୁଭବ କରୁଥିଲି, ଘାସ ଶିଁଷାରେ ଚାଲୁଥିବା ଟିକି ପିମ୍ପୁଡ଼ିଟିକୁ ମୁଁ ମୋ ଭିତରେ ପାଉଥିଲି । ପୁଣି ଯେତେକ ଚଢ଼େଇ, ଯେତେକ ଧୂଳିମଳି, ଶବ୍ଦ କୋଳାହଳ, ଏସବୁ ମୋର ଭିତରେ ଅନୁଭୂତ ହେଉଥିଲା । ଏତିକିବେଳେ ରାସ୍ତାରେ ମଟରଗାଡ଼ିଟିଏ ଚାଲିଗଲା । ମୁଁ ହିଁ ନିଜେ ଥିଲି ସେଇ ଗାଡ଼ିର ଚାଳକ, ତା'ର ଇଞ୍ଜିନ ଆଉ ତା'ର ଚକା । ଗାଡ଼ିଟି ଧୀରେ ଧୀରେ ଦୂରକୁ ଚାଲି ଯାଉଥାଏ, ଆଉ ତା ସଙ୍ଗେ ସଙ୍ଗେ ମୁଁ ବି ନିଜଠାରୁ ଦୂରେଇ ଯାଉଥାଏ । ସେହି ଦୂର ପର୍ବତ, ଛୋଟ ଛୋଟ କୀଟ ପତଙ୍ଗଠାରୁ ଆରମ୍ଭ କରି ଜଡ଼, ଜୀବନ୍ତ ସମସ୍ତ ପଦାର୍ଥକୁ ମୁଁ ମୋର ଭିତରେ ଅନୁଭବ କରୁଥିଲି । ଅର୍ଥାତ୍ ଏ ସବୁର ଭିତରେ ମୁଁ ଆପଣାର ସତ୍ତାକୁ ଅନୁଭବ କରୁଥିଲି । ସାରା ଦିନଟା ମୁଁ ସେହି ଅପୂର୍ବ ଆନନ୍ଦମୟ ଅବସ୍ଥାରେ କଟାଇଲି । × × ×

ତା' ପରଦିନ (୨୦ ତାରିଖ) ସକାଳ ବେଳାଟା ସେମିତି ପୂର୍ବଦିନ ପରି କଟିଗଲା । ମୋ ବଖରା ଭିତରେ ବେଶୀ ଲୋକଙ୍କ ଉପସ୍ଥିତିକୁ ମୁଁ ଆଦୌ ସହ୍ୟ କରି ପାରୁ ନଥିଲି । ସେମାନଙ୍କ ଶରୀରର ସ୍ପନ୍ଦନରେ ମୁଁ ଛଟପଟ ହୋଇ ଉଠୁଥିଲି । ସନ୍ଧ୍ୟା ଛଅଟା ବେଳକୁ ମତେ ଏତେ ବେଶୀ ଖରାପ ଲାଗିଲା ଯେ ମୁଁ ଖାଲି ଚାହିଁଲି କେହି ଯେମିତି ମୋ ପାଖକୁ ନ ଆସନ୍ତୁ, ମତେ ନ ଛୁଅନ୍ତୁ । ମୋର କ୍ଳାନ୍ତି ଓ ଦୁର୍ବଳତା ଅସମ୍ଭବ ଭାବରେ ବଢ଼ି ଯାଇଥିଲା । ବୋଧହୁଏ ଅତିଶୟ କ୍ଳାନ୍ତି ଓ ନିଜ ଦେହ ଉପରେ କୌଣସି ଅକ୍ତିଆର ନ ଥିବା ହେତୁ ମୁଁ କାନ୍ଦୁଥିଲି । ମୋ ମୁଣ୍ଡ ଭିତରଟା ବଡ଼ ଓଜନିଆ ଲାଗୁଥିଲା ଆଉ ତାଳୁରେ ଛୁଞ୍ଚ ଫୋଡ଼ିହେଲା ପରି ମନେ ହେଉଥିଲା । ଏତିକିବେଳେ ମତେ ଲାଗିଲା ଯେ ମୋର ବିଛଣାଟା—ଯେଉଁଠାରେ କି ମୁଁ ପୂର୍ବ ଦିନ

ବି ଶୋଇଥିଲି—ଅତ୍ୟନ୍ତ ମଇଳା, ଅପରିଷ୍କାର ହୋଇଛି । ଆଉ ମୁଁ ସେଥିରେ ଶୋଇ ପାରିଲି ନାହିଁ । ଦେଖିଲି ବେଳକୁ ମୁଁ କେତେବେଳେ ଆସି ଚଟାଣରେ ବସିଛି, ନିତ୍ୟ ଆଉ ରେଜାଲିଣ୍ଡ ମତେ ବିଛଣାକୁ ଯିବାପାଇଁ କହୁଛନ୍ତି । କିନ୍ତୁ ମତେ ଛୁଇଁବା ପାଇଁ ମନା କରି ସେମାନଙ୍କୁ ମୁଁ କହିଲି ଯେ ମୋର ବିଛଣାଟା ଭୀଷଣ ଅପରିଷ୍କାର ହୋଇଛି । ତା'ପରେ ମୁଁ ବଖରାରୁ ବାହାରି ଆସି କ୍ଳାନ୍ତ ହୋଇ ବାରଣ୍ଡାରେ କିଛି ସମୟ ପାଇଁ ବସିଲି × × × ସେଦିନ ସନ୍ଧ୍ୟାବେଳେ ପୁଣି ସେଇ ପିପ୍‌ପଳ ଗଛ ମୂଳେ ପଦ୍ମାସନରେ ଧ୍ୟାନମଗ୍ନ ହୋଇ ବସିଲି । ଅଳ୍ପ ସମୟ ପରେ ମୋର ମନେ ହେଲା ଯେ ମୁଁ ମୋର ଶରୀର ଭିତରୁ ବାହାରି ଆସିଛି । ଦେଖିଲି, ଉପରେ ପିପ୍‌ପଳ ଗଛର କଅଁଳ ଛନଛନିଆ ପତ୍ର—ଆଉ ତା' ତଳେ ମୁଁ । ମୋର ମୁହଁ ପୂର୍ବ ଦିଗକୁ ଥିଲା । ମୋର ସାମନାରେ ମୋ ଦେହଟା ରହିଥିଲା । ମୁଣ୍ଡ ଉପରେ ସେହି ତାରକାଟି ଝଟକୁ ଥିଲା—ଖୁବ୍ ନିର୍ମଳ, ଖୁବ୍ ଉଜ୍ଜ୍ୱଳ । ଭଗବାନ ବୁଦ୍ଧଙ୍କର ସ୍ପନ୍ଦନ ମୁଁ ମୋ ନିଜଠାରେ ଅନୁଭବ କରିବାରେ ଲାଗିଲି । ମହାମୁନି ମୈତ୍ରେୟ ଓ ମହାଗୁରୁ କୁଟହୁମିଙ୍କର ଦର୍ଶନ ଲାଭ କଲି । ଅନ୍ତରଟା ମୋର ପ୍ରଶାନ୍ତି, ଆନନ୍ଦ ଓ ଗୌରବତାରେ ଭରି ଉଠିଥିଲା । ମୁଁ ମୋର ଦେହକୁ ସେମିତି ଦେଖି ପାରୁଥିଲି ଓ ତାରି ପାଖେ ପାଖେ ଘୂରି ବୁଲୁଥିଲି । ପବନରେ ଏକ ନିବିଡ଼ ପ୍ରଶାନ୍ତି ଭରି ରହିଥିଲା । ଆଉ ସେ ପ୍ରଶାନ୍ତି ମୋ ଅନ୍ତର ଭିତରେ ମଧ୍ୟ ପୂରି ରହିଥିଲା । ତାହା ଥିଲା ଅବିକଳ ଏକ ଅତଳସ୍ପର୍ଶୀ ହ୍ରଦର ଅଥଳ ପ୍ରଶାନ୍ତି ସମ । ଠିକ୍ ହ୍ରଦଟିଏ ଭଳି ଏ ଶରୀର ଓ ମନ, ତା'ର ଆବେଗ ଉଚ୍ଛ୍ୱାସ ନେଇ ବାହାରିଆ ଭାବରେ ଚଳଚଞ୍ଚଳ ହୋଇପାରେ, ଆଲୋଡ଼ିତ ହୋଇପାରେ କିନ୍ତୁ ଏ ଅନ୍ତରାତ୍ମା ସେସବୁରେ ଏତେ ଟିକିଏ ବି ଆଲୋଡ଼ିତ ହୁଏ ନାହିଁ । ସେହି ପରମସତ୍ତ୍ୱଗଣ ମୋ' ନିକଟରେ କିଛି ସମୟ ରହି ବାହୁଡ଼ିଗଲେ । ଅନ୍ତରଟା ମୋର ସତେ କି ଆନନ୍ଦରେ ଉଛୁଳି ପଡ଼ୁଥିଲା — ଆଃ, ମୁଁ ଯେ ସେମାନଙ୍କର ଦର୍ଶନ ପାଇ ପାରିଛି ! ! ଏଣିକି ଆଉ କିଛି ହେଲେ ଆଗ ପରି ରହିବ ନାହିଁ, ସବୁ କିଛି ବଦଳିଯିବ । ଜୀବନ-ଝରର ଉତ୍ସରୁ ମୁଁ ଯେ ସ୍ୱଚ୍ଛ, ନିର୍ମଳ ଜଳ ଆକଣ୍ଠ ପାନକରି ମୋର ତୃଷା ମେଣ୍ଟାଇ

ପାରୁଛି । ସେ ତୃଷା ମୋ'ଠାରେ ଆଉ କେବେହେଲେ ଦେଖା ଦେବ ନାହିଁ । ଆଉ କେବେହେଲେ ମୁଁ ଘନ ଅନ୍ଧକାର ଭିତରେ ହଜିଯିବ ନାହିଁ କାରଣ ସେହି ଦିବ୍ୟ ଜ୍ୟୋତିର ଦର୍ଶନ ମୁଁ ଲାଭ କରିପାରୁଛି । ଯେଉଁ ଅପାର କରୁଣା ସମସ୍ତ ଦୁଃଖ ଯାତନାକୁ ପୋଛିଦିଏ, ତା'ର ସ୍ପର୍ଶ ମୁଁ ଲାଭ କରିପାରୁଛି । କିନ୍ତୁ ଏ ସବୁ ମୋ' ନିଜ ପାଇଁ ନୁହେଁ — ଏଇ ଜଗତ ପାଇଁ । ଉଚ୍ଚ ପର୍ବତର ଶିଖରରେ ଛିଡ଼ାହୋଇ ମୁଁ ସେହି ମହାନ ସତ୍ତ୍ୱଙ୍କୁ ଯେ ଗୁହିଁ ଦେଖି ପାରୁଛି । ମୁଁ ଆଉ କେବେହେଲେ ଅମା ଅନ୍ଧାରରେ ଉବୁଡ଼ିଯିବ ନାହିଁ । ଦୁଃଖ ତାପହାରୀ, ପ୍ରଖର, ପରମ ଜ୍ୟୋତିର ସ୍ପର୍ଶ ମୁଁ ଲାଭ କରିଛି । ମୋ' ସମ୍ମୁଖରେ ଆଜି ସତ୍ୟର ନିର୍ଝରିଣୀ ଉନ୍ମୁକ୍ତ ହୋଇଯାଇଛି ଏବଂ ଅନ୍ଧକାର କୁଆଡ଼େ ଉଭେଇ ଯାଇଛି । ଆଉ, ତା'ର ପ୍ରାଚୁର୍ଯ୍ୟ ନେଇ ପ୍ରେମ ମୋ' ହୃଦୟକୁ ଉଚ୍ଛଳା କରି ଦେଇଛି । ଏଣିକି ମୋ' ହୃଦୟ କେବେହେଲେ ନିରୁଜ ରହିବ ନାହିଁ । କାରଣ ଅନନ୍ତ ସୌନ୍ଦର୍ଯ୍ୟ ଓ ଆନନ୍ଦର ନିର୍ଝରରୁ ମୁଁ ସୁଧାପାନ କରିପାରୁଛି । ପ୍ରାଣ ଆଜି ମୋର ଐଶ୍ୱରୀୟ ପ୍ରେମରେ ମତୁଆଲି ।"

ଓହାଇର ଉପରୋକ୍ତ ଅନୁଭୂତିଟି ବାସ୍ତବରେ କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଏକ ନୂତନ ଦ୍ୱାର ଉନ୍ମୁକ୍ତ କରିଦେଲା । ଏଣିକି ସଚେତନ ଭାବରେ ଜଗତର କଲ୍ୟାଣ ଉଦ୍ଦେଶ୍ୟରେ ନିଜକୁ ଉତ୍ସର୍ଗ କରିଦେବା ତାଙ୍କର ଏକମାତ୍ର ବ୍ରତ ହେଲା । ସେଇ କଥା ହୃଦୟଙ୍ଗମ କରି ଲେଡ଼ି ଏମିଲିଙ୍କୁ ସେ ଗୋଟିଏ ଚିଠିରେ ଲେଖିଥିଲେ — 'ତମେ ତ ଜାଣ ମାଆ, ମୋ' ଜୀବନରେ ଏକ ଆମୂଳ ପରିବର୍ତ୍ତନ ଆସି ଯାଇଛି । ଆଉ ତା'ର ସାଥେ ସାଥେ ମୁଁ ଗୁହେଁ ଯେ ମୋର ସାଥୀମାନଙ୍କ ଜୀବନରେ ମଧ୍ୟ ସେହି ପରିବର୍ତ୍ତନ ଆସୁ । ଯେଉଁ ପର୍ବତ ଶିଖରରେ ଛିଡ଼ାହୋଇ ମୁଁ ପରମସତ୍ତ୍ୱଙ୍କ ଦର୍ଶନ ପାଇଛି ମୋ' ବନ୍ଧୁମାନେ ମଧ୍ୟ ସେହି ଶିଖରକୁ ଉଠି ପରମପୁରୁଷଙ୍କ ମହିମା ଉପଲବ୍ଧି କରନ୍ତୁ । ... ... ... ଏବେ ସେମାନେ ଯାହା ଅଛନ୍ତି, ଯେଉଁଠାରେ ଅଛନ୍ତି, ତା'ଠାରୁ ଆହୁରି ଆଗେଇ ଯାଆନ୍ତୁ । ... ...'

## ଏକ ଅଭିନବ ପରୀକ୍ଷା

ଓହାଇରେ ଘଟିଥିବା ଏହି ଅଗ୍ରାହ୍ୟ ଅନୁଭୂତ ପରଠାରୁ କୃଷ୍ଣମୂର୍ତ୍ତିଙ୍କ ବେକମୂଳର ସେ ଯନ୍ତ୍ରଣାଟି ବରାବର ଲାଗି ରହିଲା । ବେଳେ ବେଳେ ସେଇଟା ମେରୁଦଣ୍ଡରେ ଏତେ ତୀବ୍ର ଭାବରେ ଅନୁଭୂତ ହେଉଥିଲା ଯେ ତା'ର ପ୍ରକୋପରେ ସେ ଚେତା ହରାଇ ବସୁଥିଲେ, ପୁଣି କେବେ କେବେ ତା'ର ଜ୍ୱାଳାରେ ଭୂଇଁରେ ପଡ଼ି ଛଟପଟ ହେଉଥିଲେ । ନିତ୍ୟ, ଓ୍ୱାରିଂଟନ ଓ ରୋଜାଲିଣ୍ଡ ଏ ସବୁ ଦେଖି ମନେ କରିନେଲେ ଯେ ହୁଏତ କୃଷ୍ଣମୂର୍ତ୍ତିଙ୍କଠାରେ କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେବାକୁ ଯାଉଥିବାରୁ ଏଭଳି ଯନ୍ତ୍ରଣା ହେଉଛି । 'ପ୍ରକ୍ରିୟା'ର ପ୍ରଭାବରେ ସେ ଅତିଶୟ ସ୍ପର୍ଶକାତର ହୋଇ ଉଠିଥିଲେ । ପ୍ରକ୍ରିୟା ଚାଲିଥିବା-ବେଳେ କେହି ତାଙ୍କୁ ଛୁଇଁଲେ ବା ତାଙ୍କର ଅତି ନିକଟକୁ ଚାଲି ଆସିଲେ ଅତି ବିକଳ ଭାବରେ ତାକୁ ଦୂରକୁ ଘୁଞ୍ଚିଯିବାକୁ ଅନୁରୋଧ କରୁଥିଲେ । ପ୍ରକ୍ରିୟା ଆରମ୍ଭ ହେବାର କୌଣସି ନିର୍ଦ୍ଦିଷ୍ଟ ସମୟ ନ ଥିଲା । ହୁଏତ ସନ୍ଧ୍ୟାବେଳେ ଅତି ସ୍ୱାଭାବିକ ଭାବରେ ବସି ସେ ଅନ୍ୟମାନଙ୍କ ସହିତ କଥାଭାଷା ହେଉଛନ୍ତି, ହଠାତ୍ ସେହି ଯନ୍ତ୍ରଣାଦାୟକ ପ୍ରକ୍ରିୟା ଆରମ୍ଭ ହୋଇଗଲା । ଅଳ୍ପ ସମୟ ଭିତରେ ସେ ନିଜ ଶରୀରରୁ ବାହାରିଗଲେ ।

ଦେହଟା ତାଙ୍କର ପୂର୍ବଭଳି ଚଉକିରେ ବସିଥାଏ; ଯନ୍ତ୍ରଣାରେ ଧୈର୍ଯ୍ୟହରା ହୋଇ କାନ୍ଦୁଥାଏ, କେମିତି ଏ କଷ୍ଟରୁ ମୁହୂର୍ତ୍ତକ ଲାଗି ମୁକ୍ତି ମିଳୁ ବୋଲି ଆତୁର ଭାବେ ଚିତ୍କାର କରୁଥାଏ । କିଛି ସମୟ ପରେ ଶରୀରର ସେହି ଆକୁଳ ପ୍ରାର୍ଥନା ଭିତରେ ନିତ୍ୟ ଦୁଇଟି ପୃଥକ କଣ୍ଠସ୍ୱର ଶୁଣିବାକୁ ପାଇଲେ । ସେଥି ମଧ୍ୟରୁ କ୍ରନ୍ଦନରତ, ଯନ୍ତ୍ରଣା-ଜର୍ଜରିତ ସ୍ୱରଟି ଥିଲା କୃଷ୍ଣମୂର୍ତ୍ତିଙ୍କ ଶରୀରର ଓ ଅନ୍ୟଟି ସ୍ୱୟଂ କୃଷ୍ଣମୂର୍ତ୍ତିଙ୍କର । 'ଶରୀର'ର ଆର୍ତ୍ତନାଦ ଭିତରେ 'କୃଷ୍ଣମୂର୍ତ୍ତିଙ୍କର' ସ୍ୱର ଅତି ଶାନ୍ତ, ଗମ୍ଭୀର ଶୁଭୁଥିଲା । ତାଙ୍କ କଥାରୁ ଠାଣିରୁ ମନେ ହେଉଥିଲା ଯେ ସେ ଯେମିତି ସେଠାରେ ଉପସ୍ଥିତ କୌଣସି ଅଦୃଶ୍ୟ ବ୍ୟକ୍ତିକୁ କିଛି ପ୍ରଶ୍ନ ପଚାରୁଛନ୍ତି । କିନ୍ତୁ ପ୍ରକୃତରେ ସେଠାରେ କେହିହେଲେ ନ ଥିଲେ ।

ସେଦିନ ପ୍ରାୟ ଘଣ୍ଟାଏ କାଳ ଏମିତି ପ୍ରକ୍ରିୟା ଓ ଯନ୍ତ୍ରଣା ଲାଗି ରହିଲା । ତା'ପରେ କ୍ରିଷ୍ଣମୂର୍ତ୍ତି ନିଜ ଦେହକୁ ଫେରିବା ସଙ୍ଗେ ସଙ୍ଗେ ତାହା ଆପେ ବନ୍ଦ ହୋଇଗଲା ।

ତହିଁଆର ଦିନ ଠିକ୍ ସେହି ସମୟକୁ ପୁଣି ଥରେ ଯନ୍ତ୍ରଣା ଆରମ୍ଭ ହେଲା । ଏଥର କିନ୍ତୁ ତାହା ପୂର୍ବଦିନ ଅପେକ୍ଷା ଢେର ବେଶୀ ତୀବ୍ର । ଭୟଙ୍କର ଯନ୍ତ୍ରଣାରେ କ୍ରିଷ୍ଣମୂର୍ତ୍ତି ଆଉ ଠାଏ ହୋଇ ରହି ପାରିଲେ ନାହିଁ । ବସିବା ଜାଗାରୁ ଉଠିପଡ଼ି ଖୁବ୍ ଜୋର୍‌ରେ ଏଣେତେଣେ ଧାଇଁବାକୁ ଲାଗିଲେ । ଓ୍ୱାରିଂଟନ ଓ ନିତ୍ୟ ବହୁ କଷ୍ଟରେ ଶେଷରେ ତାଙ୍କୁ ସ୍ଥିରକରି ଗୋଟିଏ ଜାଗାରେ ବସାଇଲେ । ତା'ର କିଛି ସମୟ ପରେ ବଡ଼ ପାଟିରେ କାନ୍ଦି କାନ୍ଦି କ୍ରିଷ୍ଣମୂର୍ତ୍ତି କହିବାକୁ ଲାଗିଲେ — 'ଓଃ···ମାଆ, କାହିଁକି ତମେ ମତେ ଜନ୍ମ ଦେଲ···କାହିଁକି ଏ କଷ୍ଟ ସହିବା ପାଇଁ ମତେ ଏ ପୃଥିବୀକୁ ଆଣିଲ ?' ଏକଥା କହିଲାବେଳେ ଆଖିରୁ ତାଙ୍କର ଏକ ଅଦ୍ଭୁତ ଗୁହାରୀ ଫୁଟି ଉଠୁଥିଲା । ପାଖରେ ଠିଆ ହୋଇଥିବା ନିତ୍ୟ, ରୋଜାଲିଣ୍ଡ ବା ଓ୍ୱାରିଂଟନ—କାହାରିକୁ ହେଲେ ସେ ଚିହ୍ନିପାରୁ ନ ଥିଲେ । ତାଙ୍କର ଗୁହାରୀରୁ ମନେ ହେଉଥିଲା ସତେ ଯେମିତି ସେ ଆଖି ଆଗରେ ନିଜର ମାଆକୁ ହିଁ ଦେଖୁଛନ୍ତି । କିଛି ବେଳ ପରେ ସେ ପୁଣି ଥରେ ବଡ଼ ଜୋରରେ କହି ଉଠିଲେ—'ହଁ···ହଁ··· ମୁଁ ଆହୁରି ବହୁତ ବେଶୀ ସହି ପାରିବି । ଯଦିଓ ଏ ଶରୀରର ଆର୍ତ୍ତନାଦକୁ ମୁଁ ରୋକି ପାରୁନାହିଁ ତଥାପି କହୁଛି, ଏ ଶରୀର ନେଇ କିଛି ଚିନ୍ତା କରିବା ଦରକାର ନାହିଁ ।'

ଯନ୍ତ୍ରଣାର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । କେତେବେଳେ ମୁହଁ, କେତେବେଳେ ଆଖି, ପୁଣି ଆଉ କେତେବେଳେ ତାଳୁ ବା ଅନ୍ୟ ଅଂଶରେ ତା'ର ଜ୍ୱାଳା ଅନୁଭୂତ ହେଉଥିଲା । ବେଳେବେଳେ କ୍ରିଷ୍ଣମୂର୍ତ୍ତିଙ୍କର ମନେ ହେଉଥିଲା ଯେ ଏକ ପ୍ରଚଣ୍ଡ ଉତ୍ତାପରେ ଦଗ୍ଧ ହୋଇ ତାଙ୍କର ମୁହଁଟି ଆଉ ନାହିଁ—ଆଖି ଦୁଇଟି ଯେମିତି କୁଆଡ଼େ ଗଳି ଯାଇଛି । ବିକଳ ହୋଇ ସେ ଚିତ୍କାର କରି ଉଠୁଥିଲେ, 'ମାଆ··· ମୋ ମୁହଁରେ ଟିକିଏ ହାତ ମାରି ଦେଖ ; ଟିକିଏ ଛୁଇଁ କରି କହ ମୋର

ମୁହଁ କଣ ସତରେ ସେମିତି ପୂର୍ବଭଳି ରହିଛି ?' × × × 'ମାଆ, ମୋର ଆଖି ବୋଲିଟା ଆଉ ନାହିଁ, ଦେଖ···ଥରେ ହାତ ମାରି ଦେଖ··· ଆଉ ମୋର ଆଖି ନାହିଁ ।' ବୋଧହୁଏ 'ପ୍ରକ୍ରିୟା' ତାଙ୍କର ମୁହଁ ଓ ଆଖି ଉପରେ କାମ କରୁଥିଲା । ଅନ୍ୟ ଏକ ସମୟରେ ଏହି ବିଷୟରେ ସେ ନିତ୍ୟଙ୍କୁ ବର୍ଣ୍ଣନା କରିଥିଲେ ଯେ ସେ ଯେପରି ମହାମୁନିଙ୍କୁ ସଚକ୍ଷୁରେ ଦର୍ଶନ କରିପାରିବେ ସେଇଥିପାଇଁ 'ସେମାନେ' ତାଙ୍କର ଆଖିକୁ ପୋଛି ନିର୍ମଳ କରୁଥିଲେ । ସେତେବେଳକାର ଯନ୍ତ୍ରଣାକୁ ବର୍ଣ୍ଣନା କରି ସେ କହିଥିଲେ ଯେ ଆଖିର ପତା ଦୁଇଟିକୁ କାଟି ଅନେକ ସମୟ ଧରି ଏକ ଉତପ୍ତ ମରୁଭୂମିରେ ଛିଡ଼ା ହୋଇ ପ୍ରଖର ସୂର୍ଯ୍ୟକୁ ଅନାଇ ରହିଲେ ଯେଭଳି ଅନୁଭବ ହୁଏ ତାଙ୍କଠାରେ ଠିକ୍ ସେହିଭଳି ଅନୁଭବ ହେଉଥିଲା ।

କିଛି ଦିନ ପରେ ଦିନେ ସନ୍ଧ୍ୟାରେ କୃଷ୍ଣମୂର୍ତ୍ତି ଧ୍ୟାନରେ ବସିଥିଲେ । ହଠାତ୍ ଏତିକିବେଳେ ନିତ୍ୟଙ୍କର କାହିଁକି ମନେହେଲା ଯେ ସେ ଘରଟା ସାରା ଏକ ଦିବ୍ୟ ଶକ୍ତିରେ ଉଚ୍ଛୁଳି ଉଠୁଛି—ଏକ ଅପୂର୍ବ ତେଜସ୍କ୍ରିୟତା ଓ ମହିମାମୟତାରେ ସେ ପରିବେଶଟି ପ୍ରକମ୍ପିତ ହୋଇ ଉଠୁଛି । କୃଷ୍ଣମୂର୍ତ୍ତି ଯେତେବେଳଯାକେ ଧ୍ୟାନରେ ବସି ରହିଲେ ସେତେବେଳଯାକେ ସେ ଶକ୍ତି ସେମିତି ରହିଥିଲା । କିଛି ସମୟ ପରେ ଧ୍ୟାନରୁ ଉଠି କୃଷ୍ଣମୂର୍ତ୍ତି କହିବାକୁ ଲାଗିଲେ ଯେ "'ସେ' ଆସି ସେହିଠାରେ ଉପସ୍ଥିତ ଥିଲେ ଏବଂ ତାଙ୍କର ଧ୍ୟାନ ସମାପ୍ତ ହେବା ପରେ ଯାଇ ସେଠାରୁ ପ୍ରସ୍ଥାନ କଲେ ।" ତା'ପରେ କୃଷ୍ଣମୂର୍ତ୍ତିଙ୍କ ଅନୁରୋଧରେ ସେଦିନ ରାତିଟାଯାକ ସେ ଏକାକୀ ବଖରା ଭିତରେ ରହିଲେ ଏବଂ ନିତ୍ୟ ଓ ଓ୍ୱାରିଂଟନ ତାଙ୍କୁ ଜଗି ବାହାରେ ବସିଲେ । ନିତ୍ୟଙ୍କ ବର୍ଣ୍ଣନା ଅନୁଯାୟୀ ତାହା ଥିଲା ଏକ ଭୟଙ୍କର ରାତି । କବାଟ ବାହାରେ ରହି ସେମାନେ ଶୁଣିବାକୁ ପାଇଲେ ଯେ ଭିତରେ କୃଷ୍ଣମୂର୍ତ୍ତି କରୁଡ଼ ହୋଇ ଭୂଇଁରେ ପଡ଼ିଗଲେ ; କିନ୍ତୁ ତା'ପରେ ସାଙ୍ଗେ ସାଙ୍ଗେ କ୍ଷମା ମାଗିବା ଭଙ୍ଗିରେ କହି ଉଠିଲେ, "ନା···ନା···ମୁଁ ଭୁଲରେ ପଡ଼ିଗଲି ; ମୋର ଭୁଲ ହୋଇଯାଇଛି···ମୁଁ ଜାଣେ ଏମିତି ପଡ଼ିଯିବାଟା ମୋ ପକ୍ଷରେ

ଆଦୌ ଉଚିତ ହୋଇନାହିଁ ।'' × × × ''ହଁ ମୁଁ ଶପଥ କରୁଛି, ଆଉ ଆଦୌ ହଲଚଲ ହେବ ନାହିଁ । ଏକବାରେ ନିଶ୍ଚଳ ରହିବ ।''

କିଛି ସମୟ ବିତିଗଲା । ନିତ୍ୟ ପୁଣି ଶୁଣିଲେ ଯେ ବଖରା ଭିତରେ କ୍ରିଷ୍ଣମୂର୍ତ୍ତି କଷ୍ଟରେ ଗଁ ଗଁ ହେଉଛନ୍ତି । ସତେ ଅବା ତାଙ୍କର ଶ୍ୱାସରୁଦ୍ଧ ଘଟିଛି । ତା ପରେ କିଛି ସମୟ ପାଇଁ ସବୁ ଚୁପ୍‌ଚାପ୍ । କଣ ହେଲା ବୁଝି ନ ପାରି ନିତ୍ୟ ତାଙ୍କୁ ବାହାରୁ 'କ୍ରିଷ୍ଣ···କ୍ରିଷ୍ଣ' ବୋଲି ଡାକିଲେ । ତଥାପି କୌଣସି ଉତ୍ତର ମିଳିଲା ନାହିଁ । ବାଧ୍ୟହୋଇ ସେ କବାଟ ଖୋଲି ଭିତରକୁ ପଶିଲେ । ଭିତରଟା କଟିକଟି ଅନ୍ଧାର । କୌଣସିମତେ ବାଟ ଠଉରାଇ ସେ କ୍ରିଷ୍ଣମୂର୍ତ୍ତିଙ୍କ ପାଖରେ ପହଞ୍ଚିଲେ । ଯାଇ ଦେଖିଲେ ସେ ଚିତ୍ ହୋଇ ପଡ଼ିଛନ୍ତି—ହାତର ଆଙ୍ଗୁଳିଗୁଡ଼ିକୁ ଜୋରରେ ଛନ୍ଦି ଦେଇ ପିଠି ତଳେ ମାଡ଼ି ରଖିଛନ୍ତି । ଧୀରେ ଧୀରେ ଡାକି ନିତ୍ୟ ତାଙ୍କୁ ଚେତା କରାଇଲେ । ଚେତା ପାଇ କ୍ରିଷ୍ଣମୂର୍ତ୍ତି ସଙ୍ଗେ ସଙ୍ଗେ 'ସେହିମାନଙ୍କ'ଠାରେ ନିଜର ଅକ୍ଷମତା ଲାଗି ପୁଣି କ୍ଷମା ପ୍ରାର୍ଥନା କଲେ । ସେଦିନ ରାତିରେ ଏହି ଘଟଣା ଲାଗ ଲାଗ ତିନିଥର ଘଟିଲା ଆଉ ପ୍ରତିଥର କ୍ରିଷ୍ଣମୂର୍ତ୍ତି ଯଥା ସମ୍ଭବ ନିଜ ଶରୀରକୁ ଆୟତ୍ତ କରିବାକୁ ଚେଷ୍ଟା କରୁଥିଲେ । କାହାରିକୁ ହେଲେ ସେ ବଖରା ଭିତରକୁ ପଶିବାକୁ ଦେଉ ନ ଥିଲେ । ଆତୁର ଅନୁରୋଧ କରି କହୁଥିଲେ—'' 'ସେ' ଏବେ ଏଇକ୍ଷଣି ଆସିଯିବେ ପରା !'' ତିନି ବନ୍ଧୁଯାକ ବାହାରେ ଥାଇ ଲକ୍ଷ୍ୟ କଲେ ଯେ କ୍ରିଷ୍ଣମୂର୍ତ୍ତି ଧ୍ୟାନମଗ୍ନ ଅବସ୍ଥାରେ ବସିଛନ୍ତି, ଆଉ ସତକୁ ସତ କିଛି ସମୟ ପରେ ସେମାନେ ସେଠାରେ ଏକ ଦିବ୍ୟ ଶକ୍ତିର ଉପସ୍ଥିତିକୁ ଅନୁଭବ କରିବାକୁ ଲାଗିଲେ ।

ଏତିକବେଳେ ବଖରା ଭିତରେ କ୍ରିଷ୍ଣମୂର୍ତ୍ତିଙ୍କର ସ୍ୱର ଶୁଭିଲା— ସେ କାହା ସହିତ କଥାଭାଷା ହେଉଥିଲେ । କବାଟ ଫାଙ୍କରେ ଉଣ୍ଡି ନିତ୍ୟ କାହାରିକୁ ଦେଖିବାକୁ ପାଇଲେ ନାହିଁ । ଖାଲି ଶୁଣିଲେ ଯେ କ୍ରିଷ୍ଣମୂର୍ତ୍ତି କହୁଛନ୍ତି, ''ନା, ନା, ମତେ ଏଇଥିପାଇଁ ବଧାଇ ଜଣାଇବାର ବା କଣ ଅଛି ? ଆପଣମାନେ ମୋ ଜାଗାରେ ଥିଲେ ନିଜେ ମଧ୍ୟ ଏଇକଥା କରିଥାନ୍ତେ ।'' ନିତ୍ୟଙ୍କର ମନେ ହେଲା ଯେ ବଖରାଟା

ଆଗନ୍ତୁକମାନଙ୍କ ଦ୍ଵାରା ଭରି ଉଠିଛି । କିଛି ସମୟ ପରେ ସେମାନେ ବୋଧହୁଏ ଚାଲିଗଲେ । ଅନ୍ତରଙ୍ଗ ଦୁର୍ବଳତା ହେତୁ କୃଷ୍ଣମୂର୍ତ୍ତି ଅନେକ ବେଳଯାକେ ସେମିତି ପଡ଼ି ରହିଲେ । ତା'ପରେ ଧୀରେ ଧୀରେ କହିବାକୁ ଲାଗିଲେ, "ମା'ଆ, ଏଣିକି ସବୁକିଛି ବଦଳିଯିବ । ଏହା-ପରଠାରୁ ଆଉ କାହାର ଲାଗି ଏ ଜୀବନ ଆଉ ପୂର୍ବ ଭଳି ହୋଇ ରହିବ ନାହିଁ···ମୁଁ ଯେ 'ତାଙ୍କର' ଦର୍ଶନ ପାଇଛି ମୋର ଆଉ କିଛି ଦରକାର ନାହିଁ ।" ଏଇକଥା କୃଷ୍ଣମୂର୍ତ୍ତି ବାରମ୍ବାର କହି ହେବାରେ ଲାଗିଥିଲେ । ସେହି ରାତିରେ ନିତ୍ୟ ପୁଣିଥରେ ଶୁଣିଲେ ଯେ କୃଷ୍ଣମୂର୍ତ୍ତି କାହା ସାଥିରେ କଥାବାର୍ତ୍ତା କରୁଛନ୍ତି । ସେମାନଙ୍କର କଥୋପକଥନ ଯଦିଓ ସେ ପୂରା ଶୁଣି ପାରୁ ନ ଥିଲେ ତଥାପି ଏତିକି ମାତ୍ର ଠଉରାଇ ପାରିଲେ ଯେ ମହାଗୁରୁ ଦ୍ଵିଜଲକୁଲ ଯେଉଁ ଜଣଙ୍କୁ କୃଷ୍ଣମୂର୍ତ୍ତିଙ୍କ ଶରୀରର ଦେଖାଚାହାଁ କରିବାପାଇଁ ସେଠାକୁ ପଠାଇଥିଲେ କୃଷ୍ଣମୂର୍ତ୍ତି ତାଙ୍କରି ସହିତ କଥା କହୁଥିଲେ ।

ଏ ଘଟଣାର କିଛିଦିନ ପରେ, ଅର୍ଥାତ୍ ୧୯୨୨ ଅକ୍ଟୋବର ୬ ତାରିଖ ଦିନ ହଠାତ୍ କୃଷ୍ଣମୂର୍ତ୍ତିଙ୍କର ତାଳୁରେ ପୁଣି ଥରେ ସେହି ଯନ୍ତ୍ରଣା ଅତି ତୀବ୍ର ଭାବରେ ଆରମ୍ଭ ହୋଇଗଲା । ତାଙ୍କର ମନେହେଲା ସତେ ଯେପରି 'ସେମାନେ' ତାଙ୍କ ତାଳୁକୁ ଖୋଲି ସେଠାରେ ଗୋଟାଏ ଅପରେସନ୍ କରୁଛନ୍ତି । ଅକଥନୀୟ ଯନ୍ତ୍ରଣାରେ ଛଟପଟ ହୋଇ କୃଷ୍ଣମୂର୍ତ୍ତି ପାଟିକରିବାରେ ଲାଗିଥାନ୍ତି—"ଦୟାକରି ବନ୍ଦ କରିଦିଅ, ତାକୁ ବନ୍ଦ କରିଦିଅ ।" 'ସେମାନେ' କିନ୍ତୁ ନିଜ କାମ ପୂର୍ବ ଭଳି କରି ଚାଲିଥାନ୍ତି । ଏଣେ ଯନ୍ତ୍ରଣା ବଢ଼ି ବଢ଼ି ଅସମ୍ଭାଳ ହୋଇ ପଡ଼ିଲା; ତାଙ୍କର ଚେତା ମଧ୍ୟ ହଜିଗଲା । କିନ୍ତୁ ପୂରା ଚାଳିଶ ମିନିଟ୍ ଧରି ସେ ଅପରେସନ୍ କାମ ସେମିତି ଚାଲିଲା । ପରେ ଚେତା ଫେରିବା ବେଳକୁ କୃଷ୍ଣମୂର୍ତ୍ତି ସତେ ଯେମିତି ଚାରି ପାଞ୍ଚବର୍ଷର ପିଲା ପାଲଟି ଯାଇଥିଲେ । ସେହି ବୟସରେ ତାଙ୍କ ଘରେ ଯାହାସବୁ ଘଟିଥିଲା ସେ ତା'ର ବିଷୟରେ ଗପିବାକୁ ଲାଗିଥିଲେ । ତହିଁ ଆରଦିନ ରାତିରେ ମଧ୍ୟ ଏହି ଘଟଣାର ପୁନରାବୃତ୍ତି ଘଟିଲା । ଆଉ ସେଦିନ ମଧ୍ୟ ଚେତା ପାଇବା ପରେ ସେ

ପୁଣି ଥରେ ପିଲାଙ୍କ ଭଳି କଥାବାର୍ତ୍ତା କରିବାକୁ ଆରମ୍ଭ କରିଦେଲେ । ପିଲାଦିନେ ସେ ଯେମିତି ସ୍କୁଲ ଯିବାକୁ ଆଦୌ ରାଜି ହୋଉ ନ ଥିଲେ ସେହି କଥାସବୁ ଗପିବାକୁ ଲାଗିଲେ । "ମାଆ, ଆଜି ମୁଁ ସ୍କୁଲ ନ ଗଲେ ଚଳିବ, ନୁହେଁ କି ? ମୋ ଦେହ ଆଜି ଜମାରୁ ଭଲ ନାହିଁ ।···ମାଆ, ଆଜି ଦିନକ ମତେ ଘରେ ରହିବାକୁ ଛାଡ଼ିଦିଅ··· ତମ ପାଖରେ ରହିବାକୁ ଦିଅ । ତମେ ଯାହା ଯାହା କହିବ ମୁଁ ସବୁ କରିବ । ତମ କଥା ମାନି ଜଡ଼ା ତେଲ ବି ଖାଇବି ପଛେ, ମତେ ଆଜି ତମ ପାଖରେ ରହିବାକୁ ଦିଅ" × × × "ମାଆ, ତମେ ଆମକୁ ଲୁଚାଇ ଯୋଉଁ ବିସ୍କୁଟ ଡବାଟା ରଖିଥିଲ ନା, ମୁଁ ସେଇଥିରୁ ଲୁଚାଇ କରି ବିସ୍କୁଟତକ ସବୁ ଖାଇ ଦେଇଛି । ଜାଣ, ମୁଁ ବହୁତ ଦିନ ହେଲା ଏମିତି କରି ଆସୁଛି ।" କୃଷ୍ଣମୂର୍ତ୍ତି ଏକଥା କହିଲାବେଳେ ବେଜାଲିଣ୍ଡ ପାଖରେ ଛିଡ଼ା ହୋଇଥିଲେ । କୃଷ୍ଣମୂର୍ତ୍ତିଙ୍କ କଥା ଶୁଣି ନିଜକୁ ସମ୍ଭାଳି ନ ପାରି ହସି ଦେବାରୁ ସାଙ୍ଗେ ସାଙ୍ଗେ ସେ କହିଉଠିଲେ, "ମାଆ— ତମେ କାହିଁକି ଏମିତି ହସୁଛ ? କାହିଁକି ମତେ ଥଟ୍ଟା କରୁଛ ?" ତା'ପରେ ସେ ଧୀରେ ଧୀରେ ଆଡ୍ୟାର୍ରର ପ୍ରାର୍ଥନା-କକ୍ଷ ଓ ସେଠି କାନ୍ଥରେ ଟଙ୍ଗା ହୋଇଥିବା ଆନି ବେସାନ୍ତଙ୍କ ଫଟୋ ବିଷୟରେ ଗପିବାକୁ ଲାଗିଲେ । ପୁଣି ଆଉ ଦିନେ ପିଲା ଅବସ୍ଥାରେ ଶଗଡ଼ ଗାଡ଼ିରେ ବସି ସେ କେଉଁଠାକୁ ଯାଇଥିଲେ ସେକଥା ଓ ମାଆଙ୍କର ମରିବା ଦିନର କଥା ମଧ୍ୟ କହି ଚାଲିଲେ ।

ସେଥରକ ଦୀର୍ଘ ଚଉଦ ଦିନ ଧରି ଏ ପ୍ରକ୍ରିୟା ଓ ତା ସହିତ ଯନ୍ତ୍ରଣା ଏମିତି ଲଗାତାର ଅନୁଭୂତ ହେବାରେ ଲାଗିଲା । ବିଶେଷ କରି ଶେଷ କେତୋ ଦିନ ଯନ୍ତ୍ରଣା ଏତେ ମାତ୍ରାରେ ବଢ଼ିଗଲା ଯେ ତା'ର ପ୍ରଭାବରେ କୃଷ୍ଣମୂର୍ତ୍ତି ଅତିଶୟ ଦୁର୍ବଳ ହୋଇପଡ଼ିଲେ— ଭଲଭାବେ ଚାଲିବୁଲି କରିବା ପାଇଁ ମଧ୍ୟ ତାଙ୍କଠାରେ ବଳ ରହିଲା ନାହିଁ । ଏହାପରେ ୧୯ ତାରିଖ ଦିନ ପୁଣି ଥରେ ସମସ୍ତେ ଘର ଭିତରେ ସେହି ପୂର୍ବୋକ୍ତ ଅପୂର୍ବ, ଦିବ୍ୟ ଶକ୍ତିର ଉପସ୍ଥିତିକୁ ଅନୁଭବ କରିବାକୁ ଲାଗିଲେ । ସେହିଦିନ ସନ୍ଧ୍ୟାରେ ଧ୍ୟାନରୁ ଉଠିପଡ଼ି କୃଷ୍ଣମୂର୍ତ୍ତି ବଡ଼

ପାଟିରେ ଡାକିବାକୁ ଲାଗିଲେ—"କୃଷ୍ଣ, ଆ···ଫେରିଆ କୃଷ୍ଣ···ମତେ ଛାଡ଼ି ଚାଲି ଯାଆ ନାହିଁ ।"

କୃଷ୍ଣମୂର୍ତ୍ତି ଯଦ୍ୟପି ନିଜେ କେବେହେଲେ କାହାର ସହିତ ଏ ବିଷୟରେ ଆଲୋଚନା କରୁ ନ ଥିଲେ ତଥାପି ଗୋଟିଏ କଥା ସମସ୍ତେ ଭଲ ଭାବରେ ବୁଝୁଥିଲେ ଯେ ଏହା ଏକ ବିଶେଷ ଧରଣର—ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟା ଓ ଏଥିରେ ସାମାନ୍ୟତମ ତ୍ରୁଟି ଘଟିଲେ ଯେତେ ଯାହା ସବୁ କରାହୋଇ ଆସିଛି ସବୁ ଶେଷ ହୋଇଯିବ । ଏପରିକି ଆନି ବେସାନ୍ତ ଓ ଲେଡ଼ବିଟରଙ୍କ ମଧ୍ୟ ଏ ପ୍ରକ୍ରିୟା କ'ଣ ତାହା ଜାଣିପାରୁ ନ ଥିଲେ । ତେଣୁ ନିତ୍ୟ ଯେତେବେଳେ ଏ ଅବସ୍ଥାରେ କଣ କରିବାକୁ ହେବ ବୁଝି ନ ପାରି ଲେଡ଼ବିଟରଙ୍କର ଉପଦେଶ ଲୋଡ଼ିଲେ ସେତେବେଳେ ସେ ମଧ୍ୟ ତାଙ୍କୁ କୌଣସି ସାହାଯ୍ୟ କରିପାରି ନ ଥିଲେ । ବାସ୍ତବିକ ପ୍ରକୃତି ରାଜ୍ୟରେ ଏଭଳି ଅନେକ ଘଟଣା ଘଟିଥାଏ ଯାହାର କାରଣ ଖୋଜି ବାହାର କରିବା ମନୁଷ୍ୟ ସାଧ୍ୟର ବାହାରେ । କୃଷ୍ଣମୂର୍ତ୍ତିଙ୍କର ଏହି ବିଚିତ୍ର, ରହସ୍ୟମୟ ଅନୁଭୂତି ସହିତ ତାଙ୍କ ଜୀବନ ଦର୍ଶନର ଏକ ଗଭୀର ସମ୍ପର୍କ ରହିଥିଲା । ଏହି ଅନୁଭୂତି ତାଙ୍କଠାରେ ଏକ ନୂତନ ଚେତନା ଜାଗ୍ରତ କରିଥିଲା । ସେତିକିବେଳେ ସେ କହିଥିଲେ, "ମୋ ସମ୍ମୁଖରେ ଏବେ କେବଳ ଗୋଟିଏ ମାତ୍ର ଜିନିଷ ରହିଛି — ସେଇଟି ହେଲା କର୍ମ । ମୋର ପୂର୍ଣ୍ଣ ବିଶ୍ୱାସ ଯେ ମୁଁ ଏକାନ୍ତ ଭାବରେ, ନିଃସ୍ୱାର୍ଥପରତାର ସହ ମୋର ଏହି କାର୍ଯ୍ୟ ସମ୍ପନ୍ନ କରି ପାରିବି ।"

## ପ୍ରସ୍ତୁତି ପଥେ

ଓହାଇରୁ ଫେରି ୧୯୨୩ ମସିହା ଜୁଲାଇ ମାସରେ କୃଷ୍ଣମୂର୍ତ୍ତି ଭିଏନାରେ ଅନୁଷ୍ଠିତ ଦ୍ୱିତୀୟ ଆନ୍ତର୍ଜାତିକ 'ଷ୍ଟାର' ସମ୍ମିଳନୀରେ

ଯୋଗ ଦେଲେ । ସେ ବର୍ଷ ଆନି ବେସାନ୍ତଙ୍କର ଅନୁପସ୍ଥିତି ହେତୁ ସମ୍ମିଳନୀର ସବୁତକ ଦାୟିତ୍ୱ ପଡ଼ିଲା କୃଷ୍ଣମୂର୍ତ୍ତିଙ୍କ ଉପରେ ଏବଂ ନିଜର ଦୁର୍ବଳତା ସତ୍ତ୍ୱେ ସେ ଅକ୍ଲାନ୍ତ ପରିଶ୍ରମ କରି ସମ୍ମିଳନୀର ସମସ୍ତ ଦାୟିତ୍ୱ ତୁଲାଇଲେ । ସମ୍ମିଳନୀ ଶେଷ ହେବା ବେଳକୁ ତାଙ୍କର ସ୍ୱାସ୍ଥ୍ୟ ଏକବାରେ ଭାଙ୍ଗି ପଡ଼ିଥିଲା । ତେଣୁ କିଛିଦିନ ବିଶ୍ରାମ କରିବା ଲାଗି ସେ ଅଷ୍ଟ୍ରିଆର ଏର୍‌ଓ୍ୱାଲ୍‌ଡ୍ ନାମକ ଗୋଟିଏ ସ୍ଥାନକୁ ଯାଆନ୍ତିକଲେ । ସାଙ୍ଗରେ ତାଙ୍କର ଗଲେ ନିତ୍ୟ, ରାଜଗୋପାଲ, ଲେଡ଼ି ଏମିଲି, ହେଲେନ ନର୍ଥ ନାମକ ଏକ ଊଣେଇଶ ବର୍ଷିଆ ମହିଳା ଏବଂ ଏକ ଭାରତୀୟ ଦମ୍ପତି ଶ୍ରୀମତୀ ମାଳତୀ ପଟବର୍ଦ୍ଧନ ଓ ତାଙ୍କର ସ୍ୱାମୀ ।

ଏର୍‌ଓ୍ୱାଲଡ୍‌ରେ ପହଞ୍ଚିବାର ପ୍ରଥମ ଦୁଇ ସପ୍ତାହ ଖଣ୍ଡେ ବେଶ୍ ସୁରୁଖୁରୁରେ କଟିଗଲା । ତା'ପରେ ଅଗଷ୍ଟ ୧୭ ତାରିଖ ଦିନ ହଠାତ୍ ସେହି 'ପ୍ରକ୍ରିୟା' କୃଷ୍ଣମୂର୍ତ୍ତିଙ୍କଠାରେ ଖୁବ୍ ଜୋର୍‌ରେ ଆରମ୍ଭ ହୋଇଗଲା । ପ୍ରଥମ ଦିନ ରାତିରେ ତୀବ୍ର ଯନ୍ତ୍ରଣାରେ ଛଟପଟ ହୋଇ ସେ ସାରା ରାତି ଶୋଇ ପାରିଲେ ନାହିଁ । ଭୂଇଁରେ ପଡ଼ି ବିକଳ ହୋଇ ଚିତ୍କାର କରିବାରେ ଲାଗିଲେ । ନିତ୍ୟ ଓ ହେଲେନ ଅସହାୟ ଭାବରେ ତାଙ୍କୁ ଜଗି ବଖରା ଭିତରେ ବସି ରହିଲେ । ପରଦିନ ସକାଳୁ ଉଠିଲାବେଳକୁ କୃଷ୍ଣମୂର୍ତ୍ତି ଅତ୍ୟନ୍ତ କ୍ଲାନ୍ତ ଦିଶୁଥିଲେ । ସେଦିନ ଅଧିକାଂଶ ସମୟ ସେ ଘରେ ନ ରହି ଘରକୁ ବେଢ଼ାଇ ରହିଥିବା ପାଇନ୍ ଜଙ୍ଗଲ ଭିତରେ ସମୟ କଟାଇଥିଲେ ଆଉ ସୂର୍ଯ୍ୟାସ୍ତ ପରେ ଯାଇ ଘରକୁ ଫେରିଥିଲେ । ମାତ୍ର ଘରେ ପହଞ୍ଚିବା ପରେ ପରେ ପୁଣିଥରେ ପୂର୍ବଦିନ ଭଳି ପ୍ରକ୍ରିୟା ଆରମ୍ଭ ହୋଇଗଲା । ଅସହ୍ୟ ଯନ୍ତ୍ରଣା ସାଙ୍ଗକୁ ଶରୀରର ଶବ୍ଦ ଓ ସ୍ପର୍ଶ କାତରତା ମଧ୍ୟ ବଢ଼ି ବଢ଼ି ଚାଲିଲା । ଏମିତି କି ଦୂରରୁ ଶୁଭୁଥିବା ଚର୍ଚ୍ଚ ଘଣ୍ଟାର ଢଂ ଢଂ ଶବ୍ଦ ଓ ଲୋକମାନଙ୍କ କଥାବାର୍ତ୍ତାରେ ବି ସେ ଚମକି ଉଠୁଥିଲେ । ବେଳକୁ ବେଳ ସେ ଅଧିକରୁ ଅଧିକ ସମୟ ଧରି ଶରୀରରୁ 'ବାହାରି ଯାଉଥିଲେ' ଆଉ ପ୍ରତିଥର ନିତ୍ୟ ଓ ହେଲେନ ବଡ଼ କଷ୍ଟରେ ଡକାଡକି କରି ତାଙ୍କୁ ଚେତାକୁ ଆଣୁଥିଲେ ।

'ପ୍ରକ୍ରିୟା' ପ୍ରାୟ ମାସେ ଖଣ୍ଡେ ଚାଲିବା ପରେ ସେପ୍ଟେମ୍ବର ୨୦ ତାରିଖ ଦିନ ମହାଗୁରୁ କୁତହୁମି କୃଷ୍ଣମୂର୍ତ୍ତିଙ୍କ ଜରିଆରେ ନିତ୍ୟଙ୍କ ଉଦ୍ଦେଶ୍ୟରେ ଏକ ସନ୍ଦେଶ ଦେଲେ । ସେଥିରେ ଥିଲା — "ଶୁଣ ନିତ୍ୟ, ବର୍ତ୍ତମାନ ପାଇଁ ଏହା ଏଇଠି ବନ୍ଦ ହେଲା, କିନ୍ତୁ ଓହାଇଠାରେ ଏହା ପୁଣିଥରେ ଆରମ୍ଭ ହେବ । ମନେରଖ, ଏ ସବୁ ତମ ଉପରେ ଅନେକ ନିର୍ଭର କରୁଛି । ଏଥିଲାଗି ତମ ଦିହିଁଙ୍କଠାରେ ଆହୁରି ଶକ୍ତି ରହିବା ଆବଶ୍ୟକ । ଆଉ ମାସରେ ତମେ ଯାହା ସବୁ କରିବ ତା'ରି ଉପରେ ହିଁ ଏହାର ସଫଳତା ନିର୍ଭର କରିବ । ଏ କାର୍ଯ୍ୟ ପାଇଁ ତମକୁ ଅତ୍ୟନ୍ତ ସାବଧାନତା ଓ ସତର୍କତା ଅବଲମ୍ବନ କରିବାକୁ ହେବ···ଏବେଯାକେ ଏ ପ୍ରକ୍ରିୟା ସଫଳ ହୋଇ ଆସିଛି କିନ୍ତୁ ଓହାଇରେ ଏହା ଆହୁରି ଅଧିକ ତୀବ୍ରତାର ସହ ଅନୁଭୂତ ହେବ ଏବଂ ସେଥରକର ସଫଳତା ପୂରା ମାତ୍ରାରେ ତମରି ଉପରେ ନିର୍ଭର କରିବ । × × × × ଏ ସ୍ଥାନ ଛାଡ଼ି ଗଲାବେଳେ ତମକୁ ଅତି ମାତ୍ରାରେ ସତର୍କ ରହିବାକୁ ପଡ଼ିବ । କାରଣ ବର୍ତ୍ତମାନ ଏହା ସଦ୍ୟ ଗୁମ୍ଫରୁ ବାହାରିଥିବା ପ୍ରାଣୀଟିଏ ଭଳି ଅଛି । ସାମାନ୍ୟତମ ମନ୍ଦ ଆଘାତ ଏହାକୁ ଭାଙ୍ଗି ଦେଇପାରେ । ଆଉଥରେ ସେଭଳି କିଛି ହେଲେ ତାକୁ ସଜାଡ଼ି ପୁଣିଥରେ ଗଢ଼ିବାକୁ ଅନେକ ଅନେକ ସମୟ ନେବ ।"

"ଏଥିପାଇଁ ତମକୁ ଖୁବ୍ ସାବଧାନ ରହିବାକୁ ପଡ଼ିବ । ଏଥିରେ କୌଣସି ପ୍ରକାର ଭୁଲ ଭଟକା ହୋଇଗଲେ ଏହାକୁ ପୁଣିଥରେ ମୂଳରୁ ଆରମ୍ଭ କରିବାକୁ ପଡ଼ିବ । × × ×" ଦୁଇ ଦିନ ପରେ ସେପ୍ଟେମ୍ବର ୨୨ ତାରିଖ ଦିନ କୃଷ୍ଣମୂର୍ତ୍ତି ଅନ୍ୟମାନଙ୍କ ସହ ଏର୍‌ଓ୍ୱାଲ୍‌ଡ଼୍ ଛାଡ଼ି ହଲାଣ୍ଡର ଓମେନ ସହରରେ ପହଞ୍ଚିଲେ । ସେଠାକାର ଜଣେ ଅତି ଧନୀ ଜମିଦାର ବାରନ ଫିଲିପ୍ ଭନ୍ ପାଲାଣ୍ଡ ସେମାନଙ୍କୁ କିଛି ଦିନ ପାଇଁ ନିଜ ଘରେ ଅତିଥି କରି ରଖିଲେ । ବାରନ୍ ଫିଲିପ୍ ତା'ର ଠିକ୍ ଦୁଇବର୍ଷ ପୂର୍ବେ ଓମେନଠାରେ ଥିବା ନିଜର ପାଞ୍ଚହଜାର ଏକର ବିଶିଷ୍ଟ ଏକ ଜମି ଓ ଏକ ବିରାଟ ପ୍ରାସାଦ — 'କାସଲ ଏଆରଡ଼ର୍' କୃଷ୍ଣମୂର୍ତ୍ତିଙ୍କୁ ଉପହାର ସ୍ୱରୂପେ ପ୍ରଦାନ କରିଥିଲେ । କୃଷ୍ଣମୂର୍ତ୍ତିଙ୍କ ଇଚ୍ଛା ମୁତାବକ ଏହାକୁ 'ଷ୍ଟାର' ଅନୁଷ୍ଠାନର ମୁଖ୍ୟ ଆନ୍ତର୍ଜାତିକ କାର୍ଯ୍ୟାଳୟରେ ପରିଣତ

କରାଯାଇ ତାହାର ସମସ୍ତ ଦାୟିତ୍ୱ ଏକ ଟ୍ରଷ୍ଟ ହାତରେ ନ୍ୟସ୍ତ କରାଯାଇଥିଲା । ପ୍ରାକୃତିକ ଶୋଭାରେ ଭରପୂର ଓମେନସ୍ଥ ଏହି ପ୍ରାସାଦଟିର ଚାରିକଡ଼େ ଆଗପଛ ହୋଇ ଦୁଇଟି ବଡ଼ ବଡ଼ ଖାଇ ରହିଥିଲା । ଜମିଦାରଙ୍କ ନିର୍ଦ୍ଦେଶରେ ସେ ଜଙ୍ଗଲରେ ଜୀବଜନ୍ତୁ ଶିକାର ପୂରାପୂରି ନିଷେଧ କରାଯାଇଥିଲା । ସ୍ଥାନଟିର ପ୍ରାକୃତିକ ସୌନ୍ଦର୍ଯ୍ୟ, ଘଞ୍ଚ ଅରଣ୍ୟ ପ୍ରଭୃତି କୃଷ୍ଣମୂର୍ତ୍ତିଙ୍କର ସୌନ୍ଦର୍ଯ୍ୟ-ପିପାସୁ ମନ ଲାଗି ଏକ ବଡ଼ ଆକର୍ଷଣ ଥିଲା । ସେଠାରେ ଥିବାବେଳେ ଅଧିକାଂଶ ଦିନ ସେ ଏକାକୀ ଓ କେବେକେବେ ବନ୍ଧୁମାନଙ୍କ ସହ ଓମେନ୍‌ର ଜଙ୍ଗଲ ଭିତରୁ ବୁଲିବାକୁ ଯାଉଥିଲେ ।

ସେମାନଙ୍କର ଏହି ଗ୍ରେଟ ଦଳଟି ଓମେନରୁ ଫେରି ପୁଣି ଓହାଇରେ ପହଞ୍ଚିବା ବେଳକୁ ହେଲାଣି ନଭେମ୍ବର ମାସ ୮ ତାରିଖ । ସେ ବର୍ଷ କୃଷ୍ଣମୂର୍ତ୍ତିଙ୍କର ଭାରତ ଆସିବାକୁ ଖୁବ୍ ଇଚ୍ଛା ଥିଲେ ସୁଦ୍ଧା 'ପ୍ରକ୍ରିୟା'ର ଗୁରୁତ୍ୱ ଦୃଷ୍ଟିରୁ ସେ ଓହାଇରେ ରହିବାକୁ ବାଧ୍ୟ ହେଲେ । ଏଥର ତାଙ୍କ ସାଙ୍ଗରେ ରହିଲେ ରାଜଗୋପାଲ, ନିତ୍ୟ ଓ ହେଲେନ୍‌ ନୋଟ୍ ରହିଲେ ଗୋଲାକଣ୍ଡ । ସେତେବେଳକୁ ଥିଓସଫିକାଲ ସୋସାଇଟିର ଭିତର ମହଲରେ ଖୁବ୍ ଜୋରରେ ପ୍ରଚାର ହୋଇସାରିଥିଲା ଯେ ରାଜଗୋପାଲ ଏଥି ଭିତରେ ଆଧ୍ୟାତ୍ମିକ ପଥରେ ନିଜର ପ୍ରଥମ ଦୀକ୍ଷା ଲାଭ କରିସାରିଛନ୍ତି । ତେଣୁ ପ୍ରକ୍ରିୟା ସମୟରେ ସେ ପାଖରେ ରହିଲେ କାଳେ କିଛି ସାହାଯ୍ୟ କରିପାରିବେ ବୋଲି ଜାଣି ଶୁଣି ଏହି ବ୍ୟବସ୍ଥା କରାଯାଇଥିଲା ।

ସତକୁ ସତ ନଭେମ୍ବର ୨୦ ତାରିଖ ଦିନ କୃଷ୍ଣମୂର୍ତ୍ତିଙ୍କର ପ୍ରକ୍ରିୟା ପୂରା ଦମ୍‌ରେ ଆରମ୍ଭ ହୋଇଗଲା । ପୂର୍ବଭଳି ସବୁ ଚିହ୍ନ ଲକ୍ଷଣ ଦେଖାଦେଲା ଏବଂ ପ୍ରକ୍ରିୟା ଚାଲିଥିବାବେଳେ କୃଷ୍ଣମୂର୍ତ୍ତି ଅଧିକାଂଶ ସମୟ ଚେତ ରହୁଥିଲେ । ଏଥିପୂର୍ବରୁ ଏର୍‌ଓ୍ୱାଲଡ଼୍‌ଠାରେ 'ସେମାନେ' କୃଷ୍ଣମୂର୍ତ୍ତିଙ୍କୁ ସଚେତନ ଅବସ୍ଥାରେ ରଖି ତାଙ୍କ ଉପରେ ଯେଉଁ ପରୀକ୍ଷା ଚଳାଇବାର ଉଦ୍ୟମ କରୁଥିଲେ ବର୍ତ୍ତମାନ ସେହି ପରୀକ୍ଷାର ପୁନରାବୃତ୍ତି ଘଟିଲା । ଖାଲି ତଫାତ୍ ରହିଲା ଏତିକି ଯେ ଏବେ ସେ ଯନ୍ତ୍ରଣା ହେଉଥିବା ସମୟରେ ଶରୀରରୁ 'ବାହାରି ନ ଯାଇ' ଯନ୍ତ୍ରଣା ବନ୍ଦ ହେବା ପରେ ଯାଇ ଶରୀରରୁ 'ବାହାରି ଯାଉଥିଲେ', ଆଉ

ସେତେବେଳେ ଶରୀରଟା ତାଙ୍କର ଅସହାୟ ଭାବରେ ଅତିଶୟ କ୍ଳାନ୍ତରେ କାନ୍ଦୁଥିଲା । ନଭେମ୍ବର ୨୭ ତାରିଖ ରାତିରେ ପ୍ରକ୍ରିୟା ଆପାତତଃ ବନ୍ଦ ହୋଇଗଲା । ସେହିଦିନ ସନ୍ଧ୍ୟାରେ ମହାଗୁରୁଙ୍କଠାରୁ ନିତ୍ୟଙ୍କ ଉଦ୍ଦେଶ୍ୟରେ ଏକ ବିଶେଷ ସନ୍ଦେଶ ପାଇ କୃଷ୍ଣମୂର୍ତ୍ତି ବର୍ଣ୍ଣନା କରିଥିଲେ ଯେ—'ଏବେ ଏଇ ଯେଉଁ କାର୍ଯ୍ୟ ସମାହିତ ହେଉଛି ତାହା ଅତି ମାତ୍ରାରେ ସୂକ୍ଷ୍ମ ଓ ଗୁରୁତ୍ୱପୂର୍ଣ୍ଣ । ପୃଥିବୀପୃଷ୍ଠରେ ଏଭଳି ପରୀକ୍ଷା ଏଇଠାରେ ପ୍ରଥମ ଥର ପାଇଁ କରାଯାଉଛି । ଏ କାର୍ଯ୍ୟରେ ଏ ଘରର ପ୍ରତିଟି ବସ୍ତୁ ସହାୟତା କରିବା ଆବଶ୍ୟକ ଏବଂ ଏଥିରେ ଅନ୍ୟ କାହାରି ହେଲେ—ଏପରିକି ସ୍ୱୟଂ କୃଷ୍ଣମୂର୍ତ୍ତିଙ୍କର ସୁଖ ସୁବିଧା ମଧ୍ୟ ଅଗ୍ରାଧିକାର ପାଇବା ଉଚିତ ନୁହେଁ ।'

ଏକଥା ଶୁଣିବା ପରେ ସେମାନଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ କୃଷ୍ଣମୂର୍ତ୍ତିଙ୍କର ଏ 'ପ୍ରକ୍ରିୟା' କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେବାର ପ୍ରକ୍ରିୟା ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏଭଳି ଏକ ଅଭିନବ ଗବେଷଣା ଏ ପୃଥିବୀରେ ଏ ପର୍ଯ୍ୟନ୍ତ କୌଣସି ମାନବ ଠାରେ କରାଯାଇ ନାହିଁ । ଏଥିପୂର୍ବରୁ ମହାମୁନି ମୈତ୍ରେୟ ଯୀଶୁଖ୍ରୀଷ୍ଟଙ୍କ ଶରୀରକୁ ନିଜର ମାଧ୍ୟମ ରୂପେ ବ୍ୟବହାର କରିବା ଲାଗି ଯେଉଁ ପ୍ରସ୍ତୁତି କରିଥିଲେ, ଏସବୁ ତାହାଠାରୁ ଅନ୍ୟ ଏକ ପର୍ଯ୍ୟାୟ । ଆଉ ଖାସ୍ ସେଇଥିପାଇଁ 'ସେମାନେ' ଚାହୁଁଥିଲେ ଯେ ଏହି ତୀବ୍ର ଯନ୍ତ୍ରଣାକୁ କୃଷ୍ଣମୂର୍ତ୍ତି ଯେପରି ବିନା ସହାୟତାରେ—ଏକାକୀ ସହ୍ୟ କରନ୍ତୁ ; ଏକାକୀ ଏ ଗବେଷଣାର ସାମନା କରନ୍ତୁ । ଆଉ ପ୍ରକୃତରେ ଠିକ୍ ତାହା ହିଁ ଘଟିଲା । ପରବର୍ତ୍ତୀ ଛଅସାତ ଦିନ ଧରି କୃଷ୍ଣମୂର୍ତ୍ତି ସେମିତି ଅକଥନୀୟ ଯନ୍ତ୍ରଣା ମଧ୍ୟ ଦେଇ ଗତି କଲେ । ଶେଷରେ ୧୯୨୪ ଫେବୃଆରି ୨୭ ତାରିଖ ଦିନ 'ପ୍ରକ୍ରିୟା' ଚରମ ସୀମାରେ ପହଞ୍ଚିଲା । ତା'ର ଅନୁଭୂତି ବର୍ଣ୍ଣନା କରି କୃଷ୍ଣମୂର୍ତ୍ତି ନିଜେ ଲେଖିଛନ୍ତି—

''ଗତ ଦଶ ଦିନ ଧରି ଏକ ଭୟାନକ ସ୍ନାୟବିକ ଚାପ ଅନୁଭୂତ ହେବାରେ ଲାଗିଛି । ମୋର ମେରୁଦଣ୍ଡ ଓ ବେକରେ ଅସହ୍ୟ ଯନ୍ତ୍ରଣା ବୋଧ ହେଉଛି । ଏଇ ଗତ ୨୭ ତାରିଖ ସନ୍ଧ୍ୟାରେ ଏକ ଅଦ୍ଭୁତପୂର୍ବ

ଘଟଣା ଘଟିଲ । ସେହି ଶକ୍ତି ବା ସେହି ଜନଷଟି—ତା'କୁ ଯାହା ନାମ ଦେଇ ଡାକ ନା କାହିଁକି—ମୋର ମେରୁଦଣ୍ଡ ଦେଇ ଉପରକୁ ଉଠି ବେକ ମୁଣ୍ଡା ଯାଏ ଆସିଲ । ତାପରେ ସେଇଠାରୁ ତାହା ଦୁଇ ଭାଗରେ ଭାଗି ଗୋଟିଏ ମୁଣ୍ଡର ଡାହାଣ ଓ ଅନ୍ୟଟି ବାମପଟକୁ ଯାଇ ଦୁଇ ଆଖିର ମଝିରେ, ଠିକ୍ ନାକ୍ ଉପରେ ପୁଣି ମିଶିଗଲ । ଏକ ବହ୍ନି ସଦୃଶ ଦଶିଲ ଓ ସେହିଠାରେ ମୁଁ ମହାମୁନୀ ମୈତ୍ରେୟ ଓ ମହାଗୁରୁଙ୍କୁ ଦେଖିବାକୁ ପାଇଲ । ଯଦିଓ ରାତିସାରା ପ୍ରଚଣ୍ଡ ଯନ୍ତ୍ରଣା ଲାଗି ରହିଥିଲ ତଥାପି ସେଇ ରାତିଟି ଅତ୍ୟନ୍ତ ଅପୂର୍ବ ଥିଲ ।"

ନିତ୍ୟଙ୍କର ବ୍ୟକ୍ତିଗତ ଅନୁମାନ ଥିଲ ଯେ ଏଭଳି ପ୍ରକ୍ରିୟା ଦ୍ୱାରା କୃଷ୍ଣମୂର୍ତ୍ତିଙ୍କଠାରେ 'ତୃତୀୟ ଚକ୍ଷୁ' ଉନ୍ମୀଳନ କରିବାର ପ୍ରଚେଷ୍ଟା କରାଯାଉଛି ଏବଂ ସେଥିଲାଗି ତାଙ୍କୁ ଯେଉଁସବୁ ତୀବ୍ର ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ୁଛି ତାହା ଅବଶ୍ୟମ୍ଭାବୀ । ଏହାର କିଛି ଦିନ ପରେ, ଏପ୍ରିଲ ମାସ (୧୯୨୪) ୧୧ ତାରିଖ ଦିନ କୃଷ୍ଣମୂର୍ତ୍ତି ମହାଗୁରୁଙ୍କଠାରୁ 'ପ୍ରକ୍ରିୟା' ସମ୍ବନ୍ଧରେ ଆଉ ଏକ ମହତ୍ତ୍ୱପୂର୍ଣ୍ଣ ସନ୍ଦେଶ ପାଇଲେ । ସେଥିରେ ମହାଗୁରୁ ଖୁସି ହୋଇ କହିଥିଲେ—"ତମମାନଙ୍କ ସାହସ ଓ ସହନଶୀଳତାରେ ମୁଁ ଅତ୍ୟନ୍ତ ପ୍ରସନ୍ନ । ଆମର ଏ ସଂଗ୍ରାମ ଏକ ଦୀର୍ଘ ସଂଗ୍ରାମ ହେଲେ ସୁଦ୍ଧା ଏ ପର୍ଯ୍ୟନ୍ତ 'ଆମେ' ଏଥିରେ ସଫଳ ହୋଇ ଆସିଛୁ । × × × ବିମବକାଶର ଇତିହାସ ଅନେକ ପର୍ଯ୍ୟାୟ ଦେଇ ଗତି କରିଛି । ଆଉ, ପ୍ରତ୍ୟେକ ପର୍ଯ୍ୟାୟର ପରୀକ୍ଷାମାନ ମଧ୍ୟ ସ୍ୱତନ୍ତ୍ର ଧରଣର । ଆମର ଦୀର୍ଘ ସଂଗ୍ରାମ ପଥରେ ଏହା ଆରମ୍ଭ ମାତ୍ର । କେବଳ ସାହସ, ଧୈର୍ଯ୍ୟ ଏବଂ ପ୍ରସନ୍ନତାର ସହ ଏହାର ସମ୍ମୁଖୀନ ହେଲେ ଯାଇ ତମେ 'ଆମର' ସହାୟତା କରିପାରିବ ।"

"ଯଦିଓ ଏହି ପ୍ରସ୍ତୁତିକରଣ ଏ ପର୍ଯ୍ୟନ୍ତ ସମାପ୍ତ ହୋଇନାହିଁ ତଥାପି ଏ ଯାଏ ତମେ ଅତି ଉତ୍ତମ ଭାବରେ ଏହାର ସମ୍ମୁଖୀନ ହୋଇ ଆସିଛ । ତମଠାରେ ଯେଉଁ ତୀବ୍ର ଯନ୍ତ୍ରଣା ହେଉଛି ସେଥିପାଇଁ ଆମେ ଅତ୍ୟନ୍ତ ଦୁଃଖିତ; କିନ୍ତୁ ବର୍ତ୍ତମାନ ପାଇଁ ଏହା ଅସୀମ, ଅଶେଷ ବୋଧ ହେଉଥିଲେ ହେଁ ପରିଶେଷରେ ତମ ପ୍ରତ୍ୟେକଙ୍କ ପାଇଁ ଏକ ଦିବ୍ୟ

ମନ୍ଦିରମା ଅପେକ୍ଷାରତ । ଏହା ଠିକ୍ ଏକ ଅନ୍ଧକାରମୟ କୋଠରୀରେ ରହିବା ଭଳି କଥାଟିଏ । କିନ୍ତୁ ମନେରଖ—କୋଠରୀର ବାହାରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ତୁମ ପାଇଁ ଅପେକ୍ଷା କରି ରହିଛି । 'ମୋର' ଆଶୀର୍ବାଦ ସଦାସର୍ବଦା ତୁମମାନଙ୍କ ଉପରେ ରହିଛି···ତୁମ ଶରୀରର ତିନଗୋଟି ସ୍ଥାନକୁ 'ଆମେ' ପୁରାପୁରି ଜଗି ନେଇଥିଲେ ସୁଦ୍ଧା ତୁମକୁ ଯନ୍ତ୍ରଣା ନିଶ୍ଚିତ ଭାବରେ ହେବ । କାରଣ ଏହା ଠିକ୍ ଅସ୍ତ୍ରୋପଚାରର ଭଳି ଗୋଟିଏ ଜିନିଷ, ଅସ୍ତ୍ରୋପଚାର ଶେଷ ହୋଇଗଲେ ମଧ୍ୟ ତାର ପରିଣାମ ଦେଖା ଦେଉଥିବ ।''

## 'ପ୍ରେମ ହିଁ ମୂଳମନ୍ତ୍ର'

ଓମେନଠାରେ ସର୍ବପ୍ରଥମ 'ଷ୍ଟାର' କ୍ୟାମ୍ପ୍ ୧୯୨୪ ମସିହାରେ ଅନୁଷ୍ଠିତ ହେଲା । ଦୁଇଦିନ ଧରି ଚାଲିଥିବା ଉକ୍ତ କ୍ୟାମ୍ପରେ ପ୍ରାୟ ପାଞ୍ଚଶହ ପାଖାପାଖି 'ଷ୍ଟାର' ସଭ୍ୟ ଯୋଗ ଦେଇଥିଲେ । ସେଠାରେ କୃଷ୍ଣମୂର୍ତ୍ତିଙ୍କୁ ତାଙ୍କ କାର୍ଯ୍ୟରେ ସହାୟତା କରିବା ପାଇଁ ଆସିଥିଲେ ଜର୍ଜ ଅରୁଣ୍ଡେଲ, ତାଙ୍କ ପତ୍ନୀ ରୁକ୍ମିଣୀ ଦେବୀ ଅରୁଣ୍ଡେଲ ଓ ରାଜଗୋପାଳ । ସେ ବର୍ଷ କ୍ୟାମ୍ପରେ କୃଷ୍ଣମୂର୍ତ୍ତିଙ୍କ ଭାଷଣର ମୂଳତତ୍ତ୍ୱ 'ଅନୁଭବ କରିବାର ଗୁରୁତ୍ୱ' ଉପରେ ପର୍ଯ୍ୟବସିତ ଥିଲା । ସେ କହିଥିଲେ ଯେ ଆଧ୍ୟାତ୍ମିକ ଶକ୍ତି ସମ୍ପନ୍ନ କୌଣସି ଗୁରୁଙ୍କ ପାଖେଯାଇ କରି ମନୁଷ୍ୟ କଦାପି ଶିଷ୍ୟତ୍ୱର ପଥରେ ଆଗେଇ ପାରିବ ନାହିଁ । ଏଥିଲାଗି ପ୍ରକୃତରେ ଲୋଡ଼ା ନିବିଡ଼ ଆବେଗ, ଏକ ଜ୍ୱଳନ୍ତ ଶକ୍ତି । ଅର୍ଥାତ୍, ଏଭଳି ଏକ ଶକ୍ତି ଯାହାକୁ କି କେବଳ ପ୍ରକୃତ ପ୍ରେମ ବା ଭଲ ପାଇବା ସହିତ ତୁଳନା କରାଯାଇପାରେ । ଏଭଳି ପ୍ରେମର ଶକ୍ତି ବା ସେଥିରେ ନିଜକୁ ସମ୍ପୂର୍ଣ୍ଣ ରୂପେ ହଜାଇ ଦେବାର ଶକ୍ତି ମଣିଷ ପାଖରେ, ବିଶେଷ କରି ବୟସ୍କ ଲୋକମାନଙ୍କ ପାଖରେ ଏକାନ୍ତ ଅଭାବ

ଥାଏ । ଆମ ଭିତରୁ ପ୍ରାପ୍ତ ସମସ୍ତେ ଦୁଃଖ ଯନ୍ତ୍ରଣା ସହ୍ୟ କରି କରି କ୍ରମବିକାଶର ସ୍ତର ଦେଇ ଉପରକୁ ଉଠିଥାନ୍ତି । ମାତ୍ର କେହିହେଲେ ଆନନ୍ଦର ମାର୍ଗ ଦେଇ ଉପରକୁ ଉଠନ୍ତି ନାହିଁ । କିନ୍ତୁ କ୍ରିଷ୍ଣମୂର୍ତ୍ତି ବାରମ୍ବାର ଜୋର ଦେଇ କହୁଥିଲେ ଯେ ଆନନ୍ଦର ପଥ ମଧ୍ୟ ମନୁଷ୍ୟକୁ ଈଶ୍ୱରଙ୍କ ନିକଟରେ ପହଞ୍ଚାଇ ପାରିବ । ସୂର୍ଯ୍ୟକିରଣ ପାଇ ଫୁଲର ପାଖୁଡ଼ାମାନ ମେଲି ଉଠିଲା ପରି ଆନନ୍ଦ ମଧ୍ୟ ଆମକୁ ବିକାଶ ପଥରେ ଆଗେଇ ନେଇ ପାରିବ । 'ତେଣୁ ସ୍ୱାଭାବିକ ଭାବରେ ବଞ୍ଚି ରହ, ସ୍ୱାଭାବିକ ଜୀବନ ଯାପନ କର—ଆଉ ସୁଖୀ ରହ'—ଏହା ହିଁ ଜୀବନର ମହାମନ୍ତ୍ର ।

କ୍ରିଷ୍ଣମୂର୍ତ୍ତିଙ୍କର ଏହି ଅଭିନବ ଦର୍ଶନତତ୍ତ୍ୱ ଯେ କେବଳ ତାଙ୍କ ଭାଷଣରେ ପ୍ରତିଫଳିତ ହେଉଥିଲା ତାହା ନୁହେଁ, ନିଜର ସହଯୋଗୀ ଓ ବନ୍ଧୁମାନଙ୍କ ସହିତ କଥାବାର୍ତ୍ତା କରିବା ସମୟରେ ମଧ୍ୟ ସେ ସେମାନଙ୍କୁ ଠିକ୍ ଏହି କଥା କହୁଥିଲେ । ସେ ଆହୁରି ମଧ୍ୟ କହୁଥିଲେ ଯେ ନିଃସ୍ୱାର୍ଥପରତା, ଭଲ ପାଇବା ଦରଦ ଓ ସହାନୁଭୂତି ଦ୍ୱାରା ହିଁ ଶିଷ୍ୟତ୍ୱ ଲାଭ କରିହୁଏ । ଏଥିପାଇଁ ମାମୁଲି ପ୍ରକାର ଜୀବନର ଗତାନୁଗତିକତାକୁ ଛାଡ଼ି 'ଅଜ୍ଞାତ' ଭିତରକୁ ପଶି ଦେଖିବାକୁ ହେବ, ତାକୁ ବୁଝିବାକୁ ହେବ, ନିଜଠାରେ ଆମୂଳ ପରିବର୍ତ୍ତନ ଆଣିବାକୁ ହେବ । ସେଠାରେ ଉପସ୍ଥିତ ଥିବା ଝିଅମାନଙ୍କ ଉଦ୍ଦେଶ୍ୟରେ ସେ କହିଥିଲେ ଯେ ମଣିଷ ମାତ୍ରକେ ଚାହେଁ ଯେ ଜୀବନରେ ସାଥୀଟିଏ ପାଇବ, ବିବାହ କରି ଘର ସଂସାର କରିବ । କିନ୍ତୁ ଏସବୁ କଲେ ତ ଆଉ ମହାଗୁରୁଙ୍କ ସେବା କରିବା ସମ୍ଭବ ନୁହଁ—ତେଣୁ ଏ ଦୁଇଟି ଭିତରୁ ଗୋଟିକୁ ବାଛି ନେବାକୁ ପଡ଼ିବ । ଏକସଙ୍ଗରେ ଦୁଇଟି ଯାକ ଜୀବନ ବିତାଇବାର ଅର୍ଥ ହେଉଛି ମାମୁଲି ଜୀବନ ବିତାଇବା । ଅବଶ୍ୟ ସେଥିରୁ ଏକଥା ବୁଝିବା ଭୁଲ ଯେ ମନର ସମସ୍ତ ଭାବାବେଗକୁ ଦଳି ଧ୍ୱଂସ କରିଦେବ, କି ଏକବାରେ ହୃଦୟକୁ ପଥର କରିଦେବ । ବରଂ ଏହା ଠିକ୍ ତାର ବିପରୀତ । ଅର୍ଥାତ୍ ପ୍ରସ୍ଫୁଟିତ ହେବାର ଏକମାତ୍ର ପଥ ହେଉଛି ଭଲ ପାଇବା ଓ ଅଫୁରନ୍ତ ଆନନ୍ଦ ଭିତରେ ବଢ଼ି ଉଠିବା...।

କିନ୍ତୁ କୃଷ୍ଣମୂର୍ତ୍ତିଙ୍କ ମନରେ ସବୁଠାରୁ ବଡ଼ ଦୁଃଖ ଥିଲା ଯେ ବନ୍ଧୁମାନେ ପ୍ରତିଦିନ ତାଙ୍କ ପାଖରେ ବସି ଘଣ୍ଟା ଘଣ୍ଟା ଧରି ତାଙ୍କର କଥା ଶୁଣୁଥିଲେ ସୁଦ୍ଧା କାହାରି ଜଣକଠାରେ ବି ସାମାନ୍ୟତମ ପରିବର୍ତ୍ତନ ଘଟୁ ନ ଥିଲା । ସେମାନେ ଯେମିତିକୁ ସେମିତି ଅନ୍ୟର ଦୁଃଖରେ ଉଦାସୀନ ରହି ଯାଉଥିଲେ । ସେଇମାନଙ୍କୁ ଉଦ୍ଦେଶ୍ୟ କରି ଥରେ ସେ କହିଥିଲେ "ଗୋଟିଏ ଘନ ଅନ୍ଧକାରମୟ କୋଠରି ଭିତରେ ବସି ତମେ ସବୁ ଅପେକ୍ଷା କରିଛ ଯେ ଆଉ କେହି ଜଣେ ଆସି ତମ ପାଇଁ ଆଲୁଅ ଜଳାଇଦେବ । ଅଥଚ ନିଜେ ଉଠିପଡ଼ି ବତି ଟିପିବା ପାଇଁ ତମ କାହାରିଠାରେ ଉଦ୍ୟମ ନାହିଁ ।"

ସ୍ୱାଭାବିକ ଜୀବନ ଯାପନ ସତ୍ତ୍ୱେ କୃଷ୍ଣମୂର୍ତ୍ତିଙ୍କର ପ୍ରକ୍ରିୟା ଲୁହାକୁ ଲୁହା ହେବାରେ ଲାଗିଥିଲା । କେବେ କେବେ ଦୁଇ ତିନି ମାସ ଅନ୍ତରରେ, ପୁଣି ଆଉ କେବେ କେବେ ଅଳ୍ପଦିନ ବ୍ୟବଧାନରେ ତାହା ଦେଖା ଦେଉଥିଲା । କିନ୍ତୁ ଯେତେବେଳେ ହେଉନା କାହିଁକି ତା' ସାଥେ ସାଥେ ବରାବର ସେହି କଷ୍ଟ, ସେହି ଜ୍ୱାଳା, ଆଉ ତା' ପରେ ପରେ ଏକ ଦିବ୍ୟଶକ୍ତିର ଅନୁଭବ । ୧୯୨୪ ମସିହା ଅଗଷ୍ଟ ମାସରେ କୃଷ୍ଣମୂର୍ତ୍ତି ଇଟାଲିର ପେରଜିନ୍ ନାମକ ଏକ ସ୍ଥାନରେ ଥିବାବେଳେ ପ୍ରକ୍ରିୟାର ପୁନରାବୃତ୍ତି ଘଟିଲା । ସେତେବେଳେ ତାଙ୍କ ସାଙ୍ଗରେ ନିତ୍ୟ, ରାଜଗୋପାଲ ଓ ଲେଡ଼ି ଏମିଲିଙ୍କ ସହିତ ରାମାରାଓ ଓ ଶିବକାମୁ ନାମକ ଦୁଇଜଣ ଭାରତୀୟ ବନ୍ଧୁ ମଧ ରହୁଥିଲେ । ପ୍ରକ୍ରିୟାର ପ୍ରତ୍ୟେକଟି ସ୍ତର ଥିଲା ଅତ୍ୟନ୍ତ ଭୟାନକ — ଠିକ୍ ଓହାଇର ପ୍ରକ୍ରିୟା ଭଳି ତୀବ୍ର ଯନ୍ତ୍ରଣାଦାୟକ । ପ୍ରତିଦିନ ସନ୍ଧ୍ୟା ଛଅଟା ବେଳଠାରୁ ତାହା ଆରମ୍ଭ ହୋଇଯାଉଥିଲା । ପ୍ରାୟ ମାସେ ପାଖାପାଖି ଏହା ପୂର୍ବ ଦମ୍‌ରେ ଚାଲିଲା । ଶେଷକୁ ସେପ୍‌ଟେମ୍ବର ୨୪ ତାରିଖ ସନ୍ଧ୍ୟାରେ ସେ ସ୍ଥାନଟି ଏକ ଦିବ୍ୟ ମହିମାରେ ଉଜ୍ଜ୍ୱଳ ଉଠିଲା । ସେ ଶକ୍ତିର ସ୍ପନ୍ଦନକୁ ସେଠାରେ ଉପସ୍ଥିତ ଥିବା ପ୍ରତ୍ୟେକ ବ୍ୟକ୍ତି ଅତି ସ୍ପଷ୍ଟ ଭାବେ ଅନୁଭବ କରିଥିଲେ । ପରଦିନ ସକାଳୁ ଉଠି କୃଷ୍ଣମୂର୍ତ୍ତି ମହାତ୍ମାମାନଙ୍କର ଯେଉଁ ସନ୍ଦେଶ

ଅନ୍ୟମାନଙ୍କୁ ଶୁଣାଇଥିଲେ, ତାହା ଥିଲା — 'ତମେମାନେ ଯେଉଁ ମହାଶକ୍ତିକୁ ଏତେ ଖୋଜି ହେଉଛ ତାହା ତମର ଅତି ନିକଟରେ ରହିଛି...ଯେଉଁ ଆନନ୍ଦ ଟିକକ ଲଭ କରିବାକୁ ତମେ ସବୁ ଧାଇଁଛ ତାହା ତ' ତମର ଅତି ନିକଟରେ ଅଛି, ପ୍ରତି ଶିଳାଖଣ୍ଡରେ ରହିଛି । ମୋତେ ଦେଖିବାକୁ ଚାହିଁଲେ ମୁଁ ତମର ଅତି ନିକଟରେ ରହିଛି । ଖାଲି ତମକୁ ସାହାଯ୍ୟ କରିବାକୁ ମୋତେ ଟିକିଏ ସୁଯୋଗ ଦିଅ, ତେବେ ଯାଇ ମୁଁ ତମର ସହାୟତା କରି ପାରିବି ।' ସେଦିନର ଏହି ଘଟଣା ପରେ ପ୍ରକାଶ୍ୟ ପୁଣି କିଛିଦିନ ପାଇଁ ବନ୍ଦ ହୋଇଗଲା ଏବଂ କୃଷ୍ଣମୂର୍ତ୍ତି ବନ୍ଧୁମାନଙ୍କ ସହ ପେରଜିନ ଗ୍ରୁଡ଼ ଫେରି ଆସିଲେ ।

## ନିତ୍ୟ

୧୯୨୪, ନଭେମ୍ବର ମାସରେ କୃଷ୍ଣମୂର୍ତ୍ତି ଓ ନିତ୍ୟ ଏକ ଚାରିମାସିଆ ଭାରତ ଗସ୍ତରେ ଆସି ବମ୍ବେରେ ପହଞ୍ଚିଲେ । ସେତେବେଳକୁ ଦୀର୍ଘ ଷୋହଳ ଦିନର ଯାତ୍ରା-କ୍ଳାନ୍ତ ଓ ଅନବରତ ସମୁଦ୍ରର ଥଣ୍ଡା, ଲୁଣି ହାଉଆ ବାଜି ବାଜି ନିତ୍ୟଙ୍କ ଅବସ୍ଥା କ୍ରମଶଃ ଖରାପ ଆଡ଼କୁ ଗତି କରୁଥିଲା । ସେମାନଙ୍କର ଜାହାଜ ବମ୍ବେ ଉପକୂଳରେ ଲାଗିବାକୁ ଯାଉଛି ଏତିକବେଳେ ଦିନେ କାଶୁ କାଶୁ ହଠାତ୍ କଫରେ ତାଙ୍କର ପୁଣି ମହାଏ ରକ୍ତ ପଡ଼ିବାର ଦେଖାଗଲା । ଏ ଭିତରେ ସମସ୍ତେ ମନେକରି ନେଇଥିଲେ ଯେ ଡାକ୍ତର ଆବ୍ରାମ୍ସ୍‌ଙ୍କର ଚିକିତ୍ସାରେ ନିତ୍ୟ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ଯାଇଛନ୍ତି । ତେଣୁ ଅଚାନକ ଏଭଳି ଗୋଟିଏ ଅଘଟଣ ଯେ ଘଟିପାରେ ସେ କଥା କେହି କଳ୍ପନା କରି ନଥିଲେ । କିନ୍ତୁ ଏବେ ପ୍ରକୃତ ଅବସ୍ଥାଟା ଜାଣିବା ପରେ ନିତ୍ୟ ମନେ ମନେ ଶଙ୍କିଗଲେ । ତାଙ୍କର ଭୟ ହେଲା ଯେ ଆଗକୁ ଆଡ଼ୟାରର ସନ୍ତସନ୍ତିଆ, ଲୁଣା ଜଳବାୟୁ ତାଙ୍କ ଦେହକୁ ନିଶ୍ଚୟ ଆହୁରି ବିଗାଡ଼ ଦେବ ।

ନିତ୍ୟଙ୍କର ଆଶଙ୍କା ପ୍ରକୃତରେ ଭୁଲ ନଥିଲା । ସେମାନେ ବମ୍ବେରୁ ଆସି ଆଡ୍ଡାୟାରରେ ପହଞ୍ଚିବାର ଅଳ୍ପ କେତେଦିନ ଭିତରେ ହିଁ ତାଙ୍କଠାରେ ପୁଣି ପୂର୍ବପରି ଜ୍ୱର ଉଠି ହୋଇଗଲା ଓ ଦୁର୍ବଳତା ବଢ଼ିବାରେ ଲାଗିଲା । ଏମିତିକି ସେ ଖଟରୁ ଉଠି ଖାଇବା ଟେବୁଲ ପାଖକୁ ଆସିବାକୁ ମଧ୍ୟ କ୍ଲାନ୍ତ ବୋଧ କଲେ । ନିତ୍ୟଙ୍କର ଏ ଅବସ୍ଥା ଦେଖି କୃଷ୍ଣମୂର୍ତ୍ତି ଭୀଷଣ ଉଦ୍‌ବିଗ୍ନ ହୋଇପଡ଼ିଲେ । ଡାକ୍ତର ଆବ୍ରାମ୍‌ସ୍‌ଙ୍କ ଚିକିତ୍ସା ଓ ଆଶ୍ୱାସନା ତାଙ୍କ ମନରେ ଯେଉଁ ଦମ୍ଭ ଟିକିକ ରଖିଥିଲା ତାହା ଧୀରେ ଧୀରେ ତୁଟିଯିବାକୁ ଆରମ୍ଭ କଲା । ଡାକ୍ତରୀ ଚିକିତ୍ସା ଉପରୁ ତାଙ୍କର ବିଶ୍ୱାସ ତୁଟି ଆସିଲା । ବଡ଼ ବିକଳ ହୋଇ ସେ ଅନ୍ୟ ସବୁ ଆଶା ଛାଡ଼ି ଏକ ମନରେ ମହାଗୁରୁଙ୍କଠାରେ ନିତ୍ୟ ଲାଗି ପ୍ରାର୍ଥନା କରିବାକୁ ଲାଗିଲେ । କେବଳ ମହାଗୁରୁଙ୍କର ଆଶୀର୍ବାଦ ଓ କରୁଣା ଯେ ନିତ୍ୟଙ୍କୁ ମୃତ୍ୟୁମୁଖରୁ ଫେରାଇ ଆଣି ପାରିବ, ଏ କଥା କୃଷ୍ଣମୂର୍ତ୍ତିଙ୍କ ମନରେ କ୍ରମଶଃ ଏକ ନୂତନ ଆଶାର ସଞ୍ଚାର କଲା । ମହାଗୁରୁଙ୍କ କରୁଣା ଉପରେ ତାଙ୍କର ଏତେ ଦୃଢ଼ ବିଶ୍ୱାସ ଥିଲା ଯେ ତାଙ୍କ ନିକଟରେ କୃଷ୍ଣମୂର୍ତ୍ତିଙ୍କ ପ୍ରାର୍ଥନା ଯେ କେବେ ବ୍ୟର୍ଥ ହେବ ନାହିଁ ଏ କଥା ସେ ଧରି ନେଇଥିଲେ । ତେଣୁ ଏବେ ନିଜର ସର୍ବସ୍ୱ ବଦଳରେ ପ୍ରାଣାଧିକ ଭାଇର ଜୀବନ ଭିକ୍ଷା ପାଇଁ ଗୁହାରି ଜଣାଇ ସେ ଦିନ ରାତି ପ୍ରାର୍ଥନା କରିବାକୁ ଲାଗିଲେ ।

ଏମିତି ଦିନେ ଆକୁଳ ଭାବରେ ପ୍ରାର୍ଥନା କରି ରାତିରେ ଶୋଇଥିବା ଅବସ୍ଥାରେ କୃଷ୍ଣମୂର୍ତ୍ତି ମହାଗୁରୁ, ମହାମୁନି ଓ ମହାଚୈତନ ପ୍ରଭୃତିଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କଲେ । ସେହି ବିଷୟରେ ବର୍ଣ୍ଣନା କରି ସେ ଆନି ବେସାନ୍ତଙ୍କୁ ଚିଠିରେ ଲେଖିଥିଲେ—

"ମୋର ସେ କଥା ସ୍ପଷ୍ଟ ମନେ ଅଛି । ମହାଗୁରୁଙ୍କ ନିକଟକୁ ଯାଇ ମୁଁ ଅତି ଆତୁର ଭାବରେ ନିତ୍ୟର ପ୍ରାଣଭିକ୍ଷା କରିବାକୁ ଲାଗିଲି, ତାକୁ ଆରୋଗ୍ୟ କରିଦେବା ଲାଗି ମିନତି କଲି । ମହାଗୁରୁ କିନ୍ତୁ ହେଥିସକାଶେ ମତେ ମହାମୁନି ମୈତ୍ରେୟଙ୍କ ନିକଟକୁ ଯିବାକୁ ଉପଦେଶ ଦେଲେ । ତାଙ୍କ କଥାରେ ମହାମୁନିଙ୍କ ନିକଟକୁ ଯାଇ ଯେତେବେଳେ

ମୁଁ ମୋର ଗୁହାରି ଜଣାଇଲି ସେତେବେଳେ ପୁଣି ଜଣା ପଡ଼ିଲା ଯେ ସେ ମଧ୍ୟ ଏଥିରେ କିଛି କରିବାକୁ ସମର୍ଥ ନୁହନ୍ତି । ତେଣୁ ସେ କହିବା ଅନୁସାରେ ମୁଁ ସେଠାରୁ ଯାଇ ମହାଗୁରୁହାନଙ୍କ ନିକଟରେ ପହଞ୍ଚିଲି । ସେଠି ଯାହାସବୁ ଘଟିଲା ସେ ସବୁ ମୋର ଅତି ସ୍ପଷ୍ଟଭାବେ ମନେଅଛି । 'ସେ' ନିଜ ଆସନରେ ବସିଥିଲେ । ମୁଖମଣ୍ଡଳରୁ ତାଙ୍କର ମର୍ଯ୍ୟାଦାର ଦିବ୍ୟଜ୍ୟୋତି ଉଦ୍‌ଭାସିତ ହେଉଥିଲା, ଚକ୍ଷୁରୁ ଦୟା ଓ ଗାମ୍ଭୀର୍ଯ୍ୟର ଦୀପ୍ତି ବିଚ୍ଛୁରିତ ହେଉଥିଲା । ବାସ୍ତବିକ ସେ ଦିବ୍ୟ ଦୃଶ୍ୟ ମୋ' ଉପରେ କି ପ୍ରଭାବ ଯେ ପକାଇଲା ତାହା ପ୍ରକାଶ କରିବା ସମ୍ଭବ ନୁହେଁ — ମୋର ଏ ତୁଚ୍ଛ, ସୀମିତ ଭାଷାର ବର୍ଣ୍ଣନା ତାହାକୁ ଯଥାଯଥ ଭାବେ ପ୍ରକାଶ କରିବା ଲାଗି ଏକାନ୍ତ ଅସମର୍ଥ । ସେଠାରେ ପହଞ୍ଚି ମୋର କାହିଁକି ମନେହେଲା ଯେ ସେଇଠି ସେତିକିବେଳେ ନିତ୍ୟର ଜୀବନ ମୃତ୍ୟୁର ନିଷ୍ପତ୍ତି ନିଆଯାଉଛି । ତେଣୁ ତାଙ୍କର ନିକଟରେ ନିତ୍ୟର ପ୍ରାଣ ଭିକ୍ଷାକରି ମୁଁ କହିବାକୁ ଲାଗିଲି ଯେ ନିତ୍ୟକୁ ବଞ୍ଚାଇ ରଖିବା ପାଇଁ ମୁଁ ମୋ' ଜୀବନର ଯେତେ ଯାହା ସୁଖ ଆନନ୍ଦ ସେ ସମସ୍ତ ତ୍ୟାଗ କରିବାକୁ ପ୍ରସ୍ତୁତ ଅଛି । ମୋ'ଠାରୁ ସବୁକଥା ଶୁଣି 'ସେ' ଉତ୍ତର ଦେଲେ — 'ହଁ, ସେ ନିଶ୍ଚୟ ସୁସ୍ଥ ହୋଇଯିବ ।' ବାସ୍ ସେତିକିରେ ହିଁ ମୋର ସବୁ ଚିନ୍ତା ଦିକ କୁଆଡ଼େ ମିଳାଇଗଲା । ମୁଁ ନିଶ୍ଚିନ୍ତ ହୋଇଗଲି ।"

କୃଷ୍ଣମୂର୍ତ୍ତି ଏ ସ୍ୱପ୍ନ ଦେଖିବା ସମୟରେ ନିତ୍ୟ ଉଟକାମଣ୍ଡର ଏକ ସ୍ୱାସ୍ଥ୍ୟ ନିବାସରେ ବିଶ୍ରାମ ଲାଗି ରହିଥିଲେ । ଆଉ ଯୋଗାଯୋଗ ଏମିତି ଘଟିଲା ଯେ ଏହି ସ୍ୱପ୍ନ ଘଟଣା ପରେ ପରେ କୃଷ୍ଣମୂର୍ତ୍ତି ଖବର ପାଇଲେ ଯେ ଉଟକାମଣ୍ଡଠାରେ ନିତ୍ୟଙ୍କ ଅବସ୍ଥାରେ ଦ୍ରୁତ ଉନ୍ନତି ଘଟିବାରେ ଲାଗିଛି । ଏଇ ଖବରଟି ସତେ ଅବା ତାଙ୍କ ମନରୁ ଗୋଟାଏ ବଡ଼ ବୋଝ ଉତାରି ଦେଲା । ତାଙ୍କର ସବୁତକ ଦୁଶ୍ଚିନ୍ତା କୁଆଡ଼େ ଉଭେଇଗଲା । ସେ ନିଶ୍ଚିନ୍ତ ହୋଇଗଲେ ଓ ପୁଣି ନିଜ କାମରେ ମନ ଦେଲେ ।

ସେଥରକ ଆଡାୟାରରେ ପହଞ୍ଚିବାର ଅଳ୍ପଦିନ ପରେ କୃଷ୍ଣମୂର୍ତ୍ତିଙ୍କର ପ୍ରକ୍ରିୟା ଆରମ୍ଭ ହୋଇଯାଇଥିଲା । ଦିନ କଣ, ରାତି

କଣ — ଅବଶ୍ରାନ୍ତ ଭାବରେ ସେଇ ଭୟାନକ ଯନ୍ତ୍ରଣା ମେରୁଦଣ୍ଡ ଓ ବେକମୁଣ୍ଡା ଦେଇ ଅନୁଭୂତ ହେବାରେ ଲାଗିଥିଲା । ଠିକଏ ସମୟ ଗୋଟାଏ ଜାଗାରେ ବସି କଛି ଭାବିଲେ ବା ଲେଖାଲେଖି କଲେ ସେ ଯନ୍ତ୍ରଣା ଧକ୍ ଧକ୍ କରି ଖୁବ୍ ବଢ଼ି ଯାଉଥିଲା । ସାରା ରାତି ଧରି ଏମିତି ଚାଲୁଥିଲା ଆଉ ସକାଳେ ନିଦ ଭାଙ୍ଗିଲାବେଳକୁ ତା' ପ୍ରଭାବରେ କୃଷ୍ଣମୂର୍ତ୍ତିଙ୍କ ଶରୀର ଏକବାରେ ଅବଶ ହୋଇ ପଡ଼ୁଥିଲା । ଏହିପରି ଭାବରେ ୧୯୨୫ ମାର୍ଚ୍ଚ ମାସ ଅଧାଯାକେ ଆଡ଼ାୟାରରେ କଟିଲା । ସେତେବେଳକୁ ନିତ୍ୟ ମଧ୍ୟ ବେଶ୍ ସୁସ୍ଥ ହୋଇ ଉଟକାମଣ୍ଡରୁ ଫେରି ଆସିଥିଲେ । ତେଣୁ ଆସନ୍ତା ଏପ୍ରିଲ ୧୦ ତାରିଖରୁ ଅଷ୍ଟ୍ରେଲିଆର ସିଡ଼ନିଠାରେ ଆରମ୍ଭ ହେବାକୁ ଥିବା ଥିଓସଫିକାଲ କନଭେନସନରେ ଯୋଗଦେବା ପାଇଁ ସେମାନଙ୍କର ଛୋଟ ଦଳଟି ଆଡ଼ାୟାରରୁ ଯାତ୍ରା ଆରମ୍ଭ କରି ଏପ୍ରିଲ ୩ ତାରିଖରେ ସିଡ଼ନିରେ ପହଞ୍ଚିଲେ । ସେ ବର୍ଷର ସିଡ଼ନି କନଭେନସନ ଗୋଟାଏ ବଡ଼ ଧରଣର ସମାବେଶ ହେବାକୁ ଯାଉଥିଲା ଆଉ ସେଥିପାଇଁ ଲେଡ଼ବିଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେଠାରେ ବିପୁଳ ଆୟୋଜନ ହୋଇଥିଲା ।

କନଭେନସନ ଆରମ୍ଭ ହେବାକୁ ଠିକ୍ ଦୁଇଦିନ ବାକି ଅଛି, ନିତ୍ୟଙ୍କୁ ପରୀକ୍ଷା କରି ସେଠାକାର ଜଣେ ଡାକ୍ତର କହିଲେ ଯେ ତାଙ୍କ ଅବସ୍ଥା ଏବେ ସୁଦ୍ଧା ସଙ୍କଟାପନ୍ନ—ତାଙ୍କର ବାମପଟ ଫୁସ୍‌ଫୁସ୍‌ଟି ନଷ୍ଟ ହୋଇଯିବା ଉପରେ ଓ ରୋଗର ଜୀବାଣୁ ଡାହାଣ ଫୁସ୍‌ଫୁସ୍‌ରେ ମଧ୍ୟ ଅନେକ ବାଟ ମାଡ଼ି ଗଲାଣି । ସେଥିପାଇଁ ତାଙ୍କୁ ଅତି ଶୀଘ୍ର ସିଡ଼ନି ନିକଟବର୍ତ୍ତୀ ଲିଉରା ନାମକ ସ୍ଥାନରେ ଏକ ସ୍ୱାସ୍ଥ୍ୟକର ଶୈଳନିବାସକୁ ସ୍ଥାନାନ୍ତରିତ କରିବାକୁ ଡାକ୍ତର ପରାମର୍ଶ ଦେଲେ । ଏଥିରେ ବ୍ୟସ୍ତ ହୋଇ କୃଷ୍ଣମୂର୍ତ୍ତି କୌଣସିମତେ କନଭେନସନ ସରିବା ପର୍ଯ୍ୟନ୍ତ ଅପେକ୍ଷା କରି ଯଥାଶୀଘ୍ର ନିତ୍ୟଙ୍କୁ ରୋଜାଲିଣ୍ଡ ଓ ରାମାରାଓଙ୍କ ସହିତ ଲିଉରାକୁ ପଠାଇଦେବାର ବ୍ୟବସ୍ଥା କଲେ ଓ ସେ ନିଜେ ସିଡ଼ନିରେ ରହି ଅଧିକାଂଶ ଦିନ ଲିଉରାକୁ ଯା' ଆସ କଲେ । ପ୍ରକୃତ ପକ୍ଷେ କୃଷ୍ଣମୂର୍ତ୍ତି ଡାକ୍ତରଙ୍କ ରିପୋର୍ଟର ଗୁରୁତ୍ୱ ବୁଝୁଥିଲେ ସୁଦ୍ଧା ମନ ଭିତରେ ତାଙ୍କର

ନିତ୍ୟଙ୍କୁ ନେଇ କୌଣସି ଉଦ୍‌ବେଗ୍ନତା ଆସୁ ନ ଥିଲା । ସେ ଭାବୁଥିଲେ, ରୋଗ ଯେତେ ଗାଢ଼ିଲେ ବି ଶେଷକୁ ନିତ୍ୟ ନିଶ୍ଚୟ ଭଲ ହୋଇଯିବେ ।

ପ୍ରାୟ ଦେଢ଼ ମାସ କାଳ ଧରି ଶୈଳନିବାସରେ ପୂର୍ଣ୍ଣ ବିଶ୍ରାମ ନିତ୍ୟଙ୍କୁ ପୁଣି ସୁସ୍ଥ କରିଦେଲା ଆଉ ସେ ଡାକ୍ତରଙ୍କ ଅନୁମତି ନେଇ ଜୁନ ୨୪ ତାରିଖ ଦିନ କୃଷ୍ଣମୂର୍ତ୍ତି, ରୋଜାଲିଣ୍ଡ ଓ ରମାରାଓଙ୍କ ସହିତ ଓହାଇ ଯିବାକୁ ଜାହାଜ ଚଢ଼ିଲେ । କିନ୍ତୁ ଯାହା କେହି ହେଲେ ଭାବି ନ ଥିଲେ ବାଟରେ ତାହା ହିଁ ଘଟିଲା । ଜାହାଜ ଭିତରେ ନିତ୍ୟଙ୍କ ଅବସ୍ଥା ପୁଣି ଗୁରୁତର ହୋଇଗଲା । ଦେହରେ ଜ୍ୱର ବୃଦ୍ଧି ହୋଇଗଲା ଓ ଅବସ୍ଥା ଅସମ୍ଭାଳ ମନେ ହେଲା । ଚେତନା ନ ଥିବା ଭଳି ସେ ନିଜ କେବିନ୍ ଭିତରେ ପଡ଼ି ରହିଲେ । ମଝିରେ ଥରେ ତାଙ୍କ ଅବସ୍ଥା ଏମିତି ହୋଇଗଲା ଯେ ମନେହେଲା ବୋଧହୁଏ ସବୁ ସରିଗଲା—ନାଡ଼ିର ସ୍ପନ୍ଦନ ଅତି ଧୀର ହୋଇ ଆସିଲା, ହାତଗୋଡ଼ ସବୁ ନିର୍ଜୀବ ହୋଇଗଲା ଓ ପାଦ ଦୁଇଟା ଥଣ୍ଡା ହେବାକୁ ଆରମ୍ଭ କଲା । ସେତେବେଳେ ପାଖରେ ତାଙ୍କର ରୋଜାଲିଣ୍ଡ ଜଗି ବସିଥିଲେ । ନିତ୍ୟଙ୍କର ଅବସ୍ଥା ଦେଖି ସେ, ଖୁବ୍ ଚିନ୍ତିଆ ହୋଇଗଲେ । ଅନ୍ୟ କିଛି ଉପାୟ ନ ଦେଖି ସେ, ନିତ୍ୟଙ୍କର ପାଦ ଦୁଇଟିକୁ ଜାବୁଡ଼ି ଧରି ମହାଗୁରୁଙ୍କୁ ଆତୁର ଭାବରେ ଧ୍ୟାନ କରିବାକୁ ଲାଗିଲେ । ପ୍ରାୟ ପାଞ୍ଚ ମିନିଟ୍ ପରେ ବଡ଼ ଆଶ୍ଚର୍ଯ୍ୟଜନକ ଭାବରେ ନିତ୍ୟଙ୍କ ଦେହରେ ଧୀରେ ଧୀରେ ବଳ ଫେରି ଆସିଲା । ସେ ଉଠି ବସିଲେ । ଆଉ ସେହିଦିନଠାରୁ ସେମାନେ ଓହାଇରେ ପହଞ୍ଚିବା ଯାଏ ତାଙ୍କର ଦେହ ପୂର୍ବାପେକ୍ଷା ଯଥେଷ୍ଟ ଭଲ ରହିଲା ।

## 'ମୁଁ ଓ ମୋର ଭାଇ ହେଉଛୁ ଏକ...'

ହଲାଣ୍ଡର ଓମେନ ନିକଟବର୍ତ୍ତୀ ହୁଜେନ୍ ନାମକ ଏକ ସହରରେ ଇଉରୋପ ଲିବରାଲ କାଥଲିକ ଚର୍ଚ୍ଚର ମୁଖ୍ୟ ଶାଖା ଅବସ୍ଥିତ । ୧୯୨୫ ମସିହା ଜୁଲାଇ ମାସରେ ଜର୍ଜ ଅରୁଣ୍ଡେଲ ଓ ତାଙ୍କ ପତ୍ନୀ ରୁକ୍ମିଣୀ

ଦେବୀ ଅରୁଣ୍ଡେଲ ଗସ୍ତକ୍ରମରେ ଆସି ହୁଜେନ୍‌ରେ ପହଞ୍ଚିଲେ । ସେତେବେଳେ ଥିଓସଫିକାଲ ମହଲର ବଡ଼ବଡ଼ିଆ ମାନଙ୍କର ବିଶ୍ୱାସ ଥିଲା ଯେ ଜର୍ଜ ଅରୁଣ୍ଡେଲଙ୍କଠାରେ ଉଚ୍ଚକୋଟୀର ଅତିନ୍ଦ୍ରୀୟ ଶକ୍ତି ରହିଛି ଓ ସେ ଅନ୍ୟାନ୍ୟ ସାଧାରଣ ଥିଓସଫିଷ୍ଟମାନଙ୍କଠାରୁ ଯଥେଷ୍ଟ ଉପରେ ଅଛନ୍ତି । ହୁଜେନରେ ପହଞ୍ଚିବାର କିଛିଦିନ ପରେ ଅରୁଣ୍ଡେଲ ଖୋଲାଖୋଲି କହିବାକୁ ଆରମ୍ଭ କଲେ ଯେ ସେଠାରେ ଏଭଳି କେତେକ ବିଶେଷ ଚମକପ୍ରଦ ଆଧ୍ୟାତ୍ମିକ ଘଟଣା ଘଟିବାରେ ଲାଗିଛି ଯାହାର ପ୍ରଭାବ କି ସାରା ଥିଓସଫିକାଲ ସୋସାଇଟିକୁ ଦିନେ ଚମକାଇ ଦେବ । ସେହି ଅଭୂତପୂର୍ବ, ଆଶ୍ଚର୍ଯ୍ୟଜନକ ଘଟଣାର ବିବରଣୀ ଲେଖି ଅରୁଣ୍ଡେଲ ଆନି ବେସାନ୍ତଙ୍କ ନିକଟକୁ ଯେଉଁ ଚିଠି ଦେଇଥିଲେ ତହିଁରୁ ଜଣାଯାଏ ଯେ ସେ ନିଜେ ଓ ଲିବରାଲ କାଥଲିକ ଚର୍ଚ୍ଚର କେତେଜଣ ବିଶିଷ୍ଟ ପାଦ୍ରୀ ଆପଣା ଆଧ୍ୟାତ୍ମିକ ଶକ୍ତି ବଳରେ ମହାଗୁରୁ ତଥା ସେମାନଙ୍କ ଉପରକୁ ଥିବା ଅନ୍ୟାନ୍ୟ ଆଧ୍ୟାତ୍ମିକ ଗୁରୁମାନଙ୍କ ସହିତ ସିଧାସଳଖ ଯୋଗସୂତ୍ର ସ୍ଥାପନ କରିବାକୁ ସମର୍ଥ ହୋଇପାରିଛନ୍ତି । ତା' ସହିତ ଅରୁଣ୍ଡେଲ ଆହୁରି ମଧ୍ୟ ଜଣାଇଥିଲେ ଯେ ସେ ନିଜେ, ଚର୍ଚ୍ଚର ମୁଖ୍ୟ ଧର୍ମଯାଜକ ଓ୍ୱେଜଉଡ୍ ଏବଂ ରୁକ୍ମିଣୀ ଦେବୀ ଖୁବ୍ ଅଳ୍ପ ଦିନର ବ୍ୟବଧାନରେ ଗୋଟି ଗୋଟି କରି ତିନୋଟି ଦୀକ୍ଷା ଲାଭ କରି ଆଧ୍ୟାତ୍ମିକ ପଥରେ ଅନେକ ବାଟ ଅଗ୍ରସର ହୋଇସାରିଲେଣି । ଖାଲି ସେତିକି ନୁହେଁ, ଆଧ୍ୟାତ୍ମିକତାର ଉଚ୍ଚ ସୋପାନରେ ଅଧିଷ୍ଠିତ ହୋଇପାରିଥିବା ହେତୁ ସେମାନଙ୍କଠାରେ କୁଣ୍ଡଳିନୀ ଶକ୍ତି ମଧ୍ୟ ଜାଗ୍ରତ ହୋଇଛି ।

କିଛି ଦିନ ବିତିଗଲା । ଜର୍ଜ ଅରୁଣ୍ଡେଲ ପୁଣି ଥରେ ଏକ ଚାଞ୍ଚଲ୍ୟକର ଘୋଷଣା କରି ଜଣାଇଲେ ଯେ ହୁଜେନରେ ସେ ନିଜେ, ସିଡ଼ନିଠାରେ ଲେଡ଼ବିଟର, ଓହାଇଠାରେ କୃଷ୍ଣମୂର୍ତ୍ତି ଓ ଭାରତରେ ଜିନରାଜ ଦାସ— ଏହି ଚାରିଜଣଯାକ ବିଭିନ୍ନ ସ୍ଥାନରେ ରହି ସୁଦ୍ଧା ଏକ ସମୟରେ ପଞ୍ଚମ ଦୀକ୍ଷା ଲାଭ କରି 'ଅରହତ'ର ଉପର ସ୍ତରକୁ ଯାଇପାରିଛନ୍ତି । ତାହା ସଙ୍ଗେ ସଙ୍ଗେ ସେ ଏକଥା ମଧ୍ୟ ଦାବୀ କଲେ ଯେ ମହାମୁନି ମୈତ୍ରେୟ ଯେତେବେଳେ କୃଷ୍ଣମୂର୍ତ୍ତିଙ୍କ ମାଧ୍ୟମରେ ଆତ୍ମ-ପ୍ରକାଶ

କରିବେ ସେତେବେଳେ 'ସେ' ଯେଉଁମାନଙ୍କର ସହାୟତା ବିଶେଷ ଭାବରେ ଲେଡ଼ବିଟରଙ୍କ ନାମର ତାଲିକା ସ୍ୱୟଂ ମହାମୁନି ତାଙ୍କୁ ଦେଇଛନ୍ତି । ଏଣେ ଅରୁଣ୍ଡେଲଙ୍କଠାରୁ ଏପରି ଉଦ୍ଦୀପନାମୂଳକ ସମ୍ବାଦ ପାଇ ଆନି ବେସାନ୍ତଙ୍କ ଉତ୍ତେଜନାର ସୀମା ରହିଲା ନାହିଁ । ସହଜେ ତ ସେ ଥିଲେ ଅତ୍ୟନ୍ତ ସରଳ ବିଶ୍ୱାସୀ, ତା ଛଡ଼ା ଅରୁଣ୍ଡେଲଙ୍କ ଉପରେ ତାଙ୍କର ଥିଲା ଅଗାଧ ବିଶ୍ୱାସ । ତେଣୁ ଅରୁଣ୍ଡେଲଙ୍କଠାରୁ ପାଉଥିବା ବିବରଣୀର ସତ୍ୟାସତ୍ୟ ଉପରେ ଆଦୌ କୌଣସି ସନ୍ଦେହ ନ କରି ସେ ତାହାକୁ ଆଖିବୁଜା ସତ ବୋଲି ଧରି ନେଲେ ।

କିନ୍ତୁ ଏ ପ୍ରକାର ଦୀକ୍ଷା ଆଦାନ-ପ୍ରଦାନର କାହାଣୀ ଯେତେବେଳେ ଯାଇ ଲେଡ଼ବିଟରଙ୍କ କାନରେ ପଡ଼ିଲା, ସେ ଏକବାରେ ସ୍ତବ୍ଧ ହୋଇଗଲେ । ୱେଜଉଡ଼୍ ପ୍ରଭୃତିଙ୍କର ଦୀକ୍ଷା ଗ୍ରହଣର ଖବରକୁ ସେ ବିଶ୍ୱାସ କରିବା ତ ଦୂରର କଥା ବରଂ ଏଭଳି ଅପପ୍ରଚାର ଦ୍ୱାରା ଥିଓସଫିକାଲ ସୋସାଇଟିର ମହତ୍ତ୍ୱ ଓ ପବିତ୍ରତା ଉପରେ ଆଞ୍ଚ ଆସିବ ବୋଲି ତାଙ୍କ ମନରେ ଏକ ନୂଆ ଚିନ୍ତା ସଞ୍ଚାର ହେଲା । କେବଳ ଲେଡ଼ବିଟର କାହିଁକି, କୃଷ୍ଣମୂର୍ତ୍ତି ମଧ୍ୟ ଲେଡ଼ି ଏମିଲିଙ୍କ ଚିଠିରୁ ଯେତେବେଳେ ଅରୁଣ୍ଡେଲ ପ୍ରଚାର କରୁଥିବା ଏହି ଦୀକ୍ଷା ଗ୍ରହଣ ଓ ମହାଗୁରୁ ପ୍ରଭୃତିଙ୍କୁ ନେଇ ଖୋଲାଖୋଲି ଭାବେ ଚାଲିଥିବା ଆଲୋଚନାର କାହାଣୀମାନ ପଢ଼ିଲେ ତା'କୁ ସେ ଆଦୌ ବିଶ୍ୱାସ କଲେ ନାହିଁ । କିନ୍ତୁ ଆନି ବେସାନ୍ତ ଏସବୁକୁ ବିଶ୍ୱାସ କରୁଛନ୍ତି ବୋଲି ଜାଣି ତାଙ୍କର ସମାଲୋଚନା ଆନି ବେସାନ୍ତଙ୍କ ମନରେ କାଳେ ଆଘାତ ଦେବ ଭାବି ସେ ଏ ସମ୍ପର୍କରେ କୌଣସି ମତାମତ ଦେଲେ ନାହିଁ । ତା ଛଡ଼ା ଏ ଅଯଥା କଥାରେ ମନ ଦେବାପାଇଁ କୃଷ୍ଣମୂର୍ତ୍ତିଙ୍କ ପାଖରେ ସମୟ ବା କେଉଁଠି ଥିଲା ? ଓହାଇରେ ପହଞ୍ଚିବା ପରଠାରୁ ହିଁ ସେ ନିଜର ସବୁତକ ସମୟ, ସାମର୍ଥ୍ୟ ଓ ଶକ୍ତି ଦେଇ ଏକ ମନରେ ନିତ୍ୟଙ୍କ ସେବାରେ ଲାଗି ପଡ଼ିଥିଲେ । ହେଲେ କଣ ହେବ, ଡାକ୍ତରଙ୍କ ଔଷଧ, କୃଷ୍ଣମୂର୍ତ୍ତିଙ୍କର ଆପ୍ରାଣ ସେବା ଓ ମହାଗୁରୁଙ୍କର ଆଶୀର୍ବାଦ ସତ୍ତ୍ୱେ ନିତ୍ୟଙ୍କ ଅବସ୍ଥା କୌଣସି ଦିଗରୁ ସୁଧୁରିବା ପରି ଜଣାପଡ଼ୁ ନ ଥିଲା ।

ରାତି ରାତି ବିଛଣା ପାଖରେ ବସି ରକ୍ତ ମୃତ୍ୟୁ ସହିତ ସଂଗ୍ରାମ କରୁଥିବା ଭାଇଟିର ମୁହଁକୁ ନଚେତ୍ ହାତ ଯୋଡ଼ିକୁ ଜାବୁଡ଼ି ଧରି କୃଷ୍ଣମୂର୍ତ୍ତି ବିକଳ ଭାବରେ ପ୍ରାର୍ଥନା କରିବାରେ ଲାଗିଥିଲେ । ଭାଇର ସବୁ କାମ ସେ ନିଜ ହାତରେ ହିଁ କରୁଥିଲେ—ତାଙ୍କୁ ଗାଧୋଇ ଦେଉଥିଲେ, ତାଙ୍କର ଲୁଗାପଟା ଧୋଉଥିଲେ, ଖୁଆଇ ଦେଉଥିଲେ । ସେଇଠି ଥିବାବେଳେ ଦିନେ ଗୋଟିଏ ଚିଠିରେ ସେ ଆନି ବେସାନ୍ତଙ୍କୁ ଲେଖିଥିଲେ, "ବିଚରା ନିତ୍ୟ—କେତେ ଯେ କଷ୍ଟ ଭୋଗିଲାଣି !...ମଣିଷ ପକ୍ଷରେ ଭୋଗିବାଟା ନିଶ୍ଚିତ ଭାବେ ବାଞ୍ଛନୀୟ, କାରଣ ସେହି କଷ୍ଟ ଭୋଗଦ୍ୱାରା ହିଁ ଆମେ ବଳିଷ୍ଠ ହୋଇଥାଉ । କିନ୍ତୁ ସେଇ ଯନ୍ତ୍ରଣାରୁ ଉଧୁରି ଆସିବା ବେଳକୁ ମଧ୍ୟ ଆମେ ପୂରାପୂରି ଅକ୍ଷତ ଓ ଆହୁରି ଉଦାର ହୋଇଥିବା ଉଚିତ ।" ଅନ୍ୟ ଏକ ଚିଠିରେ ସେ ପୁଣି ଲେଖିଥିଲେ, "ସେ ବିଚରା ଅତି ଭୟଙ୍କର ଯନ୍ତ୍ରଣା ଭୋଗୁଛି । ତଥାପି ମୋର ବିଶ୍ୱାସ ଏସବୁ କେବଳ ତା'ରି ଭଲ ପାଇଁ ହେଉଛି । ମଣିଷକୁ କ୍ରମବିକାଶର ସୋପାନ ଦେଇ ଉପରକୁ ଉଠିବା ଲାଗି କେତେ ତ୍ୟାଗ ସ୍ୱୀକାର କରିବାକୁ ନ ପଡ଼େ ସତେ ! ତଥାପି ମୁଁ ଭାବୁଛି ଏ ସବୁର ମୂଲ୍ୟ ଅଛି ।"

ନିତ୍ୟଙ୍କର ଏ ମୁମୂର୍ଷୁ ଅବସ୍ଥାରେ ସୁଦ୍ଧା କୃଷ୍ଣମୂର୍ତ୍ତିଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ମହାଗୁରୁଙ୍କର ବାଣୀ କେବେହେଲେ ମିଛ ହେବ ନାହିଁ । ନିତ୍ୟ ପୁଣି ଆରୋଗ୍ୟ ହୋଇଯିବେ ଓ ଥିଓସଫିକାଲ ସୋସାଇଟିର ମହାନ ଉଦ୍ଦେଶ୍ୟ ସାଧନ କରିବାରେ ନିଜର ଜୀବନ ଉତ୍ସର୍ଗ କରିବେ । ତାଙ୍କର ଏଇ ବିଶ୍ୱାସ ସାଙ୍ଗକୁ ଆନି ବେସାନ୍ତଙ୍କର ଆଶ୍ୱାସନା ଯେ କୃଷ୍ଣମୂର୍ତ୍ତିଙ୍କ ଲାଗି ପ୍ରସ୍ତୁତ ଆଧ୍ୟାତ୍ମିକ ପଥରେ ନିତ୍ୟଙ୍କ ଉପସ୍ଥିତି ଓ ସହାୟତା ଏକାନ୍ତ ଅପରିହାର୍ଯ୍ୟ ଓ ଖାସ୍ କୃଷ୍ଣମୂର୍ତ୍ତିଙ୍କ ପାଇଁ ମହାଗୁରୁ ତାଙ୍କୁ ବଞ୍ଚାଇ ରଖିବେ—ଏଇକଥା ତାଙ୍କ ମନରୁ ସମସ୍ତ ଆଶଙ୍କା ଦୂର କରି ଦେଇଥିଲା । ତେଣୁ ଆନି ବେସାନ୍ତ ଯେତେବେଳେ କୃଷ୍ଣମୂର୍ତ୍ତିଙ୍କୁ ଆଗାମୀ ଡିସେମ୍ବର ମାସରେ ଆଡ୍ୟାର ଠାରେ ଅନୁଷ୍ଠିତ ହେବାକୁ ଥିବା ଜୁବୁଲି କନଭେନସନରେ ଯୋଗଦେବା ଲାଗି ଭାରତ ଆସିବାକୁ ଅନୁରୋଧ କଲେ, ସେତେବେଳେ ମହାଗୁରୁଙ୍କ ଉପରେ ପୂର୍ଣ୍ଣ

ଆସ୍ଥା ରଖି ସେ ଆନି ବେସାନ୍ତଙ୍କ ପ୍ରସ୍ତାବରେ ରାଜି ହୋଇଗଲେ । ନିତ୍ୟଙ୍କୁ ଏମିତି ଏକାକୀ ଛାଡ଼ି ଆସିବାକୁ ତାଙ୍କର ମନ ଆଦୌ ଡାକୁ ନ ଥିଲା ସତ, କିନ୍ତୁ ସେ ଅବସ୍ଥାରେ ତାଙ୍କୁ ଓହାଇରୁ ଅନ୍ୟ କେଉଁଠିକି ସ୍ଥାନାନ୍ତରିତ କରିବା ମଧ୍ୟ ସମ୍ଭବ ନ ଥିଲା । ତେଣୁ କ୍ରିଷ୍ଣମୂର୍ତ୍ତିଙ୍କ ଅନୁରୋଧରେ ଶ୍ରୀମତୀ ମାଞ୍ଜିଆରିଲି ଆସି ଓହାଇରେ ପହଞ୍ଚିଲେ ଓ କ୍ରିଷ୍ଣମୂର୍ତ୍ତିଙ୍କ ଅନୁପସ୍ଥିତିରେ ନିତ୍ୟଙ୍କୁ ଦେଖାଶୁଣା କରିବାର ଦାୟିତ୍ୱ ନେଲେ ।

୧୯୨୫ ଅକ୍ଟୋବର ୨୩ ତାରିଖ ଦିନ କ୍ରିଷ୍ଣମୂର୍ତ୍ତି ଭାରତ ଯାତ୍ରା ଆରମ୍ଭ କଲେ—ରୋଜାଲିଣ୍ଡ ମଧ୍ୟ ପୂର୍ବ ପ୍ରସ୍ତାବ ଅନୁଯାୟୀ ତାଙ୍କ ସାଥିରେ ଆସିଲେ । ବାଟରେ ସେମାନଙ୍କ ସାଙ୍ଗରେ ଯୋଗଦେଲେ ଆନି ବେସାନ୍ତ, ଜର୍ଜ ଅରୁଣ୍ଡେଲ, ରୁକ୍ମଣୀ ଦେବୀ, ରାଜଗୋପାଲ, ଓ୍ୱେଜଉଡ୍ ଏବଂ ଶିବ ରାଓ । ସେତେବେଳକୁ ଅନେକ ଦିନ ଧରି ଅରୁଣ୍ଡେଲ ଓ କ୍ରିଷ୍ଣମୂର୍ତ୍ତିଙ୍କ ଭିତରେ ଭେଟ ହୋଇ ନ ଥିଲା । ସେଇ ଜାହାଜ ଭିତରେ ଦିନେ କ୍ରିଷ୍ଣମୂର୍ତ୍ତିଙ୍କୁ ଏକାନ୍ତରେ ଡାକିନେଇ ଓ୍ୱେଜଉଡ୍ ଓ ଅରୁଣ୍ଡେଲ ହୁଜେନଠାରେ ଘଟିଥିବା ବିଭିନ୍ନ ଆଧ୍ୟାତ୍ମିକ ଚମତ୍କାରିତାର ସତ୍ୟତାକୁ ବୁଝାଇବାକୁ ଚେଷ୍ଟା କଲେ । ସେମାନେ ତ’ ଖାଲି ବୁଝାଇଲେ ନାହିଁ ଓଲଟି ତାଙ୍କର କଥାଗୁଡ଼ାକୁ ସତ୍ୟ ବୋଲି ଗ୍ରହଣ କରି ନେବାକୁ କ୍ରିଷ୍ଣମୂର୍ତ୍ତିଙ୍କ ଉପରେ ନାନା ପ୍ରକାର ଜୋର ପକାଇଲେ । ଏପରିକି ତାଙ୍କ କଥାକୁ ବିଶ୍ୱାସ କରି ସେମାନଙ୍କୁ ‘ଆଡ଼େପ୍‌ଟ୍’ ବୋଲି ସ୍ୱୀକାର ନ କଲେ ନିତ୍ୟଙ୍କ ପ୍ରାଣରକ୍ଷା ଯେ ସମ୍ଭବ ନୁହେଁ, ଏକଥା ଧମକାଇବାକୁ ମଧ୍ୟ ଅରୁଣ୍ଡେଲ ଛାଡ଼ିଲେ ନାହିଁ । ଅରୁଣ୍ଡେଲ ଓ ଓ୍ୱେଜଉଡ୍‌ଙ୍କର ଏ ପ୍ରକାର ଜିଗର ଓ ଧମକାଣରେ ଜାହାଜ ଭିତରେ କ୍ରିଷ୍ଣମୂର୍ତ୍ତିଙ୍କର ଦିନଗୁଡ଼ାକ ବେଳକୁ ବେଳ ଅତିଷ୍ଠକର ହୋଇପଡ଼ିଲା ।

ଏତିକିବେଳେ ଦିନେ ଓହାଇରୁ ଗୋଟିଏ ଟେଲିଗ୍ରାମ୍ ଆସି ଜାହାଜରେ ପହଞ୍ଚିଲା—ନିତ୍ୟଙ୍କୁ ଏକ ମାରାତ୍ମକ ଇନ୍‌ଫ୍ଲୁଏନ୍‌ଜା ଧରିଛି ।

ଟେଲିଗ୍ରାମରେ ବଡ଼ ବିକଳ ହୋଇ ସେ ନିଜେ କୃଷ୍ଣମୂର୍ତ୍ତିଙ୍କୁ ଅନୁରୋଧ କରିଥିଲେ, 'ଏଥରକ ମୋର ଏ ଜ୍ୱର କେଜାଣି କାହିଁକି ବଡ଼ ସାଂଘାତିକ ମନେ ହେଉଛି ! ମୋ ପାଇଁ ଟିକିଏ ପ୍ରାର୍ଥନା କରିବ ।'

ଟେଲିଗ୍ରାମଟି ପାଇ କୃଷ୍ଣମୂର୍ତ୍ତି ଚମକି ପଡ଼ିଲେ । ସେ ଓହ୍ଲାଇ ଗ୍ରାଉଣ୍ଡ ଆସୁ ଆସୁ ଯେ ନିତ୍ୟ ଏପରି ଅସୁସ୍ଥ ହୋଇପଡ଼ିବେ ଏକଥା ସେ ଆଦୌ କଳ୍ପନା କରି ନ ଥିଲେ । ବଡ଼ ବ୍ୟସ୍ତ ହୋଇ ସେତିକିବେଳେ ସେ ମନଦୁଃଖରେ ଶିବକାମୁଙ୍କୁ କହିଥିଲେ, "ନିତ୍ୟର ମୃତ୍ୟୁ ଯଦି ପ୍ରକୃତରେ ଆସନ୍ନ, ତେବେ ତ ମତେ ସେ ଜାଗା ଗ୍ରାଉଣ୍ଡ଼ ଆସିବାକୁ ଦିଆଯାଇ ନଥାନ୍ତା ।" କିନ୍ତୁ ଉପର ମନରେ ଯେତେ ଶଙ୍କା ଉଠିଲେ ସୁଦ୍ଧା ହୃଦୟ ଭିତରେ କୋଉ କୋଣରେ ଗଭୀର ଆସ୍ଥା ସେମିତି ଅତୁଟ ରହିଥିଲା । ଯେଉଁ ଆଶା ଓ ସ୍ୱପ୍ନ ନେଇ ସେ ଆଜି ଯାକେ ହସି ହସି ସମସ୍ତ ଦୁଃଖ ଯନ୍ତ୍ରଣାର ମୁକାବିଲା କରି ଆସୁଥିଲେ ସେ ଭରସା ବି ସେମିତି ସତେଜ ରହିଥିଲା । ନିତ୍ୟଙ୍କ ବିନା ଯେ ତାଙ୍କ ଭବିଷ୍ୟତ କାର୍ଯ୍ୟ ଅଧାବାଟରେ ରହିଯିବ, ଥିଓସଫିକାଲ ସୋସାଇଟିର ମହତ୍ ଉଦ୍ଦେଶ୍ୟ ଆଉ ପୂର୍ଣ୍ଣ ହୋଇ ପାରିବ ନାହିଁ—ଏଇକଥା ମନରେ ତାଙ୍କର ବାରବାର ଉଠୁଥିଲା ।

ସେହିଦିନ ରାତି । ନଭେମ୍ବର ୧୩ ତାରିଖ । ଜାହାଜ ସୁଏଜ କେନାଲରେ ପ୍ରବେଶ କରିବାକୁ ଯାଉଥାଏ ଆଉ ବାହାରେ ଏକ ପ୍ରଳୟଙ୍କରୀ ସାମୁଦ୍ରିକ ଝଡ଼ର ତାଣ୍ଡବଲୀଳା ଚାଲିଥାଏ । ସେତିକିବେଳେ ନିତ୍ୟଙ୍କର ମୃତ୍ୟୁ ସମ୍ବାଦ ଆସି ଜାହାଜରେ ପହଞ୍ଚିଲା ।

ହଠାତ୍ ଟେଲିଗ୍ରାମଟିକୁ ଖୋଲି ଦେଇ ଆନି ବେସାନ୍ତ ନିମିଷକ ଲାଗି ସ୍ଥାଣୁ ପାଲଟିଗଲେ । ନିଜର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ନିତ୍ୟ ଯେ ମରିଯିବେ, ତାଙ୍କୁ ଯେ କୃଷ୍ଣମୂର୍ତ୍ତିଙ୍କଠାରୁ ଚିରଦିନ ପାଇଁ ଛଡ଼େଇ ନିଆଯିବ ଏକଥା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ନିମିଷକ ଭିତରେ ତାଙ୍କ ମନରେ କେତେ କଣ ଓଲଟ ପାଲଟ ହୋଇଗଲା । କୃଷ୍ଣମୂର୍ତ୍ତି ସେତେବେଳକୁ ସକାଳ ଜଳଖିଆ ସାରି ନିଜ କୋଠରୀରେ ଏକୁଟିଆ ବିଶ୍ରାମ କରୁଥିଲେ । ଟେଲିଗ୍ରାମଟିକୁ ହାତରେ ଧରି ଆନି ବେସାନ୍ତ ତାଙ୍କ କୋଠରୀରେ ପ୍ରବେଶ କଲେ । × × ×

ନିତ୍ୟଙ୍କର ମୃତ୍ୟୁ ଖବର ବିଷ୍ଣୁମୂର୍ତ୍ତିଙ୍କୁ ପ୍ରଚଣ୍ଡ ଭାବରେ ଦୋହଲାଇ ଦେଲା । ତାଙ୍କର ଭବିଷ୍ୟତ କର୍ମପନ୍ଥା ଓ ସେଥିରେ ନିତ୍ୟଙ୍କର ଉପଯୋଗିତା ଆଦି ନେଇ ଆନି ବେସାନ୍ତ ଓ ଲେଡ଼ବିଟର ତାଙ୍କ ମନରେ ଗଢ଼ି ଆଣିଥିବା ଅସୁମାର ସ୍ୱପ୍ନ ସମେତ ଯେତେ ଯାହା ବିଶ୍ୱାସ, ଭରସା ସବୁ ସେଇ କ୍ଷଣକ ଭିତରେ ଧୂଳିସାତ୍ ହୋଇଗଲା । ପୂର୍ବର ସକଳ ଦର୍ଶନ, ଆଭିମୁଖ୍ୟ ସେଇଠି ଅନ୍ତ ଲଭିଲା । ତା'ପର ଦଶଦିନ-ଯାକ ଏକାକୀ କୋଠରୀଟି ଭିତରେ ପଡ଼ି ରହି ସେ ଏକ ଅବ୍ୟକ୍ତ ମାନସିକ ଯନ୍ତ୍ରଣା ଭିତର ଦେଇ ଗତି କରିବାରେ ଲାଗିଲେ । ରାତି ପରେ ରାତି ଖଟ ଉପରେ ପଡ଼ି ରହି କେତେବେଳେ ବା ନିତ୍ୟଙ୍କ ଲାଗି ବିକଳ ହୋଇ ଲୁହ ଝରାଉ ଥିଲେ, ପୁଣି ଆଉ କେତେବେଳେ ନିତ୍ୟଙ୍କ ନାଆଁ ଧରି ବଡ଼ ପାଟିରେ ଭେଁ ଭେଁ ହୋଇ କାନ୍ଦୁଥିଲେ । ବେଳେ ବେଳେ ନିଦ ଅବସ୍ଥାରେ ତେଲୁଗୁ ଭାଷାରେ କଣ ସବୁ କହି ଯାଉଥିଲେ । ବାସ୍ତବିକ ସେ ଅବସ୍ଥାରେ ତାଙ୍କୁ ଦେଖିଲେ ବଡ଼ ବିକଳ ଲାଗୁଥିଲା । କିନ୍ତୁ ସେଇ ବେଦନା ଆଉ ଯନ୍ତ୍ରଣା ଭିତରେ, ନିଜ ଅଜାଣତରେ ତାଙ୍କ ଅନ୍ତରରେ ଏକ ପରିବର୍ତ୍ତନ ଘଟି ଚାଲିଥିଲା, ଏକ ଆମୂଳ ରୂପାନ୍ତର ଚାଲିଥିଲା । ସତେ ଅବା ଜୀବନରେ ପ୍ରଥମ ଥର ପାଇଁ ସେ ନିତ୍ୟଙ୍କ ବିନା ଏକାକୀ ବଞ୍ଚିବାକୁ ଚେଷ୍ଟା କରୁଥିଲେ । ସେ ବଞ୍ଚିବାରେ ଆଧ୍ୟାତ୍ମିକତାର କୌଣସି ଉଜ୍ଜ୍ୱଳ ଆଶା ନ ଥିଲା କି ସିଦ୍ଧିଲାଭର ମୋହ ମଧ୍ୟ ନ ଥିଲା । ତାହା ଥିଲା ଏକାନ୍ତ ଏକାକୀତ୍ୱର ପଥ—କୌଣସି ସାହାଯ୍ୟ ବିନା ସେ ନିଜେ ଥିଲେ ସେ ପଥର ଏକାକୀ ପଥିକ । × ×

ସେମାନଙ୍କ ଜାହାଜ କଲମ୍ବୋ ଉପକୂଳରେ ଲାଗିଲା ବେଳକୁ କୃଷ୍ଣମୂର୍ତ୍ତି କିଛିଟା ପ୍ରକୃତିସ୍ଥ ହୋଇ ସାରିଥିଲେ । ବିଗତ ଦଶ ଦିନର ଅବ୍ୟକ୍ତ ଯନ୍ତ୍ରଣାରୁ ଉଠି ସେ ଆପଣାର ମନ କଥା ବ୍ୟକ୍ତ କରିବା ଅବସ୍ଥାକୁ ଆସିଥିଲେ । ଏତେ ଦିନ ପରେ, ସେଇଠି ସେ ପ୍ରଥମ କରି ମନର ଭାବନାକୁ ଭାଷାରେ ପ୍ରକାଶ କଲେ—

"ମୁଁ ଓ ମୋର ଭାଇ ମିଶି ଯେଉଁ ମଧୁମୟ ଜଗତର ସ୍ୱପ୍ନ ଦେଖିଥିଲୁ ତାହା ଶେଷ ପାଇଗଲା । ···ଆମେ ଦିହେଁ ଆକାଶର ସେଇ

ଏକା ମେଘ ଖଣ୍ଡକୁ ଭଲ ପାଉଥିଲୁ, ସେଇ ଏକା ଗଛ, ଏକା ସଙ୍ଗୀତର ମୂର୍ଚ୍ଛନାକୁ ଦିହେଁ ମିଶି ଭଲ ପାଉଥିଲୁ । ଯଦିଓ ଆମ ଦୁଇଜଣଙ୍କ ପ୍ରକୃତିରେ କିଛି କିଛି ତାରତମ୍ୟ ଥିଲା, ତଥାପି ଜୀବନଟା ଆମ ଦିହିଁଙ୍କ ପାଇଁ ବଡ଼ ମଧୁର ଥିଲା । ବିନା ପ୍ରୟାସରେ ହିଁ ଆମେ ପରସ୍ପରକୁ ବୁଝି ପାରୁଥିଲୁ···ସେ ଜୀବନ କେଡ଼େ ସୁଖମୟ ଥିଲା ସତେ ! ଏ ଜୀବନ ସାରା ମୁଁ ମୋ ଭାଇର ବିୟୋଗକୁ ଝୁରି ହେଉଥିବି ।”

“ଟାଣ ମାଟିର ଆବରଣକୁ ଭେଦ କରି ଫୁଲଟିଏ ଫୁଟିଲା ପରି ମୃତ ଅତୀତର ସ୍ୱପ୍ନରୁ ନୂଆ ଏକ ସ୍ୱପ୍ନ ଜନ୍ମ ନେଉଛି । ନୂତନ ଏକ ଦିଗନ୍ତ, ଏକ ନବ ଚେତନା ରୂପ ନେଉଛି । ସେଇ ପୁରୁଣା ଜୀବନର ସ୍ରୋତରେ ଏକ ସମ୍ପୂର୍ଣ୍ଣ ନୂଆ ଉନ୍ମାଦନା, ସ୍ପନ୍ଦନ ଅନୁଭୂତ ହେଉଛି । ଯାତନାରୁ ସୃଷ୍ଟ ଏକ ଅଭିନବ ଶକ୍ତି ଧମନୀରେ ଖେଳି ଯାଉଛି । ସେଇ ଯନ୍ତ୍ରଣାଭୋଗରୁ ଏକ ନୂତନ ଦରଦ, ନୂତନ ସହାନୁଭୂତି ଜନ୍ମ ନେଉଛି । ଅନ୍ତରରୁ ଉଠୁଛି, ଅନ୍ୟମାନଙ୍କ ଦୁଃଖଯାତନା କିପରି କମିଯାଉ । ଆଉ ଯଦିବା ସେମାନେ ଦୁଃଖ ପାଆନ୍ତି ତେବେ ତା' ଭିତରୁ ବାହାରି ଆସିବା-ବେଳେ ସେମାନେ ଯେପରି ଅଧିକ କ୍ଷତ ବିକ୍ଷତ ନ ହୁଅନ୍ତି ! ଉଦାର ମନରେ ଦୁଃଖ ସହ୍ୟ କରନ୍ତୁ । ମୁଁ ନିଜେ ବହୁତ କାନ୍ଦିଛି, ତେଣୁ ମୁଁ ଚାହେଁ ନାହିଁ ଯେ ଅନ୍ୟମାନେ କାନ୍ଦନ୍ତୁ । ଏବେ ଯାଇ ମୁଁ ଜାଣୁଛି ସେ ଦୁଃଖଟା କି ଜିନିଷ···ଭାଇକୁ ତ ମୋର ଦେଖିଲି···ଏ ମର ଜଗତରେ ସିନା ଆମେ ପରସ୍ପରଠୁ ବିଚ୍ଛିନ୍ନ ହୋଇଛୁ କିନ୍ତୁ ଏବେ ଆମେ ପ୍ରକୃତରେ ଅବିଚ୍ଛିନ୍ନ···ମୁଁ ଓ ମୋର ଭାଇ ହେଉଛୁ ଏକ । କୃଷ୍ଣମୂର୍ତ୍ତି ଭାବରେ ଏବେ ମୋଠାରେ ଅଧିକ ଉଦ୍ୟମ, ଅଧିକ ବିଶ୍ୱାସ ଓ ଅସୀମ ଦରଦ, ଭଲ ପାଇବା ଫୁଟି ଉଠିଛି କାରଣ ନିତ୍ୟାନନ୍ଦର ଅସ୍ତିତ୍ୱ ବର୍ତ୍ତମାନ ମୋର ଭିତରେ ହିଁ ଉଦ୍‌ଜୀବିତ । ···ଏବେ ବି ମୋ ଆଖିରୁ ଲୁହ ଝରିପାରେ । ମାତ୍ର ତାହା ତ ଏକାନ୍ତ ମାନବିକତା । ପୂର୍ବ ଅପେକ୍ଷା ଆହୁରି ଦୃଢ଼ତାର ସହିତ ଏବେ ମୁଁ ବିଶ୍ୱାସ କରୁଛି ଯେ ଜୀବନରେ ଏଭଳି ଏକ ସୌନ୍ଦର୍ଯ୍ୟ ରହିଛି, ଏଭଳି ଏକ ଆନନ୍ଦ ରହିଛି ଯାହାକି

କୌଣସି ପାର୍ଥିବ ଘଟଣା ଦ୍ୱାରା ଧ୍ୱସ୍ତ ବିଧ୍ୱସ୍ତ ହୋଇପାରିବ ନାହିଁ । ଜୀବନରେ ଏଭଳି ଏକ ଶକ୍ତି ରହିଛି ଯାହାକି ଘଟଣା ପ୍ରବାହର ତାଡ଼ନାରେ ନିରସ, ଦୁର୍ବଳ ହୋଇ ପାରିବ ନାହିଁ । ପ୍ରେମ ଓ ଭଲ ପାଇବାର ଏଭଳି ଏକ ଉତ୍ସ ରହିଛି ଯାହାକି ଅବିନଶ୍ୱର, ଅକ୍ଷୟ ଓ ସର୍ବଜୟୀ ।"

ନିତ୍ୟଙ୍କର ମୃତ୍ୟୁ କୃଷ୍ଣମୂର୍ତ୍ତିଙ୍କର ଜୀବନ ଦର୍ଶନରେ ଆମୂଳ ରୂପାନ୍ତର ଆଣିଦେଲା । ମୃତ୍ୟୁଶୋକଜନିତ ତୀବ୍ର ମାନସିକ ଯନ୍ତ୍ରଣା ତାଙ୍କୁ ଏଇ ଯେଉଁ ପ୍ରେମର ଅଫୁରନ୍ତ ଉତ୍ସର ସନ୍ଧାନ ଦେଇଥିଲା ତାହା ଥିଲା କାଳବହିର୍ଭୂତ, ଚିରନ୍ତନ ଓ ଅସୀମ । ସେତିକିବେଳ ଠାରୁ ସେ ଏକ ନୂଆ ଜୀବନରେ ପାଦ ଦେଲେ । ଅତୀତର ସମସ୍ତ ଆଧ୍ୟାତ୍ମିକ ବନ୍ଧନ ତୁଟାଇ ସେ ଜୀବନ ସୌରଭର ସନ୍ଧାନ ପାଇଲେ ।

ନିତ୍ୟଙ୍କର ମୃତ୍ୟୁ ସମଗ୍ର ଥିଓସଫିକାଲ ସୋସାଇଟିକୁ ଏକ ପ୍ରକାର ଚହଲାଇ ଦେଲା । ଏପରିକି ଅରୁଣ୍ଡେଲ ଓ ଲେଡ୍‌ବିଟର୍ ମଧ୍ୟ ଏଥିରେ ସ୍ତମ୍ଭୀଭୂତ ହୋଇପଡ଼ିଲେ । ଲେଡ୍‌ବିଟର ସେତେବେଳକୁ ଥିଓସଫିକାଲ କନଭେନସନରେ ଯୋଗ ଦେବାପାଇଁ ମାଡ୍ରାସ ଆସୁଥିଲେ । ବାଟରେ ଏ ଖବର ଶୁଣି ସେ ମଧ୍ୟ ଏକ ଦାରୁଣ ଆଘାତ ପାଇଲେ । ନିତ୍ୟଙ୍କର ମୃତ୍ୟୁ ଯେ କିପରି ଘଟି ପାରିଲା, କେଉଁଠାରେ କି ପ୍ରକାର ଭୁଲ୍ ରହିଗଲା ସେ କିଛି ବୁଝି ପାରିଲେ ନାହିଁ । ତେବେ ଏ ଘଟଣା ଦ୍ୱାରା ସିଏ ଯେ ମହାଗୁରୁଙ୍କଠାରୁ ବିଶ୍ୱାସ ହରାଇ ବସିଲେ ବା ମହାମୁନୀ କୃଷ୍ଣମୂର୍ତ୍ତିଙ୍କ ମାଧ୍ୟମରେ ଆତ୍ମ-ପ୍ରକାଶ କରିବା କଥାକୁ ସନ୍ଦେହ କଲେ ସେଭଳି କିଛି ନୁହେଁ । ମନ କଥା ମନରେ ରଖି ସେ କୃଷ୍ଣମୂର୍ତ୍ତିଙ୍କର ସାକ୍ଷାତ ପାଇଁ ଅପେକ୍ଷା କରି ରହିଲେ । ନଭେମ୍ବର ୨୫ ତାରିଖ ଦିନ କୃଷ୍ଣମୂର୍ତ୍ତି ଆସି ମାଡ୍ରାସ ଷ୍ଟେସନରେ ପହଞ୍ଚିଲେ । ମୁହଁରେ ତାଙ୍କର ଦୁଃଖ, ବେଦନାର ଲେଶମାତ୍ର ଚିହ୍ନ ନ ଥିଲା । ମୁଖମଣ୍ଡଳରୁ ଅବା ଏକ ଅପୂର୍ବ ଜ୍ୟୋତି ନିଃସୃତ ହେଉଥିଲା । ତାଙ୍କୁ ଦେଖିଲେ ସେତେବେଳେ କେହିହେଲେ କହିବ ନାହିଁ ଯେ ସେ ଏଭଳି ଏକ ତୀବ୍ର

ମାନସିକ ଯନ୍ତ୍ରଣା ଭିତରୁ ଉଠିଛନ୍ତି । ସେ ଦିଶୁଥିଲେ ଢଳଢଳ, ସଦ୍ୟସ୍ନାତ ଫୁଲଟିଏ ପରି ସୁନ୍ଦର । ସତରେ କେଡ଼େ ବିଚିତ୍ର, କେଡ଼େ ଅଦ୍ଭୁତ !

## ଗୋଷ୍ଠୀ କନ୍ଦଳ

ଅରୁଣ୍ଡେଲ, ଓ୍ବେଜଉଡ଼ ପ୍ରଭୃତି ଆଡ଼ୟାରରେ ପହଞ୍ଚିବାର ପ୍ରଥମ କେତେଦିନ ମୁଖ୍ୟତଃ ଏକ ଗୃପ୍ତ ଉତ୍ତେଜନା ଓ ଅଶାନ୍ତିରେ କଟିଥିଲା । ସେମାନଙ୍କର ଆଧ୍ୟାତ୍ମିକ ଦୀକ୍ଷା ଗ୍ରହଣ ଓ 'ଆଡ଼େପ୍‌ଟ' ପଦବୀ ଲାଭର ସେମାଙ୍କର କାହାଣୀମାନ ସେଠାକୁ ଆସିଥିବା ଥିଓସଫିଷ୍ଟମାନଙ୍କ ଭିତରେ ଏକ ବିଶୃଙ୍ଖଳା ସୃଷ୍ଟି କରିଥିଲା । ଏପରିକି କନଭେନସନରେ ଯୋଗଦେବାକୁ ଆସିଥିବା କେତେକ ଥିଓସଫିଷ୍ଟ ସେଥିପ୍ରଚୁରରେ ଏତେ ବିଭୋର ହୋଇ ଉଠିଥିଲେ ଯେ ଓ୍ବେଜଉଡ଼ ଓ ଅରୁଣ୍ଡେଲ ପ୍ରଭୃତିଙ୍କୁ ସେମାନେ ସାକ୍ଷାତ ଦେବତା ଭଳି ଜ୍ଞାନ କରିବାକୁ ଲାଗିଲେ । ଥିଓସଫିକାଲ ସୋସାଇଟିର ସବୁ ନିୟମ କାନୁନ ପଛରେ ପକାଇ ସେମାନେ ଖାସ୍ ତାଙ୍କୁ ହିଁ ଅନୁସରଣ କରିବାକୁ ଆରମ୍ଭ କରିଦେଲେ । ସେମାନଙ୍କର ଏଭଳି ପ୍ରହସନରେ ଲେଡ଼ବିଟର ଭୀଷଣ ମର୍ମାହତ ହେଲେ । କାରଣ ପ୍ରକୃତପକ୍ଷେ ସେ ନିଜକୁ ବା କୃଷ୍ଣମୂର୍ତ୍ତିଙ୍କ ବ୍ୟତୀତ ଥିଓସଫିକାଲ୍ ସୋସାଇଟିର ଅନ୍ୟ କୌଣସି ସଦସ୍ୟଙ୍କୁ ଚଳିତ ଜନ୍ମରେ ପଞ୍ଚମ ଦୀକ୍ଷା-ସ୍ତରକୁ ଉଠିଥିବା କଥା ଆଦୌ ବିଶ୍ବାସ କରୁ ନ ଥିଲେ । ତେଣୁ ଅରୁଣ୍ଡେଲ ପ୍ରଭୃତି ଯେପରି ତରବରିଆ ଭାବରେ ଓ୍ବେଜଉଡ଼, ଲେଡ଼ି ଏମିଲି, ରୁକ୍ମିଣୀ ଦେବୀ, ରାଜଗୋପାଳ, ଜୀନରାଜ ଦାସ, ତଥା ଆପଣାର ଉଚ୍ଚ ଦୀକ୍ଷାପ୍ରାପ୍ତିର ଲମ୍ବା ତାଲିକାଟିଏ କରି କାହାଣୀ ସୃଷ୍ଟି କରିଥିଲେ ଏଥିରେ ସେ ବିବ୍ରତ ହୋଇ ପଡ଼ିଲେ ।

ଅନ୍ୟ ପକ୍ଷରେ ଅରୁଣ୍ଡେଲ ବି ଥିଲେ ନିଶ୍ଚୋଡ଼ବନ୍ଦା । ନିଜର ଆଧ୍ୟାତ୍ମିକ ଶକ୍ତି ଓ ଜ୍ଞାନ ଉପରେ ତାଙ୍କର ଏତେ ବିଶ୍ବାସ ଥିଲା ଯେ

ତାଙ୍କର ଅନୁମାନ ଯେ ଭୁଲ ହୋଇପାରେ ଏକଥା ମାନିବାକୁ ସେ ପ୍ରସ୍ତୁତ ନ ଥିଲେ । ତେଣୁ ଦୁଇ ଦଳର ମତଦ୍ୱୈଧକୁ ନେଇ କ୍ରମଶଃ ଥିଓସଫିକାଲ ସୋସାଇଟି ଭିତରେ ଏକ ଗୋଷ୍ଠୀ ବିବାଦର ସୂତ୍ରପାତ ହେଲା । ଗୋଟିଏ ପକ୍ଷରେ ରହିଲେ ଲେଡ଼ବିଟରଙ୍କ ଦଳ ଓ ଅନ୍ୟ ପକ୍ଷରେ ଅରୁଣ୍ଡେଲ-ଓ୍ୱେଜଉଡ଼ଙ୍କ ଦଳ । ଦିନକୁ ଦିନ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ବଢ଼ି ବଢ଼ି ଚାଲିଲା । ଦୁଇ ଦଳର ଏହି ଟଣା ଓଟରା ଭିତରେ ଆନିବେସାନ୍ତ ବଡ଼ ଅଡୁଆରେ ପଡ଼ିଲେ । ଏକେ ତ' ସେ ଖୁବ୍ ଭଲ ଭାବରେ ଜାଣିଥିଲେ ଯେ ଦୀକ୍ଷା-ଗ୍ରହଣ ଓ ଆଧ୍ୟାତ୍ମିକ ଅଗ୍ରଗତି ନେଇ ଲେଡ଼ବିଟର ଯାହା ସତ୍ୟ ବୋଲି ଭାବୁଛନ୍ତି ସେଥିରେ କୌଣସି ଭୁଲ ହୋଇ ନ ପାରେ । ମାତ୍ର ଅନ୍ୟ ପକ୍ଷରେ ଅରୁଣ୍ଡେଲ ଓ ଓ୍ୱେଜଉଡ଼ ମିଶି ସେମାନଙ୍କର ବିଚିତ୍ର କାହାଣୀମାନ ଆନିବେସାନ୍ତଙ୍କ ମନରେ ଏତେ ଦୃଢ଼ ଭାବରେ ପୋତି ଦେଇଥିଲେ ଯେ ତାକୁ ମଧ୍ୟ ଅସ୍ୱୀକାର କରିବାକୁ ଆନି ବେସାନ୍ତଙ୍କର ମନ ଡାକୁ ନଥିଲା । ବଢ଼ି ଚାଲିଥିବା ଟଣାଓଟରା ଓ ବାଦବିବାଦ ଭିତରେ କିନ୍ତୁ କୃଷ୍ଣମୂର୍ତ୍ତି କାହାରିକୁ ସମର୍ଥନ କରୁ ନ ଥିଲେ । ଏତେ ଅଘଟଣ ପରେ ସୁଦ୍ଧା ଆନି ବେସାନ୍ତଙ୍କ ପ୍ରତି ତାଙ୍କ ମନରେ ଅସୀମ ଶ୍ରଦ୍ଧା, ଭକ୍ତି ଭରି ରହିଥିଲା । ଆଉ ଖାସ୍ ତାଙ୍କର ପ୍ରାଣରେ ଆଘାତ ନ ଦେବା ଲାଗି ସେ ତାଙ୍କର କୌଣସି କଥାରେ ପ୍ରତିବାଦ ନ କରି ସେ ଯାହା ଯେମିତି କହୁଥିଲେ, ସବୁ କରି ଯାଉଥିଲେ ।

ଦିନ ଗଡ଼ିବା ସଙ୍ଗେ ସଙ୍ଗେ ଥିଓସଫିକାଲ ସୋସାଇଟି ଭିତରେ ଏହି କନ୍ଦଳ ତୀବ୍ରରୁ ତୀବ୍ରତର ରୂପ ଧାରଣ କଲା । ଦୁଇ ଗୋଷ୍ଠୀ ଭିତରେ ଏକ ବୁଝାମଣା କରିବାକୁ ଯେତେ ଚେଷ୍ଟା କରି ସୁଦ୍ଧା ଆନିବେସାନ୍ତ ବିଫଳ ହେଲେ । ଶେଷକୁ ଦିନେ ନିରୁପାୟ ହୋଇ ସେ କୃଷ୍ଣମୂର୍ତ୍ତିଙ୍କ ହାତ ଧରି ନିଜ ବଖରାକୁ ନେଇ ଆସିଲେ । ପୂର୍ବରୁ ସେଠାରେ ଲେଡ଼ବିଟର, ଅରୁଣ୍ଡେଲ, ଓ୍ୱେଜଉଡ଼ ଓ ଜିନରାଜ ଦାସ ପ୍ରଭୃତି ଉପସ୍ଥିତ ଥିଲେ । କୃଷ୍ଣମୂର୍ତ୍ତିଙ୍କୁ ନେଇ ଲେଡ଼ବିଟରଙ୍କ ପାଖରେ ସୋଫା ଉପରେ ବସାଇ ନିଜେ ତାଙ୍କ ପାଖରେ ବସି ପଡ଼ି ଆନି ବେସାନ୍ତ ପଚାରିଲେ ଯେ

ସେ କଣ ସେମାନଙ୍କୁ ତାଙ୍କର ଶିଷ୍ୟ ହେବାର ସୁଯୋଗ ଦେବେ କି ? ଆନି ବେସାନ୍ତଙ୍କର ଏହି ପ୍ରଶ୍ନରୁ ଗୋଟିଏ କଥା ସ୍ପଷ୍ଟ ସୂଚିତ ହେଉଥିଲା ଯେ ମହାମୁନି ମୈତ୍ରେୟ କୃଷ୍ଣମୂର୍ତ୍ତିଙ୍କ ମାଧ୍ୟମରେ ପୃଥିବୀରେ ଆତ୍ମପ୍ରକାଶ କରିବେ, ଏ ବିଷୟରେ ଉଭୟ ଦଳ ନିଃସନ୍ଦେହ ଥିଲେ ଓ ଖାସ୍ ସେହି କାରଣରୁ ହିଁ ତାଙ୍କର ଶିଷ୍ୟତ୍ୱ ଲାଭ କରିବାକୁ ପ୍ରତ୍ୟେକେ ବିଶେଷ ଭାବରେ ଉତ୍ସୁକ ଥିଲେ । କିନ୍ତୁ କୃଷ୍ଣମୂର୍ତ୍ତିଙ୍କର ଉତ୍ତର ସମସ୍ତଙ୍କୁ ବିହ୍ୱଳରେ ପକାଇ ଦେଲା । ସେ କହିଲେ ଯେ 'ବୋଧହୁଏ କେବଳ ଆନି ବେସାନ୍ତଙ୍କ ବ୍ୟତୀତ ଅନ୍ୟ କାହାରିକୁ ହେଲେ ସେ ନିଜର ଶିଷ୍ୟ ଭାବରେ ଗ୍ରହଣ କରି ପାରିବେ ନାହିଁ ।' ଏ କଥାଟା ସମସ୍ତଙ୍କୁ ବଡ଼ ପିତା ଲାଗିଲା ସତ ତଥାପି ନିଜ ନିଜର ବିଶ୍ୱାସ ନେଇ ଯେ ଯାହାର ଜିଦରେ ଅଟଳ ରହିଲେ ।

ଡିସେମ୍ବର ମାସ ୨୪ ତାରିଖ (୧୯୨୫) ଦିନ ଯଥାରୀତି ଥିଓସଫିକାଲ କନଭେନସନ ଆରମ୍ଭ ହେଲା । ଗୃହରିଦିନିଆ ଏହି ସମ୍ମିଳନୀରେ ପ୍ରାୟ ତିନି ହଜାରରୁ ଊର୍ଦ୍ଧ୍ୱ ସଦସ୍ୟଙ୍କର ସମାବେଶ ଘଟିଥିଲା । ସେତେବେଳକୁ ଥିଓସଫିକାଲ ସୋସାଇଟିରେ ମହାଗୁରୁମାନଙ୍କ ଅସ୍ତିତ୍ୱ, କାର୍ଯ୍ୟକଳାପ ସମ୍ପର୍କରେ ଖୋଲାଖୋଲି ଭାବରେ ଏତେ ପ୍ରଚାର ହୋଇ ସାରିଥିଲା ଯେ କନଭେନସନ ଅବସରରେ ମହାଗୁରୁ, ମହାମୁନି ତଥା ଅନ୍ୟାନ୍ୟ ଅଦୃଶ୍ୟ ଆଧ୍ୟାତ୍ମିକ ଗୁରୁମାନଙ୍କୁ ସଶରୀରେ ଦେଖିବାର ଆଶା ନେଇ ମଧ୍ୟ ଅନେକେ ସେଠାରେ ହାଜର ହୋଇଥିଲେ । ତେଣୁ କନଭେନସନ ଶେଷ ହେବା ବେଳକୁ କୌଣସି ଅଲୌକିକ ଘଟଣା ନ ଦେଖି ବା ମହାଗୁରୁ ଆଦିଙ୍କର ପ୍ରତ୍ୟକ୍ଷ ଦର୍ଶନ ନ ପାଇ ବହୁ ବ୍ୟକ୍ତି ନିରାଶ ମନରେ ଏ ସବୁ କଥାକୁ ସମାଲୋଚନା କରି କରି ଫେରି ଯାଇଥିଲେ । ଥିଓସଫିକାଲ ସମ୍ମେଳନ ଶେଷ ହେବାର ଠିକ୍ ପରଦିନ, ଅର୍ଥାତ୍ ଡିସେମ୍ବର ୨୮ ତାରିଖରେ ସେହି ସ୍ଥାନରେ 'ଷ୍ଟାର' ସମ୍ମେଳନ ଆରମ୍ଭ ହେଲା ।

ସେହିଦିନ ସକାଳ ଆଠଟା ସମୟ । ଆଡ଼ୟାର ହତା ଭିତରେ ଥିବା ଏକ ପ୍ରାଚୀନ, ବିଶାଳ ବରଗଛ ମୂଳରେ କୃଷ୍ଣମୂର୍ତ୍ତି ସମବେତ

ଷ୍ଟାର ସଭ୍ୟଙ୍କ ଉଦ୍ଦେଶ୍ୟରେ ଭାଷଣ ଦେଉଥାନ୍ତି । ଶୀତଦିନଆ ଝାଉଁ, ଝଙ୍କା ବରଗଛର ଗହଳ ପତ୍ର ଦେଇ ଭୂଇଁରେ ଠାଏ ଠାଏ ପଡୁଥାଏ । ସ୍ଥାନଟି ଆଜି ନିସ୍ତବ୍ଧ । ଭାଷଣ ପ୍ରାୟ ସରି ଆସୁଥାଏ । କୃଷ୍ଣମୂର୍ତ୍ତି 'ଜଗତ୍‌ଗୁରୁ'ଙ୍କ ବିଷୟରେ କହିବାରେ ଲାଗିଥାନ୍ତି — "ଯେଉଁମାନେ ତାଙ୍କୁ ଖୋଜନ୍ତି, ତାଙ୍କୁ ଚାହାନ୍ତି, ସେ କେବଳ ସେହିମାନଙ୍କ ପାଇଁ ଆସନ୍ତି..." । କିନ୍ତୁ କିନ୍ତୁ ହଠାତ୍ ତାଙ୍କର ମୁଖମଣ୍ଡଳର ଭାବ ବଦଳି ଗଲା, କଣ୍ଠସ୍ୱର ଅସମ୍ଭବ ଭାବରେ ବଦଳି ଗଲା—ମଣିଷର କଣ୍ଠସ୍ୱରଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏକ ସ୍ୱର ଫୁଟି ଉଠିଲା, ତାଙ୍କର ବକ୍ତବ୍ୟ ତୃତୀୟ ପୁରୁଷରୁ ପ୍ରଥମ ପୁରୁଷକୁ ଚାଲି ଆସିଲା । ଶୁଣାଗଲା—"ଆଜି ମୁଁ ଆସିଛି ଖାସ୍ ସେହିମାନଙ୍କ ପାଇଁ, ଯେଉଁମାନେ ଦରଦ, ସହାନୁଭୂତି ଖୋଜନ୍ତି, ଆନନ୍ଦ ଲାଭ କରିବାକୁ ଚାହାନ୍ତି, ମୁକ୍ତି ଚାହାନ୍ତି ଓ ପ୍ରତ୍ୟେକଟି ବସ୍ତୁରେ ଉଲ୍ଲାସର ସତ୍ତା ଲାଭ କରିବାକୁ ଚାହାନ୍ତି । ମୁଁ ଆସିଛି ସଜାଡ଼ିବା ଲାଗି, ଭାଙ୍ଗିବା ଲାଗି ନୁହେଁ ।" ଏକଥା କହିଲା ବେଳେ କୃଷ୍ଣମୂର୍ତ୍ତିଙ୍କ କଣ୍ଠରୁ ଏକ ଅଲୌକିକ ଶକ୍ତି ନିଃସୃତ ହେଉଥିଲା ଏବଂ ସେ ଶକ୍ତିର ପ୍ରଚଣ୍ଡତା ସମଗ୍ର ସ୍ଥାନକୁ ଥରାଇ ଦେଉଥିଲା । ତା'ର ପ୍ରକମ୍ପନରେ ଭାଷଣ ଶୁଣୁଥିବା ଜନତାର ଲୋମ ଟାଙ୍କୁର ଉଠିଲା । ସେ ଅନୁଭୂତି ଥିଲା ଏକ ଦିବ୍ୟ ଅନୁଭୂତି । ଲେଡ଼ବିଟର, ଆନି ବେସାନ୍ତ ଓ ଜିନରାଜ ଦାସ ମଧ୍ୟ ସେ ସଭାରେ ଉପସ୍ଥିତ ଥିଲେ । ସେମାନେ ସ୍ପଷ୍ଟ ବୁଝିପାରିଲେ ଯେ ସେହି ମୁହୂର୍ତ୍ତରେ କୃଷ୍ଣମୂର୍ତ୍ତିଙ୍କଠାରେ ବହୁ ଆକାଂକ୍ଷିତ ଦିବ୍ୟଶକ୍ତି ପ୍ରକଟିତ ହୋଇଛି । ଭାଷଣରେ ତାଙ୍କର ପ୍ରଥମ ପୁରୁଷର ଉକ୍ତି ଅଂଶଟି କୌଣସି ଉଦ୍ଧୃତ ଉକ୍ତି ନୁହେଁ—ଏହା ସ୍ୱୟଂ ମହାମୁନିଙ୍କର ବାଣୀ । 'ସେ' ଯେ କୃଷ୍ଣମୂର୍ତ୍ତିଙ୍କୁ ନିଜର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି ଏହା ତା'ର ସ୍ପଷ୍ଟ ନିଦର୍ଶନ ।

ସେଦିନର ଘଟଣା ଆନି ବେସାନ୍ତଙ୍କୁ ଏତେ ପ୍ରଭାବିତ କରିଥିଲା ଯେ ତା'ର କିଛିଦିନ ପରେ ଏକ ଭାଷଣରେ ସେହି ବିଷୟରେ ଉଲ୍ଲେଖ କରି ସେ କହିଥିଲେ, "ପୂର୍ବରୁ ନିରୂପିତ ହୋଇଥିବା ମାଧ୍ୟମ-ଶରୀର

ଯେ ଅଖଣ୍ଡ ଦିବ୍ୟ ଭାବ ଲାଭ କରି ପାରିଛୁ ଏକଥା ଡିସେମ୍ବର ୨୮ ତାରିଖ ଘଟଣାରୁ ସ୍ପଷ୍ଟ ସୂଚିତ ହେଉଛି ।...ଏହାର ବହୁ ପୂର୍ବରୁ ଉକ୍ତ ଶରୀରଟି ମାଧ୍ୟମ ରୂପେ ଗୃହୀତ ହୋଇ ସାରିଥିଲା । ବର୍ତ୍ତମାନ ଆବିର୍ଭାବର ଶୁଭାଗମନ ଘଟିଲାଣି...ଏ ତ' ଖୁବ୍ ସାଧାରଣ କଥା ଯେ ଏଣିକି ଏଥି ନେଇ ଅନେକ ବାଧା ପ୍ରତିରୋଧ ଦେଖାଦେବ । ଅତୀତରେ ଯେତେବେଳେ 'ସେ' ଏକ ମାନବ ଜାତିରେ ଆବିର୍ଭୂତ ହୋଇଥିଲେ ସେତେବେଳେ କଣ ହିବ୍ରୁ ଓ ରୋମାନମାନେ ପ୍ରଥମରୁ ତାଙ୍କୁ ସ୍ୱାଗତ ଜଣାଇଥିଲେ କି ? ଏଇ ତ ଆମରି ଆଖି ଆଗରେ ଇତିହାସର ପୁନରାବୃତ୍ତି ଘଟିବାକୁ ଯାଉଛି ।" ଏହାଛଡ଼ା 'ଦି ଥିଓସଫିଷ୍ଟ' ପତ୍ରିକାରେ ଆନି ବେସାନ୍ତ ଅହିର ମଧ୍ୟ ଲେଖିଥିଲେ, "ଏବେ ସେହି ଦୀର୍ଘ ପ୍ରତୀକ୍ଷାର ସମାପ୍ତି ଘଟିଛି; ଯାହାନ୍ତ ତାରାଟି ଦିଗ୍‌ବଳୟ ଉପରେ ଉଇଁ ଆସିଛି ।" ଖାଲି ଆନି ବେସାନ୍ତ ନୁହନ୍ତି, ସ୍ୱୟଂ କୃଷ୍ଣମୂର୍ତ୍ତି ମଧ୍ୟ ସେଦିନର ଅଲୌକିକ ଘଟଣାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରି ପାରିଥିଲେ । ଏହା ପରେ ପରେ ଷ୍ଟାର କଂଗ୍ରେସର ଅନ୍ୟ ଏକ ସଭାରେ ସେ ଖୁବ୍ ଦୃଢ଼ତାର ସହିତ କହିଥିଲେ—"ଜ୍ଞାନ ଓ ଧୀଶକ୍ତିର ଉତ୍ସରୁ ତମେମାନେ ସୁଧାପାନ କରିବାକୁ ପାଇଛ । ସଯତ୍ନେ ସମ୍ପାଦ୍ଧ ରଖିଥିବା ଏକ ନିତ୍ୟାନ୍ତ ଦୁଷ୍ପ୍ରାପ୍ୟ ମଣିକୁ ପ୍ରତିଥର ଚାହିଁ ଦେଖିବାରେ ତମଠାରେ ଯେଭଳି ରୋମାଞ୍ଚ ଜାତ ହୁଏ, ଗତ ୨୮ ତାରିଖର ସ୍ମୃତି ତମ ମନରେ ଠିକ୍ ସେହିଭଳି ସ୍ମୃତି ଆଣି ଦେବ । ଏହାପରେ ଯେତେବେଳେ 'ସେ' ପୁନର୍ବାର ଆବିର୍ଭୂତ ହେବେ—ମୁଁ ଜାଣେ 'ସେ' ନିଶ୍ଚୟ ଆସିବେ ଓ ଖୁବ୍ ଶୀଘ୍ର ମଧ୍ୟ ଆସିବେ—ସେହି ଅବସର ଆମ ଲାଗି ପୂର୍ବାପେକ୍ଷା ଅଧିକ ସୁନ୍ଦର, ଅଧିକ ସ୍ନିଗ୍ଧ ହେବ ।" × × ×

"ମୋର ମନେହୁଏ ଯେ ସେହି ଦିନଠାରୁ ମୁଁ ସମ୍ପୂର୍ଣ୍ଣ ବଦଳି ଯାଇଛି... ସଦ୍ୟ ପରିଷ୍କାର ହୋଇଥିବା ଏକ ଚକ୍‌ଚକ୍ କାଚ ଫୁଲଦାନି ପରି ଝୋଟେ ମୋ ନିଜକୁ ମନେ ହେଉଛି । ଆଜି ଏ ପୃଥିବୀର ଯେ କେହି ବ୍ୟକ୍ତି ତହିଁରେ ସୁନ୍ଦର ଫୁଲଟିଏ ସଜାଇ ରଖି ଦେଇ ପାରିବ । ସେ ଫୁଲ କେବେ ମଉଳିବ ନାହିଁ, କେବେ ଝରିପଡ଼ିବ ନାହିଁ ।"

ପ୍ରକୃତରେ ଡିସେମ୍ବର ୨୮ ତାରିଖର ଘଟଣା ପରଠାରୁ କୃଷ୍ଣମୂର୍ତ୍ତିଙ୍କ ବ୍ୟକ୍ତିତ୍ୱରେ ଏକ ବିରାଟ ପରିବର୍ତ୍ତନ ଆସିଲା । ତାଙ୍କର ଭାଷଣଗୁଡ଼ିକରେ ଏକ ଦିବ୍ୟ ସତ୍ତାର ପ୍ରକାଶ ଅତି ସ୍ପଷ୍ଟ ଭାବରେ ଅନୁଭୂତ ହେବାରେ ଲାଗିଲା । ଭାଷଣରେ ତାଙ୍କର ଅଖଣ୍ଡ ଆତ୍ମ-ବିଶ୍ୱାସ ସାଙ୍ଗକୁ ଏକ ଅନିର୍ବଚନୀୟ ଆନନ୍ଦର ପ୍ରତିଶ୍ରୁତି ପ୍ରତ୍ୟେକ ଶ୍ରୋତାର ପ୍ରାଣକୁ ଝଙ୍କୃତ କରି ଉଠିଲା । କୃଷ୍ଣମୂର୍ତ୍ତିଙ୍କ ସଂସ୍ପର୍ଶରେ ଆସୁଥିବା ଜଣ ଜଣ କରି ପ୍ରତ୍ୟେକେ ତାଙ୍କଠାରେ ପ୍ରକଟିତ ଏହି ମହାଶକ୍ତିର ତେଜକୁ ଅନୁଭବ କରିବାକୁ ଲାଗିଲେ । କିନ୍ତୁ ଏଥିରୁ ବାଦ୍ ପଡ଼ିଗଲେ ମାତ୍ର ଦୁଇଜଣ ବ୍ୟକ୍ତି—ୱେଜଉଡ଼ ଓ ଅରୁଣ୍ଡେଲ । ସେ ଦୁହିଁଙ୍କୁ ଏସବୁ ବଡ଼ ବେଖାପ ମନେ ହେଲା । ଆତ୍ମାଭିମାନ ଓ ଆଧ୍ୟାତ୍ମିକତାର ନିଶାରେ ସେମାନେ ଏଭଳି ଭାବରେ ବୁଡ଼ି ରହିଥିଲେ ଯେ କୃଷ୍ଣମୂର୍ତ୍ତିଙ୍କ-ଠାରେ ଯେ ଏକ ପରିବର୍ତ୍ତନ ଘଟିଛି ସେ କଥା ବୁଝିବାକୁ ସେମାନେ ଆଦୌ ପ୍ରସ୍ତୁତ ନ ଥିଲେ ।

୧୯୨୭, ମେ ମାସ ଯାଏ ଭାରତରେ କଟାଇବା ପରେ କୃଷ୍ଣମୂର୍ତ୍ତି ବମ୍ବେରୁ ଜାହାଜ ଯୋଗେ ହଲାଣ୍ଡ ଯାତ୍ରା କଲେ । ସେ ବର୍ଷ କାସଲ ଏଆରଡ଼ର ଠାରେ ପ୍ରଥମ ଥର ପାଇଁ ଷ୍ଟାର ସଭ୍ୟମାନଙ୍କର ଏକ ଶ୍ରେଷ୍ଠ ସମାବେଶର ଆୟୋଜନ ହୋଇଥିଲା । ସମାବେଶ ଚାଲିଥିବା ପନ୍ଦର ଦିନ ଯାକ କୃଷ୍ଣମୂର୍ତ୍ତି ପ୍ରତ୍ୟହ ସନ୍ଧ୍ୟାରେ ସେହି ପ୍ରାସାଦକୁ ଘେରି ରହିଥିବା ଘନ ଅରଣ୍ୟ ମଧ୍ୟକୁ ଏକାକୀ ଭ୍ରମଣରେ ଯାଉଥିଲେ । ସତେ ଅବା ପ୍ରକୃତି କୋଳରେ ସେହି ଅରଣ୍ୟାନୀ ମଧ୍ୟରେ ତାଙ୍କୁ ଏକ ଅଭିନବ ପ୍ରେରଣା ମିଳୁଥିଲା । ଶକ୍ତିର ଏକ ନବୀନ ସତ୍ତାର ସନ୍ଧାନ ସେ ସେହି ନୀରବ ବନାନୀରୁ ପାଉଥିଲେ । ଏଥି ପୂର୍ବରୁ ଆଡ଼ୟାରରେ ତାଙ୍କଠାରେ ଯେଉଁ ଦିବ୍ୟ ମହିମାର ପ୍ରକାଶ ଘଟିଥିଲା ଏବେ ଏଆରଡ଼ର ସମାବେଶରେ ଭାଷଣ ଦେବା ସମୟରେ ତାଙ୍କଠାରେ ଅନେକ ଥର ସେହି ଅପୂର୍ବ ସତ୍ତାର ନିଦର୍ଶନ ମିଳିଥିବା କଥା ସେଠାରେ ଉପସ୍ଥିତ ଷ୍ଟାର ସଭ୍ୟମାନେ କହିଥିଲେ । ବିଶେଷ କରି ସମାବେଶର ଶେଷଦିନ କୃଷ୍ଣମୂର୍ତ୍ତିଙ୍କଠାରେ ସେହି ପରମସତ୍ତା ଅତି

ସ୍ପଷ୍ଟ ଭାବେ ପ୍ରକାଶିତ ହୋଇଥିଲା । ସେଦିନ ସେ ଶ୍ରୋତାମଣ୍ଡଳୀଙ୍କୁ କହିଥିଲେ, "ତମେମାନେ ମୋର କଥା ମାନ; ମୁଁ ତମକୁ ଅଖଣ୍ଡ ଆନନ୍ଦ ସାମ୍ରାଜ୍ୟରେ ପାଦ ଦେବା ଲାଗି ପଥର ସନ୍ଧାନ ଦେବି । ମୁଁ ପ୍ରତିଶ୍ରୁତି ଦେଉଛି, ତମ ପ୍ରତ୍ୟେକଙ୍କ ହାତରେ ମୁଁ ସେହି ସୁରମ୍ୟ ଉଦ୍ୟାନର ରୁଦ୍ଧ ଦ୍ୱାର ଖୋଲିବାର ଚାବିକାଠିଟି ଧରାଇ ଦେବି···।"

ଏଆରଡ଼ିର ସମାବେଶ ଶେଷ ହେବା ପରେ ଜୁଲାଇ ୨୪ ତାରିଖରୁ ଓମେନ୍‌ରେ ବାର୍ଷିକ କ୍ୟାମ୍ପ ଆରମ୍ଭ ହେଲା । ଏଥି ଭିତରେ କୃଷ୍ଣମୂର୍ତ୍ତିଙ୍କ ଠାରେ ମହାମୁନି ଆବିର୍ଭୂତ ହୋଇଥିବା ସମ୍ବାଦ ଷ୍ଟାର ସଭ୍ୟମାନଙ୍କ ମଧ୍ୟରେ ଏକ ନୂତନ ଉନ୍ମାଦନା ଖେଳାଇ ଦେଇଥିଲା । ତେଣୁ ଜଗଦ୍‌ଗୁରୁଙ୍କର ଜ୍ଞାନ ପ୍ରଚୁରର ବାଣୀ ଶୁଣିବା ଆଶାରେ ପୃଥିବୀର ବିଭିନ୍ନ ସ୍ଥାନରୁ ପ୍ରାୟ ଦୁଇ ହଜାରରୁ ଅଧିକ ସଭ୍ୟ ଓମେନରେ ଆସି ପହଞ୍ଚିଥିଲେ । ଛଅଦିନ ଧରି ଚାଲିଥିବା ଉକ୍ତ କ୍ୟାମ୍ପର ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ଥିଲା ଏଇ ଯେ ସେ ବର୍ଷ କୃଷ୍ଣମୂର୍ତ୍ତିଙ୍କର ଭାଷଣର ବିଷୟବସ୍ତୁ ଚିରାଚରିତ ଥିଓସଫିକାଲ ଶିକ୍ଷାଠାରୁ ଢେର ଭିନ୍ନ ଓ ଅଭିନବ ଥିଲା । ସେଠାରେ ସେ ଯେତେଗୋଟି ଭାଷଣ ଦେଇଥିଲେ ପ୍ରତ୍ୟେକଟିରେ ସିଏ ଶ୍ରୋତାମାନଙ୍କୁ ଗୁରୁବାଦ ସଂସ୍କୃତି, ପୂର୍ବଧାରଣା ଓ ମତାନ୍ଧତାକୁ ଭୁଲି ଆପଣା ଅନ୍ତର ଭିତରେ ଥିବା ସତ୍ୟକୁ ଉପଲବ୍ଧି କରିବାକୁ ପ୍ରେରଣା ଦେଇଥିଲେ; ଅନୁସରଣର ପନ୍ଥାକୁ ପରିତ୍ୟାଗ କରିବାକୁ ଉପଦେଶ ଦେଇଥିଲେ । ତାଙ୍କର ଏଭଳି ଅଣ-ରକ୍ଷଣଶୀଳ ଦର୍ଶନରେ ସେଠାରେ ଉପସ୍ଥିତ ଆନି ବେସାନ୍ତ, ଓ୍ୱେଜଉଡ଼ ଓ ରାଜଗୋପାଳ ପ୍ରଭୃତିଙ୍କ ବିସ୍ମୟର ସୀମା ରହିଲା ନାହିଁ । କୌତୁହଳ ପରବଶ ହୋଇ ରାଜଗୋପାଲ ଦିନେ ତାଙ୍କୁ ପରଖିବାକୁ ପଚାରିଦେଲେ,—'କିନ୍ତୁ ଆପଣ ତ ସ୍ୱୟଂ ଜଣେ ଗୁରୁ । ନୁହେଁ କି ?' କିଛିକ୍ଷଣ ନୀରବ ରହିଯାଇ ଅତି ଶାନ୍ତ ଭାବରେ କୃଷ୍ଣମୂର୍ତ୍ତି ଉତ୍ତର ଦେଲେ,—'ହଁ, ମୋର ଏ ପ୍ରଦୀପକୁ ଯେ ଖାସ୍ ତମରିମାନଙ୍କ ପାଇଁ ଟେକି ଧରିଛି ।' ତା'ପରେ ଦିନକର ସଭାରେ ସେ କହିଲେ;

"ମୁଁ ଏ ଯାହା ସବୁ କହୁଛି ମୋ କଥାକୁ ଟିକିଏ ମନ ଦେଇ ବୁଝିବାକୁ ଚେଷ୍ଟା କର । ଆସ...ମୁଁ ତମକୁ ଆମନ୍ତ୍ରଣ କରୁଛି । ମୋ ନିକଟକୁ ଆସି ଝରକାବାଟେ ମୋର ସେହି ମନୋରମ ଉଦ୍ୟାନକୁ ଗୁହିଁ ଦେଖିବାକୁ ଚେଷ୍ଟା କର । ତେବେ ଯାଇ ତମେ ବୁଝିବ ଯେ ତମେ ଯାହା କରୁଛ, ଯାହା ପଢ଼ୁଛ କି ଲୋକେ ତମ ବିଷୟରେ ଯାହାସବୁ କହୁଛନ୍ତି ସେସବୁ କେତେ ନିରର୍ଥକ । ସେଥିପାଇଁ ତମକୁ ସତ୍ୟର ସନ୍ଧାନରେ ବାହାରି, ସତ୍ୟର ଆବାସରେ ପହଞ୍ଚିବା ଲାଗି ତମ ନିଜ ମନରେ ଏକାନ୍ତ ଆଗ୍ରହ ସୃଷ୍ଟି କରିବାକୁ ହେବ ।...ମୁଁ ଗୃହେଁ ତମେ ପ୍ରତ୍ୟେକେ ଆସି ତାହାକୁ ପ୍ରତ୍ୟକ୍ଷ ଭାବରେ ଦେଖିବ, ସ୍ୱୟଂ ଅନୁଭବ କରିବ...କହିବ ନାହିଁ ଯେ 'ଆପଣ ଆମଠାରୁ କେତେ ଅଲଗା—ଆପଣ ଯେ ଉଚ୍ଚ ପାହାଡ଼ର ଶିଖରରେ ଉପନୀତ—ଆପଣ ଜଣେ ଅତୀନ୍ଦ୍ରିୟବାଦୀ । ଏମିତି ସବୁ ବଡ଼ ବଡ଼ କଥା କହି ତମେ ମୋର ଏଇ ସତ୍ୟ ଉପରେ ପରଦା ଢାଙ୍କି ଦେଉଛ । ଅବଶ୍ୟ ଏହାର ଅର୍ଥ ନୁହଁ ଯେ ତମେ ସବୁ ନିଜର ପ୍ରକୃତି, ବିଚାରଧାରା ବଦଳାଇ ଦେବ, ବା ଯାହା ତମ ବିବେକ ଉଚିତ ବୋଲି କହୁନାହିଁ ସେଭଳି କିଛି କରି ବସିବ । କିନ୍ତୁ ତମ ଭିତରୁ କିଏ କେହି ଜଣେ ହେଲେ କହି ପାରିବ ଯେ ସେ ସୁଖୀ ? କେହି ଜଣେ ହେଲେ କହି ପାରିବ ଯେ ସେ ଅନ୍ତରର ଆସ୍ୱାଦନା ଲାଭ କରିଛି ?...ମୁଁ କିନ୍ତୁ ରହିଛି ତମ ସମସ୍ତଙ୍କ ପାଇଁ--ଯୋଉମାନେ ପ୍ରକୃତରେ ଭଲପାଇ ଜାଣିଛନ୍ତି, ଯୋଉମାନେ ଯାତନା ଭୋଗୁଛନ୍ତି, ସେ ସମସ୍ତଙ୍କ ପାଇଁ ମୁଁ ରହିଛି । ତମେ ଯଦି ସେ ପଥର ପଥିକ ହେବ ତେବେ ତମେମାନେ ହେବ ମୋର ସହଯାତ୍ରୀ ।...ମୁଁ ଯେହେତୁ ପ୍ରକୃତରେ ଭଲପାଏ, ମୁଁ ଗୃହେଁ ତମେମାନେ ବି ମୋରି ପରି ଭଲ ପାଇବ । ମୁଁ ଯେହେତୁ ନିଜେ ଅନୁଭବ କରିପାରିଛି, ତେଣୁ ମୁଁ ଗୃହେଁ ଯେ ତମେମାନେ ବି ଠିକ୍ ସେହିଭଳି ଅନୁଭବ କରିବ । ମୁଁ ଯେମିତି ପ୍ରତିଟି ବସ୍ତୁକୁ ଆପଣାର କରିପାରିଛି, ମୁଁ ଗୃହେଁ ଯେ ତମେମାନେ ବି ଠିକ୍ ତାହା କରିବ । ମୁଁ ଯେପରି ସବୁକଥାକୁ ଯତ୍ନରେ ସମ୍ଭାଳି ରଖୁଛି ତମେ ବି

ସେମିତି ସମ୍ମାନ ରଖିବ । ଆଉ ଜାଣିରଖ, ତାହା ହିଁ ହେଉଛି ଉପଯୁକ୍ତ ଜୀବନ—ଜୀବନରେ ଲାଭ କରି ଭଳି ଏକମାତ୍ର 'ପରମ ଆନନ୍ଦ' ।"

କୃଷ୍ଣମୂର୍ତ୍ତିଙ୍କର ଏହି ଭାଷଣ ଶୁଣିବା ପରେ ଶ୍ରୋତାମାନଙ୍କ ମଧ୍ୟରେ ଏକ ତୀବ୍ର ଉନ୍ମାଦନା ଖେଳି ଯାଇଥିଲା । ସେମାନେ ପ୍ରତ୍ୟେକେ କୃଷ୍ଣମୂର୍ତ୍ତିଙ୍କ ବାଣୀରେ ଅନୁଭବ କରିଥିଲେ ସ୍ୱୟଂ ମହାମୁନୀ ମୈତ୍ରେୟଙ୍କର ନିଜସ୍ୱ ବାଣୀ । କିନ୍ତୁ ଏକମାତ୍ର ଡ୍ରେଜିଉଡ଼ ଯେ କି ଏ ବିଷୟରେ ସମ୍ପୂର୍ଣ୍ଣ ପ୍ରତିକୂଳଜନକ ମନ୍ତବ୍ୟ ଦେଇଥିଲେ । କୃଷ୍ଣମୂର୍ତ୍ତିଙ୍କଠାରେ ଯେ ମହାମୁନୀ ପ୍ରକଟିତ ହେଉଛନ୍ତି ଏକଥା ବିଶ୍ୱାସ କରିବାକୁ ସେ ଆଦୌ ପ୍ରସ୍ତୁତ ନ ଥିଲେ । ଓଲଟି ଓମେନ କ୍ୟାମ୍ପ ଚାଲିଥିବାବେଳେ ତାଙ୍କ ମନକୁ ବାରମ୍ବାର ସନ୍ଦେହ ଆସିଲା ଯେ କୃଷ୍ଣମୂର୍ତ୍ତି ଏକ ମନ୍ଦଶକ୍ତିର ବଶବର୍ତ୍ତୀ ହୋଇ ପଡ଼ିବା ଫଳରେ ତାଙ୍କ ଭାଷଣରେ ଏଭଳି ପରିବର୍ତ୍ତନ ଦେଖାଦେଉଛି । ଆଉ ସେ ଚୁପ୍ ହୋଇ ରହିପାରିଲେ ନାହିଁ । ସେଇଦିନ ଯାଇ ଆନି ବେସାନ୍ତଙ୍କୁ ଏକାନ୍ତରେ ନିଜର ଆଶଙ୍କା ଜଣାଇଲେ ଓ ଖୁବ୍ ଶୀଘ୍ର ଏହାର ପ୍ରତିକାର କରିବାକୁ ଅନୁରୋଧ କଲେ । ମାତ୍ର ଡ୍ରେଜିଉଡ଼ଙ୍କର କଥାଗୁଡ଼ାକ ଆନି ବେସାନ୍ତଙ୍କୁ ପ୍ରଭାବିତ କରିପାରିଲା ନାହିଁ । କୃଷ୍ଣମୂର୍ତ୍ତିଙ୍କଠାରେ ସେ ଯେଉଁ ଅବର୍ଣ୍ଣନୀୟ ମହିମାର ସାକ୍ଷାତ ପ୍ରମାଣ ପାଇଥିଲେ ସେଥିରେ ଆଉ ତାଙ୍କର କୌଣସି ସନ୍ଦେହ ବା ଦ୍ୱିଧାର ଅବକାଶ ନ ଥିଲା । ମାତ୍ର ଡ୍ରେଜିଉଡ଼ ଥିଲେ ନିଜ ଜିଦରେ ଅଟଳ । ତେଣୁ ସେଇ କ୍ୟାମ୍ପରେ ଯୋଗଦେଇଥିବା ତାଙ୍କର ଅଳ୍ପ କେତେଜଣ ଅନୁଚରଙ୍କ ଜରିଆରେ ସେ ପ୍ରଚାର ଆରମ୍ଭ କରିଦେଲେ ଯେ ଜଣେ ଅତି ଭୟଙ୍କର ଗୁଣିଆ କୃଷ୍ଣମୂର୍ତ୍ତିଙ୍କୁ ନିଜ କବଳକୁ ଆଣି ତାଙ୍କର ମାଧ୍ୟମରେ ନିଜର ମନ୍ଦ ଉଦ୍ଦେଶ୍ୟ ହାସଲ କରିବାରେ ଲାଗିଛି ।

ଡ୍ରେଜିଉଡ଼ଙ୍କ ଏ ପ୍ରକାର ବିକୃତ ଓ କୃଷ୍ଣମୂର୍ତ୍ତିଙ୍କ ପ୍ରତି ପ୍ରତିକୂଳ ପରିପୂର୍ଣ୍ଣତା ସତ୍ତ୍ୱେ କ୍ୟାମ୍ପରେ ତାଙ୍କୁ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରାଯାଉଥିଲା ଏବଂ ଅନେକ ସମୟରେ ତାଙ୍କୁ ଶ୍ରୋତାଗଣଙ୍କ ଉଦ୍ଦେଶ୍ୟରେ

ଭାଷଣ ଦେବାକୁ ସୁଯୋଗ ମଧ୍ୟ ଦିଆଯାଉଥିଲା । ଏମିତି ଦିନେ ଶିଷ୍ୟ-ସଦସ୍ୟମାନଙ୍କ ଗହଣରେ ଭାଷଣ ଦେଉଥିବା ସମୟରେ କ୍ରିଷ୍ଣମୂର୍ତ୍ତି ଅଜ୍ଞାନକ ସଭା ଗୃହକୁ ପଶି ଆସିଲେ । ଗୃହ ଭିତରେ କିଛି ସମୟ ରହି ସେ ଭାଷଣ ଶୁଣିଲେ । ତା'ପରେ ହଠାତ୍ ଉଠିପଡ଼ି ଝଡ଼ ପରି ସେଠାରୁ ବାହାରି ଚାଲିଗଲେ । ମନେ ହେଲା ଯେମିତି ସେହି ଭାଷଣକୁ ସେ ଆଉ ସହ୍ୟ କରି ପାରିଲେ ନାହିଁ । ତହିଁ ଆରଦିନ ସନ୍ଧ୍ୟାରେ କ୍ୟାମ୍ପର ସାନ୍ଧ୍ୟ ସମାବେଶରେ ଏକ କରୁଣ, ହୃଦୟସ୍ପର୍ଶୀ ଭାଷଣ ଦେଇ ଉପସ୍ଥିତ ଶ୍ରୋତାମଣ୍ଡଳୀକୁ ଘୋର ଉଦ୍‌ବିଗ୍ନତାର ସହିତ ସେ କହିଲେ — 'ମୋର ଏ ହୃଦୟକୁ ତୁମେ ଛଡ଼େଇ ନେଇଯାଇପାର, ତା'କୁ ଖଣ୍ଡ ଖଣ୍ଡ କରି କାଟି ଖାଇପାର, ମୋର ରୁଧିର ପାନକରି ତମର ତୃଷା ମେଣ୍ଟାଇପାର— ତହିଁରେ ମୁଁ ଏତେ ଟିକିଏ ବି ଦୁଃଖ କରିବି ନାହିଁ । କାରଣ ମୋ' ନିକଟରେ ଯେ ଏତେ — ଏତେ ଅଧିକ ରହିଛି···ଆଉ ତମମାନଙ୍କ ପାଖରେ ଆହା, କିଛି ହେଲେ ନାହିଁ ।'

ଜୁଲାଇ ୨୯ ତାରିଖରେ ଓମେନର କ୍ୟାମ୍ପ ଶେଷ ହେଲା । କ୍ରିଷ୍ଣମୂର୍ତ୍ତି, ଆନି ବେସାନ୍ତ, ରାଜଗୋପାଲ ଓ ରୋଜାଲିଣ୍ଡ ପ୍ରଭୃତି ଆମେରିକା ଗସ୍ତରେ ବାହାରି ଅଗଷ୍ଟ ମାସରେ ନିଉୟର୍କରେ ପହଞ୍ଚିଲେ । ଆନି ବେସାନ୍ତ ସେତେବେଳକୁ ଥିଓସଫିକାଲ ସୋସାଇଟିର ଆଭ୍ୟନ୍ତରୀଣ କନ୍ଦଳରେ ଏତେ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ ଯେ ସେ ସ୍ଥିରକଲେ ଏଣିକି ସୋସାଇଟିର ସମସ୍ତ ଦାୟିତ୍ୱରୁ ନିଜକୁ ମୁକ୍ତ କରିନେଇ କେବଳ କ୍ରିଷ୍ଣମୂର୍ତ୍ତିଙ୍କ ସହ ବୁଲି ବୁଲି ତାଙ୍କର କଥା ଶୁଣିବେ । ହେଲେ ତାଙ୍କର ଏ ନିଷ୍ପତ୍ତିକୁ ଲେଡ଼ବିଟରି ପସନ୍ଦ ତ କଲେ ନାହିଁ ଓଲଟି ମହାଗୁରୁମାନଙ୍କ ପରିକଳ୍ପିତ ଥିଓସଫିକାଲ ସୋସାଇଟିରେ ଆନି ବେସାନ୍ତଙ୍କ ଆତ୍ମତ୍ୟାଗର ଭୂମିକାକୁ ସ୍ମରଣ କରାଇଦେଇ ତାଙ୍କୁ ସେଭଳି ନିଷ୍ପତ୍ତିରୁ ଓହରିଯିବା ଲାଗି ଅନୁରୋଧ ଜଣାଇଲେ । ଶେଷକୁ ଲେଡ଼ବିଟରଙ୍କ କଥା ହିଁ ରହିଲା ।

ଇଆଡ଼େ କ୍ରିଷ୍ଣମୂର୍ତ୍ତି ନିଉୟର୍କରେ ପାଦ ଦେଉ ଦେଉ ତାଙ୍କୁ ନେଇ ସାରା ଆମେରିକାରେ ନାନା ରକମ ଗୁଞ୍ଜରଣ ଆରମ୍ଭ ହୋଇଗଲା ।

ତାଙ୍କ ମାଧ୍ୟମରେ ମହାମୂନୀ ପ୍ରକଟିତ ହେଉଥିବା ସମ୍ବାଦ ସେତେବେଳକୁ ଚ୍ଚରିଆଡ଼େ ବ୍ୟାପି ଯାଇଥିଲା । ତେଣୁ ସେ ପହଞ୍ଚୁ ପହଞ୍ଚୁ ତାଙ୍କର ସାକ୍ଷାତକାର ନେବାପାଇଁ ସମ୍ବାଦ-ଦାତାମାନେ ଆସି ଘେରିଗଲେ । ତହିଁ ପରଦିନ ଆମେରିକାର ସମ୍ବାଦପତ୍ରଗୁଡ଼ିକ କୃଷ୍ଣମୂର୍ତ୍ତିଙ୍କ ଫଟୋ ଓ ସମ୍ବାଦରେ ହିଁ ଭରିଗଲା । ସେଥିମଧ୍ୟରୁ କେତେକ ସମ୍ବାଦ ପତ୍ରରେ ତାଙ୍କୁ ବିଦ୍ରୁପ କରି ଲେଖା ହୋଇଥିଲା, କେତେକରେ ମଜା ଦେଖିବା ପାଇଁ ଆନି ବେସାନ୍ତଙ୍କ ନାମରେ ଥଟ୍ଟା କରି ଲେଖା ହୋଇଥିଲା । ଏପରିକି କେତେକ ପତ୍ରକାର କୃଷ୍ଣମୂର୍ତ୍ତିଙ୍କୁ ରୋଜାଲିଣ୍ଡ, ହେଲେନ୍ ପ୍ରଭୃତିଙ୍କ ସହିତ ଯୋଡ଼ି ପ୍ରେମ ଓ ବିବାହ ନେଇ କେତେକ ଅପ୍ରୀତିକର ସମ୍ବାଦ ଛାପିବାକୁ ଦ୍ୱିଧା ମଧ୍ୟ କରି ନଥିଲେ । ସେମାନେ ତାଙ୍କୁ ତାଙ୍କର ବ୍ୟକ୍ତିଗତ ଜୀବନ, ଯୌନତା, ବିବାହ ଆଦି ନେଇ ଅନେକ ପ୍ରକାର ପ୍ରଶ୍ନ ପଚ୍ଚରିଥିଲେ । ସେମାନଙ୍କ ପ୍ରଶ୍ନବାଣର ସମ୍ମୁଖୀନ ହୋଇ କୃଷ୍ଣମୂର୍ତ୍ତି ଅତି ଶାନ୍ତ ଭାବରେ ଜବାବ ଦେଇଥିଲେ, "ଲୋକମାନେ ଆପଣା ନିଃସଙ୍ଗତା ଦୂର କରିବାକୁ ବିବାହ କରିଥାନ୍ତି...ମାତ୍ର ମୁଁ ତ' କେବେହେଲେ ନିଜକୁ ନିଃସଙ୍ଗ ମନେ କରି ନାହିଁ...ମୋ' ପାଖରେ ଏଭଳି କିଛି ରହିଛି ଯାହା କି ତମେ କେବେହେଲେ ମୋ'ଠାରୁ ଛଡ଼େଇ ନେଇପାରିବ ନାହିଁ ।"

ଆମେରିକା ରହଣି କାଳରେ କୃଷ୍ଣମୂର୍ତ୍ତି ନିଉୟର୍କ ଓ ଶିକାଗୋଠାରେ କେତେକ ଗୁରୁତ୍ୱପୂର୍ଣ୍ଣ ଭାଷଣ ସଭା ଓ ପ୍ରେସ କନ-ଫରେନସ୍‌ରେ ଯୋଗଦେଇ ପ୍ରେସ୍ ସାମ୍ବାଦିକ ତଥା ଜନସାଧାରଣଙ୍କୁ ଅତିମାତ୍ରାରେ ପ୍ରଭାବିତ କରି ପାରିଥିଲେ । ଯଦିଓ ଲାଜକୁଳା ସ୍ୱଭାବଟା ସେପର୍ଯ୍ୟନ୍ତ ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ହୋଇ ରହିଥିଲା ତଥାପି ସେ ଅସୀମ ଧୈର୍ଯ୍ୟ ଓ ହୃଦୟଙ୍ଗମତାର ସହ ପ୍ରଶ୍ନକର୍ତ୍ତାମାନଙ୍କର ସବୁତକ ପ୍ରଶ୍ନର ଉତ୍ତର ଦେଇଥିଲେ । ସେତିକବେଳେ ଥରେ ନିଉୟର୍କଠାରେ ତାଙ୍କୁ ଏକ ସମୟରେ ଚ୍ଛଳିଶଜଣ ପତ୍ରକାର ଏକ ପ୍ରେସ୍ କନଫରେନସ୍‌ରେ ଭେଟିଥିବା ଏକ ଉଲ୍ଲେଖନୀୟ ଘଟଣା ।

ଆମେରିକା ଗସ୍ତ ଶେଷକରି ୧୯୨୬ ଅକ୍ଟୋବର ମାସରେ କୃଷ୍ଣମୂର୍ତ୍ତି ଆନି ବେସାନ୍ତଙ୍କ ସହିତ ଓହାଇ ଯାତ୍ରାକଲେ । ନିତ୍ୟଙ୍କ ମୃତ୍ୟୁ ପରେ ସେ ପ୍ରଥମ ଥର ପାଇଁ ଓହାଇ ଫେରୁଥିଲେ । ଓହାଇ ଆର୍ଯ୍ୟ ବିହାରରେ ପଶୁ ପଶୁ ନିତ୍ୟଙ୍କ ସ୍ମୃତି ତାଙ୍କ ମନରେ ପୁଣି ସତେଜ ହୋଇ ଉଠିଲା । ସେଇଠି ନିତ୍ୟଙ୍କୁ ମୃତ୍ୟୁଶଯ୍ୟାରେ ଛାଡ଼ି ସେ କିଭଳି ଘରିତ ଚାଲି ଯାଇଥିଲେ, ସେ ସବୁ ଗୋଟି ଗୋଟି ହୋଇ ତାଙ୍କର ମନେ ପଡ଼ିଗଲା । ଆର୍ଯ୍ୟ ବିହାରରେ ପହଞ୍ଚିବାର ଦୁଇଦିନ ପରେ ସେଇ କଥା ବର୍ଣ୍ଣନା କରି ସେ ଏମିଲିଙ୍କୁ ଲେଖିଛନ୍ତି — "ନିତ୍ୟ ବିନା ଏବେ ମୁଁ ଏଇଠି ଏକୁଟିଆ ରହୁଛି···ପ୍ରଥମେ ଯେତେବେଳେ ମୁଁ ଆସି ଘର ଭିତରେ ପଶିଗଲି ହଠାତ୍ ଆଖି ଆଗରେ ଦେଖିଲି ନିତ୍ୟକୁ । ତା'ର ପାର୍ଥିବ ଉପସ୍ଥିତିକୁ ମୁଁ ଅତି ସ୍ପଷ୍ଟ ଭାବରେ ଅନୁଭବ କରିବାକୁ ଲାଗିଲି । ତା'ପରେ ଯେଉଁ ବଖରାଟିରେ ସେ ଅସୁସ୍ଥ ହୋଇ ପଡ଼ି ରହିଥିଲା ଓ ଯେଉଁଠାରୁ ସେ ଚିରଦିନ ଲାଗି ବିଦାୟ ନେଇ ଚାଲିଗଲା, ସେଇ ବଖରା ଭିତରେ ପଶିବା ମାତ୍ରକେ ମୋର ଏ ଶରୀର ବିଳାପ କରି ଉଠିଲା । ସତରେ, ଏ ଶରୀର କେଡ଼େ ଅଦ୍ଭୁତ ! ଯଦିଓ ମୁଁ ଏଥିରେ ଭାଙ୍ଗିପଡ଼ି ନ ଥିଲି ମୋ' ଶରୀରଟା କିନ୍ତୁ ଅତି ମାତ୍ରାରେ ଟିଣକି ଉଠିଥିଲା ।"

ଓହାଇଠାରେ କୃଷ୍ଣମୂର୍ତ୍ତିଙ୍କ ସହିତ ଅଧିକରୁ ଅଧିକ ସମୟ କଟାଇବା ଦ୍ୱାରା ଆନି ବେସାନ୍ତ ଦିନକୁ ଦିନ ଅନୁଭବ କରିବାକୁ ଲାଗିଲେ ଯେ କୃଷ୍ଣମୂର୍ତ୍ତିଙ୍କଠାରେ ମହାମୁନି ମୈତ୍ରେୟ ସମୟେ ସମୟେ ପ୍ରକଟିତ ହେବା ପରିବର୍ତ୍ତେ 'ତାଙ୍କ' ଚେତନାକୁ ସମ୍ପୂର୍ଣ୍ଣ ଭାବରେ କୃଷ୍ଣମୂର୍ତ୍ତିଙ୍କ ଚେତନା ସହ ମିଶାଇ ଦେଇଛନ୍ତି । ଫଳରେ କୃଷ୍ଣମୂର୍ତ୍ତିଙ୍କର ଭାବନା, ଚିନ୍ତା ଓ ବକ୍ତବ୍ୟ — ସବୁଗୁଡ଼ାକ ବାସ୍ତବରେ ସ୍ୱୟଂ ମହାମୁନିଙ୍କର ଚେତନାରୁ ହିଁ ନିଃସୃତ । ଏହି ମର୍ମରେ ଗୋଟିଏ ଚିଠି ସେ ଦିନେ ଅରୁଣ୍ଡେଲଙ୍କୁ ଲେଖି ଜଣାଇଥିଲେ ଯେ, 'ଜେ. କେ. ଏଠାରେ ପ୍ରତି ମୁହୂର୍ତ୍ତରେ ବଦଳିବାରେ ଲାଗିଛନ୍ତି । କିନ୍ତୁ ସେ ଯେ କ୍ରମଶଃ ନିଜ ଭିତରୁ ବାହାରି ଯାଉଛନ୍ତି ଓ ମହାମୁନି ତାଙ୍କ ଶରୀରରେ ପ୍ରବେଶ

କରୁଛନ୍ତି, ସେ କଥା ନୁହେଁ — ବରଂ ସେ ତାହାଙ୍କର ଚେତନା ମିଶି ଏକାକାର ହୋଇ ଯାଇଛି ।'

ଏହାର କିଛୁଦିନ ପରେ ପୁଣିଥରେ ୧୯୨୭ ମସିହା ଜାନୁଆରି ମାସ ୧୪ ତାରିଖରେ ଓହାଇର 'ଆସୋସିଏଟେଡ୍ ପ୍ରେସ ଅଫ୍ ଆମେରିକା'ର ଗୋଟିଏ କାର୍ଯ୍ୟକ୍ରମରେ ଭାଷଣ ଦେଇ ଆନି ବେସାନ୍ତ ପୁଣି କହିଥିଲେ ଯେ — 'ସେହି ଦିବ୍ୟ ଐଶ୍ୱରୀୟ ଶକ୍ତି ପୁନର୍ବାର ଏକ ମାନବ-କାୟାରେ ପ୍ରକଟିତ ହୋଇଛି ଏବଂ ସେହି ମାନବ — କୃଷ୍ଣମୂର୍ତ୍ତି ବାସ୍ତବ ଦୃଷ୍ଟିକୋଣରୁ ସବୁ ଦିଗରେ ନିଖୁଣ, ତ୍ରୁଟି ବର୍ଜିତ···ହଁ, ଜଗଦ୍‌ଗୁରୁ ବର୍ତ୍ତମାନ ଏଇଠାରେ ହିଁ ବିଦ୍ୟମାନ ।' କୃଷ୍ଣମୂର୍ତ୍ତିଙ୍କର ଏହି ପରିବର୍ତ୍ତନ ବିଷୟରେ କେବଳ ଯେ ଆନି ବେସାନ୍ତ ସଚେତନ ଥିଲେ ତାହା ନୁହେଁ; ସ୍ୱୟଂ କୃଷ୍ଣମୂର୍ତ୍ତି ମଧ୍ୟ ଏଥି ନେଇ ସମ୍ପୂର୍ଣ୍ଣ ସଜାଗ ଥିଲେ । ସେତିକିବେଳେ ସେ ଲେଡ଼ବିଟରଙ୍କ ନିକଟକୁ ଲେଖିଥିବା ଏକ ଚିଠିରୁ ତା'ର ପ୍ରମାଣ ମିଳେ । ଚିଠିରେ ସେ ଲେଖିଥିଲେ — "ମୁଁ ଦୃଢ଼ ନିଶ୍ଚିତତାର ସହିତ କହିପାରେ ଯେ ମୁଁ ସେହି ଅନନ୍ୟ ପ୍ରଭୁଙ୍କର ଚେତନା ସହିତ ମିଶି ଏକାକାର ହୋଇଯାଇଛି ଏବଂ 'ସେ' ହିଁ ମତେ ପୂର୍ଣ୍ଣତା ପ୍ରଦାନ କରିବେ । ମୁଁ ସ୍ପଷ୍ଟ ଅନୁଭବ କରିପାରୁଛି ଯେ ମୋ' ଜୀବନ ପାନ ବର୍ତ୍ତମାନ ଆକଣ୍ଠ ପୂର୍ଣ୍ଣ । ଅଚିରେ ଏହା ଉଚ୍ଛୁଳାଇ ବହିଯିବ । ମତେ କେବଳ ସେହି ସମୟ ପର୍ଯ୍ୟନ୍ତ ଧୀର ଭାବରେ, ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ପଡ଼ିବ···ମାନବ ଜାତିକୁ ଅଖଣ୍ଡ ଆନନ୍ଦ ପ୍ରଦାନ କରିବା ଲାଗି ମୁଁ ବ୍ୟଗ୍ର, ଓ ମୁଁ ଜାଣେ, ମୁଁ ଏହା ନିଶ୍ଚୟ କରି ପାରିବି ।"

## 'ଗୁରୁ କ'ଣ ଅନାବଶ୍ୟକ ?'

ଓହାଇର ଶାନ୍ତ ସ୍ନିଗ୍ଧ ପରିବେଶ, ତା'ର ମନମତାଣିଆ ପ୍ରାକୃତିକ ଶୋଭା, ଦୂର ପର୍ବତମାଳାର ପାଦଯାଏ ଘନ ହୋଇ ଲମ୍ବିଥିବା ଗାଢ଼ ସବୁଜ ପାଇନ ବଣ କୃଷ୍ଣମୂର୍ତ୍ତିଙ୍କ ଅନ୍ତରରେ ସେ ଜାଗାଟି ପ୍ରତି

ଏକ ଦୁର୍ବଳତା ସୃଷ୍ଟି କରିଥିଲା । ଆଉ ଖାସ୍ ସେହି କାରଣରୁ ହିଁ ସେଠାରେ ଗୋଟିଏ ଶିକ୍ଷାନୁଷ୍ଠାନ ଖୋଲିବା ଲାଗି ତାଙ୍କ ମନରେ ବହୁ ଦିନରୁ ଏକ ଅଭିଳାଷ ରହିଥିଲା । ଏବେ ଆନି ବେସାନ୍ତଙ୍କ ଦୟାରୁ ସେହି ଅଭିଳାଷଟି ପୂର୍ଣ୍ଣ ହେବାକୁ ବସିଲା । କ୍ରିଷ୍ଣମୂର୍ତ୍ତିଙ୍କ ସ୍କୁଲ ଉଦ୍ଦେଶ୍ୟରେ ଆନି ବେସାନ୍ତ ପ୍ରଥମେ ଓହାଇ ଉପତ୍ୟକାର ଉପର-ମୁଣ୍ଡରେ ପ୍ରାୟ ସାଢ଼େ ଚାରି ଶହ ଏକର ଜମି କିଣିଦେଲେ । ତା'ପରେ ତଳ ମୁଣ୍ଡରେ ଆଉ ଅଢ଼େଇ ଶହ ଏକର ଜମି କିଣିବା ଉଦ୍ଦେଶ୍ୟରେ ଅର୍ଥ ସଂଗ୍ରହ କରିବା ଲାଗି ସେ 'ହାପି ଭ୍ୟାଲି ଫାଉଣ୍ଡେସନ୍' ନାମରେ ଏକ ଟ୍ରଷ୍ଟ ଗଠନ କଲେ । ଏହି ତଳ ଜମିରେ ଭାବୀ-ଜଗତଗୁରୁଙ୍କ ନାମରେ ଏକ ପୁଣ୍ୟସ୍ଥଳୀ ତଥା ଓମେନ ଭଳିଆରେ ବାର୍ଷିକ କ୍ୟାମ୍ପ ବସାଇବା ଲାଗି ପୀଠଟିଏ ଗଢ଼ିବା ଆନି ବେସାନ୍ତଙ୍କର ଉଦ୍ଦେଶ୍ୟ ଥିଲା । ତୁହୁଁ ତୁହୁଁ ଆନି ବେସାନ୍ତଙ୍କ ଉଦ୍ୟମରେ ବିଭିନ୍ନ ସୂତ୍ରରୁ ଦାନ ଆକାରରେ ବିପୁଳ ପରିମାଣରେ ଅର୍ଥ ଆସି ଟ୍ରଷ୍ଟ ନାମରେ ଜମା ହେବାକୁ ଆରମ୍ଭ କଲା ।

ସେଥରକ ଆନି ବେସାନ୍ତ ଓ କ୍ରିଷ୍ଣମୂର୍ତ୍ତି ଓହାଇରେ ପୂରା ଛଅ ମାସ କଟାଇଥିଲେ । ଆନି ବେସାନ୍ତଙ୍କ ବୟସ ସେତେବେଳକୁ ଅଶୀ ପାଖାପାଖି । ଦେଶ ବିଦେଶ ଗସ୍ତ ଓ ପରିଶ୍ରମ ଫଳରେ ଶରୀର ତାଙ୍କର ଅତ୍ୟନ୍ତ କ୍ଷୀଣ, ଦୁର୍ବଳ ହୋଇପଡ଼ିଥିଲା । କେବଳ ସେତିକି ନୁହେଁ, ଥିଓସଫିକାଲ ସୋସାଇଟିର ଭିତରି ବିବାଦ ତାଙ୍କ ମନର ସବୁତକ ଧୈର୍ଯ୍ୟ, ବଳ ମଧ୍ୟ ଲୁଟାଇ ଦେଇଥିଲା । ତେଣୁ ଓହାଇରେ ସମ୍ପୂର୍ଣ୍ଣ ବିଶ୍ରାମର ସେହି ମାସ କେତୋଟି ତାଙ୍କୁ ଯେ କେବଳ ଶାରୀରିକ ଶକ୍ତି ଫେରି ପାଇବାରେ ସାହାଯ୍ୟ କରିଥିଲା ତା' ନୁହେଁ, କ୍ରିଷ୍ଣମୂର୍ତ୍ତିଙ୍କର ସଂସର୍ଗ ଲାଭ କରି ସେ ନିଜର ପୂର୍ବ ମାନସିକ ଦମ୍ଭ ଅନେକ ପରିମାଣରେ ଫେରି ପାଇଥିଲେ । ଶେଷରେ ୧୯୨୭ ମସିହା ମେ' ମାସରେ କ୍ରିଷ୍ଣମୂର୍ତ୍ତିଙ୍କୁ ସାଥିରେ ଧରି ସେ ଲଣ୍ଡନ ଆସିଲେ । ସେଠାରେ କେତେକ ଭାଷଣ କାର୍ଯ୍ୟକ୍ରମରେ ଯୋଗ ଦେଇ ହିଁ ହଲାଣ୍ଡ ଯାତ୍ରା କଲେ । କିନ୍ତୁ ସେଠାରେ ସିଧା ନ ପହଞ୍ଚି ବାଟରେ ସେମାନେ କିଛି ଦିନ କାସଲ ଏଆରଡ଼ର ଠାରେ ବିତାଇଥିଲେ । ସେଇଠି

'ଥିଲାବେଳେ ସେମାନେ ଶୁଣିବାକୁ ପାଇଲେ ଯେ ଅରୁଣ୍ଡେଲ ଲଣ୍ଡନ-ଠାରେ ଏକ ଜରୁରୀ 'ଷ୍ଟାର' ସଭା ଡକାଇ ସଭ୍ୟମାନଙ୍କ ଆଗରେ ଘୋଷଣା କରିଛନ୍ତି ଯେ କୃଷ୍ଣମୂର୍ତ୍ତିଙ୍କର ଚେତନା ମହାତ୍ମା ମୈତ୍ରେୟଙ୍କର ଚେତନାରେ ଲୀନ ହୋଇଯିବା କଥା ଯେ ଆନି ବେସାନ୍ତ କହି ହେଉଛନ୍ତି ତାହା ପୁରାପୁରି ଭୁଲ ଓ ବିଭ୍ରାନ୍ତିକର । ଅରୁଣ୍ଡେଲଙ୍କର ଏ ପ୍ରକାର ଦାୟିତ୍ୱହୀନ ମନ୍ତବ୍ୟ ଆନି ବେସାନ୍ତଙ୍କୁ ଯେତିକି ଆଚମ୍ବିତ କଲା ସେତିକି ଆଘାତ ମଧ୍ୟ ଦେଲା । କିନ୍ତୁ କୃଷ୍ଣମୂର୍ତ୍ତି ଏଥିରେ ତିଳେ ହେଲେ ବିଚଳିତ ହେଲେ ନାହିଁ । ଅରୁଣ୍ଡେଲଙ୍କର ଏ ପ୍ରକାର କଟୁ ମନ୍ତବ୍ୟ ତାଙ୍କୁ ଦୁଃଖ ଦେବା ତ' ଦୂରର କଥା ତାଙ୍କ ମନରେ ଗାରେ ସୁଦ୍ଧା ଦାଗ ଟାଣିପାରି ନ ଥିଲା ।

ଏଆରଡ଼ରେ ଠାରେ ମିଳିତ 'ଷ୍ଟାର' ସଦସ୍ୟଙ୍କ ନିକଟରେ କୃଷ୍ଣମୂର୍ତ୍ତି ଯେଉଁ ଭାଷଣ ଦେଇଥିଲେ ସେଥିରେ ପ୍ରଥମ କରି ଏକ ବୈପ୍ଳବିକ ମନୋଭାବର ସୂଚନା ମିଳିଥିଲା । ଉପସ୍ଥିତ ସଭ୍ୟମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରି ସେ କହିଥିଲେ ଯେ କୌଣସି ଗୁରୁ ବା ମହାଗୁରୁ କେବେହେଲେ ମଣିଷକୁ ମୁକ୍ତିର ପଥ ପ୍ରଦର୍ଶନ କରିପାରିବେ ନାହିଁ । ସତ୍ୟ ନିକଟରେ ପହଞ୍ଚିବା ଲାଗି କୌଣସି ମହାତ୍ମା, କୌଣସି ମହାପୁରୁଷ ବା ଅନୁଷ୍ଠାନ—ଏପରିକି ଥିଓସଫିକାଲ ସୋସାଇଟି ମଧ୍ୟ ବାଟ ଦେଖାଇ ପାରିବ ନାହିଁ । କେବଳ ଗୋଟିଏ ମାତ୍ର ଜିନିଷ, ଯାହା କି ମଣିଷର ସହାୟକ ହେବ ତାହା ହେଲା ମୁକ୍ତି, ସ୍ୱାଧୀନତା । ତାଙ୍କ ବକ୍ତବ୍ୟରେ ସେ କହିଥିଲେ, "ମୋର ସାରା ଜୀବନ ଧରି ଓ ବିଶେଷ ଭାବରେ ଏଇ ଗଲା କେତେ ମାସ ଧରି ମୁଁ ମୁକ୍ତ ହେବାକୁ ସଂଗ୍ରାମ କରି ଆସିଛି । ମୋର ସାଙ୍ଗ ସାଥୀ, ପୋଥିପତ୍ର, ଚିହ୍ନା ଜଣା ପ୍ରତ୍ୟେକଙ୍କ-ଠାରୁ ମୁକ୍ତ ହେବାକୁ ଚେଷ୍ଟା କରିଛି । ତମେମାନେ ବି ସେହି ମୁକ୍ତି ଲାଗି ସଂଗ୍ରାମ କରିବା ଆବଶ୍ୟକ । ତମ ପ୍ରତ୍ୟେକଙ୍କ ଅନ୍ତରରେ ଏକ ଅହରହ ଆଲୋଡ଼ନ ଚାଲୁ ରହିବା ଆବଶ୍ୟକ । ଏଥିପାଇଁ ତମେ ଅବିରାମ ଭାବରେ ନିଜ ସମ୍ମୁଖରେ ଗୋଟିଏ ଦର୍ପଣ ଧରି ରଖ—ଆଉ ଯେଉଁ ମୁହୂର୍ତ୍ତରେ ତମେ ନିଜର ସେହି ପ୍ରତିବିମ୍ବରେ ଏଭଳି କିଛି

ଦେଖିବ ଯାହାକି ତମେ ନିଜ ପାଇଁ ଗଢ଼ିଥିବା ଆଦର୍ଶଠାରୁ ଭିନ୍ନ, ତେବେ ସେହି ମୁହୂର୍ତ୍ତରେ ତାକୁ ବଦଳାଇ ଦିଅ × × × ମଠର ତମର ଗୁରୁ ବୋଲି ମାନି ନିଅ ନାହିଁ···ତମ ଭିତରୁ କେତେକ ଗୃହିଁ ବସିଛ ଯେ ମୁଁ ତମକୁ ଏଭଳି ଏକ ପଦାର୍ଥ ଦେଇଦେବ ଯାହାକୁ କି ଗିଳିଦେଲେ ତମେମାନେ ଏକାବେଳକେ ମୁକ୍ତି ପାଇଯିବ, ତମକୁ ଏଭଳି ଏକ ମନ୍ତ୍ର ଶିଖାଇ ଦେବ ଯାହାକି ତମକୁ ଅଚିରେ ମୁକ୍ତି ପଥରେ ବାହିନେବ । କିନ୍ତୁ ତାହା ସତ୍ୟ ନୁହେଁ । ମୁଁ ତମପାଇଁ କେବଳ ଏକ ଦ୍ୱାର ଭଳି ଛିଡ଼ା ହୋଇ ରହିବି; କିନ୍ତୁ ଦ୍ୱାରର ସେପଟେ ଥିବା ମୁକ୍ତିଠାରେ ପହଞ୍ଚିବାକୁ ହେଲେ ତମ ନିଜକୁ ସେ ଦ୍ୱାର ଅତିକ୍ରମ କରି ଯିବାପାଇଁ ପଡ଼ିବ···ଅନ୍ୟ ଜଣେ ବ୍ୟକ୍ତି ତମକୁ କେବେହେଲେ ମୁକ୍ତିର ସନ୍ଧାନ ଦେଇ ପାରିବ ନାହିଁ । ତା'କୁ ତମେ ନିଜେ ନିଜ ଅନ୍ତର ଭିତରେ ହିଁ ଆବିଷ୍କାର କରିବାକୁ ପଡ଼ିବ । ମୁଁ ନିଜେ ଯେହେତୁ ତାହା ଲାଭ କରିପାରିଛି ତେଣୁ ତମକୁ ତା'ର ମାର୍ଗ ଦେଖାଇ ଦେଇ ପାରିବ ।"

କ୍ରିଷ୍ଣମୂର୍ତ୍ତିଙ୍କର ଉପରୋକ୍ତ ଭାଷଣ ସେ ଦିନ ଶ୍ରୋତା ମଣ୍ଡଳୀରେ ଚହଳ ପକାଇ ଦେଇଥିଲା କାରଣ ସେମାନଙ୍କ ଭିତରୁ ଅନେକେ ମନେ ମନେ କ୍ରିଷ୍ଣମୂର୍ତ୍ତିଙ୍କୁ ଆପଣାର ଗୁରୁ ବୋଲି ମନେ କରି ତାଙ୍କର ସାହାଯ୍ୟରେ ମହାଗୁରୁଙ୍କ ଠାରେ ପହଞ୍ଚିବାର ଆଶା ନେଇ କେତେ କେତେ ରଙ୍ଗୀନ ସ୍ୱପ୍ନ ଦେଖୁଥିଲେ । ମାତ୍ର କ୍ରିଷ୍ଣମୂର୍ତ୍ତିଙ୍କର ଏଭଳି ଚିନ୍ତାଧାରା ଏବେ ସେମାନଙ୍କ ପ୍ରାଣରେ ନୈରାଶ୍ୟର ପର୍ଦ୍ଦା ଟାଣିଦେଲା । ଭାରାକ୍ରାନ୍ତ ମନ ଓ ଅନିଶ୍ଚିତ ଭବିଷ୍ୟତକୁ ସାଥିରେ ଧରି ସେମାନେ ଏଆରଡ଼ର ଠାରୁ ଓମେନ 'ଷ୍ଟାର' କ୍ୟାମ୍ପରେ ଯୋଗଦେବାକୁ ଯାତ୍ରା କଲେ । ପ୍ରକୃତରେ କହିବାକୁ ଗଲେ ସେମାନଙ୍କ ଭିତରୁ ସବୁଠୁ ବଡ଼ ଧକ୍‌କା ପାଇଥିଲେ ଥିଓସଫିକାଲ ସୋସାଇଟିର ଗୁପ୍ତବିଦ୍ୟା ସଂଘର ସଭ୍ୟମାନେ । ଆଜିଯାକେ ସେମାନେ ଆପଣାର ଆଧ୍ୟାତ୍ମିକ ପରାକାଷ୍ଠା ନେଇ ଖୁବ୍ ଆତ୍ମତୃପ୍ତ ଥିଲେ ଓ ନିଜ ନିଜକୁ ସର୍ବସାଧାରଣ ଠାରୁ କେଇ ପାହାଚ ଉପରେ ବୋଲି ମନେ କରୁଥିଲେ । ଏବେ ସେମାନଙ୍କ ବିଶ୍ୱାସରେ ଯେଉଁ ଗଭୀର କ୍ଷତଟି ହେଲା ତାକୁ ସେମାନେ ନା ସହ୍ୟ କରି ପାରିଲେ ନା

ପୂର୍ବର ସକଳ ବିଶ୍ୱାସ, ପରମ୍ପରାକୁ ଏଡ଼ିଦେଇ କ୍ରିଷ୍ଣମୂର୍ତ୍ତିଙ୍କ କଥାର ସତ୍ୟତାକୁ ଉପଲବ୍‌ଧି କରିପାରିଲେ !

ସେ ବର୍ଷ ଓମେନ କ୍ୟାମ୍ପରେ ଲୋକମାନଙ୍କ ମନରେ କେତୋଟି ଗୁରୁତର ପ୍ରଶ୍ନ ବାରମ୍ବାର ଉଠିଥିଲା — 'କ୍ରିଷ୍ଣମୂର୍ତ୍ତି କ'ଣ ସତରେ ଆଧ୍ୟାତ୍ମିକ ପଥର ମହାଗୁରୁମାନଙ୍କୁ ଅନାବଶ୍ୟକ ମନେ କରନ୍ତି ?' 'ସେ ନିଜେ କଣ ମହାଗୁରୁ ଓ ତାଙ୍କର ତଳ ଉପର ଅନ୍ୟାନ୍ୟ ଗୁରୁମାନଙ୍କୁ ସ୍ୱୀକାର କରନ୍ତି ନାହିଁ ?' ସେମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କ୍ରିଷ୍ଣମୂର୍ତ୍ତି ଦିନେ ଖୋଲଖୋଲି ଭାବରେ ଏ ବିଷୟରେ ଆଲୋଚନା କରି କହିଲେ—

"ମୁଁ ଯେତେବେଳେ ଗୋଟିଏ ପିଲା ଥିଲି, ମୁରଲୀଧାରୀ କୃଷ୍ଣଙ୍କୁ ଆଖି ଆଗରେ ଦେଖୁଥିଲି — ହିନ୍ଦୁ ପୁରାଣରେ ତାଙ୍କର ଯେଉଁଭଳି ରୂପ ଚିତ୍ର କରାଯାଏ, ଅବିକଳ ସେହିଭଳି । କାରଣ, ମୋର ମାଆ ଥିଲେ କୃଷ୍ଣଭକ୍ତ । ··· ତା'ପରେ ମୁଁ ବଡ଼ ହେଲି, ଲେଡ଼ବିଟର ଓ ଥିଓସଫିକାଲ ସୋସାଇଟିର ସଂସ୍ପର୍ଶରେ ଆସିଲି । ସେତେବେଳେ ମୁଁ ମହାଗୁରୁ କେ. ଏଚ.ଙ୍କୁ (କୁତ୍‌ହୁମି) ଦେଖିବାକୁ ଲାଗିଲି — ସେମାନେ ମତେ ତାଙ୍କୁ ଯେଉଁ ରୂପରେ ଦେଖାଇଲେ, ଠିକ୍ ସେହି ରୂପରେ ମୁଁ ତାଙ୍କୁ ଦେଖିଲି । ଆଉ ସେମାନଙ୍କ ଦୃଷ୍ଟିରେ ତାହା ହିଁ ଥିଲା ବାସ୍ତବ । ସେତେବେଳେ ମହାଗୁରୁ କେ. ଏଚ. ମୋର ଶେଷ ଲକ୍ଷ୍ୟ ଥିଲେ । ତା'ପରେ ଆହୁରି ବଡ଼ ହେବା ପରେ ମୁଁ ମହାମୁନି ମୈତ୍ରେୟଙ୍କୁ ଦେଖିବାକୁ ଆରମ୍ଭ କଲି । ଏଇଟା ଦୁଇବର୍ଷ ତଳର କଥା, ଆଉ ତାଙ୍କର ଯେଉଁ ରୂପ ମତେ ଦେଖାଇ ଦିଆଗଲା ମୁଁ ଅହରହ ସେହି ରୂପ ହିଁ ଦର୍ଶନ କରିବାକୁ ଲାଗିଲି···ଏବେ ଗଲା କିଛିଦିନ ଧରି ମୁଁ ଭଗବାନ ବୁଦ୍ଧଙ୍କୁ ଦେଖିବାରେ ଲାଗିଛି । ମୁଁ ଯେ ତାଙ୍କର ସାନ୍ନିଧ୍ୟ ଲାଭ କରିବାକୁ ସମର୍ଥ ହୋଇଛି, ଏହା ମୋ' ପାଇଁ ପରମ ଆନନ୍ଦ ଓ ଗୌରବର କଥା । ତମେମାନେ ମତେ ପଚାରୁଛ ଯେ 'ପ୍ରିୟତମ କହିଲେ ମୁଁ କାହାକୁ ବୁଝାଉଛି ?···ମୋ' ପାଇଁ ସେ ହେଉଛନ୍ତି ଏ ପ୍ରତ୍ୟେକେ — ଶ୍ରୀକୃଷ୍ଣ, ମହାଗୁରୁ କୁତହୁମି, ମହାମୁନି ମୈତ୍ରେୟ, ବୁଦ୍ଧ, ପୁଣି ତା'

ବାହାରେ ଆଡୁର କେତେ ଜଣ । ତମେ ତାଙ୍କୁ ଯେଉଁ ନାମରେ ଡାକ ନା କାହିଁକି ସେଥିରେ କୌଣସି ପ୍ରଭେଦ ଆସିବ ନାହିଁ···ତମ ସମସ୍ତଙ୍କ ମନରେ ଆଜି ଗୋଟିଏ ପ୍ରଶ୍ନ ଧନ୍ଦ ହେଉଛି ଯେ ସତରେ କଣ ଜଗତଗୁରୁ ବୋଲି ଏଭଳି କେହି ଜଣେ ଅଛନ୍ତି ଯେ କି ଏହି କ୍ରିଷ୍ଣମୂର୍ତ୍ତିଙ୍କ ଶରୀରରେ ପ୍ରକଟିତ ହୋଇଛନ୍ତି ? କିନ୍ତୁ ସେ ପ୍ରଶ୍ନ ନେଇ ପୃଥିବୀରେ କେହି କେବେହେଲେ ଚିନ୍ତିତ ହେବେ ନାହିଁ । ମୁଁ ମୋର 'ପ୍ରିୟତମ'ଙ୍କ ବିଷୟରେ କହିବାବେଳେ ତମେମାନେ ମୋର ଏଇ କଥାକୁ ଅତି ସହଜରେ ହୃଦୟଙ୍ଗମ କରି ପାରିବ । ଯଦିଓ ଏହାକୁ ଏପରି ଭାବରେ ବୁଝାଇ କହିବା ନିହାତି ଦୁଃଖର ବିଷୟ, ତଥାପି ତମମାନଙ୍କ ସକାଶେ ମୁଁ ଆଜି ସବୁକଥା ଖୋଲି କହୁଛି । ··· ମୋର 'ପ୍ରିୟତମ' ହେଉଛନ୍ତି ସେହି ଅନନ୍ତ, ବିସ୍ତୃତ ଆକାଶ, ଫୁଲ, ପ୍ରତ୍ୟେକ ମାନବ···ମୁଁ ଯେ କହୁଛି ମୋର 'ପ୍ରିୟତମ'ଙ୍କ ସହିତ ମିଶି ମୁଁ ଏକାକାର ହୋଇଯାଇଛି, ତା'ର କାରଣ ହେଉଛି ମୁଁ ଠିକ୍ ସେହିଭଳି ଅନୁଭବ କରୁଛି, ସ୍ପଷ୍ଟ ବୁଝି ପାରୁଛି । ମୁଁ ଏଯାକେ ଯାହା ଖୋଜି ହେଉଥିଲି ତାହା ଏବେ ଲାଭ କରି ପାରିଛି । ମୁଁ 'ତାଙ୍କର' ଭିତରେ ଲୀନ ହୋଇଯାଇଛି ଓ ଆମ ଭିତରେ କୌଣସି ପାର୍ଥକ୍ୟ ନାହିଁ, କୌଣସି ବିଚ୍ଛେଦ ନାହିଁ । ମୋର ବ୍ୟକ୍ତିଗତ ଭାବନା, ଚିନ୍ତା, କାମନା, ଆକାଂକ୍ଷା ଆଦି ଯେତେ ଯାହା ସବୁ ନିଃଶେଷ ହୋଇଯାଇଛି ।"

କ୍ରିଷ୍ଣମୂର୍ତ୍ତିଙ୍କର ଏହି ଭାଷଣ ସେଦିନ ଉପସ୍ଥିତ ଅନେକ ବ୍ୟକ୍ତିଙ୍କ ମନରୁ କ୍ରିଷ୍ଣମୂର୍ତ୍ତିଙ୍କୁ ନେଇ ରହିଥିବା ନାନା ସନ୍ଦେହ ଦୂର କରି ଦେଇଥିଲି । ଏପରି କି ଆନି ବେସାନ୍ତ ମଧ୍ୟ କ୍ରିଷ୍ଣମୂର୍ତ୍ତିଙ୍କର ଅଭିନବ ଦର୍ଶନ ବିଷୟରେ ଦିନକୁ ଦିନ ସଚେତନ ହେଉଥିଲେ । ମହାଗୁରୁଙ୍କ ନିର୍ଦ୍ଦେଶରେ କ୍ରିଷ୍ଣମୂର୍ତ୍ତିଙ୍କୁ ଆବିଷ୍କାର କରି, ତାଙ୍କୁ ଏକ ଥିଓସଫିକାଲ ଭିତ୍ତିଭୂମିରେ ଗଢ଼ି, ଜଗତଗୁରୁ ଭାବରେ ଉପସ୍ଥାପିତ କରାଇବାବେଳେ ସେ କେବେ କଳ୍ପନା କରି ନ ଥିଲେ ଯେ ଏହି ଭାବୀ-ଜଗତଗୁରୁଙ୍କର ଦର୍ଶନ ଓ ସନ୍ଦେଶ ଚିରାଚରିତ ଓ ଥିଓସଫିର ଦର୍ଶନ ଠାରୁ ଏତେ ଭିନ୍ନ ଓ ବିପ୍ଳବାତ୍ମକ ହେବ । ଯଦିଓ ସେ କ୍ରିଷ୍ଣମୂର୍ତ୍ତିଙ୍କ ଠାରେ ମହାମୁନୀଙ୍କର

ସମ୍ପୂର୍ଣ୍ଣ ଆବର୍ତ୍ତିବ ଘଟିଛି ବୋଲି ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରୁଥିଲେ ଓ କ୍ରିଷ୍ଣମୂର୍ତ୍ତି ଯାହା କହୁଛନ୍ତି ତାହା ହିଁ ଏକମାତ୍ର ସତ୍ୟ ବୋଲି ଜାଣୁଥିଲେ ତଥାପି ଏ ପରିପକ୍ୱ ବୟସରେ, ଏତେଦିନଯାଏ ବଢ଼ାଇ ଆଣିଥିବା ବିଶ୍ୱାସ ଓ ଆନୁଷ୍ଠାନିକ ପରମ୍ପରାର ଖୋଳରୁ ବାହାରି ଆସିବା ତାଙ୍କ ପକ୍ଷରେ ଏତେ ସହଜ କଥା ନ ଥିଲା ।

୧୯୨୭ ଡିସେମ୍ବର ମାସରେ ଆଡ଼ାୟାର ଥିଓସଫିକାଲ କନଭେନସନରେ ଯଥାରୀତି ଆନି ବେସାନ୍ତ, ଲେଡ଼ବିଟର, କ୍ରିଷ୍ଣମୂର୍ତ୍ତି ଓ ଅରୁଣ୍ଡେଲ ପ୍ରଭୃତି ଯୋଗ ଦେଲେ । ଅରୁଣ୍ଡେଲ ସେ ପର୍ଯ୍ୟନ୍ତ କ୍ରିଷ୍ଣମୂର୍ତ୍ତିଙ୍କ ଠାରେ ମହାମୁନିଙ୍କ ଚେତନା ଉଦ୍ରେକ ହେବା କଥାଟା ହସି ଉଡ଼ାଇ ଦେଉଥିଲେ । କ୍ରିଷ୍ଣମୂର୍ତ୍ତିଙ୍କ ଠାରେ ଯେ କୌଣସି ପରିବର୍ତ୍ତନ ଘଟିଛି ବା ତାଙ୍କ ଦର୍ଶନରେ ଏକ ଆମୂଳ ରୂପାନ୍ତର ଦେଖା ଦେଇଛି ଏ କଥା ଅରୁଣ୍ଡେଲଙ୍କୁ ଯେତେ ବୁଝାଇଲେ ବି ସେ ମାନିବାକୁ ପ୍ରସ୍ତୁତ ନ ଥିଲେ । ଆଡ଼ାୟାର ସମ୍ମିଳନୀ ଓ ତା' ପରେ 'ଷ୍ଟାର' ସମ୍ମିଳନୀ ଶେଷ ହେବା ପରେ କ୍ରିଷ୍ଣମୂର୍ତ୍ତି ଜଣେ ପୁରୁଣା ସହଯୋଗୀ—ଯଦୁନନ୍ଦନ ପ୍ରସାଦଙ୍କ ସହିତ ଓହାଇ ଫେରି ଆସିଲେ । ଆନି ବେସାନ୍ତ ଓ ଅରୁଣ୍ଡେଲ ସେମାନଙ୍କ ସହିତ ନ ଆସି ଭାରତରେ ରହିଲେ । ୧୯୨୮ ମସିହା ମେ' ମାସରେ ଓହାଇ ଠାରେ ଆନି ବେସାନ୍ତ କିଣିଥିବା ଜମିରେ ପ୍ରଥମ ଥର ପାଇଁ ଷ୍ଟାର କ୍ୟାମ୍ପ ଅନୁଷ୍ଠିତ ହେଲା । ସେତେବେଳକୁ 'ହାପି ଭାଲି ଫାଉଣ୍ଡେସନ ଟ୍ରଷ୍ଟ'ର ଉଦ୍ୟମରେ ସେ ସ୍ଥାନଟିର ରୂପରେଖ ଅନେକ ବଦଳି ଯାଇଥିଲା । ନୂଆ ନୂଆ ବୃକ୍ଷମାନ ରୋପଣ କରାଯାଇଥିଲା ଏବଂ କ୍ୟାମ୍ପ ଲାଗି ଉଦ୍ଦିଷ୍ଟ ସମଗ୍ର ଜାଗାଟିକୁ ପରିଷ୍କାର ପରିଚ୍ଛନ୍ନ କରି ରଖାଯାଇଥିଲା । ପୂରା ନଅଦିନ ଧରି ଚାଲିଥିବା ଏହି କ୍ୟାମ୍ପରେ ହଜାରେ ପାଖା ପାଖି ସଭ୍ୟ ଯୋଗ ଦେଇଥିଲେ ଏବଂ ପ୍ରତିଦିନ ସକାଳେ ହତା ଭିତରେ ଥିବା ଏକ ପ୍ରଶସ୍ତ ଓକ୍‌ବୃକ୍ଷର ବାଟିକାରେ କ୍ରିଷ୍ଣମୂର୍ତ୍ତି ସେମାନଙ୍କ ଉଦ୍ଦେଶ୍ୟରେ ଭାଷଣ ଦେଉଥିଲେ । ( ସେହିଦିନ ଠାରୁ ଓହାଇର 'ଓକ୍-ବାଟିକା'ଟି କ୍ରିଷ୍ଣମୂର୍ତ୍ତିଙ୍କ ସହିତ ସଂଶ୍ଳିଷ୍ଟ ସ୍ଥାନଗୁଡ଼ିକ ମଧ୍ୟରେ ଏକ ପବିତ୍ର ସ୍ଥାନ ରୂପେ ପରିଗଣିତ ହୋଇ ଆସୁଛି । )

ପୂର୍ବଥର ଭଳି ଏଥର ମଧ୍ୟ ସମାବେଶରେ କ୍ରିଷ୍ଣମୂର୍ତ୍ତି ବାରବାର ଜୋର ଦେଇ କହୁଥିଲେ ଯେ ମୁକ୍ତି, ଆନନ୍ଦ ଅଥବା ସତ୍ୟ ନିକଟରେ ପହଞ୍ଚିବା ଲାଗି ପଥ ପ୍ରଦର୍ଶକ ବା ଧାର୍ମିକ କ୍ରିୟାନୁଷ୍ଠାନର କୌଣସି ପ୍ରୟୋଜନ ନାହିଁ । ଏପରି କି ଏଥିପାଇଁ ଥିଓସଫିକାଲ ସୋସାଇଟିର ଆଶ୍ରା ଗ୍ରହଣ କରିବା ମଧ୍ୟ ଦରକାର ନାହିଁ ବୋଲି ସେ ଖୋଲାଖୋଲି ପ୍ରକାଶ କରିଥିଲେ । ଆଉ ଖାସ୍ ସେହି କାରଣରୁ 'ଅର୍ଡ଼ର ଅଫ୍ ଦି ଷ୍ଟାର' ଭଳି ଏକ ଆଧ୍ୟାତ୍ମିକ ଅନୁଷ୍ଠାନର ଅନାବଶ୍ୟକତା ଦର୍ଶାଇ ସେ କହିଥିଲେ—"ମୁଁ ଚାହେଁ ନାହିଁ ଯେ ମୋର କେହି ଶିଷ୍ୟ ରହନ୍ତୁ ବା ମତେ କେହି ଅନୁସରଣ କରନ୍ତୁ × × × କୌଣସି ବ୍ୟକ୍ତି ଆପଣାକୁ ମୋର ଶିଷ୍ୟ ବୋଲି କହିଲେ ମୋ ଭିତରଟା କମ୍ପି ଉଠୁଛି । ବରଂ ତମେସବୁ ସେହି ପରିପକ୍ୱ ଚିନ୍ତାଧାରା ଓ ଅନନ୍ତ ପ୍ରେମରୁ ସୃଷ୍ଟ ହୃଦୟଙ୍ଗମତାକୁ ଅନୁସରଣ କରିବାକୁ ଶିଖ । ତମ ନିଜର ହୃଦ୍‌ବୋଧତାକୁ ହିଁ ଅନୁସରଣ କର ।" ତା'ପରେ ଅନ୍ୟ ଏକ ପ୍ରସଙ୍ଗକ୍ରମେ ସେ ପୁଣି କହିଥିଲେ ଯେ ଅର୍ଡ଼ର ଅଫ୍ ଦି ଷ୍ଟାର ଅନୁଷ୍ଠାନ ଯଦି କେବେହେଲେ ବି ଦାବି କରି ବସେ ଯେ ସତ୍ୟର ସନ୍ଧାନ ଦେବା ଲାଗି ସେଇଟା ହିଁ ଏକମାତ୍ର ସୂତ୍ର ଏବଂ ତା'ରି ମାଧ୍ୟମରେ କେବଳ ଜଣେ ବ୍ୟକ୍ତି ସତ୍ୟର ମହକ ଲାଭ କରିପାରିବ, ତେବେ ସେହି ମୁହୂର୍ତ୍ତରେ ଉକ୍ତ ଅନୁଷ୍ଠାନକୁ ଭାଙ୍ଗିଦେବାକୁ ସେ ତିଳେ ମାତ୍ର ଦ୍ୱିଧା କରିବେ ନାହିଁ । ତାଙ୍କ ଭାଷାରେ, "ମୁଁ ପୁଣି ଥରେ ତମମାନଙ୍କୁ କହି ରଖୁଛି ଯେ ମୋର କେହିହେଲେ ଶିଷ୍ୟ ବା ଅନୁସରଣକାରୀ ନାହାନ୍ତି । ସତ୍ୟଟା କି ପଦାର୍ଥ ଏକଥା ଯଦି ତମେ ପ୍ରକୃତରେ ବୁଝିଥାଅ ଓ କୌଣସି ବ୍ୟକ୍ତିବିଶେଷଙ୍କୁ ଅନୁସରଣ କରୁ ନ ଥାଅ, ତେବେ ତମେ ସ୍ୱୟଂ ସତ୍ୟର ଉପାସକ ହୋଇଯିବ ।··· ସତ୍ୟକୁ ଲାଭ କରିବାର ଏକମାତ୍ର ଉପାୟ ହେଉଛି ବିନା ମାଧ୍ୟମରେ, ପ୍ରତ୍ୟକ୍ଷ ଭାବେ ତା'ର ଉପାସନା କରିବା ।···ମୁଁ ପୁଣି ଥରେ କହି ରଖୁଛି ଯେ ଆଧ୍ୟାତ୍ମିକ ବିକାଶ ଲାଗି ଯୁକ୍ତି, ପରମ୍ପରା ଇତ୍ୟାଦିର ଆଦୌ ଆବଶ୍ୟକତା ନାହିଁ । ସତ୍ୟର ସନ୍ଧାନ ପାଇବାକୁ ହେଲେ ତମକୁ ମନ ଓ ହୃଦୟର ସୀମିତତାରୁ ବାହାରି, ବହୁ ଦୂରକୁ ଯାଇ

ଆବିଷ୍କାର କରିବାକୁ ହେବ ଯେ ସେହି ଅନନ୍ତ ସତ୍ୟ ବାସ୍ତବରେ ତମର ଭିତରେ ହିଁ ରହିଛି ।...ମନୁଷ୍ୟଠାରେ ହୃଦ୍‌ବୋଧତା ଥିଲେ ସମବିକାଶର ଯେ କୌଣସି ସ୍ତରରେ ସେ ମୁକ୍ତି ଲଭ କରିପାରିବ । ଏଥିଲାଗି କୌଣସି ଆଧ୍ୟାତ୍ମିକ ଗୁରୁଙ୍କ ଉପାସନା କରିବାର ଆବଶ୍ୟକତା ନାହିଁ ।...ମୁଁ କେବେହେଲେ କହି ନାହିଁ ଯେ ଈଶ୍ୱର ନାହାନ୍ତି । ମୁଁ କେବଳ ଏତିକ ମାତ୍ର କହୁଛି ଯେ ତମ ଭିତରେ ଯାହା ଆତ୍ମ-ପ୍ରକାଶ କରୁଛି ତାହାହିଁ ଈଶ୍ୱର ।...କିନ୍ତୁ ମୁଁ ଈଶ୍ୱର ଶବ୍ଦଟିକୁ ବ୍ୟବହାର କରିବାକୁ ଯାଉ ନାହିଁ ।...ତା' ପରିବର୍ତ୍ତେ ମୁଁ ତାକୁ ଜୀବନ ଆଖ୍ୟା ଦେଇଛି ।"

କ୍ରିଷ୍ଣମୂର୍ତ୍ତିଙ୍କ ଭାଷଣରେ ସାରବସ୍ତୁ ଓ ବିଶେଷ କରି 'ଅର୍ଡ଼ର ଅଫ୍ ଦି ଷ୍ଟାର' ବିଷୟରେ ସେ ଦେଇଥିବା ମନ୍ତବ୍ୟ ସମଗ୍ର 'ଷ୍ଟାର' ସଭ୍ୟବୃନ୍ଦଙ୍କୁ ଦୋହଲାଇ ଦେଇଥିଲା । ଶୁଣାଯାଏ ଯେ ଆନି ବେସାନ୍ତ ଲଣ୍ଡନ ଠାରେ ଥାଇ ଯେତେବେଳେ ଷ୍ଟାର ଅନୁଷ୍ଠାନକୁ ଭାଙ୍ଗିଦେବା ନେଇ କ୍ରିଷ୍ଣମୂର୍ତ୍ତିଙ୍କର ମନ୍ତବ୍ୟ ବିଷୟରେ ଶୁଣିଲେ, ସେ ଏତେ ଭାଙ୍ଗି ପଡ଼ିଲେ ଯେ ଅନେକ ଦିନ ଧରି ଆଉ ବିଛଣାରୁ ଉଠି ପାରିଲେ ନାହିଁ । ଅସୁମାରି ଆଶା ଓ ସ୍ୱପ୍ନ ନେଇ ସେ ଓ ଲେଡ଼ବିଟର୍ ଗଢ଼ିଥିବା ଷ୍ଟାର ଅନୁଷ୍ଠାନକୁ କ୍ରିଷ୍ଣମୂର୍ତ୍ତି ଯେ ପ୍ରତ୍ୟାଖ୍ୟାନ କରି ଚାଲିଯିବେ ଏକଥା ତାଙ୍କର କଳ୍ପନା ବାହାରେ ଥିଲା । କିନ୍ତୁ ଯେତେ କଷ୍ଟ ହେଲେ ସୁଦ୍ଧା ବାସ୍ତବତାକୁ କେହି ରୋଧି ପାରେ ନାହିଁ । କାହାର ଦୁଃଖ ପାଇବା କି ଆନନ୍ଦ ପାଇବା ସହିତ ତା'ର କୌଣସି ସମ୍ପର୍କ ନଥାଏ । ଏହା ହିଁ ନିୟତିର ବୈଚିତ୍ର୍ୟ !

## 'ସତ୍ୟ ଏକ ପଥହୀନ ସାମ୍ରାଜ୍ୟ'...

ଦିନକୁ ଦିନ କ୍ରିଷ୍ଣମୂର୍ତ୍ତିଙ୍କର ଚିନ୍ତାଧାରା ଓ ବୈପ୍ଳବିକ ଦର୍ଶନକୁ ନେଇ ଥିଓସଫିକାଲ ସୋସାଇଟି ଓ ଷ୍ଟାର ଅନୁଷ୍ଠାନର ସଭ୍ୟମାନଙ୍କ ମଧ୍ୟରେ ନାନା ଆଲୋଚନା, ସମାଲୋଚନା ହେବାରେ ଲାଗିଲା । ସେମାନଙ୍କ ମନର ହତାଶା, ନୈରାଶ୍ୟ ଏବଂ ତିକ୍ତତାକୁ ପ୍ରକାଶ କରି ଏମିଲି ସେହି ସମୟରେ ଷ୍ଟାର ପତ୍ରିକାରେ ଲେଖିଥିଲେ "କେଡ଼େ ବିଚିତ୍ର ସତେ !! ଦୀର୍ଘ ସତର ବର୍ଷ କାଳ ଆମେ ଜଗତଗୁରୁଙ୍କ ଆଗମନର ପଥକୁ ଚାହିଁ ବସିଲୁ, ଅଥଚ ଏବେ 'ସେ' ଆସି ଯାହା କହୁଛନ୍ତି ତାହା ଆମ ଚିରାଚରିତ ଧାରଣା, ଢାଞ୍ଚା ଇତ୍ୟାଦିର ବାହାରେ । ତାଙ୍କର ଏଭଳି କଥାରେ ଆମେ କିଛିଟା ଆଘାତ ପାଇଛୁ ନିଶ୍ଚୟ, ଆମ ମନରେ ଭୟ ବି ଉଠିଛି । ସେ କହୁଛନ୍ତି ଯେ ମାନସିକ କ୍ଷେତ୍ରରେ ହେଉ କି ଆବେଗ ଉଚ୍ଛ୍ୱାସର ସ୍ତରରେ ହେଉ—ଆମେ ଠିକ୍ ପୂର୍ବଭଳି ଚାଲିବୁ ! କିନ୍ତୁ ଏଇଟା ତ ତାଙ୍କଠାରୁ ଆମେ କଦାପି ଆଶା କରି ନ ଥିଲୁ ।"

ଏମିଲିଙ୍କର ଉକ୍ତ ପ୍ରବନ୍ଧର ଅନ୍ତରାଳରେ ଅବଶ୍ୟ ଅନେକ ସତ୍ୟତା ଥିଲା । କ୍ରିଷ୍ଣମୂର୍ତ୍ତିଙ୍କର ଜୀବନ-ଦର୍ଶନ ସମଗ୍ର ଥିଓସଫିକାଲ ସୋସାଇଟିରେ କ୍ରମଶଃ ଏକ ଆଭ୍ୟନ୍ତରୀଣ ପରିବର୍ତ୍ତନ ଆଣିବାରେ ଲାଗିଥିଲା । ସୋସାଇଟିର ସଭ୍ୟମାନେ ଯଦିଓ ସେଯାକେ କ୍ରିଷ୍ଣମୂର୍ତ୍ତିଙ୍କ କଥାର ଗୁରୁତ୍ୱକୁ ହୃଦୟଙ୍ଗମ କରିପାରୁ ନ ଥିଲେ ଏବଂ ପୁରୁଣା ସଙ୍ଘ-ଜୀବନର ଗତାନୁଗତିକ ପଦ୍ଧତିରୁ ଆପଣାକୁ ମୁକ୍ତ କରିପାରୁ ନଥିଲେ, ତଥାପି ଜୀବନର ମୂଲ୍ୟବୋଧ ଓ ସତ୍ୟର ପରିଭାଷା ନେଇ ମନରେ ତାଙ୍କର ପ୍ରଥମଥର ଗୋଟାଏ ବଡ଼ ପ୍ରଶ୍ନବାଚୀ ଉଠୁଥିଲା, ଆଉ ସେହି ଆଲୋଡ଼ନର ଚରମ ନିଦର୍ଶନ ମିଳିଥିଲା ଆନି ବେସାନ୍ତଙ୍କ-ଠାରେ । ୧୯୨୮ ମସିହା ଅକ୍ଟୋବର ମାସରେ ଅପ୍ରତ୍ୟାଶିତ ଏକ ସାହସିକ ପଦକ୍ଷେପ ନେଇ ଆନି ବେସାନ୍ତ ସାରା ପୃଥିବୀରେ ଥିଓସଫିକାଲ ସୋସାଇଟି 'ଏସୋଟେରିକ ସେକ୍‌ସନ'କୁ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ

କରିଦେଲେ । ତାଙ୍କର ଯୁକ୍ତି ଥିଲା ଯେ ଜଗତଗୁରୁଙ୍କର ଆଗମନ ପରେ ଅନ୍ୟାନ୍ୟ ଆଧ୍ୟାତ୍ମିକ ଅନୁଷ୍ଠାନର ଆଉ କୌଣସି ପ୍ରୟୋଜନ ନାହିଁ— 'ସେ' ହିଁ ଏକମାତ୍ର ବାର୍ତ୍ତାବହ, ଶିକ୍ଷାଦାନ କରିବାକୁ 'ସେ' ହିଁ ଏକମାତ୍ର ଯୋଗ୍ୟ । ଆନି ବେସାନ୍ତଙ୍କର ଏଭଳି ନିଷ୍ପତ୍ତିରେ କୃଷ୍ଣମୂର୍ତ୍ତି ସବୁଠାରୁ ବେଶି ଖୁସି ହୋଇଥିଲେ । କିନ୍ତୁ ହେଲେ କ'ଣ ହେବ, ଥିଓସଫିକାଲ ସୋସାଇଟିର କେତେକ ବଡ଼ମୁଣ୍ଡିଆ ସଭ୍ୟ ଏଥିରେ ଘୋର ଆପତ୍ତି କଲେ । ମହାମନୀଷୀ ବ୍ଲାଭାସ୍କିଙ୍କର ଉଦ୍ୟୋଗରେ ପ୍ରତିଷ୍ଠିତ ଏଭଳି ଏକ ମହାନ, ପବିତ୍ର ଅନୁଷ୍ଠାନକୁ ଆନି ବେସାନ୍ତ ହଠାତ୍ ବନ୍ଦ କରିଦେବାଟା ସେମାନେ ବରଦାସ୍ତ କରିପାରିଲେ ନାହିଁ । ତେଣୁ ସେମାନଙ୍କର ବାରମ୍ବାର ଅନୁରୋଧ ଓ ଚାପରେ ପଡ଼ି କିଛି ମାସ ପରେ ଆନି ବେସାନ୍ତ ପୁଣି ଥରେ ଏସୋଟେରିକ୍ ସେକ୍ସନ୍ ଖୋଲା କରିବାକୁ ବାଧ୍ୟ ହେଲେ ଏବଂ ପୂର୍ବଭଳି ତାହାର କାର୍ଯ୍ୟରେ ମନ ଦେବାକୁ ଲାଗିଲେ । ଲେଡ୍‌ବିଟର୍ ତାଙ୍କୁ ବୁଝାଇଦେଲେ ଯେ କୃଷ୍ଣମୂର୍ତ୍ତି ଅନୁଷ୍ଠାନ ବା ପରମ୍ପରାରୁ ବାହାରି ଆସିବାକୁ ଯେଉଁ ଜନସାଧାରଣଙ୍କୁ ଉପଦେଶ ଦେଉଛନ୍ତି, ଥିଓସଫିଷ୍ଟ-ମାନେ ସେହି ସର୍ବସାଧାରଣ ଠାରୁ ଊର୍ଦ୍ଧ୍ୱରେ । କୃଷ୍ଣମୂର୍ତ୍ତି ଜଗତଗୁରୁ ହେଲେ ସୁଦ୍ଧା ତାଙ୍କର ଶିକ୍ଷା ସବୁ ଲୋକଙ୍କ ପାଇଁ ସମାନ ଭାବରେ ପ୍ରଯୁଜ୍ୟ ନୁହେଁ । ଲେଡ୍‌ବିଟର୍‌ଙ୍କ କଥାରେ ଆନି ବେସାନ୍ତ ସହମତ ହୋଇଗଲେ । ଥିଓସଫିକାଲ୍ ସୋସାଇଟିର ଦୁଇଜଣ ବଡ଼ ନେତାଙ୍କର ଏଭଳି ଚିନ୍ତାଧାରା ବହୁ ଥିଓସଫିଷ୍ଟଙ୍କ ମନରେ ଏକ ନୂତନ ଆଶାର ସଞ୍ଚାର କଲା । ଖୁସି ହୋଇ ସେମାନେ ଥିଓସଫିକାଲ ସୋସାଇଟିର ଆଦର୍ଶରେ ପୂର୍ବ ଭଳି ଜୀବନ ବିତାଇବାରେ ଲାଗିଲେ ଓ ତା' ସଙ୍ଗେ ସଙ୍ଗେ କୃଷ୍ଣମୂର୍ତ୍ତିଙ୍କର ଭାଷଣ ମଧ୍ୟ ଶୁଣିବାରେ ଲାଗିଲେ । ମୋଟ ଉପରେ କହିବାକୁ ଗଲେ ସେମାନେ ଥିଓସଫିର ଶିକ୍ଷା ଓ କୃଷ୍ଣମୂର୍ତ୍ତିଙ୍କର ଦର୍ଶନକୁ ମିଶାଇ ଏକ ନୂତନ ଜୀବନ-ଦର୍ଶନ ଲାଭ କରିବାକୁ ଆଶାୟୀ ହେଲେ । ଦୁଇଟି ଭିତରୁ କେଉଁ ଗୋଟିକୁ ହେଲେ ହାତଛଡ଼ା କରିବାକୁ ସେମାନଙ୍କର ଭୟ ହେଉଥିଲା ।

ଏଭଳି ଏକ ଦ୍ୱନ୍ଦ୍ୱପୂର୍ଣ୍ଣ ବାତାବରଣରେ ୧୯୨୯ ମସିହା ଅଗଷ୍ଟ ମାସ ୨ ତାରିଖ ଦିନ ଆନି ବେସାନ୍ତଙ୍କ ଉପସ୍ଥିତିରେ ଓମେନ କ୍ୟାମ୍ପ ଆରମ୍ଭ ହେଲା । ସେତେବେଳକୁ କୃଷ୍ଣମୂର୍ତ୍ତି ଓ ଥିଓସଫିକାଲ ସୋସାଇଟିର ସଭ୍ୟମାନଙ୍କ ମଧ୍ୟରେ କେଉଁଟା ଠିକ୍ ଓ କେଉଁଟା ଭୁଲ, ତା' ନେଇ କେତେ ଯେ ଚର୍ଚ୍ଚା, ଆଲୋଚନା ହୋଇ ସାରିଥିଲା ତା'ର ଠିକଣା ନାହିଁ । କ୍ୟାମ୍ପରେ କୃଷ୍ଣମୂର୍ତ୍ତି କ'ଣ କହିବେ ଓ ଆନି ବେସାନ୍ତ ସେଥି ପ୍ରତି କିଭଳି ପ୍ରତିକ୍ରିୟା ଦେଖାଇବେ, ଷ୍ଟାର୍ ଅନୁଷ୍ଠାନର ଭବିଷ୍ୟତ କଣ ହେବ, ଇତ୍ୟାଦି ନେଇ ସଭ୍ୟମାନଙ୍କ ଭିତରେ ନାନା ରକମର କଳ୍ପନା ଜଳ୍ପନା ମଧ୍ୟ ଚାଲିଥିଲା । କ୍ୟାମ୍ପର ଦ୍ୱିତୀୟ ଦିନ କୃଷ୍ଣମୂର୍ତ୍ତି ନିଜର ଭାଷଣରେ ସମଗ୍ର ଶ୍ରୋତାମଣ୍ଡଳୀକୁ ସ୍ତମ୍ଭୀଭୂତ କରି ଷ୍ଟାର ଅନୁଷ୍ଠାନକୁ ରଦ୍ଦ କରିଦେବାର ଘୋଷଣା କଲେ । ସଭାରେ ଉପସ୍ଥିତ ତିନି ହଜାର ସଭ୍ୟଙ୍କ ବ୍ୟତୀତ ହଜାର ହଜାର ହଲାଣ୍ଡବାସୀ ସେ ଦିନ ଗଭୀର ଉତ୍ସୁକତାର ସହ କୃଷ୍ଣମୂର୍ତ୍ତିଙ୍କ ଭାଷଣ ଶୁଣିବାକୁ ରେଡ଼ିଓ ପାଖରେ କାନ ପାତି ବସିଥିଲେ । ଏକ ଅଭୂତପୂର୍ବ ଘୋଷଣାରେ ସାରା ଜଗତକୁ ଚମକାଇ ଦେଇ କୃଷ୍ଣମୂର୍ତ୍ତି ସେଦିନ କହିଥିଲେ—

"ଆଜିର ଏହି ସଭାରେ ଆମେ 'ଅର୍ଡ଼ର ଅଫ ଦି ଷ୍ଟାର' ଅନୁଷ୍ଠାନକୁ ଭାଙ୍ଗିଦେବା ପ୍ରସଙ୍ଗରେ କିଛି ଆଲୋଚନା କରିବାକୁ ଯାଉଛୁ । କେତେଜଣ ଏଥିରେ ବିଶେଷ ଆନନ୍ଦିତ ହେବେ ଓ ଆଉ କେତେକ ହୁଏତ ଆଘାତ ପାଇବେ । କିନ୍ତୁ ଏଠାରେ ଆନନ୍ଦ ବା ଆଘାତର ପ୍ରଶ୍ନ ଉଠୁଛି କେଉଁଠି ? ଏପରି ଘଟିବା ତ' ଅପରିହାର୍ଯ୍ୟ ଥିଲା ।……

ମୁଁ ନିଃସନ୍ଦେହରେ କହିପାରେ ଯେ ସତ୍ୟ ହେଉଛି ଏକ ପଥହୀନ ସାମ୍ରାଜ୍ୟ; ତମେ କେହି କେବେହେଲେ କୌଣସି ମାର୍ଗର ଆଶ୍ରୟ ନେଇ ତା' ନିକଟରେ ପହଞ୍ଚି ପାରିବ ନାହିଁ — ଧର୍ମ-ମାର୍ଗ ନୁହେଁ କି ସମ୍ପ୍ରଦାୟର ମାର୍ଗ ନୁହେଁ । ଆଉ ଏକମାତ୍ର ତାହା ହିଁ ହେଉଛି ମୋ' ଜୀବନର ଉଦ୍ଦେଶ୍ୟ । ତାକୁ ହିଁ ମୁଁ ଏକାଗ୍ର, ଏକାନ୍ତ ଭାବରେ ଗ୍ରହଣ କରି ଆସିଛି । ଏହି ସତ୍ୟ ହେଉଛି ଅପରିସୀମ, ସର୍ତ୍ତବିହୀନ ଓ ଅଗମ୍ୟ, ତେଣୁ ଏହାକୁ କେବେହେଲେ ସଂଘବଦ୍ଧ କରିହେବ ନାହିଁ କି ଲୋକ-

ମାନଙ୍କୁ ଏକ ନିର୍ଦ୍ଦିଷ୍ଟ ପଥରେ ପରିଚାଳିତ କରିବା ଲାଗି କୌଣସି ଅନୁଷ୍ଠାନ ଗଢ଼ାଯିବା ଉଚିତ ମଧ୍ୟ ନୁହେଁ । ତୁମେ ଯଦି ଏତିକ ବୁଝିଥାଅ ତେବେ ଦେଖିବ ବିଶ୍ୱାସକୁ ସଙ୍ଘବଦ୍ଧ କରାଇବା କେଡ଼େ ଅବାନ୍ତର କଥାଟାଏ ! ବିଶ୍ୱାସ କଥାଟା ହେଉଛି ଏକାନ୍ତ ବ୍ୟକ୍ତିଗତ, ତେଣୁ ତାହାକୁ ସଙ୍ଘବଦ୍ଧ କରାଇ ହୁଏ ନାହିଁ, କି ସେଭଳି କରିବା ଉଚିତ୍ ମଧ୍ୟ ନୁହେଁ । ଆଉ ଯଦିବା ତାହାକୁ ସଙ୍ଘବଦ୍ଧ କରାଅ, ତେବେ ତାହା ଅଚିରେ ବିନାଶ ପାଇଯିବ, ବୋଲି ବାନ୍ଧିଯିବ । ଫଳରେ ତାହା ଅନ୍ୟମାନଙ୍କ ଉପରେ ଲଦି ଦେବା ଭଳି ଏକ ଧର୍ମମତ, ଧର୍ମଗୋଷ୍ଠୀ ବା ଧର୍ମରେ ପରିଣତ ହେବ । ·····ତେଣୁ ମୋ' ମତରେ 'ଅର୍ଡ଼ର ଅଫ ଦି ଷ୍ଟାର'କୁ ଭାଙ୍ଗିଦେବାର ମୂଳରେ ଏଇଟା ହିଁ ହେଉଛି ପ୍ରଥମ କାରଣ । କିନ୍ତୁ ଏ ସବୁ ସତ୍ତ୍ୱେ ତୁମେମାନେ ସମ୍ଭବତଃ ପୁଣି ନୂଆ ନୂଆ ସଂଗଠନ ଗଢ଼ି ଚାଲିବ ଓ ଏମିତି ପୂର୍ବାପର ସତ୍ୟର ଅନୁସନ୍ଧାନ ଲାଗି ବିଭିନ୍ନ ଅନୁଷ୍ଠାନର ଆଶ୍ରୟ ନେଉଥିବ । ମୁଁ ନିଜେ କୌଣସି ପ୍ରକାର ଆଧ୍ୟାତ୍ମିକ ବା ଧର୍ମ ଅନୁଷ୍ଠାନର ଅନ୍ତର୍ଭୁକ୍ତ ହେବାକୁ ଚାହେଁ ନାହିଁ । ମୁଁ ପୁଣିଥରେ କହି ରଖୁଛି ଯେ କୌଣସି ସଂଗଠନ କେବେ ମଣିଷକୁ ଆଧ୍ୟାତ୍ମିକତା ପ୍ରଦାନ କରିପାରିବ ନାହିଁ । ଯଦି ସେହି ଉଦ୍ଦେଶ୍ୟ ନେଇ ଅନୁଷ୍ଠାନଟିଏ ଗଢ଼ାଯାଏ ତେବେ ତାହା ହେବ ଏକ ଆଶାବାଡ଼ି, ଏକ ଦୁର୍ବଳତା, ଏକ ବନ୍ଧନ ଯାହାକି ଏ ମଣିଷକୁ ଅଥର୍ବ କରି ପକାଇବ, ତା'ର ଅଭିବୃଦ୍ଧିକୁ ବନ୍ଦ କରିଦେବ । ମଣିଷ ଆପେ ଆପେ ପରମ, ସର୍ତ୍ତହୀନ ସତ୍ୟର ଆବିଷ୍କାର କରି ଯେଉଁ ଅନନ୍ୟତା ଲାଭ କରିପାରନ୍ତା ତା'କୁ ରୋଧ କରିଦେବ । 'ଅର୍ଡ଼ର ଅଫ୍ ଦି ଷ୍ଟାର'ର ମୁଖ୍ୟ କର୍ତ୍ତା ହିସାବରେ ଆଜି ଉକ୍ତ ଅନୁଷ୍ଠାନକୁ ରଦ୍ଦ କରିଦେବାର ଏହା ଅନ୍ୟତମ କାରଣ ଅଟେ । ଏଥିରେ କୌଣସି ଚମତ୍କାରିତା ନାହିଁ । ମୁଁ ଚାହେଁ ନାହିଁ ଯେ ମୋର କେହି ଅନୁସରଣକାରୀ ରହିବେ — ନା, ମୁଁ ପ୍ରକୃତରେ ଚାହେଁ ନାହିଁ । ···ତୁମେମାନେ ମୋ' କଥାକୁ ମନଧ୍ୟାନ ଦେଇ ଶୁଣ ବା ନ ଶୁଣ, ସେଥିରେ ମୁଁ ବିଚଳିତ ହେବି ନାହିଁ । ଏ ଜଗତରେ ମୁଁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବାକୁ ଚାହୁଁଛି ଏବଂ ଏକ ଅବିଚ୍ଛିନ୍ନ ଲକ୍ଷ୍ୟ ନେଇ ମୁଁ ତାହା ସମ୍ପନ୍ନ କରିବି । ଯେଉଁ ଏକାନ୍ତ

ମହନୀୟ ଉଦ୍ଦେଶ୍ୟରେ ମୁଁ ନିଜକୁ ଉତ୍ସର୍ଗ କରିବି, ସେହି ଉଦ୍ଦେଶ୍ୟଟି ହେଲା ମାନବକୁ ମୁକ୍ତ କରିବା; କୌଣସି ଏକ ନୂତନ ଧର୍ମ ଗଢ଼ିବା, ନୂତନ ମତବାଦ ବା ନୂତନ ଦର୍ଶନ ସୃଷ୍ଟି କରିବାର ଉଦ୍ଦେଶ୍ୟ ମୋର ନାହିଁ । ତେଣିକି ତମେ ମତେ ପଚାରିବ, ମୁଁ କାହିଁକି ଏମିତି ପୃଥିବୀ ସାରା ଘୁରି ଘୁରି ଭାଷଣ ଦେବାରେ ଲାଗିଛି । ତେବେ ଶୁଣ, ଶିଷ୍ୟ ସଂଗ୍ରହ କରିବା ପାଇଁ ମୁଁ ଏହା କରୁ ନାହିଁ କିମ୍ବା କୌଣସି ବିଶେଷ ଧରଣର ଲୋକଙ୍କୁ ଏକାଠି କରିବାର ଅଭିପ୍ରାୟରେ ଏପରି କାର୍ଯ୍ୟ କରୁନାହିଁ । (ଲୋକମାନେ ଆପଣାକୁ ଅନ୍ୟମାନଙ୍କ ଠାରୁ ଭିନ୍ନ ବୋଲି ଜଣାଇବାକୁ କେତେ ଯେ ଭଲ ପାଆନ୍ତି—ଆଉ ଏମିତି ପ୍ରଭେଦ କାଢ଼ିବାଟା ଯେତେ ହାସ୍ୟାସ୍ପଦ, ଉଦ୍ଭଟ ହେଉଥାଉ ନା କାହିଁକି, ସେଭଳି ଉଦ୍ଭଟତାକୁ ଉତ୍ସାହିତ କରିବାକୁ ମୁଁ ଚାହୁଁ ନାହିଁ ।) ଏ ପୃଥିବୀରେ ବା ଆଧ୍ୟାତ୍ମିକ କ୍ଷେତ୍ରରେ ମୋର କେହି ଶିଷ୍ୟ ବା ପ୍ରଚାରକ ନାହିଁ ।

ଦିନେ ମୋର ସାକ୍ଷାତକାର ନେବା ଉଦ୍ଦେଶ୍ୟରେ ଆସିଥିବା ଜଣେ ସାମ୍ବାଦିକ ହଜାର ହଜାର ସଦସ୍ୟ ଥିବା ଏତେବଡ଼ ଗୋଟିଏ ଅନୁଷ୍ଠାନକୁ ଏପରି ହଠାତ୍ ଭାଙ୍ଗିଦେବା ପ୍ରସଙ୍ଗ ଶୁଣି ଚମତ୍କୃତ ହୋଇ ପଡ଼ିଲେ; ମୋର ଏଭଳି ପଦକ୍ଷେପକୁ ଅତ୍ୟନ୍ତ ମହାନ ଓ ଦୁଃସାହସିକ ବୋଲି ମନେ କଲେ । ପଚାରିଲେ, "କିନ୍ତୁ ଏଣିକି ଆପଣ କରିବେ କ'ଣ ? ବଞ୍ଚିବେ କିପରି ? ଆଉ କେହିହେଲେ ଯେ ଆପଣଙ୍କୁ ଅନୁସରଣ କରିବେ ନାହିଁ — ଆପଣଙ୍କ କଥାକୁ ଆଉ ଶୁଣିବାକୁ ମଧ୍ୟ ଆସିବେ ନାହିଁ ?" ହେଲେ ସେଥିରେ ବା ମୋର କି ଯାଏ ? ଏଇ ସାରା ପୃଥିବୀରେ ଯଦି ମାତ୍ର ପାଞ୍ଚଟି ଲୋକ ମୋ' କଥାକୁ ଶୁଣିବାକୁ ଚାହାନ୍ତି ଓ ଅନନ୍ତର ସନ୍ଧାନରେ ଅଗ୍ରସର ହୁଅନ୍ତି, ତେବେ ତାହା ହିଁ ତ' ଯଥେଷ୍ଟ । କିନ୍ତୁ ତା' ବଦଳରେ ହଜାର ହଜାର ଲୋକ ଥାଇ ସୁଦ୍ଧା ଯଦି ସେମାନେ କିଛି ନ ବୁଝନ୍ତି, ତାଙ୍କର ବଦ୍ଧ-ଧାରଣା ଓ ପୂର୍ବ ବିଶ୍ୱାସରେ ସେମିତି ବୁଡ଼ି ରହନ୍ତି, ନୂତନତ୍ୱକୁ ଉପେକ୍ଷା କରନ୍ତି — ତା'କୁ ସ୍ୱାଗତ ନ କରନ୍ତି ଖାଲି ନିଜର ମୌଳିକତାହୀନ, ନିର୍ବେଦ ସ୍ୱାର୍ଥକୁ ସୁହାଇଲା ଭଳି ତା'କୁ ନେଇ ବ୍ୟକ୍ତ କରନ୍ତି, ତେବେ ତା'ର କି ମୂଲ୍ୟ ଅଛି ଭଲା ? × × ×

ଯେହେତୁ ମୁଁ ସ୍ୱୟଂ ହେଉଛି ମୁକ୍ତ, ସମ୍ପୂର୍ଣ୍ଣ, ଅନନ୍ତ, ଅଖଣ୍ଡ ସତ୍ୟ — କାହାର ଅଂଶବିଶେଷ ନୁହେଁ କି କାହାର ସଞ୍ଚିତ ଗୁଚ୍ଛା ନୁହେଁ, ତେଣୁ ମୁଁ ସେହିମାନଙ୍କୁ ଖୋଜୁଛି ଯେଉଁମାନେ କି ମତେ ବୁଝିବାକୁ ଚେଷ୍ଟା କରିବେ, ନିଜେ ମୁକ୍ତ ହେବାକୁ ଉଦ୍ୟମ କରିବେ, ମତେ ଅନୁସରଣ କରିବେ ନାହିଁ କି ମତେ ନେଇ ଧର୍ମ ସମ୍ପ୍ରଦାୟରେ ପରିଣତ ହେବା ଭଳି ଏକ ପଞ୍ଜୁରୀ ଗଢ଼ି ବସିବେ ନାହିଁ । ସେମାନେ ସକଳ ପ୍ରକାର ଭୟରୁ ମୁକ୍ତ ରହିବା ଆବଶ୍ୟକ — ଧର୍ମର ଭୟ, ମୋକ୍ଷଲାଭର ଭୟ, ଆଧ୍ୟାତ୍ମିକତା, ପ୍ରେମ, ମୃତ୍ୟୁ, ଏପରିକି ଜୀବନର ଭୟରୁ ମଧ୍ୟ ମୁକ୍ତ ରହିବା ଆବଶ୍ୟକ । ......

ବିଗତ ଦୀର୍ଘ ଅଠର ବର୍ଷ ଧରି ତମେମାନେ ଜଗତଗୁରୁଙ୍କ ଆଗମନ ଉଦ୍ଦେଶ୍ୟରେ ନିଜକୁ ପ୍ରସ୍ତୁତ କରିବାରେ ଲାଗିଛ । ଏଇ ଅଠର ବର୍ଷଯାକ ନିଜକୁ ସଂଗଠିତ କରିଛ, ଯିଏ ତମ ମନ ଓ ପ୍ରାଣରେ ନୂତନ ଆନନ୍ଦର ସଞ୍ଚାର କରିବ, ତମ ଜୀବନକୁ ସମୂଳେ ରୂପାନ୍ତରିତ କରିଦେବ ଓ ତମଠାରେ ସମ୍ପୂର୍ଣ୍ଣ ଏକ ନୂତନ ହୃଦବୋଧ ଭରିଦେବ, ତାହାରି ପ୍ରତୀକ୍ଷାରେ ରହିଛ । ତମେ ମନେ କରିଛ ଯେ ସେ ତମକୁ ଜୀବନର ଏକ ଅଭିନବ ସ୍ତରକୁ ଉଠାଇ ନେବ, ଅନ୍ତରରେ ନବୀନ ଉତ୍ସାହ, ଉଦ୍ଦୀପନା ଭରିଦେବ, ତମକୁ ଏକାବେଳକେ ମୁକ୍ତ କରିଦେବ । ହେଲେ, ଏବେ ଦେଖ ପ୍ରକୃତରେ ହୋଇଛି କ'ଣ । ଭାବ, ବିଚାର କରି ଦେଖ — ପୂର୍ବର ସେ ବିଶ୍ୱାସ ତମକୁ କିପରି ଭାବରେ ଅଲଗା କରି ପକାଇଛି । ଏଇ ସାମାନ୍ୟ 'ବ୍ୟାଜ୍'ଟି ଧାରଣ କରିବା ଦ୍ୱାରା ଯେଉଁ ଉପର ଦେଖାଣିଆ ପ୍ରଭେଦଟି ଆସିଯାଇଛି, ସେଥିନେଇ କଥା ନାହିଁ; କାରଣ ତାହା ତ' ନିପଟ ପିଲାଳିଆମି । ଏଇ ଯୋଉ ପ୍ରତ୍ୟେକ ସମାଜ ମିଥ୍ୟା ଉପରେ, ଅନାବଶ୍ୟକତା ଉପରେ ପ୍ରତିଷ୍ଠିତ, ତମେ ସେଥିକୁ କି ଭଳି ଭାବରେ ବିପଦ ହୋଇପାରିଛ, କେଉଁ ହିସାବରେ ତମେ ଏବେ ଅଧିକ ମୁକ୍ତ, ମହତ୍ତର ହେଇପାରିଛ ତାହା ନିଜେ ବିଚାର କରି ଦେଖ । ଏହି 'ଷ୍ଟାର' ଅନୁଷ୍ଠାନର ସଭ୍ୟମାନେ କୌଣସି ଢଙ୍ଗରେ ଭିନ୍ନ ଧରଣର ହୋଇ ପାରିଛନ୍ତି କି ନାହିଁ, ସେ କଥା ଟିକିଏ ଚିନ୍ତାକରି ଦେଖ । × × × ×

କେହି ବାହାରଆ ଲୋକ କେବେହେଲେ ତମକୁ ମୁକ୍ତ କରି ପାରିବେ ନାହିଁ । ସଂଗଠିତ ଆରାଧାନା, ବା କୌଣସି ଉଦ୍ଦେଶ୍ୟ ସାଧନ ଲାଗି ଆପଣାକୁ ବଳି ଚଢ଼ାଇବା ଦ୍ୱାରା ମଧ୍ୟ ମୁକ୍ତି ମିଳେ ନାହିଁ । ସେହିପରି ନିଜକୁ ସଂଘବଦ୍ଧ କରାଇ ବା ମନପ୍ରାଣ ଢାଳିଦେଇ କାର୍ଯ୍ୟ କରିବା ଦ୍ୱାରା ମଧ୍ୟ ମୁକ୍ତି ପ୍ରାପ୍ତି ହୁଏ ନାହିଁ । ଗୋଟିଏ ଟାଇପ୍ ମେସିନ୍‌କୁ ତମେ ଚିଠିପତ୍ର ଟାଇପ୍ କରିବା କାମରେ ବ୍ୟବହାର କରିଥାଅ, ତା'କୁ ତ' ଆଉ ପୂଜାବେଦୀରେ ଥୋଇ ପୂଜା ଅର୍ଚ୍ଚନା କର ନାହିଁ । କିନ୍ତୁ ଅନୁଷ୍ଠାନଟିଏ ଯେତେବେଳେ ତମର ମୁଖ୍ୟ ବିଷୟବସ୍ତୁ ହୋଇପଡ଼େ, ତମେ ତା'କୁ ପୂଜା କରିବାରେ ଲାଗିପଡ଼ । ମତେ ସାକ୍ଷାତ କରିବାକୁ ଆସି ପତ୍ରକାରମାନେ ପଚାରି ବସନ୍ତି — 'ଆପଣଙ୍କ ଅନୁଷ୍ଠାନରେ କେତେ ଜଣ ସଭ୍ୟ ଅଛନ୍ତି ?' ··· 'ଆପଣଙ୍କ ଅନୁସରଣକାରୀଙ୍କ ସଂଖ୍ୟା କେତେ ? ସେଇଥିରୁ ଆମେ କଳି ନେବା ଆପଣ ଯାହା କହୁଛନ୍ତି ତାହା ଠିକ୍ କି ଭୁଲ୍ ।'

—କେତେଜଣ, କିଏ କଅଣ ସେ ସବୁ ମୁଁ ଜାଣେ ନାହିଁ କି ତା' ସହିତ ମୋ'ର କୌଣସି ସଂପର୍କ ବି ନାହିଁ । ଯଦି ଜଣେ ବି ଲୋକ ମୁକ୍ତ ହୋଇପାରେ, ତେବେ ସେହି ତ ଢେର ··· ।

ତମମାନଙ୍କ ଧାରଣା ଯେ ପରମ ଆନନ୍ଦର ସାମ୍ରାଜ୍ୟରେ ପହଞ୍ଚିବାର ରହସ୍ୟ ମାତ୍ର କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ହସ୍ତରେ ନ୍ୟସ୍ତ ଅଛି । କିନ୍ତୁ ବାସ୍ତବରେ ସେଭଳି କେହିହେଲେ ନାହିଁ । ସେ ଗୁହକାଠିକୁ ଧରି ରଖିବାର ଅଧିକାର କାହାରି ନାହିଁ । କାରଣ, ତମେ ନିଜେ ହିଁ ହେଉଛ ନିଜର ସେହି ଗୁହକାଠି, ଏବଂ ନିଜର ବିକାଶ କରିବାରେ, ନିଜକୁ ନିର୍ମଳ ରଖିବାରେ ହିଁ କେବଳ ଅନନ୍ତର ସନ୍ଧାନ ମିଳିଥାଏ ।

ଫଳରେ ତମେ ଦେଖି ପାରିବ, ଏ ଯେଉଁ ପୂରା ଢାଞ୍ଚାଟା ତମେ ଗଢ଼ି ବସିଛ, ବାହାରଆ ସାହାଯ୍ୟ ପାଇଁ ଆଶା କରି ରହିଛ, ନିଜର ସୁଖ, ଶାନ୍ତି ଓ ଦମ୍ଭ ପାଇଁ ଅନ୍ୟ ଉପରେ ନିର୍ଭର କରୁଛ, ସେଇଟା କେତେ ଅବାନ୍ତର ! ଏସବୁକୁ ତମେ କେବଳ ନିଜ ଭିତରେ ହିଁ ପାଇ ପାରିବ ସିନା । ତେଣୁ ଏ ଅନୁଷ୍ଠାନର କିବା ମୂଲ୍ୟ ? ତମେସବୁ ଆଧ୍ୟାତ୍ମିକ

କ୍ଷେତ୍ରରେ କେତେଦୂର ଅଗ୍ରସର ହୋଇଛ, ଆଧ୍ୟାତ୍ମିକ ସ୍ତରରେ ତମ ସ୍ଥାନ କେଉଁଠି, ଏଇସବୁ କଥା ଶୁଣିବାରେ ତମେମାନେ ଆଜଯାଏ ଅଭ୍ୟସ୍ତ ହୋଇ ଆସିଲ, କିନ୍ତୁ ପ୍ରକୃତରେ ଏ ସବୁ ନିହାତି ପିଲାମି । ନୁହଁ କି ? ତମେ ନିଜ ଅନ୍ତରରେ ଅନାବିଳ କି ନୁହଁ, ସେ କଥା ତମ ନିଜ ଛଡ଼ା ଅନ୍ୟ କିଏ ବା କହିପାରିବ କହ ?

କିନ୍ତୁ ଯେଉଁମାନେ ପ୍ରକୃତରେ ବୁଝିବାକୁ ଇଚ୍ଛା କରନ୍ତି, ଯେଉଁମାନେ ଅବିନଶ୍ୱରକୁ — ଅର୍ଥାତ, ଯାହାର କି ଆଦ୍ୟ, ଅନ୍ତ ନାହିଁ, ତା'କୁ ଚାହାନ୍ତି — ସେମାନେ ଏକାନ୍ତ ଭାବରେ ଏକାଠି ପାଦ ମିଳାଇ ଚାଲିବାକୁ ଆରମ୍ଭ କରିବେ; ଯାହା କିଛି ଅନାବଶ୍ୟକ, ଅବାସ୍ତବ, ସେଥିପ୍ରତି ନିଜେ ବିପଦ ସଙ୍କେତ ରୂପେ ଠିଆ ହେବେ ।

ଦୁଇବର୍ଷ ଧରି ଏ ସମ୍ପର୍କରେ ଅନେକ ଚିନ୍ତାକରିବା ପରେ, ଏହିସବୁ କାରଣ ଯୋଗୁ ହିଁ ମୁଁ ନିଷ୍ପତ୍ତି ନେଇଛି । କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ମୁଁ ଏପରି କରି ନାହିଁ କି କାହାରି ପ୍ରରୋଚନା ଫଳରେ ମୁଁ ଏଭଳି ପଦକ୍ଷେପ ନେଇ ନାହିଁ କାରଣ ଏ ସବୁ ବିଷୟରେ ମତେ କେହି ପ୍ରରୋଚିତ କରାଇ ପାରିବ ନାହିଁ । ···ତମେମାନେ ଏଣିକି ନୂଆ ନୂଆ ସଂଗଠନମାନ ଗଢ଼ିପାର — ସେଥିନେଇ ମୋର କିଛି କହିବାର ନାହିଁ । ନୂଆ ନୂଆ ପ୍ରକାରର ଜନ୍ତା, ପଞ୍ଜୁରୀମାନ ଗଢ଼ି ତାକୁ ନୂଆ ରୂପସଜ୍ଜା ଦେବା ସହିତ ମୋର କୌଣସି ସମ୍ପର୍କ ନାହିଁ । ମୋର ଏକମାତ୍ର ଉଦ୍ଦେଶ୍ୟ ହେଉଛି ମାନବକୁ ଅଖଣ୍ଡ ଭାବରେ ମୁକ୍ତ କରିବା ।"

'ଷ୍ଟାର' ଅନୁଷ୍ଠାନ ରଦ୍ଦ ହୋଇଯିବା ପରେ କ୍ରିଷ୍ଣମୂର୍ତ୍ତିଙ୍କୁ ନେଇ ଗଢ଼ି ଉଠିଥିବା ଅନ୍ୟ ଯେତେକ ଟ୍ରଷ୍ଟ ଓ ଛୋଟ ଛୋଟ ସଂଗଠନମାନ ମଧ୍ୟ ଧୀରେ ଧୀରେ ଭାଙ୍ଗି ପଡ଼ିଲା । 'ଅର୍ଡ଼ର ଅଫ୍ ଦି ଷ୍ଟାର' ଉଦ୍ଦେଶ୍ୟରେ ବିଭିନ୍ନ ବ୍ୟକ୍ତି ଦାନ କରିଥିବା ବିପୁଳ ଅର୍ଥ, ଜମିଜମା ପ୍ରଭୃତି ତା'ର ମାଲିକମାନଙ୍କୁ ଫେରାଇ ଦିଆଗଲା । କ୍ରିଷ୍ଣମୂର୍ତ୍ତିଙ୍କର ଏ ନିଷ୍ପତ୍ତି ଅଧିକାଂଶ ଷ୍ଟାର ସଭ୍ୟଙ୍କୁ ଦାରୁଣ ଆଘାତ ଦେଇଥିଲା ଏବଂ ସେମାନଙ୍କ ମଧ୍ୟରୁ କେତେକ କ୍ଷୁବ୍ଧ ହୋଇ କ୍ରିଷ୍ଣମୂର୍ତ୍ତିଙ୍କ ବିରୁଦ୍ଧରେ ଚାରିଆଡ଼େ କହି

ବୁଲିଲେ । ମାତ୍ର ଏସବୁକୁ ତାଙ୍କର ତିଳେ ମାତ୍ର ଭ୍ରୂକ୍ଷେପ ନ ଥିଲା । ଠିକ୍ ତା' ପରବର୍ଷ, ଅର୍ଥାତ ୧୯୩୦ ମସିହାରେ ଥିଓସଫିକାଲ ସୋସାଇଟିରୁ ବାହାରି ଆସି ସେ ସମସ୍ତ ଆଧ୍ୟାତ୍ମିକ ଅନୁଷ୍ଠାନ ଓ ପାରମ୍ପରିକ ବନ୍ଧନରୁ ଚିରକାଳ ପାଇଁ ମୁକ୍ତ ହୋଇଗଲେ । ଫଳରେ ଏଣିକି ଜାତି, ଧର୍ମ, ବର୍ଣ୍ଣ, ବିଶ୍ୱାସ ଓ ସଂଘ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଲାଗି ତାଙ୍କ ଶିକ୍ଷାର ଦ୍ୱାର ଉନ୍ମୁକ୍ତ ହୋଇଗଲା ।

## ଆନି ବେସାନ୍ତଙ୍କ ମୃତ୍ୟୁ

କୃଷ୍ଣମୂର୍ତ୍ତି ଥିଓସଫିକାଲ ସୋସାଇଟିରୁ ଓହରି ଆସିବା ପରେ ଥିଓସଫି ମହଲରେ ଧୀରେ ଧୀରେ ତାଙ୍କର ଶତ୍ରୁପକ୍ଷର ସଂଖ୍ୟା ବଢ଼ିବାକୁ ଲାଗିଲା । କୃଷ୍ଣମୂର୍ତ୍ତିଙ୍କ କାମରେ ଉତ୍‌କ୍ଷିପ୍ତ ହୋଇ ଓ୍ୱେଜଉଡ୍ ସେତେବେଳକୁ ଚାରିଆଡ଼େ କହି ବୁଲୁଥିଲେ ଯେ କୃଷ୍ଣମୂର୍ତ୍ତିଙ୍କ ଠାରେ ଜଗତଗୁରୁଙ୍କ ଆବିର୍ଭାବ ଯୋଜନା ଭ୍ରଷ୍ଟ ହୋଇ ଯାଇଛି ଏବଂ ତାଙ୍କର ଚେତନା ମହାମୁନି ମୈତ୍ରେୟଙ୍କ ଚେତନାରେ ଲୀନ ହୋଇ ଯାଇଥିବା କାହାଣୀ ଏକ ପ୍ରହସନରେ ପରିଣତ ହୋଇଛି । ଷ୍ଟାର୍ ଅନୁଷ୍ଠାନକୁ ଏଭଳି ଭାଙ୍ଗି ଦେଇଥିବାରୁ ତଥା ଥିଓସଫିକାଲ ସୋସାଇଟିରୁ ଓହରି ଯାଇଥିବାରୁ ଲେଡ୍‌ବିଟର୍ ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ଉପରେ ଭୀଷଣ ଅସନ୍ତୁଷ୍ଟ ଥିଲେ । ମୁହଁ ଫିଟାଇ ଯଦିଓ ସେ କୌଣସି ପ୍ରତିକୂଳ ମନ୍ତବ୍ୟ ଦେଇ ନ ଥିଲେ ତଥାପି କୃଷ୍ଣମୂର୍ତ୍ତିଙ୍କ ସହିତ ତାଙ୍କର ଆଉ ସେ ପୂର୍ବ ସଦ୍‌ଭାବ ନ ଥିଲା । କିନ୍ତୁ ଆନି ବେସାନ୍ତ ଥିଲେ ଏକମାତ୍ର ବ୍ୟକ୍ତି ଯେ କି ଶେଷ ପର୍ଯ୍ୟନ୍ତ କୃଷ୍ଣମୂର୍ତ୍ତିଙ୍କ ବିରୁଦ୍ଧରେ ପଦେ ହେଲେ ବିଶ୍ୱାସ କରିବାକୁ ରାଜି ନ ଥିଲେ । କୃଷ୍ଣମୂର୍ତ୍ତି ଥିଓସଫିକାଲ ସୋସାଇଟିରୁ ବାହାରି ଆସିବା କଥାଟା ଯଦିଓ ତାଙ୍କୁ ଭୀଷଣ ଆଘାତ ଦେଇଥିଲା ତଥାପି ଏ ଘଟଣା ସେ ଦୁହିଁଙ୍କର ବ୍ୟକ୍ତିଗତ ସମ୍ପର୍କରେ ତିଳେହେଲେ ଆଞ୍ଚ ଆଣି ନ ଥିଲା ।

ବରଂ ଏହାପରେ ସେ କୃଷ୍ଣମୂର୍ତ୍ତିଙ୍କର ଭବିଷ୍ୟତ ନେଇ ଅଧିକ ଚିନ୍ତିତ ହେବାକୁ ଆରମ୍ଭ କଲେ । ସେ ବୁଝିଥିଲେ ଯେ ସାଂସାରିକ ଦୃଷ୍ଟିକୋଣରୁ କୃଷ୍ଣମୂର୍ତ୍ତି ସମ୍ପୂର୍ଣ୍ଣ ଅନଭିଜ୍ଞ । ତେଣୁ ଥିଓସଫିକାଲ୍ ସୋସାଇଟିର ବିନା ସହାୟତାରେ ସେ ଏକାକୀ କିଭଳି ଏହି କ୍ରୂର ଜଗତର ସମ୍ମୁଖୀନ ହେବେ, ଏହି ଦୁଶ୍ଚିନ୍ତା ତାଙ୍କୁ ସର୍ବଦା ଘାରି ରହିଲା । ଥିଓସଫିକାଲ୍ ସୋସାଇଟିର ବିଭିନ୍ନ ମହଲରୁ କୃଷ୍ଣମୂର୍ତ୍ତିଙ୍କ ବିଷୟରେ ବାରମ୍ବାର କଟୁ ମନ୍ତବ୍ୟମାନ ଶୁଣି ଅତି ଦୁଃଖର ସହିତ ସେ କହୁଥିଲେ, 'ଏ ଲୋକମାନଙ୍କ ଠାରେ ଟିକିଏ ଦରଦ ହେଲେ ଥାଆନ୍ତା ! ଅବୋଧ ବିଶ୍ୱାସ ସେମାନଙ୍କୁ କେଡ଼େ କର୍କଶ କରି ପକାଇଛି ସତେ !'

ବାସ୍ତବିକ ବଡ଼ ବିଚିତ୍ର କଥା । ଥିଓସଫିକାଲ୍ ସୋସାଇଟି ପ୍ରତିଷ୍ଠିତ ହେବା ଦିନଠାରୁ ଦୀର୍ଘ ପଚାଶ ବର୍ଷରୁ ଊର୍ଦ୍ଧ୍ୱ କାଳ ଜଗତ ଗୁରୁଙ୍କର ସ୍ୱାଗତ ଲାଗି ଆପଣାକୁ ପ୍ରସ୍ତୁତ କରାଇ ଆସୁଥିଲେ ସୁଦ୍ଧା ଉପଯୁକ୍ତ ସମୟ ଆସିଲା ବେଳକୁ ସେମାନେ କେହି ଜଣେ ବି ହେଲେ କୃଷ୍ଣମୂର୍ତ୍ତିଙ୍କର ନୂତନ ବାର୍ତ୍ତାକୁ ଅନ୍ତରରେ ଗ୍ରହଣ କରି ପାରିଲେ ନାହିଁ । ସେମାନେ ପ୍ରତ୍ୟେକେ ଯଦିଓ ଭଲ ରୂପେ ଜାଣିଥିଲେ ଯେ ଭାବୀ-ଜଗତଗୁରୁ ଯେଉଁ ନୂତନ ଶିକ୍ଷା, ଜୀବନ ଦର୍ଶନର ଅବତାରଣା କରିବେ, ତାହା ସକଳ ଧର୍ମ, ବିଶ୍ୱାସ ଓ ପାରମ୍ପରିକ ରୀତିନୀତି ଠାରୁ ସମ୍ପୂର୍ଣ୍ଣ ରୂପେ ଭିନ୍ନ ଓ ଅଭିନବ ହେବ, ତଥାପି ପ୍ରକୃତ କ୍ଷେତ୍ରରେ ଦେଖାଗଲା ଯେ ସେଇମାନେ ନିଜେ ହିଁ ପ୍ରଥମେ ସେହି ଶିକ୍ଷା ଓ ଦର୍ଶନର ତୀବ୍ର ବିରୋଧ ଆରମ୍ଭ କରିଦେଲେ । ନିଜ ନିଜର ଜ୍ଞାନ ଗରିମା, ଦକ୍ଷତା ଉପରେ ସେମାନଙ୍କର ଏତେ ବିଶ୍ୱାସ ଥିଲା ଯେ ସେମାନେ ସେମିତି ପୂର୍ବ ଭଳି ଆପଣା ଯୁକ୍ତିରେ ଅଟଳ ରହିଲେ ଓ କୃଷ୍ଣମୂର୍ତ୍ତିଙ୍କ କଥାକୁ ଆଡ଼େଇ ଦେଇ ଯେ ଯାହାର ମନ ମୁତାବକ ଆଧ୍ୟାତ୍ମିକ ବାଟରେ ଚାଲିବାକୁ ମନସ୍ଥ କଲେ । ଏ ସମ୍ବନ୍ଧରେ ଲେଡ଼ବିଟର୍‌ଙ୍କର ଯୁକ୍ତି ଥିଲା ଯେ ଏଥି ପୂର୍ବରୁ ଯେତେବେଳେ ପୃଥିବୀରେ ଜଗତ-ଗୁରୁଙ୍କର ଆବିର୍ଭାବ ଘଟିଥିଲା ସେତେବେଳେ ବି ଆଉ ପୁରାତନ ଧର୍ମ

ସମ୍ପ୍ରଦାୟଗୁଡ଼ିକ ବନ୍ଦ ହୋଇଯାଇ ନ ଥିଲା ! ତେଣୁ ଏଥର ମଧ୍ୟ ଜଗତଗୁରୁଙ୍କର ଶିକ୍ଷା ସାଧାରଣ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିବାବେଳେ ଥିଓସଫିକାଲ ସୋସାଇଟିର ସଦସ୍ୟମାନେ ନିଜର ପରମ୍ପରା ରକ୍ଷା କରିବା ଉଚିତ ।

ଲେଡ଼ବିଟର୍‌ଙ୍କ ଠାରୁ ଏକଥା ଶୁଣି କେତେକ ବ୍ୟକ୍ତି କ୍ରିଷ୍ଣମୂର୍ତ୍ତିଙ୍କର ଏ ବିଷୟରେ ମତ କଣ ବୋଲି ଜାଣିବାକୁ ଚାହିଁଲେ । ସେତେବେଳେ କ୍ରିଷ୍ଣମୂର୍ତ୍ତି କହିଥିଲେ, "ତମେମାନେ କଣ ସେହି ମୁଷ୍ଟିମେୟ, ବଡ଼ ବଡ଼ ଲୋକଙ୍କ ଭିତରେ ଅଛ ? ତେବେ ତ ମୁଁ ନାଚାର । ମୋର ଏ ଶିକ୍ଷା କେବଳ ବଡ଼ ବଡ଼ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ···ମୁଁ ଏ ଯାହାସବୁ କହୁଛି ତାହା ସମସ୍ତଙ୍କ ପକ୍ଷରେ ପ୍ରଯୁଜ୍ୟ—ଏମିତିକି ସେହି ହତଭାଗ୍ୟ ଥିଓସଫିଷ୍ଟମାନଙ୍କ ପାଇଁ ମଧ୍ୟ ।"

ବାସ୍ତବିକ କ୍ରିଷ୍ଣମୂର୍ତ୍ତି ଥିଓସଫିକାଲ୍ ସୋସାଇଟିରୁ ମୁକୁଳି ଆସିବା ପରେ ପରିସ୍ଥିତି ଅନେକ ବଦଳିଗଲା । ଏଣିକି ବିଭିନ୍ନ ଧର୍ମ, ବିଭିନ୍ନ ସମ୍ପ୍ରଦାୟର ନୂଆ ନୂଆ ବ୍ୟକ୍ତି ତାଙ୍କର ଭାଷଣ ଶୁଣିବାକୁ ଆସିଲେ । କ୍ରିଷ୍ଣମୂର୍ତ୍ତିଙ୍କର ଜନ୍ମ, ଆଧ୍ୟାତ୍ମିକ ଭିତ୍ତିଭୂମି ଓ ଇତିହାସ ନେଇ ସେମାନଙ୍କର କୌଣସି ସମ୍ପର୍କ ନଥିଲା—ବରଂ ତାଙ୍କ ଶିକ୍ଷାର ମୌଳିକତା ସେମାନଙ୍କୁ ଆକୃଷ୍ଟ କରିଥିଲା । ଥିଓସଫିକାଲ୍ ମଣ୍ଡଳୀରୁ ସ୍ୱାଧୀନ ହୋଇ ପ୍ରଥମ ଥର ପାଇଁ ସେ ଦକ୍ଷିଣ ଆମେରିକାର ବିଭିନ୍ନ ସ୍ଥାନ ତଥା ଏଥେନ୍‌ସ, କନ୍‌ଷ୍ଟାଣ୍ଟିନୋପଲ୍ ପ୍ରଭୃତିରେ ଭାଷଣ ଦେଇଥିଲେ ଏବଂ ତାଙ୍କ ଭାଷଣ ସଭାଗୁଡ଼ିକ ସର୍ବସାଧାରଣଙ୍କ ନିମନ୍ତେ ଉନ୍ମୁକ୍ତ ହୋଇଥିଲା । ତାଙ୍କର ସଭାରେ ଥିଓସଫିଷ୍ଟମାନଙ୍କ ସମେତ ଆଶାତୀତ ସଂଖ୍ୟକ ଜନତା ଯୋଗଦାନ କରିବାକୁ ଆରମ୍ଭ କରିଥିଲେ ।

୧୯୩୨ ମସିହା ଡିସେମ୍ବର ମାସରେ କ୍ରିଷ୍ଣମୂର୍ତ୍ତି ରାଜଗୋପାଲ୍‌ଙ୍କ ସହିତ ଆସି ଭାରତରେ ପହଞ୍ଚିଲେ । ଇତି ମଧ୍ୟରେ ରାଜଗୋପାଲ୍ ରୋଜାଲିଣ୍ଡଙ୍କୁ ବିବାହ କରି ସାରିଥିଲେ ଏବଂ କ୍ରିଷ୍ଣମୂର୍ତ୍ତିଙ୍କର ବିଭିନ୍ନ ଦେଶଗସ୍ତ ଓ ସେଠାରେ ଭାଷଣ ସଭାଗୁଡ଼ିକୁ ଆୟୋଜନ କରିବାର ସମସ୍ତ

ଦାୟିତ୍ୱ ତାଙ୍କର ଉପରେ ନ୍ୟସ୍ତ ଥିଲା । ଆଡ଼ାୟାରରେ ପହଞ୍ଚି କ୍ରିଷ୍ଣମୂର୍ତ୍ତି ପ୍ରଥମେ ଆନି ବେସାନ୍ତଙ୍କୁ ଦେଖା କରିବାକୁ ଗଲେ । ଗତ ଦୁଇବର୍ଷ ଭିତରେ ଆନି ବେସାନ୍ତଙ୍କର ସ୍ୱାସ୍ଥ୍ୟରେ ଖୁବ୍ଷଣ ଅବନତି ଘଟିଥିଲା । ତାଙ୍କର ସ୍ମରଣ ଶକ୍ତି ଅତ୍ୟନ୍ତ କ୍ଷୀଣ ହୋଇଯାଇଥିଲା ଓ ସେ ଅଧିକାଂଶ ସମୟ ବିଛଣାରେ ହିଁ ପଡ଼ି ରହୁଥିଲେ କିନ୍ତୁ କ୍ରିଷ୍ଣମୂର୍ତ୍ତିଙ୍କୁ ଦେଖିବା କ୍ଷଣି ସେ ଆନନ୍ଦରେ ଅଧୀର ହୋଇ ଉଠିଲେ । ପୂରା ଦୁଇବର୍ଷ ଧରି ସେମାନଙ୍କ ମଧ୍ୟରେ ସାକ୍ଷାତ ହୋଇ ନଥିଲା । ମିଳନର ସେହି କରୁଣ ଦୃଶ୍ୟକୁ ବର୍ଣ୍ଣନା କରି କ୍ରିଷ୍ଣମୂର୍ତ୍ତି ଗୋଟିଏ ଚିଠିରେ ଲେଖିଥିଲେ— "ସତରେ ତାହା ବଡ଼ ମର୍ମସ୍ପର୍ଶୀ ଥିଲା । ତାଙ୍କର ସ୍ୱର ଖୁବ୍ କ୍ଷୀଣ ହୋଇଯାଇଥିଲା—ଠିକ୍ ଗୋଟିଏ ଥର ଥର ବୃଦ୍ଧାର ସ୍ୱର ଭଳି । ମତେ ଦେଖି ସେ ସଙ୍ଗେ ସଙ୍ଗେ ଚିହ୍ନି ପାରି କହିଲେ, 'ତତେ ଦେଖି କେତେ ଖୁସି ଲାଗୁଛିରେ ବାବୁ । (ଏକଥା ସେ ଦୁଇ ତିନି ଥର କହିଛନ୍ତି) ତୁ କେଡ଼େ ସୁନ୍ଦର ଦେଖାଯାଉଛୁ । ମୁଁ ଇ' ତତେ ପାଳି ବଡ଼ କରିଛି, ନା'ରେ ?'···ଆଃ କି ମର୍ମନ୍ତୁଦ ସେ ଦୃଶ୍ୟ ! ସତରେ ତାଙ୍କର ସେଭଳି ଅବସ୍ଥା ମତେ ବଡ଼ ଆଘାତ ଦେଇଥିଲା ।"

ସେବର୍ଷ ଆଡ଼ାୟାର ଠାରେ ଅନୁଷ୍ଠିତ ଥିଓସଫିକାଲ କନଭେନସନରେ ଉପସ୍ଥିତ ଥିଲେ ସୁଦ୍ଧା କ୍ରିଷ୍ଣମୂର୍ତ୍ତି ମନେ କଲେ ଯେ ସୋସାଇଟିର ପୁରୋଧାମାନେ ସେଠାରେ ତାଙ୍କର ଉପସ୍ଥିତି ଆଉ ଚାହୁଁ ନାହାନ୍ତି । ଯେତେଦୂର ସମ୍ଭବ କ୍ରିଷ୍ଣମୂର୍ତ୍ତିଙ୍କର ରୂପାନ୍ତରିତ ଚିନ୍ତାଧାରାକୁ ସେମାନେ ନିଜର ତଥା ସୋସାଇଟିର ସ୍ଥିତି ପ୍ରତି ଏକ ବଡ଼ ବିପଦ ମନେ କରି ପ୍ରମାଦ ଗଣିବାକୁ ଲାଗିଲେ । ସେଥର ଭାରତରେ ତାଙ୍କର ପାଞ୍ଚମାସ ରହଣି ମଧ୍ୟରେ କ୍ରିଷ୍ଣମୂର୍ତ୍ତି ଉତ୍ତର ଭାରତର କେତେକ ସ୍ଥାନରେ ବକ୍ତୃତା ଦେବା ବ୍ୟତୀତ ବନାରସରେ ଛଅଗୋଟି ସାଧାରଣ ସଭାରେ ଭାଷଣ ଦେଇଥିଲେ ଓ ବିଭିନ୍ନ ପତ୍ରକାରଙ୍କ ପ୍ରଶ୍ନର ଜବାବ ଦେଇଥିଲେ । ସେତେବେଳେ ଭାରତରେ ମହାତ୍ମା ଗାନ୍ଧୀଙ୍କର ଅସବର୍ଣ୍ଣ ନିବାରଣ ଆନ୍ଦୋଳନ ପ୍ରବଳ ଉତ୍ତେଜନା ସୃଷ୍ଟି କରିଥିଲା । ମନ୍ଦିର ଭିତରେ ଅସବର୍ଣ୍ଣଙ୍କର ପ୍ରବେଶ ନେଇ ବିଭିନ୍ନ ଗୋଷ୍ଠୀରେ ବିଭିନ୍ନ

ପ୍ରତିକ୍ରିୟା ପ୍ରକାଶ ପାଉଥିଲା । ଜଣେ ସାମ୍ବାଦିକ ଥରେ ମନ୍ଦିର ଭିତରେ ଅସ୍ପୃଶ୍ୟ ଜନତାର ପ୍ରବେଶ ନେଇ କ୍ରୁଷ୍ଣମୂର୍ତ୍ତିଙ୍କର ମତ କ'ଣ ବୋଲି ପଚାରିବାରୁ କ୍ରୁଷ୍ଣମୂର୍ତ୍ତି ଓଲଟି ଜବାବ ଦେଲେ ଯେ 'ମୂଳରୁ ମନ୍ଦିର ହିଁ ରହିବା କଥା ନୁହେଁ ।' ତାଙ୍କଠାରୁ ଏଭଳି ଗୋଟିଏ ଉତ୍ତର ସେମାନେ କେବେ କଳ୍ପନା ବି କରି ନ ଥିଲେ ।

× × ×

୧୯୩୩ ମସିହା ମେ' ମାସରେ କ୍ରୁଷ୍ଣମୂର୍ତ୍ତି ଶେଷ ଥର ପାଇଁ ଆନି ବେସାନ୍ତଙ୍କୁ ଦେଖାକରି ଇଉରୋପ ଫେରିଲେ । ତା'ର ଠିକ୍ ଚାରି ମାସ ପରେ, ସେପ୍ଟେମ୍ବର ୨୦ ତାରିଖରେ ଆଡ଼ାୟାର ଠାରେ ଛୟାଅଶୀ ବର୍ଷ ବୟସରେ ଆନି ବେସାନ୍ତଙ୍କର ମୃତ୍ୟୁ ଘଟିଲା । ତାଙ୍କର ମୃତ୍ୟୁ ଖବର ଥିଓସଫିକାଲ ସୋସାଇଟି ପକ୍ଷରୁ କେହିହେଲେ କ୍ରୁଷ୍ଣମୂର୍ତ୍ତିଙ୍କୁ ଜଣାଇ ନ ଥିଲେ । ଏହି ଦୁଃସମ୍ବାଦ ପ୍ରଥମ କରି ସେ ଏକ ସମ୍ବାଦପତ୍ରରୁ ପଢ଼ିଥିଲେ । ଆନି ବେସାନ୍ତଙ୍କ ମୃତ୍ୟୁ ପରେ ଥିଓସଫିକାଲ ସୋସାଇଟିରେ ପରିସ୍ଥିତି ଧୀରେ ଧୀରେ ଆହୁରି ବଦଳିବାକୁ ଲାଗିଲା । ଆନି ବେସାନ୍ତଙ୍କ ସ୍ଥାନରେ ଜର୍ଜ ଅରୁଣ୍ଡେଲ ଥିଓସଫିକାଲ ସୋସାଇଟିର ପ୍ରେସିଡେଣ୍ଟ ହେଲେ ଓ ତା' ସଙ୍ଗେ ସଙ୍ଗେ କ୍ରୁଷ୍ଣମୂର୍ତ୍ତି ଓ ଥିଓସଫିକାଲ ସୋସାଇଟି ମଧ୍ୟରେ ଦୂରତା କ୍ରମଶଃ ବଢ଼ିବାରେ ଲାଗିଲା ।

## 'କ୍ରୁଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀ'

ଆନି ବେସାନ୍ତଙ୍କ ମୃତ୍ୟୁର ପାଞ୍ଚ ମାସ ପରେ, ୧୯୩୪ ମସିହା ମେ' ମାସରେ ଲେଡ଼ବିଟର ମଧ୍ୟ ସଂସାରରୁ ବିଦାୟ ନେଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ରହିଥିଲେ ଏବଂ ଗଭୀର ଆନ୍ତରିକତାର ସହିତ ଥିଓସଫିକାଲ ସୋସାଇଟିର କାର୍ଯ୍ୟ ସମ୍ପାଦନା କରୁଥିଲେ । ଲେଡ଼ବିଟରଙ୍କ ମୃତ୍ୟୁ ପରେ କ୍ରୁଷ୍ଣମୂର୍ତ୍ତି ରାଜଗୋପାଲ ଓ ତାଙ୍କ ପତ୍ନୀ ରୋଜାଲିଣ୍ଡଙ୍କ ସହିତ ଓହାଇକୁ ଫେରି ଆସି ତାଙ୍କର ପ୍ରିୟ

ଆର୍ଯ୍ୟ ବିହାରଠାରେ ଅବସ୍ଥାନ କରିବାକୁ ଲାଗିଲେ । ରାଜଗୋପାଳ ମଧ୍ୟ ଆର୍ଯ୍ୟ ବିହାରକୁ ଲାଗିଥିବା ଆଉ ଏକ କୋଠାରେ ରହି କୃଷ୍ଣମୂର୍ତ୍ତିଙ୍କର ଅଫିସ କାର୍ଯ୍ୟ ତୁଲାଇଲେ । ନିତ୍ୟଙ୍କର ମୃତ୍ୟୁ ପରେ ରାଜଗୋପାଳ କୃଷ୍ଣମୂର୍ତ୍ତିଙ୍କର ଅତି ଘନିଷ୍ଠ ହୋଇ ଉଠିଥିଲେ ଓ ନିତ୍ୟଙ୍କ ସ୍ଥାନରେ 'ଷ୍ଟାର' ଅନୁଷ୍ଠାନର ସମ୍ପାଦକ ଭାବରେ ତିନି ବର୍ଷ କାର୍ଯ୍ୟ କରିଥିଲେ । ଅନୁଷ୍ଠାନଟି ଭାଙ୍ଗିଯିବା ପରେ ଓ ବିଶେଷ କରି କୃଷ୍ଣମୂର୍ତ୍ତି ଥିଓସଫିକାଲ ସୋସାଇଟି ଛାଡ଼ିଦେବା ପରେ ସେ ବରାବର ତାଙ୍କର ସାଥେ ସାଥେ ରହି ତାଙ୍କର ଭାଷଣ ଓ ଗସ୍ତ ସମ୍ପର୍କୀୟ ସମସ୍ତ କାର୍ଯ୍ୟର ଠିକ ନଥି ତଦାରଖ କରୁଥିଲେ ଏବଂ ତାଙ୍କର ଖାଇବା ପିଇବା ତଥା ଯାବତୀୟ ଖର୍ଚ୍ଚ ମଧ୍ୟ ନିୟନ୍ତ୍ରଣ କରୁଥିଲେ । କୃଷ୍ଣମୂର୍ତ୍ତି ସେତେବେଳକୁ ଭାଷଣ ଦେବା ଲାଗି ବିଭିନ୍ନ ଦେଶରୁ ନିୟମିତ ନିମନ୍ତ୍ରଣମାନ ପାଇବାକୁ ଆରମ୍ଭ କରିଥିଲେ ଓ ନିଜର ସାଧ୍ୟ ମତେ ନିମନ୍ତ୍ରଣ ରକ୍ଷା କରି ବିଭିନ୍ନ ସ୍ଥାନରେ ଭାଷଣ ମଧ୍ୟ ଦେଉଥିଲେ । ତାଙ୍କ ଦର୍ଶନର ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ଥିଲା—'ଜୀବନ' । ନିଜର ପ୍ରାୟ ସମସ୍ତ ଭାଷଣରେ ସେ 'ଜୀବନ'ର ଗୁରୁତ୍ୱ ବିଷୟରେ ଆଲୋଚନା କରୁଥିଲେ । ତାଙ୍କ ପାଇଁ 'ଜୀବନ'ର ଅର୍ଥ ଥିଲା ଭଗବତ୍ ପ୍ରାପ୍ତି, ଶାନ୍ତି, ଆନନ୍ଦ ଓ ଚିରନ୍ତନତା । ତେଣୁ ଯେଉଁସବୁ ମାର୍ଗ ଜୀବନକୁ ପ୍ରତ୍ୟାଖ୍ୟାନ କରି ଶାନ୍ତିର ମାର୍ଗ ଦର୍ଶାଇବାର ସ୍ୱପ୍ନ ଦେଖାଏ, ସେସବୁକୁ କୃଷ୍ଣମୂର୍ତ୍ତି ଏକ ପଳାୟନ ପନ୍ଥା ବୋଲି ବର୍ଣ୍ଣନା କରୁଥିଲେ । ତାଙ୍କର ଏ ପ୍ରକାର ଅଭିନବ ଦୃଗ୍‌ଦର୍ଶନରେ ମୁଗ୍‌ଧ ହୋଇ ଥରେ ତାଙ୍କର ଜଣେ ଇଉରୋପୀୟ ବନ୍ଧୁ ତଥା ବିଶିଷ୍ଟ ଦାର୍ଶନିକ ରମ୍ ଲାଣ୍ଡୋ ତାଙ୍କୁ ପଚାରିଲେ,—'ଆଚ୍ଛା, ଆପଣ ଯେ କହୁଛନ୍ତି ଜୀବନରେ କେବେହେଲେ କୌଣସି ଧର୍ମଗ୍ରନ୍ଥ ବା ଗୂଢ଼ ଦର୍ଶନଶାସ୍ତ୍ର ପଢ଼ି ନାହାନ୍ତି, ଏକଥା କ'ଣ ପ୍ରକୃତରେ ସତ ?'

କୃଷ୍ଣମୂର୍ତ୍ତି ଉତ୍ତରରେ ତାଙ୍କୁ କହିଲେ—"ଆପଣ କ'ଣ ଭାବୁଛନ୍ତି କେବଳ ଶାସ୍ତ୍ର ପଢ଼ିଦେଲେ ମଣିଷ ପ୍ରକୃତରେ କିଛି ଶିଖି ଯାଇପାରେ ? ଶାସ୍ତ୍ର ପଢ଼ି ସେ ଜ୍ଞାନ ଅର୍ଜନ କରିପାରେ, ତଥ୍ୟ ସଂଗ୍ରହ କରିପାରେ, ହେଲେ ସତ୍ୟ ବା ଆନନ୍ଦ, ବା ଜୀବନରେ ଯାହା କିଛି ପ୍ରକୃତରେ ଦରକାର, ସେତକ ତ' ସେ ଶାସ୍ତ୍ରରୁ କଦାପି ଶିଖିପାରେ

ନାହିଁ । ସଂସାରରେ ବଞ୍ଚି ରହି ଆପଣା ଜୀବନର ସତ୍ୟକୁ ଉପଲବ୍ଧି କରିବା ଦ୍ୱାରା ହିଁ କେବଳ ସେ ଶିଖିପାରେ—ଅନ୍ୟ କାହାରି ଜୀବନରୁ ନୁହେଁ ।"

କୃଷ୍ଣମୂର୍ତ୍ତି ତାଙ୍କ ଭାଷଣରେ ଯେଉଁଭଳି ଖୋଲାଖୋଲି ଭାବରେ ଧାର୍ମିକ ଅନୁଷ୍ଠାନ, କ୍ରିୟା ପଦ୍ଧତି ଆଦିକୁ ଅଗ୍ରାହ୍ୟ କରି ଚାଲିଥିଲେ, ତା ଦ୍ୱାରା ସେ ଅଚିରେ ଦେଶ ବିଦେଶରେ ଅନେକ ଧର୍ମଗୋଷ୍ଠୀର ଶତ୍ରୁ ହୋଇପଡ଼ିଲେ । ଏପରିକି କେତେକ ଧର୍ମଗୋଷ୍ଠୀ ତାଙ୍କୁ ଭାଷଣ ମଞ୍ଚରୁ ହଟାଇଦେବା ଲାଗି ଚେଷ୍ଟା କରିବାକୁ ମଧ୍ୟ ଛାଡ଼ି ନ ଥିଲେ । ଏମିତି ଗୋଟିଏ ମଜାର ଘଟଣା ଘଟିଥିଲା ୧୯୩୫ ମସିହାରେ । ଦକ୍ଷିଣ ଆମେରିକାର ଚିଲି ପ୍ରଦେଶସ୍ଥ ସାଣ୍ଟିଆଗୋ ସହରରେ କୃଷ୍ଣମୂର୍ତ୍ତିଙ୍କର ଭାଷଣ ଦେବାର ଥିଲା । ସହରର ଅଧିକାଂଶ ଜନସାଧାରଣ ଥିଲେ ରୋମାନ କାଥଲିକ ଏବଂ ସେଠାକାର ଗୋଟିଏ ଧର୍ମାନ୍ଧ ଗୋଷ୍ଠୀ ମୂଳରୁ କୃଷ୍ଣମୂର୍ତ୍ତିଙ୍କ ଧର୍ମବିରୋଧୀ ଦର୍ଶନକୁ ବିରୋଧ କରି ଆସୁଥିଲେ । ଦକ୍ଷିଣ ଆମେରିକାର ଅନ୍ୟାନ୍ୟ ପ୍ରଦେଶରେ କୃଷ୍ଣମୂର୍ତ୍ତିଙ୍କ ଭାଷଣର ସଫଳତା ନେଇ ସାଣ୍ଟିଆଗୋରେ ଅନେକ ପ୍ରଚାର ହୋଇଥିଲା । ତେଣୁ ଉକ୍ତ ଧର୍ମଗୋଷ୍ଠୀର ଭୟ ହେଉଥିଲା କାଳେ କୃଷ୍ଣମୂର୍ତ୍ତିଙ୍କର ଭାଷଣରେ ପ୍ରଭାବିତ ହୋଇ ସେଠାକାର ଲୋକେ ନିଜ ଧର୍ମ ତ୍ୟାଗ କରି ବସିବେ ! ସଭା ଆରମ୍ଭ ହେବାର ଅଳ୍ପ ସମୟ ଆଗରୁ ସେହି ଗୋଷ୍ଠୀର କେତେଜଣ ବିଭ୍ରାନ୍ତକାରୀ ବ୍ୟକ୍ତି ଲୁହବୁହା ଗ୍ୟାସର ଗୋଲା କେତୋଟି ଲୁଚାଇ ଧରି ସଭାଗୃହ ମଧ୍ୟରେ ଚୁପ୍‌ଚାପ୍ ବସି ରହିଲେ । ନିର୍ଦ୍ଧାରିତ ସମୟରେ ସଭା ଆରମ୍ଭ ହେଲା ଓ କୃଷ୍ଣମୂର୍ତ୍ତିଙ୍କ ଭାଷଣ ଆରମ୍ଭ ହୋଇ ଶେଷ ମଧ୍ୟ ହେଲା । ମାତ୍ର ଅତି ଆଶ୍ଚର୍ଯ୍ୟ କଥା ଯେ ସଭାରେ ସାମାନ୍ୟତମ ଗଣ୍ଡଗୋଳ ସୁଦ୍ଧା ହେଲା ନାହିଁ । ପରେ ସେହି ଲୋକମାନେ କାହିଁକି କିଛି କରିପାରିଲେ ନାହିଁ ବୋଲି ତାଙ୍କୁ ପଚାରିବାରେ ସେମାନେ ତା'ର କୌଣସି ସଠିକ କାରଣ ମଧ୍ୟ ଦର୍ଶାଇ ପାରିଲେ ନାହିଁ । ପ୍ରକୃତ କଥା ହେଉଛି କୃଷ୍ଣମୂର୍ତ୍ତିଙ୍କ ବ୍ୟକ୍ତିତ୍ୱ ଓ ଭାଷଣରେ ସେମାନେ ଏତେ ମୁଗ୍ଧ ହୋଇଗଲେ ଯେ ନିଜର ଅସଲ ଉଦ୍ଦେଶ୍ୟଟିକୁ ଭୁଲିଗଲେ । ବାସ୍ତବିକ

କୃଷ୍ଣମୂର୍ତ୍ତିଙ୍କର ଭାଷଣ ଓ ବ୍ୟକ୍ତିତ୍ୱରେ ଏଭଳି କିଛି ଥିଲା ଯାହାକି ଶ୍ରୋତାମଣ୍ଡଳୀକୁ କ୍ଷଣକ ମଧ୍ୟରେ ମଗ୍ନ କରି ଦେଉଥିଲା । ଇଂରାଜୀ ବୁଝନ୍ତୁ ବା ନ ବୁଝନ୍ତୁ ଲୋକେ ମୂଳରୁ ଶେଷ ପର୍ଯ୍ୟନ୍ତ ସାଫ ପଦ୍ଧତିକୋଳା ଶୁଣିଲା ପରି ବିଭୋର ହୋଇ ରହୁଥିଲେ ।

କୃଷ୍ଣମୂର୍ତ୍ତି ଦେଉଥିବା ଭାଷଣ, ଆଲୋଚନା ଓ ସାକ୍ଷାତକାରମାନ ରାଜଗୋପାଲଙ୍କର ପ୍ରତ୍ୟକ୍ଷ ନିର୍ଦ୍ଦେଶରେ ସଂଗୃହୀତ ହୋଇ ପ୍ରଥମେ 'ଷ୍ଟାର ପବ୍ଲିଶିଂ ଟ୍ରଷ୍ଟ' ଦ୍ୱାରା ଓ ତା'ପରେ 'କୃଷ୍ଣମୂର୍ତ୍ତି ରାଇଟିଂସ୍ ଇନ୍‌କର୍‌ପୋରେଟେଡ୍' ନାମକ ଏକ ପ୍ରକାଶନ ସଂସ୍ଥା ଦ୍ୱାରା ନିୟମିତ ଭାବେ ପ୍ରକାଶିତ ହେଉଥିଲା । ତାହାଛଡ଼ା କେତେକ ଭାଷଣକୁ ସଂକଳିତ କରି ରାଜଗୋପାଲ 'କୃଷ୍ଣମୂର୍ତ୍ତି ରାଇଟିଂସ୍' ତରଫରୁ ପୁସ୍ତକ ଆକାରରେ ପ୍ରକାଶ ମଧ୍ୟ କରାଉଥିଲେ । ବନ୍ଧୁ ହିସାବରେ ତାଙ୍କ ଉପରେ କୃଷ୍ଣମୂର୍ତ୍ତିଙ୍କର ଏତେ ବିଶ୍ୱାସ ରହିଥିଲା ଯେ ତାଙ୍କର ଯାତ୍ରା, ଭାଷଣ, ପୁସ୍ତକ ପ୍ରକାଶନ ଆଦିରେ ଯେଉଁସବୁ ବ୍ୟବସ୍ଥା ଯେତେବେଳେ ଯାହା ସେ କରୁଥିଲେ କୃଷ୍ଣମୂର୍ତ୍ତି ବିନା ଦ୍ୱିଧାରେ ତାକୁ ଗ୍ରହଣ କରି ନେଉଥିଲେ । ପ୍ରକୃତ ପକ୍ଷେ କାଗଜ ପତ୍ରରେ କୃଷ୍ଣମୂର୍ତ୍ତି ଉକ୍ତ ପ୍ରକାଶନ ସଂସ୍ଥାର ମୁଖ୍ୟ ହୋଇ ରହିଥିଲେ ସୁଦ୍ଧା ତା'ର ଯେତେକ ନିଷ୍ପତ୍ତି, ସେ ଗୁଡ଼ିକ ରାଜଗୋପାଳ ଏକାକୀ ଏକଚ୍ଛତିଆ ଭାବରେ ତୁଲାଇବାରେ ଲାଗିଥିଲେ । କୃଷ୍ଣମୂର୍ତ୍ତିଙ୍କୁ ତ' ସହଜେ ଏ ସବୁ ଅଫିସ ତଦାରଖ କାମରେ ପଶିବାକୁ ଭଲ ଲାଗୁ ନ ଥିଲା । ତେଣୁ ସେ ପାରୁପର୍ଯ୍ୟନ୍ତ ଏସବୁରୁ ନିଜକୁ ଦୂରେଇ ରଖୁଥିଲେ । ଓହାଇରେ ଥିବାବେଳେ ସେ ପ୍ରାୟ ଅଧିକାଂଶ ସମୟ ଏକାକୀ ତାଙ୍କର ପାଇନ୍ କଟେଜର ନିର୍ଜନତା ଭିତରେ କଟାଉଥିଲେ ଓ ପ୍ରତିଦିନ ସନ୍ଧ୍ୟାରେ ଆର୍ଯ୍ୟବିହାର ଗୃହପଟେ ଥିବା କମଳା ବଗିଚା ଭିତର ଦେଇ ଦୂର ପାହାଡ଼ଯାକେ ଲମ୍ବିଥିବା ନିକାଞ୍ଚନ ପଥରେ ମାଇଲ ମାଇଲ ବାଟ ଚାଲି ବୁଲିବାକୁ ଯାଉଥିଲେ । ଭ୍ରମଣରେ ବାହାରିବା ବେଳେ ଯଦିବା କେବେ କେମିତି ସାଙ୍ଗରେ ଜଣେ ଅଧେ ବାହାରୁଥିଲେ, ରାସ୍ତାଯାକ କିନ୍ତୁ ଦୁହିଁଙ୍କ ଭିତରେ ପ୍ରାୟ କିଛି ଗପସପ ହେଉ ନ ଥିଲା ।

ଭ୍ରମଣରେ ଗଲାବେଳେ ଓ ବିଶେଷ କରି ପ୍ରକୃତିର ସଂସର୍ଗ ଲାଭ କରିବାବେଳେ କ୍ରୃଷ୍ଣମୂର୍ତ୍ତି ନୀରବତା ଓ ସଜାଗତା ଉପରେ ସର୍ବାଧିକ ଗୁରୁତ୍ୱ ଦେଇଥାନ୍ତି । ସେତେବେଳେ ମନରେ ତାଙ୍କର ଭାବନାର ଲେଶ ମାତ୍ର ନ ଥାଏ । ମନଟା ଏକବାରେ ନିର୍ମଳ, ସଜାଗ, ସଚେତନ ଥାଏ । ଇନ୍ଦ୍ରିୟଗୁଡ଼ିକ ତୀକ୍ଷ୍ଣ ଭାବରେ ଚେଇଁ ଉଠିଥାନ୍ତି; ଚାରିପଟେ ଘଟୁଥିବା ଗୋଟି ଗୋଟି ପ୍ରତ୍ୟେକ ଘଟଣା ପ୍ରତି ସେ ତୀକ୍ଷ୍ଣ ଭାବରେ ସଜାଗ ଥାଆନ୍ତି । ଗଛ ଡାଳରୁ ଝଡ଼ି ପଡ଼ୁଥିବା ଚହ ଚହ ପାଚିଲା ପତ୍ର, ଘଞ୍ଚ ସବୁଜ ଡାଳରେ ଦରଫୁଟା ଫୁଲ କଢ଼ି, ଫୁଲର ହାଲୁକା ମହକ, ଥିର ଥିର ପବନର ସ୍ପର୍ଶ, ପୁଣି ଖରା ଆଉ ସେ ଉଷୁମ ଛାଇ — ଏ ପ୍ରତ୍ୟେକଟି ବସ୍ତୁ ପ୍ରତି ସେ ସଚେତ ଥାଆନ୍ତି । ସେତେବେଳେ ମନ ତାଙ୍କର ଗୋଟିଏ ଦୃଶ୍ୟକୁ ଅନ୍ୟ ଏକ ଦୃଶ୍ୟ ସହିତ ତୁଳନା କରୁ ନ ଥାଏ ବା ଗୋଟିକୁ ଆଉଟି ଠାରୁ ଉତ୍କୃଷ୍ଟ ବା ନିକୃଷ୍ଟ ବୋଲି ସାବ୍ୟସ୍ତ କରୁ ନଥାଏ । ପ୍ରତି କ୍ଷଣରେ ଏକ ତୀକ୍ଷ୍ଣ ସଜାଗତା ରହି ସ୍ମୃତିର କଳେବରରେ ଛାପ୍ଟାପାତ ସୁଦ୍ଧା ହେବାକୁ ଦିଏ ନାହିଁ । ତାଙ୍କ ଭାଷାରେ "ଭ୍ରମଣ ସମୟରେ ମୁଁ କୌଣସି କଥା ଚିନ୍ତା କରେ ନାହିଁ; ମନ ଭିତରେ ମୋର ଭାବନାର ଚିହ୍ନବର୍ଣ୍ଣ ସୁଦ୍ଧା ନଥାଏ । ମୁଁ ଖାଲି ମୋର ଆଖି ମେଲି ଦେଖି ଚାଲିଥାଏ······ଆଉ, ମୋର ମନେହୁଏ ଯେ ସେହି ନିର୍ଜନ ଯାତ୍ରାମାନ ମୋ'ଠାରେ ନିଶ୍ଚିତ ଭାବରେ କିଛି ଗୋଟାଏ ଆଣି ଦେଇଛି ।"

× × ×

୧୯୩୬ ମସିହା ଅକ୍ଟୋବର ମାସରେ କ୍ରୃଷ୍ଣମୂର୍ତ୍ତି ଭାଷଣ କାର୍ଯ୍ୟକ୍ରମରେ ରାଜଗୋପାଳଙ୍କ ସହିତ ଭାରତ ଆସିଲେ । ଏଥି ଭିତରେ ଷ୍ଟାର ପବ୍ଲିଶିଂ ଟ୍ରଷ୍ଟ ଆଡ଼ାୟାର ଥିଓସଫିକାଲ ସୋସାଇଟି ହତା ଠାରୁ ଅଳ୍ପ ଦୂରରେ, ଆଡ଼ାୟାର ନଦୀର ଉତ୍ତର ପଟରେ ଛଅ ଏକର ଜମି କିଣି ସେଠାରେ 'ବସନ୍ତ ବିହାର' ନାମରେ ଏକ ବଡ଼ ଦୋ'ମହଲା କୋଠାଘର ତିଆରି କରିଥିଲା । ସେହି କୋଠାର ଚାରିପଟେ ଘେରି ରହିଥିଲା ଆମ୍ବ, ତେନ୍ତୁଳି, ବର, ଡାଳଚିନି, କୃଷ୍ଣଚୂଡ଼ା ଓ ସୁନାରି ଗଛ ପ୍ରଭୃତିର ଏକ ପ୍ରଶସ୍ତ ବଗିଚା । ବସନ୍ତ ବିହାର ଭିତରେ ଅଫିସ କାମ ଓ

ଆଲୋଚନା ଆଦି ପାଇଁ କେତେଗୁଡ଼ିଏ ବଡ଼ ବଡ଼ ପ୍ରକୋଷ୍ଠକୁ ଛାଡ଼ି କୃଷ୍ଣମୂର୍ତ୍ତି ରହିବା ଲାଗି ଏକ ବଡ଼ ପ୍ରକୋଷ୍ଠ ମଧ୍ୟ ରହିଥିଲା । ତାହାର ସାମନାକୁ ମେଲା ଖୋଲା ଲମ୍ବା ବାରନ୍ଦାଟିଏ । ୧୯୩୬ ମସିହା ପରଠାରୁ କୃଷ୍ଣମୂର୍ତ୍ତି ମାଡ୍ରାସ ଆସିଲେ ବରାବର ସେହି ବସନ୍ତ ବିହାର ଠାରେ ରହି ଆସୁଥିଲେ ।

୧୯୩୬ ମସିହା ଜୁନ ମାସରେ ଓମେନ ବାର୍ଷିକ କ୍ୟାମ୍ପ ଆରମ୍ଭ ହେଲା । ମାତ୍ର ଦୁର୍ଯୋଗକୁ ଓମେନରେ ପହଞ୍ଚିବାର ଅଳ୍ପ କେତେଦିନ ଭିତରେ କୃଷ୍ଣମୂର୍ତ୍ତି ଏକ ସାଂଘାତିକ ବ୍ରୋଙ୍କାଇଟିସ୍ ଜ୍ୱରରେ ଆକ୍ରାନ୍ତ ହୋଇ ପଡ଼ିଲେ । କଷ୍ଟ ହେତୁ ରାତି ରାତି ଧରି ଶୋଇପାରୁ ନଥିଲେ । ତଥାପି ସମାବେଶରେ ଯୋଗଦେବାକୁ ଆସିଥିବା ଶ୍ରୋତାମାନଙ୍କୁ ନିରାଶ ନ କରି, ନିଜର ଅସୁସ୍ଥତା ସତ୍ତ୍ୱେ ସେ ପ୍ରତିଦିନ ସକାଳେ ଦେଢ଼ଘଣ୍ଟା ଲେଖାଏଁ ଭାଷଣ ଦେଉଥିଲେ । ଜୁନ ମାସ ଶେଷ ସପ୍ତାହରେ କ୍ୟାମ୍ପ ଭାଙ୍ଗିବା ବେଳକୁ ସେ ଅତିଶୟ କ୍ଷୀଣ ଓ ଦୁର୍ବଳ ହୋଇପଡ଼ିଥିଲେ । ତେଣୁ ଆଉ ଭାଷଣ କାର୍ଯ୍ୟକ୍ରମ ନ ବଢ଼ାଇ ସେ ସିଧା ଓହାଇ ଯାତ୍ରା କଲେ । ଓହାଇର ଶାନ୍ତ ପରିବେଶ ତାଙ୍କର ସ୍ୱାସ୍ଥ୍ୟ ଫେରାଇ ଆଣିବାରେ ଅନେକ ସାହାଯ୍ୟ କରିଥିଲା । ଓହାଇ ଠାରେ ନିର୍ଜନବାସର ସେହି କେତୋଟି ଦିନ ଯେ ତାଙ୍କୁ କେବଳ ଶାରୀରିକ ସୁସ୍ଥତା ଦେଇଥିଲା ତା' ନୁହେଁ, ନିଜ ଅନ୍ତରରେ ସେ ଏଭଳି ରହସ୍ୟର ସନ୍ଧାନ ପାଇଥିଲେ ଯାହାକି ଏକ ଅଫୁରନ୍ତ ଆନନ୍ଦର ସ୍ରୋତ ହୋଇ ତାଙ୍କ ଜୀବନରେ ଚିରକାଳ ବହିବାରେ ଲାଗିଲା । ଅନ୍ତରରେ ତାଙ୍କର କେତେ ନୂଆ ନୂଆ ଭାବନା ଉକୁଟି ଉଠିଲା, ଆଉ ସେହି ଭାବନାକୁ ସେ ଧୀରେ ଧୀରେ ଭାଷାରେ ରୂପ ଦେବାକୁ ଲାଗିଲେ । ବିନା ଚେଷ୍ଟା, ବିନା ଉଦ୍ୟମରେ ତାଙ୍କର ଅନ୍ତର ଆପେ ଆପେ ପରିପକ୍ୱ ହେବାରେ ଲାଗିଲା । ସେ ବୁଝିପାରିଲେ ଯେ ଏକମାତ୍ର ପରିପକ୍ୱତା ଦ୍ୱାରା ହିଁ ଏ ଜୀବନ ପୂର୍ଣ୍ଣତା ଲାଭ କରିପାରେ—ତାହା ହିଁ କେବଳ ଜୀବନରେ ସତ୍ୟକୁ ପ୍ରକାଶ କରାଇପାରେ ।

ବର୍ଷଟିଏ ବିତିଗଲା । ୧୯୩୮ ମସିହା ଅଗଷ୍ଟ ମାସରେ ପୁଣି ଓମେନ ସମାବେଶରେ ଯୋଗଦେବା ଲାଗି କ୍ରୁଷ୍ଣମୂର୍ତ୍ତି ଓହାଇରୁ ଆସି ପହଞ୍ଚିଲେ । ବସ୍ତୁତଃ ସେଇଟି ଥିଲା ଓମେନର ଶେଷ ସମ୍ମିଳନୀ । ତା'ପର କେତୋଟି ବର୍ଷ ବିଶ୍ୱଯୁଦ୍ଧର ଉଦ୍ଭାବହତା ଦୃଷ୍ଟିରୁ ସେଠାରେ ଆଉ ବାର୍ଷିକ କ୍ୟାମ୍ପ ହୋଇପାରି ନ ଥିଲା, ଆଉ ତା'ପରେ ୧୯୪୧ ମସିହାରେ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ହିଟଲର ଅଣନାଜୀମାନଙ୍କ ଉପରେ ଅତ୍ୟାଚାର କରିବା ପାଇଁ 'କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପ' ବସାଇଲେ । ତେଣୁ ସେଭଳି ସ୍ଥାନରେ ପୁଣି ସମ୍ମିଳନୀ ଆୟୋଜନ କରିବାକୁ ଆଉ କାହାରି ମନ ଡାକିଲା ନାହିଁ ।

ଓମେନରୁ ଫେରି କ୍ରୁଷ୍ଣମୂର୍ତ୍ତି ୧୯୩୮ ଅକ୍ଟୋବର ମାସରେ ଆସି ଭାରତରେ ପହଞ୍ଚିଲେ । ସେତେବେଳେ ସାରା ଦେଶ ଏକ ନୂତନ ରାଜନୈତିକ ଉନ୍ମାଦନାରେ ମାତି ଉଠିଥିଲା । ମହାତ୍ମା ଗାନ୍ଧିଙ୍କର ନେତୃତ୍ୱରେ ବୈପ୍ଳବିକ ଚେତନା ଓ ସ୍ୱାଧୀନତାର ଚିନ୍ତାଧାରା ଅଳ୍ପ ବହୁତେ ପ୍ରତ୍ୟେକ ଭାରତୀୟର ପ୍ରାଣରେ ଜାତୀୟତାବାଦର ଏକ ବହ୍ନି ଜାଳିଥିଲା । କିନ୍ତୁ ଅପରପକ୍ଷେ କ୍ରୁଷ୍ଣମୂର୍ତ୍ତି ବିଶ୍ୱାସ କରୁଥିଲେ ଯେ ଜାତୀୟତାବାଦକୁ ନେଇ କେବେହେଲେ କୌଣସି ସମସ୍ୟାର ସମାଧାନ କରିହୁଏ ନାହିଁ । ତାଙ୍କ ମତରେ ସାମାଜିକ ସ୍ତରରେ ଯେତେ ସଂସ୍କାର ଆଣିଲେ ସୁଦ୍ଧା ମଣିଷଠାରେ ବ୍ୟକ୍ତିଗତ ଭାବରେ ଏକ ଆମୂଳ ରୂପାନ୍ତର ନ ଘଟିବା ପର୍ଯ୍ୟନ୍ତ ସମସ୍ୟାର ପ୍ରକୃତ ସମାଧାନ ଅସମ୍ଭବ । ଆଉ, ଏହି ସାମୂହିକ ରୂପାନ୍ତର ପାଇଁ ମଣିଷଠାରେ ବୋଧଶକ୍ତି ରହିବା ନିତାନ୍ତ ଆବଶ୍ୟକ । ସେବର୍ଷ ମାଡ୍ରାସ, ବମ୍ବେ, ପୁନା ଓ ବନାରସ ଠାରେ ଦେଇଥିବା ଭାଷଣଗୁଡ଼ିକରେ କ୍ରୁଷ୍ଣମୂର୍ତ୍ତି ମଣିଷର ହୃଦୟଙ୍ଗମତା ଓ ବୋଧଶକ୍ତି ଉପରେ ସର୍ବାପେକ୍ଷା ଗୁରୁତ୍ୱ ଦେବାର ଦେଖାଯାଇଥିଲା । ମାନବଠାରେ ପରିପକ୍ୱ ଚିନ୍ତା ଓ ହୃଦ୍‌ବୋଧତା ଜାତ କରାଇବା ତାଙ୍କ ଶିକ୍ଷାର ଏକ ପ୍ରଧାନ ଉଦ୍ଦେଶ୍ୟ ଥିଲା ଓ ଖାସ୍ ସେହି କାରଣରୁ ସେ ସଦାସର୍ବଦା ଆତ୍ମ-ନିରୀକ୍ଷା ଓ ସମ୍ପୂର୍ଣ୍ଣ ସଜାଗତା ଉପରେ ଏତେ ଗୁରୁତ୍ୱ ଦେଉଥିଲେ ।

# ନିଃସଙ୍ଗତା ଓ ଆତ୍ମ-ଅନୁଧ୍ୟାନ

୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯିବା ପରେ କୃଷ୍ଣମୂର୍ତ୍ତିଙ୍କର ନିୟମିତ ଭାଷଣ ଓ ଗସ୍ତ କାର୍ଯ୍ୟକ୍ରମରେ କେତେକ ବାଧା ସୃଷ୍ଟି ହେଲା । ଯୁଦ୍ଧକାଳୀନ କଟକଣା ଯୋଗୁ ସେ ଆଉ ପୂର୍ବଭଳି ସ୍ୱଚ୍ଛନ୍ଦରେ ଦେଶ ଦେଶ ବୁଲି ଭାଷଣ ଦେବାକୁ ସରକାରୀ ଅନୁମତି ପାଇଲେ ନାହିଁ । ଫଳରେ ସେହି ଛଅବର୍ଷ କାଳ ସେ ମୁଖ୍ୟତଃ ଓହାଇରେ କଟାଇବାକୁ ବାଧ୍ୟହେଲେ । ଏଣେ କୃଷ୍ଣମୂର୍ତ୍ତିଙ୍କ ଯୁଦ୍ଧ ବିରୋଧୀ ଚିନ୍ତାଧାରା କାଲିଫର୍ଣ୍ଣିଆ ସରକାରଙ୍କ ମନରେ ତାଙ୍କୁ ନେଇ କେତେକ ସନ୍ଦେହ ସୃଷ୍ଟି କରିଥିଲା । ତେଣୁ ସରକାରଙ୍କ ନିର୍ଦ୍ଦେଶରେ ଆମେରିକାର ଗୋଇନ୍ଦା ସଂସ୍ଥା ସଦାବେଳେ ତାଙ୍କର ଗତିବିଧି ଉପରେ ତୀକ୍ଷ୍ଣ ନଜର ରଖୁଥିଲେ । ପ୍ରତିଦିନ ସନ୍ଧ୍ୟାରେ ସେ କାହିଁକି ଏଭଳି ମାଇଲ ମାଇଲ ଧରି ଏକାକୀ ଭ୍ରମଣରେ ଯାଉଛନ୍ତି, ସେଠାରେ କାହାକୁ ଭେଟୁଛନ୍ତି, ଯୁଦ୍ଧ ସମୟରେ ଜାତୀୟତାବାଦ ପ୍ରକାଶ ନ କରି କାହିଁକି ଶାନ୍ତିପ୍ରିୟ ମନୋଭାବ ପୋଷଣ କରୁଛନ୍ତି ଇତ୍ୟାଦି ଅନେକ ଅଜବ ପ୍ରଶ୍ନର ଉତ୍ତର ତାଙ୍କୁ ନିୟମିତ ପୁଲିସ ଆଗରେ ଦେବାକୁ ପଡ଼ୁଥିଲା । ଖାଲି ସେତିକି ନୁହେଁ, ସେ ଯେ କାହିଁକି ଆମେରିକା ଯୁଦ୍ଧ ବାହିନୀରେ ଯୋଗ ଦେଇ ଦେଶ ପାଇଁ ନ ଲଢ଼ିବେ ତା'ର କୈଫିୟତ ମଧ୍ୟ ତାଙ୍କୁ ମାର୍କିନ ସରକାର ଆଗରେ ଦେବାକୁ ହୋଇଥିଲା ।

୧୯୩୯ ରୁ ୧୯୪୦ ମସିହାରେ କୃଷ୍ଣମୂର୍ତ୍ତି ଓହାଇ ଓ ହଲିଉଡ଼୍-ଠାରେ ମାତ୍ର ଅଳ୍ପ କେତୋଟି ଛୋଟ ସଭାରେ ଭାଷଣ ଦେବାକୁ ଅନୁମତି ପାଇଥିଲେ । ସେହି ସଭାଗୁଡ଼ିକରେ ଯଦିଓ ସେ ସଦାବେଳେ ଶାନ୍ତିପ୍ରିୟତା ଉପରେ ଜୋର ଦେଉଥିଲେ ତଥାପି ଜର୍ମାନମାନଙ୍କ ହିଂସ୍ରତା ଓ ଯୁଦ୍ଧପରାୟଣତାକୁ ଆକ୍ଷେପ କରି ସେ କୌଣସି ମନ୍ତବ୍ୟ ପ୍ରକାଶ କରୁ ନ ଥିଲେ । ସେ ବାରମ୍ବାର କହୁଥିଲେ ଯେ ଏ ଯେଉଁ ହିଂସ୍ର, ଦମନକାରୀ ପ୍ରବୃତ୍ତି ସମାଜରେ ଯୁଦ୍ଧ, ମହାଯୁଦ୍ଧର ରୂପ ନେଉଛି, ତା'ର ବୀଜ କୌଣସି ନିର୍ଦ୍ଦିଷ୍ଟ ଏକ ଦେଶ, ଜାତି ଅଥବା ନିର୍ଦ୍ଦିଷ୍ଟ ମଣିଷ

ଭିତରେ ନାହିଁ । ପ୍ରତ୍ୟେକ ବ୍ୟକ୍ତିର ଅନ୍ତରରେ ହିଁ ତା'ର ମୂଳ ସନ୍ନିହିତ ଏବଂ ଏଥିଲାଗି ପ୍ରତ୍ୟେକ ବ୍ୟକ୍ତି ସମାନ ଭାବରେ ଦାୟୀ । ଥରେ ଓହାଇର ଓକ୍ ଉଦ୍ୟାନରେ କୃଷ୍ଣମୂର୍ତ୍ତିଙ୍କଠାରୁ ଏହି ମର୍ମରେ ଏକ ଭାଷଣ ଶୁଣି ଶ୍ରୋତାମଣ୍ଡଳୀରୁ କେତେଜଣ ଉଠିପଡ଼ି ସଭାରେ ଗୋଳମାଳ କରିବାକୁ ଆରମ୍ଭ କରିଦେଲେ । ଜର୍ମାନୀର ଲୋକଙ୍କୁ ଯୁଦ୍ଧର ଅସଲ କାରଣ ବୋଲି ନ ଦେଖାଇ ସେ ଓଲଟି ଯୁଦ୍ଧ ପାଇଁ ପ୍ରତ୍ୟେକ ମାନବକୁ ଦାୟୀ ମନେ କରୁଥିବାରୁ ସେମାନଙ୍କ ଭିତରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା ।

ଏମିତି ଗୋଟିଏ ଗୋଟିଏ କେତୋଟି ମିଳିତ ଆଲୋଚନା ଓ ସମାବେଶକୁ ଛାଡ଼ିଦେଲେ ଯୁଦ୍ଧ ବେଳର ସେଇ ଛଅଟି ବର୍ଷ କୃଷ୍ଣମୂର୍ତ୍ତି ମୁଖ୍ୟତଃ ନିର୍ଜନତାରେ ହିଁ କଟାଇଥିଲେ । ରାଜଗୋପାଲ, ରୋଜାଲିଣ୍ଡ ଓ ମଝିରେ ମଝିରେ ଆସୁଥିବା ଅଳ୍ପ କେତେଜଣ ବନ୍ଧୁଙ୍କୁ ଛାଡ଼ିଦେଲେ ତାଙ୍କର ଅନ୍ୟ କାହାରି ସହିତ ପ୍ରାୟ ସାକ୍ଷାତ ହେଉ ନ ଥିଲା । ସେତେବେଳେ ଯୁଦ୍ଧର ପ୍ରଭାବ ଯୋଗୁଁ ସାରା ଦେଶରେ ନାନା ପ୍ରକାର କଟକଣା ଜାରି ହୋଇଥିଲା ଏବଂ ଖାଦ୍ୟ ଓ ଇନ୍ଧନର ଅଭାବ ସାଙ୍ଗକୁ ଜିନିଷପତ୍ରର ଦରଦାମ ଖୁବ ଚଢ଼ା ହୋଇଥିଲା । ତେଣୁ ଯଥାସମ୍ଭବ ମିତବ୍ୟୟୀ ଓ ଆତ୍ମନିର୍ଭରଶୀଳ ହେବାପାଇଁ କୃଷ୍ଣମୂର୍ତ୍ତି ଓ ରାଜଗୋପାଳ ଦୁହେଁ ମିଶି ଆର୍ଯ୍ୟ ବିହାର ହତା ଭିତରେ ପନିପରିବା ଲଗାଇବାକୁ ଆରମ୍ଭ କଲେ ଓ ଗାଈଟିଏ ପୋଷି ତାକୁ ନିଜ ହାତରେ ଦୁହାଁଦୁହିଁ କଲେ । ଏଇ କେତୋଟି ଗୋଟି ବଡ଼ ନିତିଦିନିଆ କାମକୁ ବାଦ ଦେଲେ ଅନ୍ୟ କୌଣସି ବିଶେଷ ଦାୟିତ୍ୱ ନ ଥିବାରୁ କୃଷ୍ଣମୂର୍ତ୍ତି ସେହି କେତେ ବର୍ଷ ପ୍ରକୃତି ଓ ପ୍ରାକୃତିକ ଶୋଭାର ସାନ୍ନିଧ୍ୟ ଲାଭ କରିବାକୁ ପୁଣି ଏକ ସୁଯୋଗ ପାଇଲେ ।

ଓହାଇ ଠାରୁ ଅଢ଼େଇ ଶହ ମାଇଲ ଦୂରବର୍ତ୍ତୀ ଏକ ପାର୍ବତ୍ୟ-ଅଞ୍ଚଳରେ 'ସିକ୍ୱୋଆ ନ୍ୟାସନାଲ ପାର୍କ' ନାମରେ ଏକ ମନୋରମ ଅରଣ୍ୟ-ଉଦ୍ୟାନ ଅବସ୍ଥିତ । ପାର୍ବତ୍ୟ ଝରଣା, ଉଚ୍ଚା ଉଚ୍ଚା କୋଣ ଯୁଗର ଗଛରେ ଭରପୂର ସେହି ସ୍ଥାନଟି ଯେତିକ ରମଣୀୟ ଥିଲା,

ବନ୍ୟଜନ୍ତୁଙ୍କ ପ୍ରକୋପରେ ସେଭଳି ବିପଦଶଙ୍କୁଳ ମଧ୍ୟ ଥିଲା । ୧୯୪୨ ମସିହାର ପ୍ରଥମ ଭାଗରେ କୃଷ୍ଣମୂର୍ତ୍ତି ରାଜଗୋପାଳଙ୍କ ସହିତ ଯାଇ ସେହି ଅରଣ୍ୟ-ଉଦ୍ୟାନରେ ପ୍ରାୟ ଦୁଇ ସପ୍ତାହ କଟାଇଥିଲେ । ସେ ସ୍ଥାନଟି ତାଙ୍କୁ ଏତେ ଭଲ ଲାଗିଲା ଯେ ତା'ର ତିନି ଚାରି ମାସ ପରେ ସେ ପୁଣି ଥରେ ସେଠାକୁ ଆଉ କିଛି ଦିନ ଏକାକୀ କଟାଇବା ଉଦ୍ଦେଶ୍ୟରେ ଗଲେ । ଏଥରକ ସେ ଉଦ୍ୟାନ ଭିତରେ ଗୋଟିଏ ଗ୍ଲେଟ୍ କେବିନ୍ ଘର ଭଡ଼ା ନେଇ ରହିଲେ । ବଖୁରି ଭିତରେ ରାନ୍ଧିବାର କୌଣସି ସୁବିଧା ନ ଥିଲା । ତେଣୁ ବାହାରେ ଗଛ ମୂଳେ ଗୋଟିଏ ଷ୍ଟୋଭ ସାହାଯ୍ୟରେ ସେ ନିଜର କାମ ଚଳାଇଲେ । ନ ହେଲେ ଅତି ଦରକାର ପଡ଼ିଲେ ବେଳେବେଳେ କିଛି ବାଟ ଦୂରରେ ଥିବା ଦୋକାନରୁ ଟିଣଡବା ଖାଦ୍ୟ ମଧ୍ୟ କିଣି ଆଣୁଥିଲେ । ହୋଟେଲର ଖାଇବା ଅତିରିକ୍ତ ବ୍ୟୟସାପେକ୍ଷ ହୋଇଥିବାରୁ ସେ ଯାଉପର୍ଯ୍ୟନ୍ତ ହୋଟେଲକୁ ନ ଯାଇ ନିଜ ହାତରେ ରନ୍ଧାରନ୍ଧି କରୁଥିଲେ । ଏମିତି ଏକାକୀ ରହିବାରେ କୃଷ୍ଣମୂର୍ତ୍ତି ଏକ ବିଶେଷ ଆନନ୍ଦ ଅନୁଭବ କରୁଥିଲେ ଆଉ ହିଂସ୍ରଜନ୍ତୁର ଭୟ ସତ୍ତ୍ୱେ ଓହାଇ ଭଳି ଏଠାରେ ମଧ୍ୟ ସେ ପ୍ରତିଦିନ ବଣ ଭିତରେ ମାଇଲ ମାଇଲ ଧରି ଭ୍ରମଣରେ ଯାଉଥିଲେ ଏବଂ ପ୍ରକୃତିର କୋଳରେ ଆପଣାକୁ ହଜାଇ ଦେଉଥିଲେ । ମନଟା ତାଙ୍କର ସେତେବେଳେ ଅହରହ ତୀକ୍ଷ୍ଣ ଭାବେ ସଜାଗ ଓ ଧ୍ୟାନଶୀଳ ଅବସ୍ଥାରେ ରହୁଥିଲା ।

କୃଷ୍ଣମୂର୍ତ୍ତିଙ୍କ ଦୃଷ୍ଟିରେ 'ଧ୍ୟାନ' ଶବ୍ଦଟା ତାହାର ପାରମ୍ପରିକ ଅର୍ଥରୁ ଯଥେଷ୍ଟ ଭିନ୍ନ । ତାଙ୍କ ମତରେ ଏହା ଏକ ସୃଜନଶୀଳ ଆବିଷ୍କାର । ଏହାକୁ କୌଣସି ଗୁରୁଠାରୁ ଶିଖାଯାଇ ପାରେ ନାହିଁ କିମ୍ବା ଏଥିପାଇଁ କୌଣସି ମାର୍ଗ, ପଦ୍ଧତି ମଧ୍ୟ ନାହିଁ । ବିଚାର ନିର୍ବିଶେଷରେ ଗଭୀର ତୀକ୍ଷ୍ଣତାର ସହ ନିଜକୁ ଅନୁଧ୍ୟାନ କରିବା ହିଁ ହେଉଛି ପ୍ରକୃତ ଧ୍ୟାନର ଏକ ଅଂଶ । ତମେ କିଭଳି କଥାବାର୍ତ୍ତା କର, କିଭଳି ଭାବରେ ଚାଲ, କିଭଳି ଖାଅ, କ'ଣସବୁ କହ, ତମର ବାଜେ ଗପ, ପର ଚର୍ଚ୍ଚା ଓ ମନରେ ଉଠୁଥିବା ହିଂସା, ରାଗ, ଇତ୍ୟାଦି ଇତ୍ୟାଦି ପ୍ରତ୍ୟେକଟି ବିଷୟ ନେଇ ପ୍ରତି ମୁହୂର୍ତ୍ତରେ ଏକାନ୍ତ ଭାବେ ସଜାଗ ରହିବା ହେଉଛି

ଧ୍ୟାନର ଅଂଶ ବିଶେଷ । ତେଣୁ ବସ୍ ବା ଟ୍ରେନ୍‌ରେ ଯାଉଥିବା ବେଳେ, ବଣ ଜଙ୍ଗଲ ବାଟ ଦେଇ ଚାଲି ଚାଲି ଯାଉଥିବାବେଳେ, ଘର ଭିତରେ ବସି ପକ୍ଷୀର କାକଳୀ ଶୁଣୁଥିବାବେଳେ ଅଥବା ନିଜ ସ୍ତ୍ରୀ, ପିଲାପିଲିଙ୍କ ମୁହଁକୁ ଚାହିଁଥିବାବେଳେ ଏହି ଧ୍ୟାନ ଅନବରତ ଚାଲିପାରେ ।

'ସିକ୍ୱୋଆ ନାସ୍‌ନାଲ ପାର୍କ'ରୁ ଫେରିବା ପରେ କ୍ରିଷ୍ଣମୂର୍ତ୍ତି ଓହାଇରେ ପୁଣି ପୂର୍ବଭଳି ଦିନ ବିତାଇବାରେ ଲାଗିଲେ । ସେତେବେଳେ ତାଙ୍କୁ ସାକ୍ଷାତ କରିବା ଲାଗି, ଜୀବନର ବିବିଧ ପ୍ରସଙ୍ଗ ନେଇ ତାଙ୍କ ସହିତ ଆଲୋଚନା କରିବା ଲାଗି ଛୋଟ ଛୋଟ ଦଳରେ ଲୋକମାନେ ଅଧିକାଂଶ ଦିନ ସେଠାକୁ ଆସୁଥିଲେ । ସେହି ସମୟକୁ ତାଙ୍କର ବନ୍ଧୁତ୍ୱ ଗଢ଼ି ଉଠିଥିଲା ବିଶିଷ୍ଟ ଇଂରେଜ ସାହିତ୍ୟିକ ଆଲଡ଼ସ୍ ହକ୍ସ୍‌ଲେଙ୍କ ସହିତ । କ୍ରିଷ୍ଣମୂର୍ତ୍ତିଙ୍କ ସହିତ ପରିଚୟ ହେବା ପରେ ତାଙ୍କୁ ଦେଖାକରିବା ପାଇଁ ସେ ଅନେକ ଥର ଆର୍ଯ୍ୟ ବିହାରକୁ ଆସୁଥିଲେ ଓ ସନ୍ଧ୍ୟାବେଳେ ଦିହେଁ ମିଶି ଚାଲି ଚାଲି ଓହାଇର ପାଇନ ବଣ ଭିତରେ ଅନେକ ଦୂର ପର୍ଯ୍ୟନ୍ତ ଭ୍ରମଣରେ ଯାଉଥିଲେ । କ୍ରିଷ୍ଣମୂର୍ତ୍ତିଙ୍କର ଚିନ୍ତାଧାରା ଓ ଦର୍ଶନ ହକ୍ସ୍‌ଲେଙ୍କୁ ଯେତିକି ପ୍ରଭାବିତ କରିଥିଲା, ସେତିକି ଆଶ୍ଚର୍ଯ୍ୟାନ୍ୱିତ ମଧ୍ୟ କରିଥିଲା । ସଂକଳିତ ଜ୍ଞାନ ଓ ତଥ୍ୟକୁ ପୂରାପୂରି ବାଦ ଦେଇ ଏକ ସତେଜ ଦୃଷ୍ଟିବୋଧ ଭିତରେ ବଞ୍ଚିବା କଥାଟା ଯେ କିଭଳି ସମ୍ଭବ ହୋଇପାରେ ତାହା ତାଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲା । ହକ୍ସ୍‌ଲେଙ୍କର ଦୃଷ୍ଟିଶକ୍ତି ସେତେବେଳକୁ ଅତ୍ୟନ୍ତ କ୍ଷୀଣ ହୋଇଯାଇଥିଲା ଓ ଗୋଟିଏ ଆଖିରେ ସେ କିଛି ହେଲେ ଦେଖିପାରୁ ନ ଥିଲେ । ତେଣୁ ଆମେରିକାର ଚିକିତ୍ସକ ଡବ୍‌ଲ୍ୟୁ. ଏଚ୍. ବେଟ୍‌ସ୍‌ଙ୍କର ଚିକିତ୍ସା ପଦ୍ଧତିକୁ ଅନୁସରଣ କରି ସେ ଏକ ପ୍ରକାର ଚକ୍ଷୁ ସଞ୍ଚାଳନ ବ୍ୟାୟାମ କରିବାକୁ ଆରମ୍ଭ କରିଥିଲେ । ତାଙ୍କ ଦେଖାଦେଖି କ୍ରିଷ୍ଣମୂର୍ତ୍ତି ମଧ୍ୟ ନିଜର ଦୃଷ୍ଟିଶକ୍ତିକୁ ପ୍ରଖର ରଖିବା ଲାଗି ପ୍ରତିଦିନ ସେହି ବ୍ୟାୟାମ କରିବାକୁ ଆରମ୍ଭ କଲେ । ଆଖିରେ ତାଙ୍କର ଦୃଷ୍ଟିଶକ୍ତି ନେଇ କୌଣସି ଅସୁବିଧା ନ ଥିଲେ ସୁଦ୍ଧା ସେହିଦିନଠାରୁ ଶେଷ ପର୍ଯ୍ୟନ୍ତ ସେ ଏହି ଚକ୍ଷୁ ବ୍ୟାୟାମ ନିୟମିତ କରି ଚାଲିଥିଲେ ।

୧୯୪୫ ମସିହା ଅଗଷ୍ଟ ମାସରେ ଜାପାନର ଦୁଇଟି ବଡ଼ ବଡ଼ ସହର ନାଗାସାକି ଓ ହିରୋସୀମା ଠାରେ ପକା ଯାଇଥିବା ପରମାଣୁ ବୋମାର ଲୋମହର୍ଷଣକାରୀ ଭୟାବହତା ସାରା ବିଶ୍ୱରେ ଚହଳ ସୃଷ୍ଟି କରିଦେଲା । କୃଷ୍ଣମୂର୍ତ୍ତି ଯେତେବେଳେ ରେଡ଼ିଓରୁ ପ୍ରଥମେ ଏଇ ଖବରଟି ଶୁଣିଲେ ଦୁଃଖରେ ସେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଲେ । ଯୁଦ୍ଧର କେବଳ ବାହାରଆ ରୂପଟି ଯେ ତାଙ୍କୁ ଏପରି ବ୍ୟସ୍ତ ବିବ୍ରତ କରି ଦେଇଥିଲା ତା' ନୁହେଁ, ମନୁଷ୍ୟ ପ୍ରକୃତିର ଅନ୍ତର୍ନିହିତ ବର୍ବରତା ଓ ଅମାନୁଷିକତାରେ ସେ ଏତେ ବ୍ୟଥିତ ହୋଇ ପଡ଼ିଥିଲେ ଯେ ସେ କହୁଥିଲେ, ଏ ବାହାରଆ ଯୁଦ୍ଧର ଭୟାବହତା ଅପେକ୍ଷା ମନୁଷ୍ୟ ଅନ୍ତରରେ ଚାଲିଥିବା ଅହରହ ସଂଘର୍ଷ ଅଧିକ ବିପଦଜନକ ଓ ଗୁରୁତର । କେବଳ ଯୁଦ୍ଧ କାହିଁକି, ସମାଜରେ ପ୍ରତି ମୁହୂର୍ତ୍ତରେ ଘଟୁଥିବା ହତ୍ୟା, ଗଣହତ୍ୟା, ତଥା ମାନସିକ ସ୍ତରରେ ହତ୍ୟାର କାରଣ ଓ ପରିଣାମ ନେଇ ସେ ଘୋର ଚିନ୍ତିତ ଥିଲେ । ତାଙ୍କ ଭାଷାରେ,

"ତମର ଗୋଟିଏ କଥା, ସାମାନ୍ୟ ଗୋଟିଏ ବ୍ୟବହାର ଜଣେ ମଣିଷର କୀର୍ତ୍ତି, ସୁନାମକୁ ହତ୍ୟା କରିପାରିବ । ପର ନିନ୍ଦା, ପର ଚର୍ଚ୍ଚା, ଲାଞ୍ଛନା ଓ ଅପବାଦ ଦ୍ୱାରା ତମେ ଲୋକଟିକୁ ଧ୍ୱଂସ କରି ଦେଇ ପାରିବ । ଆହୁରି ପୁଣି ଦେଖ, ତୁଳନା ଜିନିଷଟା କଣ ହତ୍ୟା କରେ ନାହିଁ କି ? ଗୋଟିଏ ପିଲାକୁ ତା'ଠାରୁ ଅଧିକ ଚତୁର, ସମର୍ଥ ଅନ୍ୟ ଏକ ପିଲା ସହିତ ତୁଳନା କରିବା ଦ୍ୱାରା ତମେ ତା'କୁ ପ୍ରକୃତରେ ହତ୍ୟା କରୁନାହଁ କି ? ଯେଉଁ ଲୋକଟି ରାଗ ଓ ଘୃଣାର ବଶବର୍ତ୍ତୀ ହୋଇ ହତ୍ୟା କରେ, ତାକୁ ତମେ ଅପରାଧୀର ଆଖ୍ୟା ଦିଅ, ତାକୁ ପ୍ରାଣଦଣ୍ଡ ଦିଅ । କିନ୍ତୁ ଯେଉଁ ବ୍ୟକ୍ତି ଦେଶ ନାମରେ ସୁପରିକଳ୍ପିତ ଯୋଜନା ନେଇ—ବୋମା ଆଦି ଅସ୍ତ୍ର ଦ୍ୱାରା ନିମିଷକେ ହଜାର ହଜାର ଲୋକଙ୍କୁ ମାରି ଶୁଆଇ ଦିଏ ତାକୁ ତମେ ଅଭ୍ୟର୍ଥନା ଜଣାଅ, ଉପାଧି ମାନପତ୍ରରେ ମଣ୍ଡିତ କର, ମହାବୀର ବୋଲି ସମ୍ମାନ ଦେଖାଅ । ଏବେ ସାରା ପୃଥିବୀରେ ହତ୍ୟା ବିଶେଷଜ୍ଞଙ୍କର ରାଜତ୍ୱ ଚାଲିଛି । ଗୋଟିଏ ଦେଶ ତାର ନିରାପତ୍ତା ଓ ସାମ୍ରାଜ୍ୟ ବୃଦ୍ଧି ଲାଗି ଆଉ ଗୋଟିଏ ଦେଶକୁ ଧ୍ୱସ୍ତ ବିଧ୍ୱସ୍ତ

କରି ପକାଉଛୁ । ଖାଦ୍ୟ ଉଦ୍ଦେଶ୍ୟରେ, ଲାଭ ଉଦ୍ଦେଶ୍ୟରେ ବା ତଥାକଥିତ ଆମୋଦକ୍ରୀଡ଼ା ନାମରେ ପଶୁପକ୍ଷୀଙ୍କୁ ହତ୍ୟା କରି ଚାଲିଛୁ । ପୁଣି ମଣିଷର ମଙ୍ଗଳ ଉଦ୍ଦେଶ୍ୟରେ ସେମାନଙ୍କୁ ପରୀକ୍ଷାଗାରରେ ରଖି ତାଙ୍କ ଉପରେ ଅତି ଯନ୍ତ୍ରଣାଦାୟକ ଅମାନୁଷିକ ଗବେଷଣାମାନ କରାଯାଉଛୁ । ଆଉ ଖାସ୍ ହତ୍ୟା କରିବା ଲାଗି ତ' 'ସେନାବାହିନୀ' ଗଢ଼ା ଚାଲିଛୁ । ବହୁ ଦୂରରେ ରହି ସୁଦ୍ଧା ନିମିଷକ ମଧ୍ୟରେ ଅସୁମାରି ଲୋକଙ୍କୁ ମାରି ନିଃଶେଷ କରିଦେବା ଲାଗି ଅଭିନବ ଉପାୟମାନ ଉଦ୍ଭାବନ କରି ଯାଉଛୁ । କେତେ କେତେ ବୈଜ୍ଞାନିକ ମନ ପ୍ରାଣ ଢାଳି ସମ୍ପୂର୍ଣ୍ଣ ରୂପେ ଏଇଥିରେ ବୁଡ଼ି ରହିଛନ୍ତି, ଆଉ ଧର୍ମକର୍ତ୍ତାମାନେ ବୋମା ବର୍ଷଣକାରୀ ସମୂହ ସମରଶକ୍ତି ପ୍ରତି ଆଶୀର୍ବାଦ ଢାଳି ଚାଲିଛନ୍ତି ।"

× × × "ତେଣୁ ଏହା କେବଳ ହତ୍ୟା କରିବା ବା ନ କରିବାର ପ୍ରଶ୍ନ ନୁହେଁ । ବରଂ ଏଇ ଯେଉଁ କ୍ରୂରତା, ନିଷ୍ଠୁରତା ଓ ଘୃଣା ସାରା ପୃଥିବୀରେ — ଆମ ପ୍ରତ୍ୟେକଙ୍କ ଭିତରେ ବଢ଼ି ବଢ଼ି ଚାଲିଛୁ, ସେଇଟା ହିଁ ଆମର ପ୍ରକୃତ ସମସ୍ୟା ।"

ହିରୋସିମା ଓ ନାଗାସାକି ଘଟଣାର ଅଳ୍ପଦିନ ପରେ 'ସାଣ୍ଟା ବାର୍‌ବାରା' ନାମକ ଏକ ସ୍ଥାନରେ ଜଣେ ଜାପାନୀ ମହିଳା କୃଷ୍ଣମୂର୍ତ୍ତିଙ୍କ ସହ ଦେଖା କରିବାକୁ ଆସିଥିଲେ । ସାଙ୍ଗରେ ସେ ଗୋଟିଏ ଗ୍ରେଟ ଡବା ମଧ୍ୟ ଆଣିଥିଲେ । ଡବାଟିକୁ କୃଷ୍ଣମୂର୍ତ୍ତିଙ୍କ ହାତରେ ଧରାଇ ଦେଇ ତାର ଢାଙ୍କୁଣି ଖୋଲି ଦେଖିବା ଲାଗି ଭଦ୍ରମହିଳା ଜଣକ ତାଙ୍କୁ ଅନୁରୋଧ କଲେ । ସେ ଯେତେ ମନା କଲେ ମଧ୍ୟ ମହିଳା ଜଣକ ଛାଡ଼ିଲେ ନାହିଁ—ଜିଦ୍ ଧରି ବସିଲେ । ଶେଷରେ ଡବା ଖୋଲା ଗଲାରେ ତା ଭିତରୁ ବାହାରିଲା ମଣିଷର ଗୋଟିଏ କଟା ନାକ ଓ କାନ । ଯୁଦ୍ଧର ବିଭୀଷିକା ମଣିଷକୁ କିପରି ନୃଶଂସ ଓ ବିକୃତ ମନୋଭାବାପନ୍ନ କରିଦିଏ —ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଯୁଦ୍ଧର ପରିସମାପ୍ତି ପରେ କୃଷ୍ଣମୂର୍ତ୍ତି ଯେତେବେଳେ ପୁନର୍ବାର ଜନସାଧାରଣରେ ଭାଷଣ ଦେବାକୁ ଆରମ୍ଭ କଲେ, ସେତେବେଳେ

ତାଙ୍କର ମୂଳତତ୍ତ୍ୱ ଥିଲା ଆତ୍ମ-ସଚେତନତା । ଦୀର୍ଘ ଛଅ ବର୍ଷର ନିଃସଙ୍ଗତା ଓ ଆତ୍ମ-ଅନୁଧ୍ୟାନ ତାଙ୍କୁ ଯେଉଁ ନବ ଦିଗନ୍ତର ସନ୍ଧାନ ଦେଇଥିଲା ତାକୁ ହିଁ ସେ ଲୋକ ସମ୍ମୁଖରେ ଉପସ୍ଥାପିତ କରିବାକୁ ସର୍ବୋତଭାବେ ଚେଷ୍ଟା କରୁଥିଲେ । ସେ କହୁଥିଲେ "ଯେତେବେଳେ ତମେ ଟିକିଏ ସମୟ ପାଇବ, ସେତେବେଳେ ବସିପଡ଼ି ତମ ମନର ପ୍ରତ୍ୟେକ ଭାବନା, ଆବେଗ ଅନୁଭବକୁ ଗୋଟିଏ ଖାତାରେ ଲେଖି ନେବାକୁ ଚେଷ୍ଟା କର । ତେବେ ଯାଇ ଦେଖିବ ଏଭଳି କରିବାଟା ବାସ୍ତବରେ କେତେ କଷ୍ଟକର···କିନ୍ତୁ ଯାହା ଯାହା ଲେଖିବ ସେଥିରୁ ଯଦି ଦୋଷ ବାଛି ବସିବ ବା ସେଥିରୁ ଆତ୍ମ-ତୃପ୍ତି ଲାଭ କରିବ ତେବେ ତମ ମନରେ ଭାବନା-ଆବେଗର ଯେଉଁ ସ୍ରୋତଟି ଝରିବାରେ ଲାଗିଥାଏ ତାକୁ ତମେ ରୁଦ୍ଧ କରିଦେବ । ଆଉ ତା' ସଙ୍ଗେ ସଙ୍ଗେ ତମ ହୃଦ୍‌ବୋଧତାରେ ମଧ୍ୟ ପୂର୍ଣ୍ଣଚ୍ଛେଦ ଟାଣିଦେବ ।"

୧୯୪୫ରୁ ୪୭ ମସିହା ଭିତରେ କୃଷ୍ଣମୂର୍ତ୍ତି ଯେତୋଟି ସ୍ଥାନରେ ଭାଷଣ ଦେଇଥିଲେ ସେଠାରେ ତାଙ୍କୁ ଉଦ୍‌ବିଗ୍ନ ଜନତା ଯୁଦ୍ଧର କାରଣ, ତା'ର ଭୟାବହ ପରିଣତି ଓ ଏହି ଯୁଦ୍ଧମୁଖୀ ସମାଜରୁ ଆପଣାକୁ ରକ୍ଷା କରିବାର ଉପାୟ ନେଇ ବହୁ ପ୍ରଶ୍ନ ପଚାରିଥିଲେ । ସେମାନଙ୍କର ଯାବତ୍ ପ୍ରଶ୍ନ ନେଇ କୃଷ୍ଣମୂର୍ତ୍ତିଙ୍କର ସମାଧାନ ଥିଲା ସେହି ଏକ — 'ଆପଣା ଅନ୍ତର ଭିତରେ ସୃଷ୍ଟି ହେଉଥିବା ସମସ୍ୟା ଓ ତା'ପ୍ରତି ମନରେ ଦେଖା ଦେଉଥିବା ପ୍ରତିକ୍ରିୟାକୁ ଗଭୀର ଧ୍ୟାନର ସହ ଲକ୍ଷ୍ୟ କରିଚାଲ ।' ପୁଣି ଆଉ ଗୋଟିଏ ସଭାରେ ହିଟଲରଙ୍କ 'କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପ'ର ଉଦ୍ୟୋକ୍ତାମାନଙ୍କୁ ଦୋଷ ଦେବା ପ୍ରସଙ୍ଗରେ ସେ କହିଥିଲେ, "ସେମାନଙ୍କୁ ଦୋଷୀ ବୋଲି ସାବ୍ୟସ୍ତ କରିବ କିଏ ? ବିଚାରକ ନିଜେ, ଦୋଷୀଠାରୁ କେଉଁ ଗୁଣରେ ବା ଊଣା ? ଆମେ ପ୍ରତ୍ୟେକେ ମିଶି ଯେମିତି ଏ ସଭ୍ୟତାକୁ ଗଢ଼ି ଆଣିଛୁ, ତା'ର ଦୁଃଖ ଦୁର୍ଦ୍ଦଶାରେ ବି ସେମିତି ଆମ ପ୍ରତ୍ୟେକଙ୍କର ସେତିକି ଅବଦାନ ରହିଛି; ତାର ପ୍ରତ୍ୟେକଟି କାର୍ଯ୍ୟାନୁଷ୍ଠାନ ପାଇଁ ଆମେ ସଭିଏଁ ସମାନ ଭାବରେ ଦାୟୀ ।"

ଭାଷଣ ଶେଷରେ କୃଷ୍ଣମୂର୍ତ୍ତିଙ୍କର ଏଭଳି ଚିନ୍ତାଧାରା ପ୍ରତ୍ୟେକ ଶ୍ରୋତାର ପ୍ରାଣରେ ଏକ ବିରାଟ ପ୍ରଶ୍ନବାଚୀ ଟାଣି ଦେଉଥିଲା । ଆଜିଯାଏ ସେମାନେ କେବଳ ବାହାର ଦୁନିଆକୁ ଦେଖି ଆସିଥିଲେ, ବାହାରେ ଘଟୁଥିବା ହିଂସ୍ରତା, ବର୍ବରତାରେ ଶିହରି ଉଠୁଥିଲେ, ବାହାରଆ ଭାବରେ ଦୋଷଗୁଣର କାରଣ ଖୋଜି ହେଉଥିଲେ । ମାତ୍ର ସେ ସବୁର ମୂଳ କାରଣଟି କଣ ତାଙ୍କର ନିଜ ଭିତରେ ରହିଛି ? ସେଇମାନେ ହିଁ କଣ ପ୍ରକୃତରେ ଏ ପୃଥିବୀରେ ବଢ଼ି ଚାଲିଥିବା ଅସରନ୍ତି ସମସ୍ୟାର କାରଣ ଓ ସମାଧାନ ? ଆପଣା ଅନ୍ତର ଭିତରୁ ସେମାନେ ଏ ପ୍ରଶ୍ନ ସମୂହର ଉତ୍ତର ପାଇବାକୁ ଚେଷ୍ଟା କରୁଥିଲେ ।

## ଉପଯୁକ୍ତ ଶିକ୍ଷା ଓ ବିଦ୍ୟାଳୟ

ଏ ବିଚିତ୍ର ସଂଘର୍ଷମୟ ଜଗତରେ ଏକାକୀ ଛିଡ଼ା ହେବା ଲାଗି, ଜୀବନର ପାଦେ ପାଦେ ମୁଣ୍ଡ ଟେକୁଥିବା ସମସ୍ୟାର ସମ୍ମୁଖୀନ ହେବା ଲାଗି ତଥା ସାଂସାରିକ ଘାତପ୍ରତିଘାତରେ ଭାଙ୍ଗି ନ ପଡ଼ିବା ଲାଗି ମନୁଷ୍ୟଠାରେ ସମ୍ୟକ୍ ବୋଧଶକ୍ତି ଓ ନିଗୂଢ଼ ଆତ୍ମଜ୍ଞାନ ରହିବା ଏକାନ୍ତ ଆବଶ୍ୟକ । ମନୁଷ୍ୟଠାରେ ଏଭଳି ପରିପକ୍ୱ ହୃଦ୍‌ବୋଧତା ଓ ଆତ୍ମ-ଉପଲବ୍‌ଧି ଜାତ କରାଇବା ଲାଗି ତାକୁ ପିଲାଟି ଦିନରୁ ସମୁଚିତ ଶିକ୍ଷା ଦିଆଯିବା ଆବଶ୍ୟକ । ପିଲାଟି ନିଜ ମନ ଓ ଅନ୍ତରର ପ୍ରତ୍ୟେକ ଭାବନା, ଆବେଗ ଅନୁରାଗ ଓ ପ୍ରତିକ୍ରିୟା ପ୍ରତି ତୀକ୍ଷ୍ଣ ଭାବରେ ସଜାଗ ରହିବା ଲାଗି ତାକୁ ପିଲାବେଳରୁ ହିଁ ସାହାଯ୍ୟ କରିବା ଆବଶ୍ୟକ । ତା'ର ତରଳ, କୋମଳ ମନକୁ ଧରାବନ୍ଧା ପୋଥି-ଜ୍ଞାନରେ ରୁକ୍ଷ, ସମ୍ବେଦନହୀନ କରି ନ ଦେଇ ବରଂ ତା ଠାରେ ସମ୍ବେଦନଶୀଳତା ଓ ସୃଜନଶୀଳତା ଜାତ କରାଇବା ଦରକାର । ଏହିସବୁ ଉଦ୍ଦେଶ୍ୟ ରଖି ଛୋଟ ଛୋଟ ପୁଅ ଝିଅଙ୍କ ପାଇଁ ଉପଯୁକ୍ତ ଶିକ୍ଷାଦାନର ବ୍ୟବସ୍ଥା କରିବାକୁ କୃଷ୍ଣମୂର୍ତ୍ତିଙ୍କ ମନରେ ଏକ ଆକାଂକ୍ଷା ରହିଥିଲା । ସେହି ଅନୁଯାୟୀ

ତାଙ୍କର ଜନ୍ମସ୍ଥାନ ମଦନାପଲ୍ଲୀଠାରୁ ୧୬ କି. ମି. ଦୂରରେ ଆନ୍ଧ୍ର-ପ୍ରଦେଶର ଋଷିଭ୍ୟାଲି ଉପତ୍ୟକାଠାରେ ଋଷିଭ୍ୟାଲି ଟ୍ରଷ୍ଟ ଦ୍ୱାରା ପରିଚାଳିତ ସର୍ବପ୍ରଥମ ଋଷିଭ୍ୟାଲି ସ୍କୁଲ ୧୯୨୯ ମସିହାରେ ସ୍ଥାପିତ ହୋଇଥିଲା । ସର୍ବମୋଟ ୩୬୦ ଏକର ଜମିରେ ଅବସ୍ଥିତ ଏହି ଋଷିଭ୍ୟାଲି ସ୍କୁଲରେ ଛାତ୍ରଛାତ୍ରୀଙ୍କ ଲାଗି ସ୍ୱତନ୍ତ୍ର ଆବାସ ବ୍ୟତୀତ ଆଖପାଖ ଗାଆଁର ଗରିବ ପିଲାମାନଙ୍କୁ ଶିକ୍ଷା ଓ ଡାକ୍ତରୀ ସୁବିଧା ଯୋଗାଇ ଦେବା ପାଇଁ ଏଠାରେ ଏକ ଅନୁଷ୍ଠାନ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । ସ୍କୁଲ ଘର ଓ ହଷ୍ଟେଲର ଚତୁର୍ଦ୍ଦିଗରେ ବିସ୍ତୃତ ଉଦ୍ଭିଦ-ଶ୍ୟାମଳ ପ୍ରାନ୍ତର ଓ ତା'ର ଅପର ପାର୍ଶ୍ୱରେ ଆକାଶସ୍ପର୍ଶୀ ଋଷିକୋଣ୍ଡା ପର୍ବତମାଳାର ଧ୍ୟାନଗମ୍ଭୀର ଦୃଶ୍ୟ ସେହି ସମଗ୍ର ସ୍ଥାନଟିକୁ ଏକ ଅପୂର୍ବ ପ୍ରାକୃତିକ ରୂପସଜ୍ଜାରେ ମଣ୍ଡିତ କରିଥିଲା । ସ୍କୁଲ ପ୍ରତିଷ୍ଠା ହେବା ଦିନଠାରୁ କୃଷ୍ଣମୂର୍ତ୍ତି ପ୍ରତିବର୍ଷ ତାଙ୍କର ଭାରତ ଗସ୍ତ ସମୟରେ ସେହି ସ୍କୁଲ ପିଲାମାନଙ୍କ ଗହଣରେ କିଛିଦିନ କଟାଇ ଥାଆନ୍ତି ଓ ସେତିକିବେଳେ ଛାତ୍ରଛାତ୍ରୀ ତଥା ଶିକ୍ଷକମାନଙ୍କ ସହିତ ଜୀବନର ନାନା ଗଭୀର ସମସ୍ୟା ନେଇ ଆଲୋଚନା କରିଥାନ୍ତି ।

ଋଷିଭ୍ୟାଲି ସ୍କୁଲ ପ୍ରତିଷ୍ଠା ହେବାର ପାଞ୍ଚବର୍ଷ ପରେ ତା'ରି ଢାଞ୍ଚାରେ ବନାରସର ରାଜଘାଟ ଠାରେ ଭାରତର ଦ୍ୱିତୀୟ କୃଷ୍ଣମୂର୍ତ୍ତି ସ୍କୁଲ (୧୯୩୪) ପ୍ରତିଷ୍ଠା ହୋଇଥିଲା । ଋଷିଭ୍ୟାଲି ପରି ରାଜଘାଟ ସ୍ଥାନଟି ମଧ୍ୟ ବନାରସ ସହରର ଜନଗହଳି ଠାରୁ ପାଞ୍ଚ ମାଇଲ ଦୂରରେ, ଗଙ୍ଗା ଓ ବରୁଣା ନଦୀର ସଙ୍ଗମ ସ୍ଥଳୀରେ ଅବସ୍ଥିତ । ବୁଦ୍ଧଦେବଙ୍କ ଧର୍ମ ପ୍ରଚାରର ଏକ ଆଦ୍ୟପୀଠ ଭାବରେ ଉକ୍ତ ସ୍ଥାନଟି ଅଦ୍ୟାପି ପବିତ୍ର ଓ ମହିମାମୟ ବୋଲି ଗଣାଯାଏ । ଇତିହାସ କହେ ଯେ ସେହି ରାଜଘାଟ-ଠାରୁ ଏକ ଅଣଓସାରିଆ ଚାଲିପଥ ଦେଇ ଗୌତମ ବୁଦ୍ଧ ସାରନାଥରେ ପହଞ୍ଚି ନିଜର ପ୍ରଥମ ଜ୍ଞାନ ପ୍ରଚାର କରିଥିଲେ । ଆୟତନରେ ରାଜଘାଟ ସ୍କୁଲଟି ଋଷିଭ୍ୟାଲି ସ୍କୁଲଠାରୁ ଅଳ୍ପ ଛୋଟ । ସମୁଦାୟ ଦୁଇଶହ ପଚିଶ ଏକର ଜମିରେ ପ୍ରତିଷ୍ଠିତ ଏହି ସ୍କୁଲଘର, ଛାତ୍ରାବାସ, ଫାର୍ମ ହାଉସ୍ ଓ ତତ୍‌ସଂଲଗ୍ନ ଖେଳପଡ଼ିଆ ଓ ବଗିଚା ପ୍ରଭୃତିକୁ ନେଇ ଗଢ଼ା ଏହି

ରାଜଘାଟ ସ୍କୁଲଟି ଭାରତରେ ବେଶ୍ ପ୍ରସିଦ୍ଧ । ଏଠାରେ ଦ୍ୱିତୀୟ ଶ୍ରେଣୀରୁ ଆରମ୍ଭ କରି ଦଶମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନର ବ୍ୟବସ୍ଥା ରହିଛି ।

ଏହାପରେ ୧୯୪୬ ମସିହାରେ, ଦଶବର୍ଷ ପୂର୍ବରୁ ପ୍ରସ୍ତାବିତ ଅନ୍ୟ ଏକ କୃଷ୍ଣମୂର୍ତ୍ତି ସ୍କୁଲ ଓହାଇର ଆର୍ଯ୍ୟ ବିହାର ଠାରୁ ଅଳ୍ପ ଦୂରରେ କିଣା ଯାଇଥିବା ଜମିରେ ନିର୍ମିତ ହେଲା । ସାଢ଼େ ଗୃଶଶହ ଏକର ଜମିରେ ସୁପରିକଳ୍ପିତ ଯୋଜନାରେ ଗଢ଼ା ହୋଇଥିବା ଏହି 'ହାପି ଭାଲି ସ୍କୁଲ୍'ରେ ଛାତ୍ର ଛାତ୍ରୀ ଉଭୟ ରହି ପଢ଼ିବାର ବ୍ୟବସ୍ଥା ଅଛି ଏବଂ ଭାରତରେ ଥିବା ଅନ୍ୟ ଦୁଇଟି ସ୍କୁଲ ଭଳି ଏଠାରେ ମଧ୍ୟ ଛାତ୍ର ଛାତ୍ରୀଙ୍କୁ ପ୍ରକୃତି ସହିତ ନିବିଡ଼ ସମ୍ପର୍କ ସ୍ଥାପନ କରିବାରେ ସହାୟତା କରିବା ଲାଗି ସ୍କୁଲ ଘରକୁ ବେଢ଼ାଇ ବିସ୍ତୃତ ମେଲାଖୋଲା ସବୁଜ ପ୍ରାନ୍ତର ରହିଛି । ସ୍କୁଲରେ ଛାତ୍ର ଛାତ୍ରୀ ସଂଖ୍ୟାର ସୀମିତତା ଉପରେ କୃଷ୍ଣମୂର୍ତ୍ତି ବରାବର ଗୁରୁତ୍ୱ ଦେଇ ଆସୁଥିଲେ । ସେ କହୁଥିଲେ ଯେ ଅଧିକାଂଶ ବ୍ୟକ୍ତି ଭାବନ୍ତି ବିଦ୍ୟାଳୟଗୁଡ଼ିକ ଆକାର, ଆୟତନରେ ଖୁବ୍ ବିରାଟ ହୋଇଥିବ, ତାର ବହୁତ କୋଠାବାଡ଼ି ଥିବ, ସେଠାରେ ବହୁସଂଖ୍ୟକ ପିଲା ପଢ଼ୁଥିବେ, ତେବେ ଯାଇ ସେଗୁଡ଼ିକ ଯଥାର୍ଥ ଶିକ୍ଷାକ୍ଷେତ୍ର ଭାବରେ ଗଣାଯାଇ ପାରିବ । ମାତ୍ର ପ୍ରକୃତରେ କଥାଟା ଠିକ୍ ଓଲଟା । ବଡ଼ ବଡ଼ ଅନୁଷ୍ଠାନ, ଯେଉଁଠାରେ କି ଛାତ୍ରଛାତ୍ରୀ ସଂଖ୍ୟା ଶିକ୍ଷାଦାତାର ସଂଖ୍ୟାଠାରୁ ଢେର ଅଧିକ ସେଠାରେ ଶିକ୍ଷକ ପ୍ରତ୍ୟେକ ଛାତ୍ର ସହିତ ନିଜର ସମ୍ପର୍କ ନେଇ କେବେହେଲେ ସତର୍କ ଓ ଆଗ୍ରହୀ ରହି ପାରିବେ ନାହିଁ । ସେ କେବଳ ଚିରାଚରିତ ପ୍ରଥାରେ ପଦ୍ଧତିକୁ ଅନୁସରଣ କରି ଛାତ୍ରଛାତ୍ରୀଙ୍କୁ ତଥ୍ୟ ଯୋଗାଇଦେବେ, ତାଙ୍କର ଦକ୍ଷତା ବୃଦ୍ଧି କରିବେ ଓ ତାଙ୍କୁ ଯନ୍ତ୍ରବତ୍ ଚିନ୍ତା କରିବାରେ ସାହାଯ୍ୟ କରିବେ ସିନା କିନ୍ତୁ ତାଙ୍କୁ ସଂହତ ମାନବ କରି ଗଢ଼ିପାରିବେ ନାହିଁ । ତାହାଛଡ଼ା ଏକାଠି ଅନେକଗୁଡ଼ିଏ ପିଲାଙ୍କୁ ଶିକ୍ଷାଦାନ କଲେ ବ୍ୟକ୍ତିଗତ ଭାବରେ ପ୍ରତ୍ୟେକ ପିଲାର ଅଭାବ ଅସୁବିଧା, ହାବଭାବ ଓ ଦକ୍ଷତା ପ୍ରଭୃତିକୁ ଶିକ୍ଷକ ଜଣକ ଅନୁଧ୍ୟାନ କରିପାରିବେ ନାହିଁ । ଫଳରେ ଶିକ୍ଷାର ମୌଳିକ ମାନ ବା ମୂଲ୍ୟ ମଧ୍ୟ ସମ୍ପାଦିତ ହୋଇପାରିବ ନାହିଁ ।

କୃଷ୍ଣମୂର୍ତ୍ତିଙ୍କର ମତରେ ପିଲାମାନଙ୍କୁ ପରୀକ୍ଷାରେ ପାଶ୍ କରାଇ, ତାଙ୍କ ହାତରେ ଗୁଡ଼ିଏ ଡିଗ୍ରୀ କାଗଜ, ମାନପତ୍ର ଧରାଇ ଦେଇ ତାଙ୍କୁ ସଂଘର୍ଷମୟ ସମାଜ ଭିତରକୁ ଠେଲି ଦେବାର ଅର୍ଥ ଶିକ୍ଷା ନୁହେଁ । ଶିକ୍ଷା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତଥା ସୂକ୍ଷ୍ମ ଜିନିଷଟିଏ । ମଣିଷକୁ ଅର୍ଥ ଉପାର୍ଜନ ଲାଗି ବା ତୁଳନାତ୍ମକ ଦୁନିଆରେ ଆପଣାର ସାମର୍ଥ୍ୟ ପ୍ରତିପାଦନ କରିବା ଲାଗି ଯୋଗ୍ୟ କରି ଗଢ଼ିବା ଶିକ୍ଷାର ଧର୍ମ ନୁହେଁ । ଏ ସମ୍ପର୍କରେ ସେ ଗୋଟିଏ ସ୍ଥାନରେ ଅତି ସୁନ୍ଦର ଭାବେ ବୁଝାଇ କହିଛନ୍ତି, "ମଣିଷ ଉପରେ ଏକ ନୂଆ ଧରଣର ଆଚରଣ ବିଧି ବା ନୂଆ ଚିନ୍ତାଧାରାର ବୋଝକୁ ଲଦି ନ ଦେଇ ବରଂ ତା' ମନରେ ଥିବା ସମସ୍ତ ପ୍ରକାର ମନସ୍ତାତ୍ତ୍ୱିକ ପ୍ରତିବନ୍ଧକକୁ ଖୋଜି କାଢ଼ିବାରେ ସାହାଯ୍ୟ କରିବା ହେଉଛି ଶିକ୍ଷାର ବାସ୍ତବ ଧର୍ମ ।" × × × "ଶହ ଶହ ସଂଖ୍ୟାରେ ଛାତ୍ରଛାତ୍ରୀ ଏକାଠି ବସି ଶିକ୍ଷାଲାଭ କରିବା ଭଳି ଏକ ବିରାଟ ବର୍ଦ୍ଧିଷ୍ଣୁ ଶିକ୍ଷାନୁଷ୍ଠାନ ଆପଣାର ସମସ୍ତ ଆନୁସଙ୍ଗୀକ ଆଡ଼ମ୍ବର ଓ କୃତିତ୍ୱାବଳୀ ଖାଲି ଗୁଡ଼ାଏ ବ୍ୟାଙ୍କ କିରାଣି, ସଫଳ ବିକ୍ରେତା, ଶିଳ୍ପପତିଙ୍କ, ଶାସନ ବିଭାଗୀୟ କର୍ମକର୍ତ୍ତା ଓ କାରିଗରୀ-କୁଶଳ ପଲ୍ଲବଗ୍ରାହୀ ବ୍ୟକ୍ତି ପ୍ରଭୃତିଙ୍କୁ ସୃଷ୍ଟି କରିପାରିବ । କିନ୍ତୁ ଜଣେ ବ୍ୟକ୍ତି ଯଦି ସଂହତିଶୀଳ ହୋଇଥାଏ, ତେବେ ଯାଇ ସେ ଶ୍ରେଷ୍ଠ ଶ୍ରେଷ୍ଠ ବିଦ୍ୟାଳୟ ଗଢ଼ିବାରେ ସାହାଯ୍ୟ କରିପାରିବ ସିନା ! ତେଣୁ ବୃହଦାକାର ଶିକ୍ଷାନୁଷ୍ଠାନ ଗୁଡ଼ିକରେ ସର୍ବାଧୁନିକ ଓ ସର୍ବୋତ୍ତମ ପ୍ରଣାଳୀ ଅନୁସରଣ କରିବା ଅପେକ୍ଷା କ୍ଷୁଦ୍ର ଶିକ୍ଷାନୁଷ୍ଠାନରେ ଅଳ୍ପ ସଂଖ୍ୟକ ପିଲାଙ୍କୁ ସ୍ଥାନ ଦେଇ, ସେମାନଙ୍କ ପାଇଁ ଯଥାର୍ଥ ଧରଣର ଶିକ୍ଷାଦାତା ନିଯୁକ୍ତ କରିବା ହେଉଛି ଢେର ବେଶୀ ଗୁରୁତ୍ୱପୂର୍ଣ୍ଣ ।"

୧୯୮୬ ମସିହା ସେପ୍ଟେମ୍ବର ମାସରେ କୃଷ୍ଣମୂର୍ତ୍ତି ଓହାଇରୁ ଭାରତ ଗସ୍ତରେ ଆସିବାର ସମସ୍ତ ବନ୍ଦୋବସ୍ତ ହୋଇସାରିବା ପରେ ଅଚାନକ ସେ ଏକ ଗୁରୁତର ମୂତ୍ରାଶୟ ବେମାରୀରେ ଶଯ୍ୟାଶାୟୀ ହୋଇପଡ଼ିଲେ । ସେ ବେମାରୀ ତାଙ୍କୁ ଏତେ ଦୁର୍ବଳ କରିପକାଇଲା ଯେ ସେଇ ବର୍ଷ ଓହାଇର ସାଧାରଣ ସଭାରେ ଭାଷଣ ଦେବାକୁ ମଧ୍ୟ

ତାଙ୍କଠାରେ ଆଉ ବଳ ରହିଲା ନାହିଁ । କୃଷ୍ଣମୂର୍ତ୍ତି ସଦାବେଳେ ଡାକ୍ତରୀ ଔଷଧର ବିପକ୍ଷରେ ଥିଲେ । ତେଣୁ ଯେତେ ଗୁରୁତର ଭାବରେ ଅସୁସ୍ଥ ହେଲେ ସୁଦ୍ଧା ସେ ବରାବର ଡାକ୍ତରୀ ଔଷଧ ଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଥିଲେ । ସମ୍ଭବତଃ ସେ ବୁଝି ପାରୁଥିଲେ ଯେ ତାଙ୍କର ସୂକ୍ଷ୍ମ ଅନୁଭବ ଶକ୍ତିସମ୍ପନ୍ନ ଶରୀର ଉପରେ ଏସବୁ କଡ଼ା ଡାକ୍ତରୀ ଔଷଧର ପ୍ରଭାବ ଅତ୍ୟନ୍ତ କ୍ଷତିକାରକ ହେବ । ତେଣୁ ମୂତ୍ରାଶୟ ରୋଗର ଭୟାନକ ଯନ୍ତ୍ରଣା ଭୋଗି ସୁଦ୍ଧା ସେ ଦିନେ ହେଲେ ଯନ୍ତ୍ରଣା ଉପଶମକାରୀ —ଆସପିରିନ୍ ବଟିକାଟିଏ ବି ଖାଇ ନ ଥିଲେ । ପୂରା ଛଅ ମାସ କାଳ ସେ ଏହି ରୋଗ ଭୋଗିଲେ ଏବଂ ପୂର୍ଣ୍ଣ ଆରୋଗ୍ୟ ହେବା ପରେ ୧୯୪୭ ମସିହା ଅକ୍ଟୋବର ମାସରେ ଦୀର୍ଘ ଦେଢ଼ ବର୍ଷ ରହଣିର ଯୋଜନା ନେଇ ଭାରତ ଆସିଲେ ।

ସେ ବର୍ଷ କେତେକ ଅସୁବିଧା ହେତୁ ରାଜଗୋପାଲ ତାଙ୍କ ସହିତ ଭାରତ ଆସିପାରି ନ ଥିଲେ । ତେଣୁ ସେ ଏକାକୀ ଓହାଇରୁ ଆସି ବମ୍ବେ ବିମାନଘାଟୀରେ ପହଞ୍ଚିଲେ । ସେତେବେଳକୁ ସ୍ୱାଧୀନ ଭାରତର ନୂଆ ରୂପରେଖ, ନୂଆ ଭବିଷ୍ୟତ ନେଇ ଭାରତୀୟମାନଙ୍କ ମନରେ କେତେ କେତେ ସ୍ୱପ୍ନ ସୃଷ୍ଟି ହୋଇଥିଲା । ନବ ଭାରତରେ ଏକ ସମ୍ପୂର୍ଣ୍ଣ ନୂତନ ସୁସ୍ଥ ସାମାଜିକ ଓ ନୈତିକ ବାତାବରଣ ସୃଷ୍ଟି କରିବା ପାଇଁ ସମସ୍ତେ ଯେପରି ବ୍ୟାକୁଳ ହୋଇ ଉଠିଥିଲେ ।

ବମ୍ବେରେ କୃଷ୍ଣମୂର୍ତ୍ତିଙ୍କୁ ବିମାନଘାଟୀରୁ ପାଛୋଟି ଆଣିବା ଲାଗି ଯାଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ତତ୍କାଳୀନ ଲବ୍ଧ ପ୍ରତିଷ୍ଠ ଶିଳ୍ପପତି ତଥା ସମାଜସେବୀ — ଶ୍ରୀ ଚୂନିଲାଲ ମେହେଟା । କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ଓ ଦର୍ଶନରେ ବିଶେଷ ପ୍ରଭାବିତ ହୋଇ ଶ୍ରୀ ମେହେଟା ନିଜର ବୋହୂ ଶ୍ରୀମତି ନନ୍ଦିନୀ ମେହେଟାଙ୍କୁ ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ସହିତ ପରିଚୟ କରାଇ ଦେଇଥିଲେ । କୃଷ୍ଣମୂର୍ତ୍ତି ବମ୍ବେରେ ପ୍ରଥମ କିଛୁଦିନ ଜଣେ ପୁରୁଣା ବନ୍ଧୁ — ରତନ୍‌ସୀ ମୋରାରଜୀଙ୍କ ଘରେ ରହିଥିଲେ । ନନ୍ଦିନୀ ମେହେଟା ଯେତେବେଳେ ନିଜ ଶ୍ୱଶୁରଙ୍କ ସହ ଆସି ସେଠାରେ ପହଞ୍ଚିଲେ ସେତେବେଳକୁ ଘର ଭିତରେ

କୃଷ୍ଣମୂର୍ତ୍ତି ଏକ ଦଳଗତ ଆଲୋଚନାରେ ବ୍ୟସ୍ତ ଥିଲେ । ସେଠାରେ ପହଞ୍ଚି ନନ୍ଦମାଙ୍କୁ ପ୍ରଥମେ ବଡ଼ ସଙ୍କୋଚ ଲାଗିଲା । ସେଦିନର ଘଟଣାକୁ ସ୍ମରଣକରି ସେ କହିଛନ୍ତି —

"ବଡ଼ ସଙ୍କୋଚରେ ଯାଇ ହଲର ଗୋଟିଏ କୋଣ ମୁଣ୍ଡରେ ମୁଁ ଭୂଇଁରେ ଚକାମାରି ବସି ପଡ଼ିଲି । ଭିତରେ ଭିତରେ ମତେ ବଡ଼ ଛନକା ଲାଗୁଥାଏ । ମୁଣ୍ଡ ଟେକି ଚାହିଁଲାବେଳକୁ ଠିକ୍ ଆମରି ସାମନାରେ ଖଣ୍ଡେ ଦୂରରେ ଧୋବ ଫରଫର ଲମ୍ବା କୁର୍ତ୍ତା ପିନ୍ଧି ସେ ବସିଛନ୍ତି । ଏକବାରେ ସଳଖ, ମୂର୍ତ୍ତିମନ୍ତ ଦିବ୍ୟ ଚେହେରା । ହଲ ଭିତରେ ଲୋକ ଭର୍ତ୍ତି — ସେମାନଙ୍କ ସହିତ ଏକ ଗମ୍ଭୀର ଆଲୋଚନାରେ ମଗ୍ନ ଥିଲେ କୃଷ୍ଣମୂର୍ତ୍ତି । ମୋର ଶ୍ୱଶୁର ଯାଇ ସିଧା ତାଙ୍କ ସାମନାରେ ବସି ପଡ଼ିଲେ ଓ ଆଲୋଚନାରେ ଭାଗ ନେଲେ । କୃଷ୍ଣମୂର୍ତ୍ତିଙ୍କ ଦୃଷ୍ଟି ସେଯାଏଁ ମୋ' ଉପରେ ପଡ଼ି ନ ଥିଲା । ଏମିତି ଭାବରେ ମିନିଟିଏ ଖଣ୍ଡେ ଯାଇଛି କି ନାହିଁ ହଠାତ୍ ଦେଖିଲାବେଳକୁ ସେ ମୁହଁ ବୁଲାଇ ମୋରି ଆଡ଼କୁ ଚାହିଁଛନ୍ତି । କେତେ ମୁହୂର୍ତ୍ତ ଧରି ସେ ମତେ ତୀକ୍ଷ୍ଣ ଭାବରେ ଚାହିଁ ରହିଲେ । ସତେ ଅବା ସମୟ ମୋ' ପାଇଁ ସେଇଠି ଅଟକିଗଲା । ତା'ପରେ ସେ ପୁଣି ମୁହଁ ଫେରାଇ ଆଲୋଚନାରେ ଭାଗ ନେଲେ । ତା'ର କିଛି ସମୟ ପରେ ସେ ଆଉଥରେ ମୁହଁ ବୁଲାଇ ମତେ କିଛିକ୍ଷଣ ପାଇଁ ଚାହିଁ ରହିଲେ । ଅତ୍ୟନ୍ତ ଗମ୍ଭୀର ଭାବରେ ସେ ମୋ'ରି ଆଖିକୁ ଚାହିଁ ରହିଥାନ୍ତି ।

ଆଲୋଚନା ସଭା ଶେଷହେବା ପରେ ଲୋକମାନେ ଗୋଟି ଗୋଟି ହୋଇ ବିଦାୟ ନେଲେ । ମୁଁ ବି ଉଠିଲି ଯିବାପାଇଁ । ଦେଖିଲି, କୃଷ୍ଣମୂର୍ତ୍ତି ସିଧା ମୋରି ଆଡ଼କୁ ଆଗେଇ ଆସୁଛନ୍ତି । ସଙ୍ଗେ ସଙ୍ଗେ ମୋର ଶ୍ୱଶୁର ମୋ' ପାଖକୁ ଚାଲିଆସି ମତେ ତାଙ୍କ ସହିତ ପରିଚୟ କରାଇ-ଦେଲେ — 'ଏ ମୋର ବୋହୂ ନନ୍ଦମା' । କୃଷ୍ଣମୂର୍ତ୍ତି ହସରେ ଫାଟି ପଡ଼ିଲେ । ହଁ...ସେ ଖୁବ୍ ଜୋର୍‌ରେ ହସିବାକୁ ଲାଗିଲେ । ସେଭଳି ଅତଳସ୍ପର୍ଶୀ ପ୍ରକମ୍ପିତ ହସର ଧ୍ୱନି ମୁଁ ଆଗରୁ କେବେହେଲେ ଶୁଣି

ନ ଥିଲି । ଠିକ୍ ହିମାଳୟ ବକ୍ଷରୁ ନିଃସୃତ ଏକ ନର୍ଝର ପଥର ଖଣ୍ଡରେ ପିଟିହୋଇ ଅନ୍ୟ ଏକ ସ୍ରୋତରେ ମିଶି ଯାଉଥିବା ଭଳି ମୋର ମନେ ହେଲା । ଶେଷରେ ମତେ ସେ ପଚାରିଲେ,— 'ତମେ କାହିଁକି ଏଠିକି ଆସିଛ ?' ଆଉ ମୁଁ ଆପଣାକୁ ଆୟତ୍ତ କରିପାରିଲି ନାହିଁ । ଆଖିରୁ ମୋର ଧାର ଧାର ଲୁହ ଝରିବାରେ ଲାଗିଲା । ମୋର ହାତଟିକୁ ଉଠାଇ ତାଙ୍କର ଦୁଇ ହାତରେ ଜାବୋଡ଼ି ଧରି ସେ ସେମିତି ହସିବାରେ ଲାଗିଥାନ୍ତି । ତା'ର ଟିକିଏ ପରେ ସେ ପୁଣିଥରେ ପଚାରିଲେ, 'କହ ମତେ, ତମେ କାହିଁକି ଆସିଛ ?' ଆଖିରୁ ମୋର ଲୁହଧାର ଯେମିତି ଆଉ ବନ୍ଦ ହେବାର ନୁହେଁ । ଶେଷରେ ଅଜାଣତରେ ପାଟିରୁ ବାହାରି ଆସିଲା— 'ଏ ତିରିଶ ବର୍ଷ କାଳ ଯେ ମୁଁ ଆପଣଙ୍କ ପ୍ରତୀକ୍ଷାରେ ହିଁ ରହିଥିଲି ।' (ସେତେବେଳେ ନନ୍ଦିନୀଙ୍କର ବୟସ ମାତ୍ର ତିରିଶ) । ତାଙ୍କର ସେହି ହସ ସେମିତି ଚାଲିଥାଏ । ମୋର ହାତଟିକୁ ଛାଡ଼ିଦେଇ ସେ ତାଙ୍କ ପାପୁଲିକୁ ମୋର ମୁଣ୍ଡ ଉପରେ ଟିକିଏ ରଖିଲେ । ମୋର ଆଖିର ଲୁହରେ ମୁଁ ତାଙ୍କୁ ନୀରବରେ ପ୍ରଣାମ ଜଣାଇଲି ।"

ପରବର୍ତ୍ତୀ ଜୀବନରେ ନନ୍ଦିନୀ ମେହେଟା କ୍ରିଷ୍ଣମୂର୍ତ୍ତିଙ୍କର ଖୁବ୍ ନିକଟକୁ ଆସି ପାରିଥିଲେ ଏବଂ ତାଙ୍କର ଶିକ୍ଷାରେ ଉଦ୍‌ବୁଦ୍ଧ ହୋଇଥିଲେ । ତାଙ୍କ ଭଳି ତାଙ୍କର ବଡ଼ ଭଉଣୀ, ବିଶିଷ୍ଟ ସମାଜସେବୀ ଶ୍ରୀମତୀ ପୁପୁଲ ଜୟକର ମଧ୍ୟ କ୍ରିଷ୍ଣମୂର୍ତ୍ତିଙ୍କ ସଂସ୍ପର୍ଶରେ ଆସି ତାଙ୍କର ଅଭିନବ ଜୀବନ ଦର୍ଶନରେ ଅତିମାତ୍ରାରେ ପ୍ରଭାବିତ ହୋଇଥିଲେ । ସେହି ଦୁଇ ଭଉଣୀଙ୍କ ବ୍ୟତୀତ ଅନ୍ୟ ଯେଉଁ ଭାରତୀୟ ବନ୍ଧୁମାନେ କ୍ରିଷ୍ଣମୂର୍ତ୍ତିଙ୍କ ଉତ୍ତର ଜୀବନରେ ତାଙ୍କର ନିବିଡ଼ ସଂସ୍ପର୍ଶରେ ଆସିଥିଲେ ସେମାନଙ୍କ ଭିତରେ ଥିଲେ — ବାଙ୍ଗାଲୋର ଇନଷ୍ଟିଚିଉଟ୍ ଅଫ୍ ସାଇନ୍‌ସର ଅଧ୍ୟାପକ ଡ. ଭି. ବାଲସୁନ୍ଦରମ୍, ବିଶିଷ୍ଟ ଥିଓସଫିଷ୍ଟ ଏନ୍. ଶ୍ରୀରାମ୍‌ଙ୍କର କନ୍ୟା ରାଧା ବର୍ଣ୍ଣିଆର, ଶ୍ରୀ ଆର୍. ମାଧବାଚାରୀ ଏବଂ ମହାରାଷ୍ଟ୍ରର ବିଶିଷ୍ଟ ଥିଓସଫିଷ୍ଟଙ୍କ ପୁତ୍ର ତଥା ସମାଜସେବୀ ଅଚ୍ୟୁତ ପଟବର୍ଦ୍ଧନ, ତାଙ୍କ ଭ୍ରାତା ପାମା ପଟବର୍ଦ୍ଧନ ଓ ପାମା ପଟବର୍ଦ୍ଧନଙ୍କ ପତ୍ନୀ ଶ୍ରୀମତୀ ସୁନନ୍ଦା ପଟବର୍ଦ୍ଧନ । ପରବର୍ତ୍ତୀ କାଳରେ କ୍ରିଷ୍ଣମୂର୍ତ୍ତି ଭାରତରେ

ଥିବା ସମୟତକ ଓ ବିଶେଷ କରି ରାଜଗୋପାଳଙ୍କ ଅନୁପସ୍ଥିତିରେ ଏଇମାନେ ହିଁ ତାଙ୍କର ରହିବା ଓ ଭାଷଣ ଇତ୍ୟାଦିର ସମସ୍ତ ଆୟୋଜନ କରୁଥିଲେ ।

ସେଥରକ ଦେଢ଼ବର୍ଷ ଭିତରେ କ୍ରିଷ୍ଣମୂର୍ତ୍ତି ମାଡ୍ରାସ, ବମ୍ବେ, ବନାରସ ପ୍ରଭୃତିରେ ଦେଇଥିବା ଭାଷଣ ଓ ଆଲୋଚନା ସଭା ଗୁଡ଼ିକରେ ଆଶାତୀତ ବ୍ୟକ୍ତି ଯୋଗଦାନ କରିଥିଲେ । ତାହାଛଡ଼ା ଅନେକ ସମୟରେ ଦୂର ଦୂରାନ୍ତରୁ କେତେ କେତେ ବ୍ୟକ୍ତି ତାଙ୍କ ସହିତ ବ୍ୟକ୍ତିଗତ ସାକ୍ଷାତ ପାଇଁ ମଧ୍ୟ ଆସୁଥିଲେ, କ୍ରିଷ୍ଣମୂର୍ତ୍ତିଙ୍କ ଆଗରେ ନିଜ ଜୀବନର ଦୁଃଖ କାହାଣୀ ବର୍ଣ୍ଣନା କରି ତା'ର ସମାଧାନର ପନ୍ଥା ଖୋଜୁଥିଲେ । କିଏ ବା ନିଜର ଯୁବା-ପୁଅର ଅକାଳ ମୃତ୍ୟୁରେ ଅଧୀର ହୋଇ ତାଙ୍କ ନିକଟକୁ ଧାଇଁ ଆସିଥିଲା, ଆଉ ପୁଣି କିଏ ବିଗତ ଯୁଦ୍ଧରେ ନିଜର ସ୍ୱାମୀ, ବାପା, ଭାଇକୁ ହରାଇ ଭାଙ୍ଗି ପଡ଼ିଥିଲା । ମୃତ୍ୟୁ ଶୋକର ପ୍ରସଙ୍ଗକ୍ରମେ କ୍ରିଷ୍ଣମୂର୍ତ୍ତି ଥରେ ମାଡ୍ରାସର ଗୋଟିଏ ସଭାରେ କହିଥିଲେ, "ମୋର ପିଲାଟି ମରିଗଲେ ମୁଁ ଦୁଃଖରେ ଭାଙ୍ଗିପଡ଼େ । ତା'ର କାରଣ ହେଉଛି ମୃତ୍ୟୁର ତାତ୍ପର୍ଯ୍ୟକୁ ମୁଁ ପ୍ରକୃତରେ ବୁଝି ନଥାଏ । ସେତେବେଳେ କଣ ମୁଁ କେବେହେଲେ ଚୁପ୍‌ଚାପ୍ ବସି ମୋ ଦୁଃଖର ମୂଳ କାରଣଟିକୁ ଖୋଜି ବାହାର କରିବାକୁ ଚେଷ୍ଟା କରିଥାଏ, ନା ମୋର ମାନସିକ ଯନ୍ତ୍ରଣାରୁ ମୁକ୍ତି ପାଇବା ଲାଗି ପୂଜକ, ପୁରୋହିତର ସାହାଯ୍ୟ ଆଶାରେ ଧାଁ ଦଉଡ଼ ଲଗାଇଦିଏ ? ମୃତ୍ୟୁର ପୂର୍ଣ୍ଣ ତାତ୍ପର୍ଯ୍ୟ ଓ ଅର୍ଥକୁ ଖୋଜି ବାହାର କରିବାକୁ ହେଲେ ମୋଠାରେ ବୁଦ୍ଧିମତା ଥିବା ଆବଶ୍ୟକ । ତମେ ସବୁ କହ ଯେ ଅଜ୍ଞତା ହିଁ ପ୍ରଜ୍ଞା ଦିଗରେ ବାଟ କଢ଼ାଏ, ତମେମାନେ ମନେକର ଯେ ଏ ମଣିଷ ଯେତେ ବେଶୀ ଦୁଃଖ କଷ୍ଟ ଦେଇ ଯିବ, ତା'ର ବୁଦ୍ଧି ସେତେ ବେଶୀ ବଢ଼ିବ । କିନ୍ତୁ ସେ ବାଟ ଧରି ତମେ କଣ ପ୍ରକୃତରେ ଜ୍ଞାନୀ, ବୁଦ୍ଧିମାନ ହୋଇଯାଅ କି ? ଏହା ଧ୍ରୁବ ସତ୍ୟ ଯେ ଯନ୍ତ୍ରଣା ଭୋଗିବା ଦ୍ୱାରା ନୁହେଁ, ଯନ୍ତ୍ରଣା ଭୋଗକୁ ବୁଝିବା ଦ୍ୱାରା ହିଁ ତମଠାରେ ଜ୍ଞାନ ଜାତ ହୁଏ × × × ।

ଦୁଃଖ ଯାତନାରୁ ମୁକୁଳି ଆସିବା ଲାଗି ତମେ ସଦାବେଳେ ଉପାୟ ଖୋଜି ହେଉଥାଅ···କିନ୍ତୁ ତା'କୁ କେବେହେଲେ ବୁଝି ନ ଥାଅ, ଦୁଃଖଭୋଗକୁ ବୁଝିବାକୁ ହେଲେ ତମକୁ ତା ସହିତ ଏକାଠି ରହି ସମୟ କାଟିବାକୁ ପଡ଼ିବ । ଯାତନାର କାରଣ ଖୋଜି ବାହାର କରିବାକୁ ହେଲେ ତମକୁ ତା' ଭିତରେ ପ୍ରବେଶ କରିବାକୁ ପଡ଼ିବ— ତାକୁ ଏଡ଼ିଦେଇ ଗ୍ଲିଗଲେ ଚଳିବ ନାହିଁ । ଆଉ ଯେତେବେଳେ ତମେ ତମର ସମଗ୍ର ସତ୍ତାକୁ ସେହି ସମସ୍ୟାଟିକୁ ବୁଝିବା ଭିତରେ ହଜାଇ ଦେବ, ସେତିକିବେଳେ ଯାଇ ତମଠାରେ ହୃଦ୍‌ବୋଧତା ଜାତ ହୋଇପାରିବ ।''

## ଜାନୁଆରୀ ୩୦, ୧୯୪୮

୧୯୪୮ ମସିହା, ଜାନୁଆରୀ ୩୦ ତାରିଖ । ସନ୍ଧ୍ୟାବେଳେ କୃଷ୍ଣମୂର୍ତ୍ତି ଜଣେ ବନ୍ଧୁଙ୍କ ଘରେ ଆୟୋଜିତ ଏକ ଦଳଗତ ଆଲୋଚନାରେ ବ୍ୟସ୍ତ । ଏତିକିବେଳେ ଅଚ୍ୟୁତ ପଟ୍ଟବର୍ଦ୍ଧନଙ୍କ ଉଦ୍ଦେଶ୍ୟରେ ଗୋଟିଏ ଫୋନ୍ ଡାକରା ଆସିଲା । ଫୋନ୍‌କୁ ଉଠାଇ ଧରି ପଟ୍ଟବର୍ଦ୍ଧନଙ୍କ ମୁହଁ ଏକଦମ୍ ଶେଥା ପଡ଼ିଗଲା । ସେଠାରେ ଥିବା ସବୁତକ ଲୋକ ଉଦ୍‌ବିଗ୍ନ ହୋଇ ଖବର କଣ ଜାଣିବା ଲାଗି ତାଙ୍କ ମୁହଁକୁ ଗ୍ହିଁ ରହିଲେ । ଶ୍ରୀଯୁକ୍ତ ପଟ୍ଟବର୍ଦ୍ଧନ ନିଜକୁ ସମ୍ଭାଳି ନେଇ ଗ୍ପା ଗଳାରେ କହିଲେ ଯେ 'ଜଣେ ଆତତାୟୀର ଗୁଳିମାଡ଼ରେ ମହାତ୍ମା ଗାନ୍ଧିଙ୍କର ଅଗ୍ହନକ ମୃତ୍ୟୁ ଘଟିଛି ।' ସେହି କେତେକ୍ଷଣ ଲାଗି ଦଳ ଭିତରଟା ଜଡ଼ ପାଲଟିଗଲା । କଥାଟାକୁ କେହିହେଲେ ବିଶ୍ୱାସ କରି ପାରିଲେ ନାହିଁ । ଧୀରେ ଧୀରେ ପ୍ରକୃତିସ୍ଥ ହେବା ପରେ ସମସ୍ତଙ୍କ ମନରେ ପ୍ରଶ୍ନ ଉଠିଲା—'କିଏ ସେହି ହତ୍ୟାକାରୀ ?' 'ହିନ୍ଦୁ ନା ମୁସଲମାନ ?' 'ଏହାର ପରିଣାମ ବର୍ତ୍ତମାନ କଣ ହେବାକୁ ଯାଉଛି ?' କୃଷ୍ଣମୂର୍ତ୍ତି ସେତେବେଳେ ନିଜ ସ୍ଥାନରେ ଏକବାରେ ନିଶ୍ଚଳ ହୋଇ ବସି

ରହିଥାନ୍ତି । ତାଙ୍କୁ ଦେଖି ମନେ ହେଉଥାଏ ସତେ ଅବା ହଲ ଭିତରର ପ୍ରତ୍ୟେକ ବ୍ୟକ୍ତିକୁ ଓ ତାର ପ୍ରତିକ୍ରିୟାକୁ ସେ ତୀକ୍ଷ୍ଣ ଭାବରେ ଲକ୍ଷ୍ୟ କରିବାରେ ଲାଗିଛନ୍ତି । ସେଦିନର ଆଲୋଚନା ସେଇଠି ବନ୍ଦ ରହିଲା । ଭାରାକ୍ରାନ୍ତ ମନ ଓ ଆଶଙ୍କା ନେଇ ଲୋକମାନେ ଗୋଟି ଗୋଟି ହୋଇ ଘରକୁ ଫେରିଲେ । ତହିଁ ପରଦିନ ସନ୍ଧ୍ୟାରେ ଉପସ୍ଥିତ ଶ୍ରୋତାମାନଙ୍କ ମୁଖମଣ୍ଡଳରେ ବିଷାଦ ଓ ଅହେତୁକ ଭୟର ଛାୟା ସ୍ପଷ୍ଟ ବାରି ହୋଇ ପଡ଼ୁଥିଲା । ହତ୍ୟାକାରୀର ଜାତିଗତ ପରିଚୟ ଜାଣିବା ପରେ ବଡ଼ ବଡ଼ ସହରର କେତେକ ସ୍ଥାନରେ ବ୍ରାହ୍ମଣ ବିରୋଧୀ ଦଙ୍ଗାର ସୂତ୍ରପାତ ମଧ୍ୟ ଘଟି ସାରିଥିଲା । ସେହିଦିନ ସଭାରେ ଜଣେ କୃଷ୍ଣମୂର୍ତ୍ତିଙ୍କୁ ପ୍ରଶ୍ନ କରିଥିଲେ, 'ମହାତ୍ମା ଗାନ୍ଧିଙ୍କର ଏହି ଅକାଳ ମୃତ୍ୟୁର ପ୍ରକୃତ କାରଣ କଣ ?'

କୃଷ୍ଣମୂର୍ତ୍ତି କହିଲେ—"ଦେଖ, ତମେ ଯେତେବେଳେ ପ୍ରଥମ କରି ଏ ଖବରଟି ଶୁଣିଲ, ତମ ମନରେ କିଭଳି ପ୍ରତିକ୍ରିୟା ଉଠିଲା ? ଆଉ ସେ ପ୍ରତିକ୍ରିୟା ପ୍ରତି ତମେ କିଭଳି ପ୍ରତିବେଦନ ଜଣାଇଲ ? ତମେ କ'ଣ ତାକୁ ନିଜର ଏକ ବ୍ୟକ୍ତିଗତ କ୍ଷତି ହିସାବରେ ଧରିଲ, ନା ସାରା ପୃଥିବୀରେ ଘଟି ଚାଲିଥିବା ଏହିଭଳି ଅସୁମାରି ଘଟଣାବଳୀର ଅନ୍ୟ ଏକ ଉଦାହରଣ ଭାବରେ ନେଲ ? ଯଦି ଏହାକୁ ତମର ଏକ ବ୍ୟକ୍ତିଗତ କ୍ଷତି ବୋଲି ମନେ କରୁଥାଅ, ତେବେ ଖୁବ୍ ସତର୍କତାର ସହି, ବୁଦ୍ଧିମତାର ସହି ତମ ଅନ୍ତରରେ ଜାତ ହେଉଥିବା ଅନୁଭବକୁ ଅନୁଧ୍ୟାନ କର । ଆଉ ଯଦି ତମେ ଏହାକୁ ଅନ୍ୟାନ୍ୟ ସମସ୍ୟାର ଏକ ଦୃଷ୍ଟାନ୍ତ ସ୍ୱରୂପ ଧରି ନେଇଥାଅ, ତେବେ ମଧ୍ୟ ଅତି ଯତ୍ନ ସହକାରେ ତାହାକୁ ନିରୀକ୍ଷଣ କରିବାକୁ ଚେଷ୍ଟାକର । ତେଣୁ ସର୍ବପ୍ରଥମେ ଆମକୁ ଦେଖିବାକୁ ହେବ, ସମସ୍ୟାଟିକୁ ଆମେ କିଭଳି ଭାବରେ ଗ୍ରହଣ କରୁଛୁ···ଆମ ପ୍ରତ୍ୟେକଙ୍କ ଭିତରେ ଆପଣାକୁ ନେଇ କିଛି ଗୋଟାଏ ମହାନ୍ ଜିନିଷ ସହିତ ଯୋଡ଼ି ଦେବାର ପ୍ରବୃତ୍ତି ରହିଛି । ସେ ମହାନ ପଦାର୍ଥଟି ଏକ ଦେଶ ହେଉ ବା କୌଣସି ବ୍ୟକ୍ତିବିଶେଷ ହୁଅନ୍ତୁ, ଅଥବା ଚିନ୍ତାଧାରାଟିଏ ହେଉ ପଛକେ, ତା' ସହିତ ଆପଣାକୁ ମିଶାଇ ଦେବାର ପ୍ରବୃତ୍ତିଟି ଆମଠାରେ ବରାବର ରହିଛି । ···ଗୋଟିଏ ଦଳ ବା ଦେଶ

ସହିତ ଅଥବା ହିଟଲର, ଷ୍ଟାଲିନ, ଗାନ୍ଧିଜୀଙ୍କ ପରି କୌଣସି ଦେଶ-ନାୟକଙ୍କ ସହିତ ଆପଣାକୁ ମିଶାଇ ଦେବାରେ ଆମକୁ କି ଯେ ଗଭୀର ସନ୍ତୋଷ ମିଳିଥାଏ ତାହା ତ' ତମେ ଜାଣ । ଆଉ ଯେତେବେଳେ ସେହି ବ୍ୟକ୍ତିବିଶେଷଙ୍କର, ସେହି ଚିନ୍ତାଧାରାର ବା ସେହି ଜାତିର କିଛି ଗୋଟାଏ ଅଘଟଣ ଘଟିଯାଏ, ଆମର ସମସ୍ତ ପ୍ରତିବେଦନ ସେଇଠି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼େ । ···ଏ ପୃଥିବୀରେ ଘଟୁଥିବା ପ୍ରତ୍ୟେକଟି ଘଟଣା ପରସ୍ପର ସହିତ ସଂଶ୍ଲିଷ୍ଟ । ଗାନ୍ଧିଜୀଙ୍କର ଏ ଅକାଳ ମୃତ୍ୟୁର କାରଣ ତମରିମାନଙ୍କ ଭିତରେ ନିହିତ । ତମେ ହିଁ ତ ହେଉଛ ତା'ର ମୂଳ କାରଣ । ଯେହେତୁ ତମେମାନେ ନିଜେ ସାଂପ୍ରଦାୟିକତାରେ ଆଚ୍ଛନ୍ନ, ତେଣୁ ନିଜର ଧନସମ୍ପତ୍ତି ମାଧ୍ୟମରେ, ଜାତି ମାଧ୍ୟମରେ, ମତିଗତି ବିଶ୍ୱାସ ମାଧ୍ୟମରେ ବା ନିଜ ନିଜର ପୃଥକ ଧର୍ମ, ଦଳ ଓ ନେତାମାନଙ୍କ ମାଧ୍ୟମରେ ତମେ ସେଇ ବିଭାଜନକାରୀ ଶକ୍ତିକୁ ଉତ୍ସାହିତ କରିଥାଅ । ଯେତେବେଳେ ତମେ ନିଜକୁ ଜଣେ ହିନ୍ଦୁ, ଜଣେ ମୁସଲମାନ, କି ଜଣେ ପାର୍ସୀ ବା ଆଉ ଯେତେ ଯାହା ନାମ ଦେଇ ବୋଲଅ, ସେତେବେଳେ ସେଇଟା ହିଁ ତ' ଏ ପୃଥିବୀରେ ଦ୍ୱନ୍ଦ୍ୱ ସୃଷ୍ଟି କରେ ।"

କ୍ରିଷ୍ଣମୂର୍ତ୍ତିଙ୍କର ଏ ପ୍ରକାର ନୂତନ ଦୃଷ୍ଟିବୋଧ ଲୋକମାନଙ୍କ ମନରେ ଜୀବନର ସମସ୍ୟା ପ୍ରତି ଏକ ସମ୍ପୂର୍ଣ୍ଣ ନୂତନ ଆଭିମୁଖ୍ୟର ଉପସ୍ଥାପନା କରିଥାଏ । ସଭାରେ ବସି କ୍ରିଷ୍ଣମୂର୍ତ୍ତିଙ୍କ ଭାଷଣ ଶୁଣୁଥିବା ସମୟତକ ସେମାନଙ୍କର ମନେହୁଏ ଯେ ସେ ଯାହାସବୁ କହୁଛନ୍ତି ତା'ର ସତ୍ୟତାକୁ ସେମାନେ ଅନ୍ତରେ ଅନ୍ତରେ ଉପଲବ୍ଧି କରୁଛନ୍ତି, ତା'ର ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିପାରୁଛନ୍ତି । ମାତ୍ର ସଭାରୁ ଉଠି ଘରକୁ ଫେରିଯିବା ମାତ୍ରେ ପୁଣି ସେଇ ଗତାନୁଗତିକ ଜୀବନଧାରାରେ ସେ ସକଳ ଦୃଷ୍ଟିବୋଧ କେଉଁଆଡ଼େ ହଜିଯାଏ । ଜୀବନଟା ପୁଣି ପୂର୍ବପରି ଘୋରି, ଭୁଞ୍ଜି ଚାଲିଥାଏ । ଏଇଟା କେବଳ ଭାରତୀୟମାନଙ୍କ କ୍ଷେତ୍ରରେ ନୁହେଁ, ପୃଥିବୀର ସର୍ବତ୍ର ଶ୍ରୋତାମାନଙ୍କଠାରୁ ସେଇ ଏକା ଅଭିଯୋଗ ଶୁଣିବାକୁ ମିଳେ । ଥରେ ବମ୍ବେଠାରେ ଜଣେ ଶ୍ରୋତା ତାଙ୍କୁ ଏଇ ବିଷୟରେ ପଚାରିଥିଲେ—"ଆଚ୍ଛା, ମୁଁ ଯେତେବେଳେ ଏଠି ବସି

ଆପଣଙ୍କ ଭାଷଣ ଶୁଣୁଛୁ ସେତେବେଳେ ତ ମତେ ସବୁକଥା ଅତି ସରଳ ଓ ନୂଆ ମନେ ହେଉଛି । କିନ୍ତୁ ପରେ ଏଠୁ ଯାଇ ଘରେ ପହଞ୍ଚିଗଲେ ପୁଣି ସେଇ ପୁରୁଣା ମାନ୍ଦା ଅସ୍ଥିରତା ମନକୁ ଘାରି ପକାଉଛି । କହିପାରିବେ କି, ମୋର ଏମିତି କାହିଁକି ହେଉଛି ?''

କୃଷ୍ଣମୂର୍ତ୍ତି ତାଙ୍କର ଉତ୍ତରରେ ଯାହା କହିଥିଲେ ତା'ର କିୟଦଂଶ ହେଲା—"ଏଠି ବସି ଯେତେବେଳେ ତମେ ମୋର ଭାଷଣ ଶୁଣ, ସେଇ କେତେ ଘଣ୍ଟା ପାଇଁ ତମେ ଭୁଲିଯାଅ ଯେ ତମେ ଜଣେ ହିନ୍ଦୁ କି ଜଣେ ଉଚ୍ଚ ବଂଶର ଲୋକ । ତମ ମନରେ ଯେତେ ଯାହା ବସା ବାନ୍ଧି ରହିଛି, ସବୁ ସେଇ ସମୟ ତକ ଲାଗି କୁଆଡ଼େ ଚାଲିଯାଏ । ସେତେବେଳେ ତମେ ବସି ଖାଲି ଶୁଣିବାରେ ଲାଗିଥାଅ, ସେଥିରେ ମଗ୍ନ ହୋଇ ଯାଇଥାଅ, ଖୋଜି ବାହାର କରିବାକୁ ପ୍ରୟାସ କରୁଥାଅ । କିନ୍ତୁ ଏ ଜାଗା ଛାଡ଼ି ବାହାରକୁ ଚାଲିଗଲା କ୍ଷଣି ପୁଣି ତମର ଅସଲ ରୂପଟି ପ୍ରକଟିତ ହୁଏ—ତମେ ପୁଣି ନିଜର ଜାତି, ଚଳଣି, ଚାକିରି, ପରିବାର ଭିତରକୁ ଫେରିଆସ । ଅର୍ଥାତ୍ ତମର ସେଇ ନୂଆ ଜିନିଷଟି ସଦାବେଳେ ପୁରୁଣା ଭିତରେ—ପୁରୁଣା ଅଭ୍ୟାସ, ପୁରୁଣା ରୀତି ନୀତି, ଭାବ ଧାରଣା, ପରମ୍ପରା, ସ୍ମୃତି ଭିତରେ ହଜିଯାଏ । ନୂଆଟି କେବେହେଲେ ତମଠାରେ ରହିପାରେ ନାହିଁ । ...ଯେତେବେଳେ ତମେ ଫୁଲଟିକୁ ଚାହିଁ ଦେଖ କି କାହାରି ମୁହଁକୁ ଚାହଁ, ଆକାଶ, ଗଛ, ମଟରଗାଡ଼ି ବା କାହା ଉପରେ ହସଧାରେ ଦେଖ, ସେତେବେଳେ ତମର ସେ ଦେଖିବାଟା କିପରି ନୂଆ ରହି ପାରିବ ? ସବୁବେଳେ କାହିଁକି ସେଇ ପୁରୁଣାଟି ନୂଆକୁ ତା' ଭିତରେ ଲୀନ କରି ଦେଉଛି, ତା'କୁ ବଦଳାଇ ଦେଉଛି ? ଘରେ ପହଞ୍ଚିଗଲେ କାହିଁକି ସେ ନୂଆଟି ତା'ର ଅସ୍ତିତ୍ୱ ହରାଇ ବସୁଛି ?"

କୃଷ୍ଣମୂର୍ତ୍ତି ନିଜର ଦୈନନ୍ଦିନ ଜୀବନରେ ଯାହା ଯାହା ପାଳନ କରୁଥିଲେ ଅନ୍ୟମାନଙ୍କୁ ଠିକ୍ ତାହା ହିଁ ଶିକ୍ଷା ଦେଉଥିଲେ । ସମସ୍ତ ସ୍ମୃତି, ଅନୁଭୂତି ଓ ପରିପାର୍ଶ୍ୱିକ ପ୍ରଭାବରୁ ମୁକ୍ତ ରହି ପ୍ରତି ମୁହୂର୍ତ୍ତରେ ଜୀବନକୁ ନୂତନ ଭାବରେ ଦେଖିବା ଓ ପ୍ରତିକ୍ଷଣ ସଜାଗତାର ସହ ଅନୁଭବ

କରିବା ନିମନ୍ତେ ସେ ଆହ୍ୱାନ ଜଣାଉଥିଲେ । ରାସ୍ତାଘାଟରେ ଗଲବେଳେ ମୁଣ୍ଡରେ ବୋଝ ନେଇ ଯାଉଥିବା ବାଟୋଇ, ଦାମୀ ପୋଷାକରେ ସୁସଜ୍ଜିତ ମଟରଗାଡ଼ି ଆରୋହୀ, ପୁଣି ସେ ବାଟରେ ଯାଉଥିବା ଆଉ ଯେତେ ଯେତେ ଲୋକ, ସେ ପ୍ରତ୍ୟେକଙ୍କ ପ୍ରତି ଶ୍ରଦ୍ଧା ଭାବରେ ସଜାଗ ରହିବାକୁ କୃଷ୍ଣମୂର୍ତ୍ତି କହିଥାନ୍ତି ଓ ନିଜେ ମଧ୍ୟ ତାହା ପାଳନ କରିଥାନ୍ତି । ଥରେ ସେ ତାଙ୍କର ଜଣେ ବନ୍ଧୁଙ୍କ ସହିତ ଭାରତର ଏକ ବନପ୍ରଦେଶରେ ଭ୍ରମଣ କରୁଥିଲେ । ସେମାନଙ୍କ ଯିବା ବାଟ ଦେଇ ଦକ୍ଷିଣ ଭାରତୀୟ ଆଦିବାସୀ 'ତୋଡ଼ା' ସମ୍ପ୍ରଦାୟର ସ୍ତ୍ରୀ ପୁରୁଷ ଦଳ ଦଳ ହୋଇ ଯା'ଆସ କରୁଥିଲେ । ଏମିତି ଖଣ୍ଡେ ଦୂର ଯିବା ପରେ ଉଚ୍ଚା ଉଚ୍ଚା ପାଇନ୍ ଗଛର ଅରଣ୍ୟ ପଡ଼ିଲା । ତା'ରି ଭିତର ଦେଇ ସେ ଓ ତାଙ୍କର ବନ୍ଧୁ ଆଗକୁ ଚାଲିଲେ । ଏତିକିବେଳେ ସେମାନଙ୍କ ସାମନାରେ 'ତୋଡ଼ା' ଜାତିର ଜଣେ ବୃଦ୍ଧ ତା'ର ଅଳ୍ପ ବୟସ୍କା ଝିଅଟି ସହିତ ଚାଲିଗଲା । କୃଷ୍ଣମୂର୍ତ୍ତି ସଙ୍ଗେ ସଙ୍ଗେ ପାଖରେ ଥିବା ବନ୍ଧୁଙ୍କୁ କହିଲେ — 'ହେଇ ଦେଖ, ଏଇ ଯେଉଁ ଆଦିବାସୀ ବାପ, ଝିଅ ଆଗ ଦେଇ ଚାଲିଗଲେ, ସେଇ ଲମ୍ବା ଦାଢ଼ି ଥିବା ବାପଟି ଆଉ ତା' ସାଙ୍ଗରେ ନାଲି ଗାରଗାରିକା କମ୍ବଳ ପକାଇ ଚାଲୁଥିବା ତା'ର ଝିଅ — ସେମାନଙ୍କୁ ଦେଖି ତମ ମନରେ କି ପ୍ରକାର ପ୍ରତିବେଦନ ଜାତ ହେଲା ?'

ବନ୍ଧୁ ଜଣକ ଉତ୍ତର ଦେଇ କହିଲେ, 'ସେ ଦୁହିଁଙ୍କୁ ଦେଖୁ ଦେଖୁ 'ତୋଡ଼ା' ଜାତିର ପୂର୍ବ ଇତିହାସ ମୋ' ସ୍ମୃତିରେ ଭାସି ଉଠିଲା । ସେମାନଙ୍କ ପୂର୍ବପୁରୁଷ କେମିତି ଦିନେ ଏଇ ନୀଳଗିରି ଅଞ୍ଚଳରେ ରାଜତ୍ୱ କରୁଥିଲେ, ସେମାନଙ୍କର କେତେ ଜମିବାଡ଼ି ଥିଲା । ଅଥଚ ଆଜି ସେମାନେ ସବୁକିଛି ହରାଇ କାଙ୍ଗାଳଙ୍କ ଭଳି ବୁଲୁଛନ୍ତି ।' ଏକଥା ଶୁଣି କୃଷ୍ଣମୂର୍ତ୍ତି କହିଲେ, 'ତମେ ଯଦି ପ୍ରକୃତରେ ସେମାନଙ୍କୁ ବୁଝିବାକୁ ଇଚ୍ଛା କରୁଛ ତେବେ ତାଙ୍କୁ ତମର ଭାବନା ମାଧ୍ୟମରେ ଦେଖିବାକୁ ଚେଷ୍ଟା କର ନାହିଁ । ବରଂ ଭାବି ଦେଖ — ନିର୍ବୈୟକ୍ତିକ ଭାବରେ, ପୂର୍ଣ୍ଣ ସଜାଗତାର ସହିତ ତମେ ତାଙ୍କ ପ୍ରତି କାହିଁକି ସଚେତନ ରହି

ପାରୁନାହଁ, କାହିଁକି ତମେ ତାଙ୍କ ପ୍ରତି ଦରଦଶୀଳ ହୋଇ ପାରୁନାହଁ, ସେତକ ଦେଖ ।"

କ୍ରିଷ୍ଣମୂର୍ତ୍ତିଙ୍କର ଏ ନିବିଡ଼ ସମ୍ବେଦନଶୀଳତା ଯେ କେବଳ ମନୁଷ୍ୟମାନଙ୍କ ପ୍ରତି ଥିଲା ତା' ନୁହେଁ, ଜଡ଼, ନିର୍ଜୀବ ବସ୍ତୁ ତଥା ପାରିପାର୍ଶ୍ୱିକ ପ୍ରାକୃତିକ ପରିବେଶ ପ୍ରତି ମଧ୍ୟ ସେ ସମାନ ଭାବରେ ସଜାଗ ଓ ସମ୍ବେଦନଶୀଳ ଥିଲେ । ପ୍ରକୃତିର ସାନ୍ନିଧ୍ୟ ଲାଭ କରିବା ଓ ତା' ସହିତ ବନ୍ଧୁତା ସ୍ଥାପନ କରିବା ପାଇଁ ସେ ଲୋକମାନଙ୍କୁ ବରାବର ଉପଦେଶ ଦେଇ ଆସୁଥିଲେ । ମନୁଷ୍ୟ ଯେ ଆଜି ଏତେ ସ୍ୱାର୍ଥାନ୍ୱେଷୀ ହୋଇ ପଡ଼ୁଛି, ନଦୀ, ପର୍ବତ, ବୃକ୍ଷଲତା ଓ ଅରଣ୍ୟକୁ କେବଳ ଏକ ବ୍ୟବହାରିକ ଦୃଷ୍ଟିକୋଣରୁ ଦେଖୁଛି, ନିଜର ପରିବେଶ ପ୍ରତି ଅତି-ମାତ୍ରାରେ ରୁକ୍ଷ ହୋଇ ପଡ଼ୁଛି, ଏ କଥା ଦର୍ଶାଇ ସେ ବ୍ୟକ୍ତିକୁ ସର୍ବଦା ତା'ର ପ୍ରାକୃତିକ ପରିବେଶ ସହିତ ଥିବା ସମ୍ପର୍କକୁ ଗଭୀର ସଜାଗତାର ସହ ବୁଝିବାକୁ କହୁଥିଲେ । ପ୍ରକୃତି ରାଜ୍ୟରେ ଘଟୁଥିବା ଛୋଟ ବଡ଼ ପ୍ରତ୍ୟେକ ଘଟଣା କ୍ରିଷ୍ଣମୂର୍ତ୍ତିଙ୍କ ପ୍ରାଣରେ ଏଭଳି ଆଲୋଡ଼ନ ସୃଷ୍ଟି କରୁଥିଲା ଯେ ସେ ଅନେକ ସମୟରେ ତା'ର ସୌନ୍ଦର୍ଯ୍ୟରେ ମୁଗ୍‌ଧହୋଇ ଆନନ୍ଦରେ ନାଚି ଉଠୁଥିଲେ । ଏ ପ୍ରକାର ବାଳ ସୁଲଭ ବିଭୋରତା ତାଙ୍କର ଏକ ଚରିତ୍ରିକ ବୈଶିଷ୍ଟ୍ୟରେ ପରିଣତ ହୋଇଥିଲା ।

ଭାରତରେ ଥିବାବେଳେ ଥରେ ସନ୍ଧ୍ୟାରେ କେତେକ ବନ୍ଧୁ ତାଙ୍କୁ ବମ୍ବେ ନିକଟସ୍ଥ ଏଲିଫାଣ୍ଟା ଗୁମ୍ଫାକୁ ବୁଲାଇ ନେଇ ଯାଇଥିଲେ । ଯୋଗକୁ ସେ ଦିନ ଥିଲା ପୂର୍ଣ୍ଣିମୀ ତିଥି । ସେମାନେ ମୋଟର ଲଞ୍ଚ୍‌ରେ ଯାଇ ସମୁଦ୍ର ଭିତରେ ପାହାଡ଼ ପାଖରେ ପହଞ୍ଚିବାବେଳକୁ ସୂର୍ଯ୍ୟ ଅସ୍ତପ୍ରାୟ । ଅସ୍ତଗାମୀ ସୂର୍ଯ୍ୟର ସୁନେଲି ମିଶା ନାରଙ୍ଗି ଆଭାରେ ଗ୍ରେଟ ପାହାଡ଼ ବପୁରେ ଖୋଦେଇ ମୂର୍ତ୍ତିଗୁଡ଼ିକ ଦାଉ ଦାଉ କରୁଥିଲା । ଚତୁର୍ଦ୍ଦିଗରେ ସମୁଦ୍ରର ବିସ୍ତୀର୍ଣ୍ଣ ଜଳ ରାଶି ମଧ୍ୟରେ ଥିବା ସେହି ଦ୍ୱୀପଟିରେ ଏକ ଅପୂର୍ବ ନୀରବତା ବିରାଜୁଥିଲା । ଏତିକିବେଳେ ପୂର୍ବ ଆକାଶରେ ଚୋପା ପୂର୍ଣ୍ଣିମୀ ଚନ୍ଦ୍ର ସମୁଦ୍ର ଉପରୁ ହଠାତ୍ ଉଠି ଆସିଲା । ଗୁମ୍ଫାର ଏକ ବିଶାଳକାୟ ତ୍ରିମୁଖ ବିଶିଷ୍ଟ ମହେଶ ମୂର୍ତ୍ତି ସମ୍ମୁଖରେ ଛିଡ଼ାହୋଇ

କୃଷ୍ଣମୂର୍ତ୍ତି ସେହି ଅପୂର୍ବ ଶୋଭାରାଶିକୁ ଅପଲକ ନୟନରେ ଚାହିଁ ରହିଥିଲେ । ଏହି ସମୟରେ ସେଠାରେ ଉପସ୍ଥିତ ତାଙ୍କର ବନ୍ଧୁ ରାଓ ପଟବର୍ଦ୍ଧନ ଶଙ୍କରାଚାର୍ଯ୍ୟଙ୍କର ଏକ ଶିବ ସ୍ତୋତ୍ର ଗାନ କରିବାକୁ ଆରମ୍ଭ କଲେ । ଅଖଣ୍ଡ ନୀରବତାକୁ ଥରାଇ ସେହି ସଂସ୍କୃତ ଶ୍ଳୋକର ଝଙ୍କାର କୃଷ୍ଣମୂର୍ତ୍ତିଙ୍କୁ ମନ୍ତ୍ରମୁଗ୍‌ଧ କରି ପକାଇଲା । ଆନନ୍ଦରେ ସେ ଏତେ ବିଭୋର ହୋଇ ଉଠିଲେ ଯେ, ସେ ଆଉ କଥା କହିବା ଅବସ୍ଥାରେ ନ ଥିଲେ । କିଛି ବେଳ ପରେ ସମସ୍ତେ ଫେରିବାକୁ ବାହାରିଲେ । ଗାଆଁ ଭିତର ଦେଇ ଆସୁ ଆସୁ ସେମାନଙ୍କୁ ଦେଖି ଗାଆଁର ଛୋଟ ଛୋଟ ଗରିବ, ଅଧାଲଙ୍ଗଳା ପିଲାଗୁଡ଼ିଏ ହାତରେ ଫୁଲ ଧରି ପାଖକୁ ଧାଇଁ ଆସିଲେ ଓ ଫୁଲ ଯାଚି ପଇସା ମାଗିଲେ । କୃଷ୍ଣମୂର୍ତ୍ତି ସେମାନଙ୍କୁ ନିଜର ଶୂନ୍ୟ ପକେଟକୁ ଦେଖାଇ ଦେଇ ଏମାନଙ୍କ ଆଡ଼କୁ ଚାହିଁ ସେଇ ପିଲାମାନଙ୍କୁ କିଛି ପଇସା ଦେବାକୁ ଅନୁରୋଧ କଲେ । ତା'ପରେ ଗୋଟିଏ ଛୋଟ ପିଲାର ହାତ ଧରି ତାଙ୍କରି ସହିତ ଠିକ୍ ପିଲାଙ୍କ ଭଳି ହସି ହସି ଲଞ୍ଚ୍ ପର୍ଯ୍ୟନ୍ତ ଆସିଲେ । ସେଦିନ ରାତିରେ ମଙ୍ଗଳ ଗ୍ରହ ଅଳ୍ପ ସମୟ ପାଇଁ ଚନ୍ଦ୍ର ପଛପଟେ ଲୁଚି ଯିବାର ଥିଲା । ମୋଟର ଲଞ୍ଚ୍‌ରେ ଚଢ଼ି ସମସ୍ତେ ଆକାଶକୁ ଚାହିଁ ଅପେକ୍ଷା କରି ରହିଲେ, କେତେବେଳେ ମଙ୍ଗଳ ଗ୍ରହ ଚନ୍ଦ୍ର ଆଢୁଆଳରୁ ପୁଣି ବାହାରିବ ! କିଷ୍ଣମୂର୍ତ୍ତି ଡଙ୍ଗାର ମଞ୍ଚ ଉପରକୁ ଚଢ଼ିଯାଇ ତନ୍ମୟ ହୋଇ ଏକ ଲୟରେ ସେଇଆଡ଼କୁ ଚାହିଁ ରହିଥାନ୍ତି । ହଠାତ ଛୋଟ ଉଜ୍ଜ୍ୱଳ ଗ୍ରହଟି ଚନ୍ଦ୍ର ପଛପଟୁ ଶୁଭାଖିଏ ମାତ୍ର ଦେଖାଗଲା, ଆଉ ତାକୁ ଦେଖିବାକ୍ଷଣି ଠିକ୍ ପିଲାଟିଏ ଭଳି ମଞ୍ଚ ଉପରୁ ସେ ପାଟି କରି ଉଠିଲେ, "ହେଇ···ଦେଖ, ଦେଖ···ସେଇଠି··· ! !"

# ଉଟକାମଣ୍ଡରେ 'ପ୍ରକ୍ରିୟା'

ଭାରତର ବିଭିନ୍ନ ସ୍ଥାନ ମଧ୍ୟରେ ନୀଳଗିରି ପର୍ବତମାଳାର ଉଟକାମଣ୍ଡ କୃଷ୍ଣମୂର୍ତ୍ତିଙ୍କର ଏକ ପ୍ରିୟ ଶୈଳନିବାସ ଥିଲା । ୧୯୪୮ ମସିହା ମେ' ମାସରେ ସେ ବମ୍ବେ, ମାଡ୍ରାସ, ଦିଲ୍ଲୀ ଓ ବନାରସ ପ୍ରଭୃତିରେ ନିର୍ଦ୍ଧାରିତ ଭାଷଣ କାର୍ଯ୍ୟକ୍ରମ ଶେଷ କରି ଉଟକାମଣ୍ଡକୁ ବିଶ୍ରାମ ନେବା ଲାଗି ଆସି ପହଞ୍ଚିଲେ । ସେ ପହଞ୍ଚିବାର ଅଳ୍ପ କିଛି ଦିନ ପରେ ପୁପୁଲ ଜୟକର ମଧ୍ୟ ନିଜର ଭଉଣୀ ନନ୍ଦିନୀ ମେହେଟାଙ୍କ ସହିତ ସେଠାରେ ଆସି ପହଞ୍ଚିଲେ । ସେତେବେଳକୁ ଏ ଦୁଇ ଭଉଣୀ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାରେ ଗଭୀର ଭାବରେ ଅନୁପ୍ରାଣିତ ହୋଇ ସାରିଥିଲେ ଓ କୃଷ୍ଣମୂର୍ତ୍ତିଙ୍କୁ ଉଟକାମଣ୍ଡରେ ରହୁଥିବାର ଜାଣି ତାଙ୍କ ସହିତ କିଛି ଦିନ ବିତାଇବାର ସୁଯୋଗ ଲାଭ କରିବାକୁ ସେମାନେ ବମ୍ବେରୁ ଏତେ ବାଟ ଧାଇଁ ଆସିଥିଲେ ।

ଏତିକିବେଳେ ମେ' ମାସ ୨୮ ତାରିଖ ପାଖାପାଖିରେ ହଠାତ ଦିନେ କୃଷ୍ଣମୂର୍ତ୍ତିଙ୍କର ସେହି ଯନ୍ତ୍ରଣାଦାୟକ 'ପ୍ରକ୍ରିୟା' ପୁଣି ଆରମ୍ଭ ହୋଇଗଲା । ଏଥି ପୂର୍ବରୁ ଏର୍ଭିନ୍ ଓ ଓହାଇ ଠାରେ ତାହା ଯେଭଳି ଭୟାନକ ବୋଧ ହେଉଥିଲା, ଏବେ ମଧ୍ୟ ଠିକ୍ ସେଇଭଳି ତୀବ୍ର ଓ ପ୍ରଚଣ୍ଡ ରୂପ ଧରି ତାହା ଆରମ୍ଭ ହୋଇଗଲା । ପ୍ରଥମ ଦିନ ସନ୍ଧ୍ୟାରେ କୃଷ୍ଣମୂର୍ତ୍ତି ନିଜର ନିତ୍ୟନୈମିତ୍ତିକ ଦୀର୍ଘ ଭ୍ରମଣରୁ ଫେରି ଘରେ ପହଞ୍ଚିବା ପରେ ପରେ ହଠାତ ଏକ ପ୍ରକାର ଅସ୍ୱସ୍ତି ଅନୁଭବ କଲେ । ଏକଥା ସଙ୍ଗେ ସଙ୍ଗେ ସେ ସେଠାରେ ଉପସ୍ଥିତ ବନ୍ଧୁ — ମରିସ୍ ଫ୍ରେଡ଼ମାନ୍ ଓ ପୁପୁଲ ଜୟକରଙ୍କୁ ଜଣାଇଲେ । ସେତେବେଳକୁ ପୁପୁଲଜୀ ଓ ନନ୍ଦିନୀ ମେହେଟା ଉଭୟ କୃଷ୍ଣମୂର୍ତ୍ତିଙ୍କର ଏହି ଅଦ୍ଭୁତ ପ୍ରକ୍ରିୟା ସମ୍ପର୍କରେ ଆଦୌ କିଛି ହେଲେ ଜାଣି ନ ଥିଲେ । ତେଣୁ କୃଷ୍ଣମୂର୍ତ୍ତିଙ୍କର ଅସୁସ୍ଥ ଅବସ୍ଥା ଦେଖି ସେମାନେ ମନେ ମନେ ବିଚଳିତ ହୋଇ ପଡ଼ିଲେ । କିନ୍ତୁ ସେ ସେମାନଙ୍କୁ ବୁଝାଇ କହିଲେ ଯେ ଏଥିରେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ କିମ୍ବା ଯେତେ ଯାହା ଘଟିଲେ

ସୁଦ୍ଧା ଡାକ୍ତର ଡାକବାର ଆଦୌ ପ୍ରୟୋଜନ ନାହିଁ । ସେମାନେ କେବଳ ସତର୍କତାର ସହିତ ଏତିକ ଜଗିବେ ଯେ ପ୍ରକ୍ରିୟା ଚାଲିଥିବା ସମୟରେ କେହି ଯେପରି ତାଙ୍କୁ ଗୋଳମାଳ ନ କରନ୍ତି ବା ହଠାତ ଚମକାଇ ଉଠାଇ ନ ଦିଅନ୍ତି । ଆଉ ଏକଥା ମଧ୍ୟ ସେ ବାରମ୍ବାର ତାଗିଦା କରିଦେଲେ, ଯେ କୌଣସି ପରିସ୍ଥିତିରେ ସୁଦ୍ଧା ସେମାନେ ଯେପରି ତାଙ୍କ ଶରୀରକୁ ପ୍ରକ୍ରିୟା ଚାଲିଥିବା ସମୟରେ ଏକାକୀ ଛାଡ଼ି ନ ଯାଆନ୍ତି ।

ସତକୁ ସତ ପ୍ରକ୍ରିୟା ଆରମ୍ଭ ହୋଇଯିବା କ୍ଷଣି ଏକ ଭୟାନକ ଯନ୍ତ୍ରଣା କୃଷ୍ଣମୂର୍ତ୍ତିଙ୍କର ତାଳୁ ଓ ବେକର ପଛ ଭାଗ ଦେଇ ମେରୁଦଣ୍ଡ ପର୍ଯ୍ୟନ୍ତ ପ୍ରଚଣ୍ଡ ଭାବରେ ଅନୁଭୂତ ହେବାରେ ଲାଗିଲା । କେତେବେଳେ ସେ ଯନ୍ତ୍ରଣା ଦାନ୍ତମୂଳରେ ତ' ପୁଣି କେତେବେଳେ ଶରୀରର ଅନ୍ୟାନ୍ୟ ଭାଗରେ ତୀବ୍ର ଭାବେ ଅନୁଭୂତ ହେଲା । ସେହି ଯନ୍ତ୍ରଣାରେ ସେ ଆତୁର ହୋଇ ଶଯ୍ୟା ଉପରେ ଖାଲି ଗଡ଼ିବାରେ ଲାଗିଲେ । ସେତେବେଳେ ତାଙ୍କ ଶରୀରକୁ ଦେଖିଲେ ମନେ ହେଉଥିଲା ଯେ କେବଳ ଦୈହିକ ସଚେତନତା ଛଡ଼ା ସେ ଶରୀରରେ ଆଉ କିଛି ହେଲେ ନାହିଁ — ବାସ୍ତବିକ, ଶରୀରରୁ ସେ 'ବାହାରି ଯାଇଥିଲେ' । ପାର୍ଥିବ ଶରୀରଟା ତାଙ୍କର କଷ୍ଟ, ଯନ୍ତ୍ରଣାରେ ଛଟ ଛଟ ହେଉଥିଲା ଏବଂ ସ୍ୱରଟା ଅଦ୍ଭୁତ ଭାବରେ ପିଲାଳିଆ ହୋଇ ଯାଇଥିଲା । କଷ୍ଟରେ ଛଟପଟ ହୋଇ ମଝିରେ ମଝିରେ ସେ କହି ଉଠୁଥିଲେ, "ସେମାନେ ଏବେ ମୋର ମସ୍ତିଷ୍କକୁ ପୋଛି ପରିଷ୍କାର କରିବାରେ ଲାଗିଛନ୍ତି । ...ଓଃ...ତାକୁ ଶୂନ୍ୟ କରି ପକାଉଛନ୍ତି ।" ପୁଣି ତାର କିଛି ସମୟ ପରେ ପ୍ରଚଣ୍ଡ ଯନ୍ତ୍ରଣାରେ ଆର୍ତ୍ତନାଦ କରି କହିବାକୁ ଲାଗିଲେ ଯେ ଏକ ପ୍ରଖର ଉତ୍ତପ୍ତ ଜ୍ୱାଳା ତାଙ୍କର ସର୍ବାଙ୍ଗକୁ ଦଗ୍ଧ କରି ପକାଉଛି । ଏମାନେ ଦେଖିଲେ ବେଳକୁ ପ୍ରକୃତରେ ତାଙ୍କ ଶରୀରରୁ ଗମ୍ ଗମ୍ ଝାଳ ବହି ଯାଉଥିଲା ।

ସେଥିରକ ପ୍ରକ୍ରିୟା ଲଗାଏତା କିଛି ଦିନ ଧରି ଚାଲିଲା । ଦିନେ ସେଭଳି ଅବସ୍ଥାରେ ସେ କହିଲେ, "ଆମ୍ମା...ଓଃ, ଭଗବାନ...

ମତେ ଟିକଏ ଶାନ୍ତିରେ ରହିବାକୁ ଦିଅ । ମୁଁ ଜାଣେ ସେମାନେ ଏବେ କଣ କରିବାକୁ ଯାଉଛନ୍ତି । ତାକୁ ଡାକି ଫେରାଇ ଆଣି···ମୁଁ ଜାଣେ, ଯେତେବେଳଯାଏ ଏ କଷ୍ଟ ଚରମ ସୀମାରେ ନ ପହଞ୍ଚିବ ସେତେବେଳଯାଏ ସେମାନେ ବନ୍ଦ କରିବେ ନାହିଁ କି ଏଠାରୁ ଫେରିବେ ନାହିଁ । ଏ ଶରୀର କେତିକି କଷ୍ଟ ସହ୍ୟ କରି ପାରିବ ସେମାନେ ଠିକ୍ ଜାଣିଛନ୍ତି । ଶରୀର ପ୍ରତି ସେମାନେ ଅତ୍ୟନ୍ତ ଯତ୍ନଶୀଳ ମଧ୍ୟ ।" ତା'ର କିଛି ସମୟ ପରେ ପ୍ରବଳ ଯନ୍ତ୍ରଣାରେ କୃଷ୍ଣମୂର୍ତ୍ତିଙ୍କ ହାତ ମୁଠା ମୁଠା ହୋଇଗଲା, ମୁହଁରେ ଏକ ଅବ୍ୟକ୍ତ ଯନ୍ତ୍ରଣାର ଚିହ୍ନ ଫୁଟି ଉଠିଲା । ଭୁହାକୁ ଭୁହା କମ୍ପ ଉଠି ଶରୀରକୁ ଥରାଇ ଦେଲା ଓ ଆଖିରୁ ଧାର ଧାର ଲୁହ ଗଡ଼ିବାରେ ଲାଗିଲା । ପାଖରେ ବସି ଏ ତିନି ଜଣଯାକ ନୀରବରେ ସେ ଦୃଶ୍ୟ ଦେଖିଲେ ଓ ତାଙ୍କୁ ଜଗି ରହିଲେ । ପ୍ରଥମ କେତେ ଦିନ ପ୍ରାୟ ପ୍ରତ୍ୟହ ଏ ପ୍ରକ୍ରିୟା ସନ୍ଧ୍ୟା ପରେ ଆରମ୍ଭ ହୋଇ ପୂରା ଦୁଇ ଘଣ୍ଟା ଚାଲେ, ମାତ୍ର କ୍ରମଶଃ ଦିନ ଗଡ଼ିବା ସାଙ୍ଗକୁ ପ୍ରକ୍ରିୟାର ସମୟକାଳ ମଧ୍ୟ ଧୀରେ ଧୀରେ ବଢ଼ିବାକୁ ଲାଗିଲା—ଆଉ ସେ ଅତି ଅକ୍ଳେଶରେ ନିଜ ଶରୀରରୁ ବାହାରି ଯାଉଥିଲେ । ସେଇ ଅବସ୍ଥାରେ ପାର୍ଥିବ ଶରୀରଟି ତାଙ୍କର ଯନ୍ତ୍ରଣାରେ ବିକଳ ହୋଇ ବାରମ୍ବାର 'କୃଷ୍ଣ'କୁ ପୁଣି ଶରୀର ଭିତରକୁ ଫେରି ଆସିବାକୁ ଅନୁନୟ କରିବାରେ ଲାଗିଥିଲା ।

ପ୍ରକ୍ରିୟା ଆରମ୍ଭ ହେବା ସତ୍ତ୍ୱେ କୃଷ୍ଣମୂର୍ତ୍ତି ଦିନେ ସୁଦ୍ଧା ତାଙ୍କର ସାନ୍ଧ୍ୟ ଭ୍ରମଣ ବନ୍ଦ କରି ନ ଥିଲେ । ବରଂ ଏଣିକି ସେ ଗଲାବେଳେ ସାଙ୍ଗରେ ଅନ୍ୟ କାହାରିକୁ ହେଲେ ନେବାକୁ ଇଚ୍ଛା କରୁ ନ ଥିଲେ । ଦିନକର ଘଟଣା । ଜୁନ୍ ମାସ ୧୭ ତାରିଖ । କୃଷ୍ଣମୂର୍ତ୍ତି ସାନ୍ଧ୍ୟ ଭ୍ରମଣରୁ ଫେରିବା ବେଳକୁ ପୁପୁଲଜୀ ଓ ନନ୍ଦିନୀ ମେହେଟା ତାଙ୍କୁ ଅପେକ୍ଷା କରି ବୈଠକଖାନାରେ ବସି ରହିଥିଲେ । କୃଷ୍ଣମୂର୍ତ୍ତି ବଖରା ଭିତରେ ପଶିଲେ ସତ କିନ୍ତୁ ଏମାନଙ୍କ ଉପସ୍ଥିତି ବିଷୟରେ ଯେପରି ଆଦୌ ସଚେତ ନ ଥିଲେ । ମୁହଁରେ ତାଙ୍କର ଏକ ଅଚିହ୍ନା ଅଚିହ୍ନା ଭାବ ଫୁଟି ଉଠୁଥିଲା । କାହାରି ଆଡ଼କୁ ଲକ୍ଷ୍ୟ ନ କରି ସେ ସିଧା ଯାଇ ତାଙ୍କ ପଢ଼ା ଟେବୁଲ ଉପରେ ଥିବା ଗୋଟିଏ ଡାଏରୀରେ

କିଛି ଲେଖିବାକୁ ଲାଗିଲେ । ତାପରେ ଧୀରେ ଧୀରେ ସେ ଘର ଭିତରେ ଅନ୍ୟମାନଙ୍କ ଉପସ୍ଥିତି ନେଇ ସଚେତ ହେବାକୁ ଲାଗିଲେ ଓ ନିଜ ଚଉକିରୁ ଉଠି ଆସି ସେମାନଙ୍କ ପାଖରେ ବସିଲେ । ସେହିକବେଳେ ଦୂର ଗାଆଁରେ କିଏ ଜଣେ ବଂଶୀ ବଜାଉଥିଲା ଆଉ ସନ୍ଧ୍ୟା-ପବନରେ ସେ ମଧୁର ତାନ ଭାସି ଆସି କାନରେ ବାଜୁଥିଲା । କୃଷ୍ଣମୂର୍ତ୍ତି ନିଶ୍ଚଳ ଭାବରେ ବସି ରହି ସେହି ଧ୍ୱନିକୁ ଏକ ଧ୍ୟାନରେ ଶୁଣିବାରେ ଲାଗିଥିଲେ । ସତେ ଅବା ତା'ର ଭିତରେ ସେ ଆପଣାକୁ ହଜାଇ ଦେଇଥିଲେ । କେତେ ସମୟ ଏଭଳି କଟିବା ପରେ ବଂଶୀର ଧ୍ୱନି ବନ୍ଦ ହୋଇଗଲା । ସେ କିନ୍ତୁ ସେମିତି ଏକ ଅର୍ଦ୍ଧଚେତନ ଅବସ୍ଥାରେ ବସି ରହିଲେ । ତାଙ୍କର ଚକ୍ଷୁ ଦୁଇଟି ଅର୍ଦ୍ଧ ନିମୀଳିତ ଥିଲା ଓ ମୁଖ ମଣ୍ଡଳରୁ ପରମ ପ୍ରଶାନ୍ତି ଝରି ପଡୁଥିଲା । ତାପରେ ଯେତେବେଳେ ସେ ବଛଣାକୁ ଆସିଲେ ତାଙ୍କର ଜଡ଼ ଦେହଟା ଖଟ ଉପରେ ପଡ଼ି ରହିଲା—ସେ ଶରୀରରୁ ବାହାରି ଯାଇଥିଲେ । ଠିକ୍ ଗୋଟିଏ ଛୋଟ ପିଲା ଭଳି ଦୁର୍ବଳ ଥର ଥର ସ୍ୱରରେ ତାଙ୍କର ଶରୀର କହିବାରେ ଲାଗିଲା ଯେ "ସେମାନେ" ତା' ଭିତରଟାକୁ ଦଗ୍ଧ କରିଛନ୍ତି, ତାକୁ କ୍ଷତ ବିକ୍ଷତ କରି ପକାଇଛନ୍ତି । ସେ ଆହୁରି ମଧ୍ୟ କହିଲା ଯେ ସେଦିନର ଭ୍ରମଣ ସମୟରେ କିଛି ଗୋଟାଏ ବିଶେଷ ଘଟଣା ଘଟିଯାଇଛି । ତା'ପରେ ପୁପୁଲଜୀ ପ୍ରଭୃତିଙ୍କୁ ଚାହିଁ ପଚାରିଲା, "ତମେମାନେ ତା'କୁ ଘରକୁ ଫେରିବାର ଦେଖିଛ ତ ? ··· ଜାଣ, ସେମାନେ ତାକୁ ବାଟରେ ଆଜି ପବରେ ଏକଦମ୍ ପୋଛି ପକାଇଲେ···ଆହୁରି ପୁଣି ଜାଣ କାଲି ଆଉ ତମେ ତାକୁ ଦେଖି ପାରି ନ ଥାନ୍ତ । ସେ ତ ଆଦୌ ଫେରୁ ନ ଥିଲା କହିଲେ ଚଳେ···ମତେ କିନ୍ତୁ ଫେରିଯାଇ ଦେଖିବାକୁ ହେବ ସେଇ ଭ୍ରମଣ ସମୟରେ କ'ଣ ଏମିତି ଘଟିଗଲା ଯୋଉଥି ପାଇଁ କି ସେମାନେ ଅଚାନକ ବାହୁଡ଼ିଗଲେ । କିନ୍ତୁ ମୁଁ ନିଜେ ଫେରିଲି କି ନାହିଁ ସେକଥା ତ ମୁଁ ଜାଣି ପାରୁ ନାହିଁ । ମୋର ଟିକୁରିଟିମାନ ସେଇ ରାସ୍ତା କଡ଼ରେ ହୁଏ ତ ଏବେ ବି ପଡ଼ିଥିବ ।"

କଥା କହୁ କହୁ ମଝିରେ କେତେଥର ସେ ଉଠି ପଡ଼ି କବାଟ ଆଡ଼େ ଧାଇଁବାକୁ ଚେଷ୍ଟା କଲେ । ମାତ୍ର ପର ମୁହୂର୍ତ୍ତରେ ପୁଣି ନିଜକୁ

ସମ୍ପାଳ ଖଣ୍ଡ ଉପରେ ପଡ଼ି ରହିଲେ । କିଛି ସମୟ ପରେ ଏକ ଗଭୀର ନିଦ୍ରାରେ ସେ ଆଚ୍ଛନ୍ନ ହୋଇ ପଡ଼ିଲେ । ପରଦିନ ସକାଳେ ନିଦରୁ ଉଠି ସେ ଖୁବ୍ ସୁସ୍ଥ ମନେ ହେଉଥିଲେ । ସେ ଦିନ ସନ୍ଧ୍ୟାରେ ସେ ପୁଣି ଏକାକୀ ଅରଣ୍ୟ ଭିତରକୁ ଭ୍ରମଣରେ ଗଲେ, ଆଉ ଫେରିବା ବେଳକୁ ସେମିତି ପୂର୍ବଦିନ ଭଳି ଆଖିରୁ ତାଙ୍କର ଏକ ଅଚିହ୍ନା ଭାବ ପ୍ରକଟିତ ହେଉଥିଲା । ସତେ ଯେମିତି ସେ ନିଜ ଭିତରେ ନ ଥିଲେ । ଘରେ ପଶି ସେ ସିଧା ଯାଇ ନିଜ ଡାଏରୀରେ କିଛି ଲେଖି ରଖିଲେ । ତା'ପରେ ବିଛଣାରେ ପଡ଼ି ଠିକ୍ ପୂର୍ବ ଦିନ ଭଳି ନିଜର ଯନ୍ତ୍ରଣା ଓ ଦଗ୍ଧ ହେବାର ଅନୁଭବ ବିଷୟରେ କହିବାକୁ ଲାଗିଲେ । ଏକ ଅବ୍ୟକ୍ତ ଯନ୍ତ୍ରଣାରେ କାତର ହୋଇ ସେ ବଡ଼ ପାଟିରେ କହି ଚାଲିଲେ, "ଜାଣିଛ, ସେଦିନ ଭ୍ରମଣ ସମୟରେ କ'ଣ ଘଟିଥିଲା ଆଜି ମୁଁ ତାହା ଆବିଷ୍କାର କଲି—'ସେ' ସ୍ୱୟଂ ଆସି ମୋର ସମ୍ପୂର୍ଣ୍ଣ ଦାୟିତ୍ୱ ନିଜଠାକୁ ନେଇଗଲେ । ଆଉ ଖାସ୍ ସେଇଥିପାଇଁ ମୁଁ ଘରକୁ ଫେରିଲି କି ନାହିଁ ସେ କଥା ଜାଣି ପାରିଲି ନାହିଁ ।" ତା'ର କିଛି ସମୟ ପରେ ସେ ପୁଣି କହିଲେ "ସେ ସମ୍ପୂର୍ଣ୍ଣ ଶୂନ୍ୟତା ମଧ୍ୟରେ ଏକ ଅପୂର୍ବ ଶାନ୍ତି ଏବଂ ତୋଫାନ ରହିଥିଲା ଆଉ ମୁଁ ସେ ବତାସରେ ଯନ୍ତ୍ରଣା ଜର୍ଜରିତ ହେବାକୁ ଲାଗିଲି । ଏ ଯେଉଁ ଶୂନ୍ୟତା ବିଷୟରେ ମୁଁ କହୁଛି, ତମେ ବୁଝି ପାରୁଛ କି ? ତାହାର ସୀମା ନାହିଁ, ଦିଗନ୍ତ ନାହିଁ···ତାହା ଅଖଣ୍ଡ, ବ୍ୟାପ୍ତ ।" ···"ସେମାନେ ମତେ ଦଗ୍ଧ କରିଛନ୍ତି ଯାହା ଦ୍ୱାରା କି ମୋ ଠାରେ ଆହୁରି ଶୂନ୍ୟତା ଦେଖା ଦେବ । ସେମାନେ ଜାଣିବାକୁ ଚାହାନ୍ତି ଯେ ତାଙ୍କଠାରୁ କେତେ ପରିମାଣରେ ଏଠାକୁ ଆସି ପାରିବ ।" ···"ସେ ଶୂନ୍ୟତାଟା କ'ଣ ତାହା ତମେ ଜାଣ କି ? ଯେତେବେଳେ ମନରେ ଗୋଟିଏ ସୁଦ୍ଧା ଭାବନା ନ ଥାଏ···ଏକ ସମ୍ପୂର୍ଣ୍ଣ, ଅଖଣ୍ଡ ଶୂନ୍ୟତା···ସେହି ଶୂନ୍ୟତା ହିଁ ଶକ୍ତି ସଞ୍ଚାର କରିଥାଏ । ଯେଉଁ ଧନ ସମ୍ପତ୍ତିର ଶକ୍ତି, ବା ସ୍ତ୍ରୀ ଉପରେ ସ୍ୱାମୀର ଶକ୍ତି ବିଷୟରେ ଲୋକେ କହନ୍ତି, ଏହା ସେ ଶକ୍ତି ନୁହେଁ । ଏ ଶକ୍ତି ଏକାନ୍ତ ବିଶୁଦ୍ଧ—ଠିକ୍ ଏକ ଡାଇନାମୋ ର ଶକ୍ତି ଭଳି ।"

ଏ ଘଟଣାର ଦୁଇ ଦିନ ପରେ, ଜୁନ ମାସ ୨° ତାରିଖଠାରୁ ପ୍ରକ୍ରିୟା କିଛି ଦିନ ପାଇଁ ବନ୍ଦ ରହିଲା । ପ୍ରକ୍ରିୟାର ଶେଷ ଦିନର ଘଟଣାକୁ ସ୍ମରଣ କରି ପୁପୁଲଜୀ ଲେଖିଛନ୍ତି ଯେ ଅନ୍ୟ ଦିନ ପରି ସେଦିନ ସନ୍ଧ୍ୟାରେ ମଧ୍ୟ କୃଷ୍ଣମୂର୍ତ୍ତିଙ୍କର ବେକ ଓ ମେରୁଦଣ୍ଡରେ ସେ ଯନ୍ତ୍ରଣା ଭୟାନକ ଭାବରେ ଅନୁଭୂତ ହେଉଥିଲା । ଏତିକବେଳେ ହଠାତ ସେ ଖଟ ଉପରେ ଚିତ୍ ହୋଇ ପଡ଼ିଗଲେ । ଶରୀରଟା ତାଙ୍କର ଅସମ୍ଭବ ଭାବରେ ନିସ୍ତେଜ ହୋଇ ବିଛଣାରେ ପଡ଼ି ରହିଲା ଆଉ ଧୀରେ ଧୀରେ ମୁହଁରୁ କଷ୍ଟ ଯନ୍ତ୍ରଣାର ସମସ୍ତ ଚିହ୍ନ କୁଆଡ଼େ ପୋଛି ହୋଇ ଗଲା । ତାଙ୍କୁ ଦେଖି ମନେ ହେଲା ଯେପରି ଏକ ଅନନ୍ତ, ଅଫୁରନ୍ତ ଶକ୍ତିର ପୁଆରି ଏବଂ ଜୀବମ୍ମ ସ୍ରୋତ ତାଙ୍କ ଭିତରେ ପ୍ରବେଶ କରିବାରେ ଲାଗିଛି । ଧୀରେ ଧୀରେ ସେ ମୁଖ ମଣ୍ଡଳ ଏକ ଅଦ୍ଭୁତ ସୌନ୍ଦର୍ଯ୍ୟରେ ଝଟକି ଉଠିଲା—ସତେ ଅବା ସେଥିରେ ବୟସ ବା ସମୟର ଧାସ ସୁଦ୍ଧା ବାକି ନ ଥିଲା । ଆଖି ଯୋଡ଼ିକ ମେଲ ରହିଥିଲେ ସୁଦ୍ଧା ସେ ଗୃହାଣୀରେ କାହାରିକୁ ଚିହ୍ନିବାର ଭାବ ନ ଥିଲା । ପ୍ରକୋଷ୍ଠର ବାତାବରଣରେ ଏକ ଅପୂର୍ବ ପ୍ରଶାନ୍ତିମୟ ନୀରବତା ଭରିଗଲା ଓ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତିର ଅନ୍ତରକୁ ତାହା ପ୍ଲାବିତ କରିବାକୁ ଲାଗିଲା । ଏକ ଦିବ୍ୟଶକ୍ତିର ଉପସ୍ଥିତିକୁ ସେମାନେ ପ୍ରତ୍ୟେକେ ଅନୁଭବ କରୁଥିଲେ । କିଛି ସମୟ ଏଭଳି କଟିବା ପରେ କୃଷ୍ଣମୂର୍ତ୍ତି ସେମାନଙ୍କ ଆଡ଼େ ଚାହିଁ ପଚାରିଲେ, "ଦେଖିଲ କି ତାଙ୍କର ସେ ମୁଖମଣ୍ଡଳ ? ସ୍ୱୟଂ ବୁଦ୍ଧ ଏବେ ଏହିଠାରେ ଉପସ୍ଥିତ ଥିଲେ । ତାଙ୍କର ଆଶୀର୍ବାଦ ଲାଭ କଲ, ତମେମାନେ ସତରେ ବଡ଼ ଭାଗ୍ୟବାନ ।" କୃଷ୍ଣମୂର୍ତ୍ତିଙ୍କର ସମଗ୍ର ସତ୍ତାରେ ସେହି ଦିବ୍ୟ ଶକ୍ତି ଓ ଉଲ୍ଲାସର ଦୀପ୍ତି ସ୍ପଷ୍ଟ ବାରି ହୋଇ ପଡ଼ୁଥିଲା ଏବଂ ସତେ ଅବା ତାହାରି ଆଭାରେ ସେଠାରେ ଉପସ୍ଥିତ ଯେତେକ ବନ୍ଧୁ, ସମସ୍ତଙ୍କ ଅନ୍ତରକୁ ଉଚ୍ଛୁଳାଇ ଝରି ଯାଉଥିଲା । ଖାଲି ସେତିକି ନୁହେଁ, ପରବର୍ତ୍ତୀ କେତେ ଦିନ ଧରି ସେମାନେ କୃଷ୍ଣମୂର୍ତ୍ତିଙ୍କ ଠାରେ ସେହି ମହାନ ଶକ୍ତିର ଅସ୍ତିତ୍ୱକୁ ଅତି ନିବିଡ଼ ଭାବରେ ଅନୁଭବ କରିଥିଲେ ।

କୃଷ୍ଣମୂର୍ତ୍ତିଙ୍କର ଏ ରହସ୍ୟମୟ ଅଜ୍ଞାତ ପ୍ରକ୍ରିୟା ଲୋକ ସମ୍ମୁଖରେ ଶେଷ ପର୍ଯ୍ୟନ୍ତ ଏକ ଦୁର୍ବୋଧ ପ୍ରହେଳିକା ସଦୃଶ ରହିଗଲା । ଲେଡ଼ବିଟର ଜୀବିତ ଥିବାବେଳେ ଏହାକୁ ପ୍ରଥମ ଦିନାକେତେ କୃଷ୍ଣମୂର୍ତ୍ତିଙ୍କଠାରେ କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେବାର ସୂଚନା ବୋଲି ମନେ କରୁଥିଲେ । କିନ୍ତୁ ତା'ପରେ ସେ ଓ ଆନି ବେସାନ୍ତ ଏହାକୁ ମହାମୁନୀ ମୈତ୍ରେୟଙ୍କର ରଶ୍ମିମାନ କୃଷ୍ଣମୂର୍ତ୍ତିଙ୍କ ଶରୀରରେ ପ୍ରବେଶ କରିବା ପୂର୍ବରୁ ଆବଶ୍ୟକୀୟ ପ୍ରସ୍ତୁତିକରଣର ଏକ ପ୍ରକ୍ରିୟା ବୋଲି ମନେ କଲେ । ମାତ୍ର ତାଙ୍କଠାରେ ଯେଉଁ ଅକଥନୀୟ ଯନ୍ତ୍ରଣା ବରାବର ଅନୁଭୂତ ହେଉଥିଲା ସେ ବିଷୟରେ କୌଣସି ନିର୍ଦ୍ଦିଷ୍ଟ ଉତ୍ତର ଦେବାକୁ ସେମାନେ ସମର୍ଥ ହୋଇ ନ ଥିଲେ । ବାସ୍ତବିକ ତାଙ୍କର ଜୀବନକାଳ ମଧ୍ୟରେ ବିଭିନ୍ନ ସମୟରେ ଉକ୍ତ ପ୍ରକ୍ରିୟା ଯେଭଳି ଭାବେ ଅନୁଭୂତ ହୋଇଛି ଓ ସେତେବେଳେ ସେ ଯାହାସବୁ କହନ୍ତି ସେଥିରୁ ଜଣାଯାଏ ଯେ ଲେଡ଼ବିଟର ଓ ଆନି ବେସାନ୍ତଙ୍କର ଅନୁମାନଠାରୁ ଏ ପ୍ରକ୍ରିୟା ସମ୍ପୂର୍ଣ୍ଣ ଭିନ୍ନ ଓ ଅଭିନବ ।

ଏ ଘଟଣାର ଅନେକ ବର୍ଷ ପରେ ଦିନେ ପୁପୁଲ ଜୟକର କୃଷ୍ଣମୂର୍ତ୍ତିଙ୍କୁ ତାଙ୍କର ପ୍ରକ୍ରିୟା ସମ୍ପର୍କରେ ଉଲ୍ଲେଖ କରି ପଚାରିଲେ ଯେ ସେହି ଅବସ୍ଥାରେ ତାଙ୍କ ଶରୀର ମଧ୍ୟରେ କ'ଣ କେବଳ ଶୂନ୍ୟତା ବିଦ୍ୟମାନ ଥାଏ ? ତେବେ ଶରୀରରୁ ନିସୃତ କଣ୍ଠସ୍ୱର କାହିଁକି ଏଭଳି ଶିଶୁ ସୁଲଭ ହୋଇ ଉଠୁଥିଲା ? ଉତ୍ତରରେ ସେ କହିଲେ "ସେହି ଯେଉଁ ଦୁଇ ପ୍ରକାର କଣ୍ଠସ୍ୱର ବିଷୟରେ ତମେ କହୁଛ ସେଥିରୁ ଗୋଟିଏ ସ୍ୱର ଯେ ସ୍ୱୟଂ ଶରୀରର ହୋଇଥାଇ ପାରେ, ଏକଥା କ'ଣ ତମ ମନକୁ ଟିକେହେଲେ ଆସୁ ନାହିଁ ?"

କୌତୁହଳୀ ହୋଇ ପୁପୁଲଜୀ ପଚାରିଲେ, "ତେବେ କ'ଣ ସେଇ ଜଡ଼ ଶରୀରଟି କଥାବାର୍ତ୍ତା କରୁଥିଲା ?"

କୃଷ୍ଣମୂର୍ତ୍ତି—"ହଁ, କାହିଁକି ନୁହେଁ ?"

ପୁପୁଲଜୀ—"ମାନେ, କ'ଣ ସେହି ଫମ୍ପା ଖୋଳଟି ?"

କୃଷ୍ଣମୂର୍ତ୍ତି—"ହଁ, ନ ହେବ ବା କାହିଁକି ? ତମକୁ ସେ କଥାଭାଷା କୌଣସି ଦିଗରୁ ବତୁଲ ଶୁଭୁଥିଲା କି ?"

ପୁପୁଲଜୀ—"ନା। ଆଦୌ ନୁହେଁ। ସେଥିରେ ବାତୁଲତାର ଚିହ୍ନ ହିଁ ନ ଥିଲା।"

ଏହା ପରେ କୃଷ୍ଣମୂର୍ତ୍ତି ଆଉ ଅଧିକ ଖୋଲି କରି କିଛି କହି ନ ଥିଲେ। ଓଠରେ ତାଙ୍କର ଏକ ରହସ୍ୟମୟ ଭାବ ଖେଳିଗଲା। ଆଉ ସଙ୍ଗେ ସଙ୍ଗେ ସେହି ସଦା ପରିଚିତ ଦରଦୀ ଭାବ ଓ ମଧୁର ହସ ମୁଖମଣ୍ଡଳରେ ଚହଟି ଉଠିଲା। ପୁଣି ଆଉ ଦିନେ ତାଙ୍କର ଅନ୍ୟ ଜଣେ ବନ୍ଧୁ, ପ୍ରକ୍ରିୟା ସମୟରେ କୃଷ୍ଣମୂର୍ତ୍ତିଙ୍କ ମୁଖମଣ୍ଡଳ ପରିବର୍ତ୍ତିତ ହୋଇଯିବାର କାରଣ ପଚାରିବାରେ ସେ କହିଥିଲେ, "ଅନେକ ବର୍ଷ ପୂର୍ବେ ଦିନେ ମୁଁ ନିଦରୁ ଉଠିଲା ବେଳକୁ ଦେଖିଲି ସେଇ ମୁଖମଣ୍ଡଳଟି ମୋର ପାଖରେ ରହିଛି। କୃଷ୍ଣମୂର୍ତ୍ତିର ମୁହଁ ଯେଉଁ ମୁଖମଣ୍ଡଳ ସଦୃଶ ହେବାରେ ଲାଗିଥିଲା, ସେହି ମୁଖମଣ୍ଡଳ ହିଁ ମୋର ପାଖରେ ଥିଲା ଆଉ ଅନବରତ ମୋର ନିକଟରେ ଆନନ୍ଦଭରେ ରହିଥିଲା। ତାହା ଥିଲା ଏକ ଅସାମାନ୍ୟ ଓ ଅତ୍ୟନ୍ତ ଉତ୍କୃଷ୍ଟ ମାନର ମାର୍ଜିତ ମୁଖମଣ୍ଡଳ। ଏମିତି ହେଉ ହେଉ ଦିନେ ନଦେଖାଗଲା ଯେ ସେହି ମୁଖମଣ୍ଡଳଟି ଆଉ ପାଖରେ ନାହିଁ।"

—"ତେବେ କ'ଣ ସେଇଟା ଏଇ କୃଷ୍ଣମୂର୍ତ୍ତିଙ୍କର ମୁଖ ସହିତ ମିଶି ଏକାକାର ହୋଇଗଲା ?"

କୃଷ୍ଣମୂର୍ତ୍ତି ନୀରବ ରହିଲେ ; କହିଲେ ଯେ ସେ କଥା ସେ ଜାଣି ନାହାନ୍ତି। ତାହାଛଡ଼ା ପ୍ରକ୍ରିୟା ସମୟରେ ଶରୀରକୁ ସୁରକ୍ଷିତ ରଖିବାର ତାତ୍ପର୍ଯ୍ୟ ସମ୍ବନ୍ଧରେ ଉଲ୍ଲେଖ କରି ସେ ଏକଥା ମଧ୍ୟ କହିଲେ ଯେ ଯେତେବେଳେ କୃଷ୍ଣମୂର୍ତ୍ତି ଶରୀରରେ ରହୁ ନ ଥିବ ସେତେବେଳେ ସେ ଶରୀରକୁ ଜଗିବା ନିତାନ୍ତ ଆବଶ୍ୟକ ଓ ସେହି ସମୟରେ ଆଖ ପାଖରେ ଯେପରି କୌଣସି କୁତ୍ସିତ ଘଟଣା ନ ଘଟେ ସେଥି ପ୍ରତି ସତର୍କ ରହିବା ଆବଶ୍ୟକ। କାରଣ ସେଭଳି ଅବସ୍ଥାରେ ଶରୀରଟା

ଏକବାରେ ଅରକ୍ଷିତ ଭାବରେ ରହିଥାଏ, ତେଣୁ ଯେ କୌଣସି ପ୍ରକାର 'ଏଲମେଣ୍ଟ' (element) ବା ଆଧିଭୌତିକ ବସ୍ତୁ ତାହାକୁ ନଷ୍ଟ ବିନଷ୍ଟ ମଧ୍ୟ କରି ଦେଇପାରେ । 'ଭଲ'ଟା ଥିବାବେଳେ ତା' ପାଖେପାଖେ 'ମନ୍ଦ'ଟା ବି ଯେ ବରାବର ରହିଥାଏ !

## "ଯେଉଁ ପ୍ରେମ ଦୁଃଖ ଓ ଘୃଣାରେ ପରିଣତ ହୁଏ, ସେ ତ' ପ୍ରେମ ନୁହେଁ......"

ଭାରତ ତଥା ଭାରତ ବାହାରେ ଅନେକ ସମୟରେ ଲୋକେ ଆପଣାର ବ୍ୟକ୍ତିଗତ ସମସ୍ୟାମାନ ଧରି କୃଷ୍ଣମୂର୍ତ୍ତିଙ୍କ ନିକଟକୁ ସମାଧାନ ଆଶାରେ ଆସୁଥିଲେ । ସାଧାରଣତଃ ସାଧୁ ବା ମହାପୁରୁଷ କହିଲେ ମନରେ ଯେଉଁ ଛବି ଆଙ୍କି ହୋଇଯାଏ, ସେଭଳି କିଛି କଳ୍ପନା ନେଇ ସେମାନେ ନିଶ୍ଚୟ ତାଙ୍କୁ ଦର୍ଶନ କରିବାକୁ ଆସୁଥିଲେ । ସେମାନଙ୍କର ବିବିଧ ସମସ୍ୟାର ଜଟିଳତାକୁ ସେ ନିମିଷକେ ସୁଧାରି ଦେଇ ପାରିବେ, ମନର ଦ୍ୱନ୍ଦ୍ୱ ଅବିଶ୍ୱାସକୁ ଆଶ୍ୱାସନାମୂଳକ ବାଣୀରେ ବିଶ୍ୱାସ ଓ ପ୍ରତ୍ୟୟରେ ପରିଣତ କରିଦେବେ, ଅଥବା ଜ୍ଞାନଗରିମାପୂର୍ଣ୍ଣ ଯୁକ୍ତି ଦର୍ଶାଇ ଅନ୍ତରର ସକଳ ଦୁଃଖ ଅଶାନ୍ତିର ଦାଗକୁ ପୋଛି ଲିଭାଇ ଦେବେ—ଏହି ଭଳି ନାନା ଆଶା ନେଇ ଲୋକମାନେ କାହିଁ କେଉଁ ଦୂର ଦୂରାନ୍ତରୁ ତାଙ୍କ ନିକଟକୁ ଧାଇଁ ଆସୁଥିଲେ । କିନ୍ତୁ ଥରେ ତାଙ୍କ ସହିତ ମନ ଖୋଲି ଆଲୋଚନା କରି ସାରିବା ପରେ ସେମାନଙ୍କ ମନର ଯେତେକ ପୂର୍ବ ବିଶ୍ୱାସ ଓ ଧାରଣା—ସବୁ କାହିଁ ଓଲଟ ପାଲଟ ହୋଇ ଯାଉଥିଲା । କୃଷ୍ଣମୂର୍ତ୍ତି କେବେହେଲେ କାହାରି ମନ ରଖିବା ପାଇଁ ବା ସାନ୍ତ୍ୱନା, ଆଶ୍ୱାସନା ଦେଇ ତା'ର ଦୁଃଖ ଲାଘବ କରିବା ପାଇଁ ଚେଷ୍ଟା କରୁ ନ ଥିଲେ । ବରଂ ଦୁଃଖ ଯନ୍ତ୍ରଣା ଓ ସମସ୍ୟାର ମୂଳ ମଞ୍ଜିଟିକୁ ଖୋଜି, ବାହାର କରି ତାହାରି

ସାହାଯ୍ୟରେ ସମସ୍ୟା ବା ଦୁଃଖକୁ ସମୂଳେ ଦୂର କରିଦେବା ଲାଗି ସେ ଲୋକମାନଙ୍କୁ ଉତ୍ସାହିତ କରୁଥିଲେ । ସେ କହୁଥିଲେ ଯେ କୌଣସି ମାନସିକ ସମସ୍ୟା ପ୍ରତି ଅନ୍ତରରେ ହୃଦ୍‌ବୋଧତା ଆସିଗଲେ ସମସ୍ୟାଟି ଆଉ ପୂର୍ବ ଭଳି ରହିପାରେ ନାହିଁ । ତାହା ଆପେ ମଉଳି ଶେଷ ପାଇଯାଏ ।

ଥରେ ବମ୍ବେରେ ଥିବାବେଳେ ଦୁଇ ଜଣ ମହିଳା ତାଙ୍କର ବିଧବା ମାଆକୁ ଧରି କ୍ରିଷ୍ଣମୂର୍ତ୍ତିଙ୍କ ଦର୍ଶନ ଲାଗି ଆସିଥିଲେ । ବୃଦ୍ଧା ଜଣକର ସ୍ୱାମୀ ଥିଲେ ଜଣେ ଉଚ୍ଚ ପଦସ୍ଥ ଅଫିସର । ସ୍ୱାମୀଙ୍କ ମୃତ୍ୟୁର ଅନେକ ବର୍ଷ ପରେ ସୁଦ୍ଧା ସେ ପ୍ରକୃତିସ୍ଥ ହୋଇ ପାରୁ ନ ଥିଲେ କି ସ୍ୱାମୀଙ୍କର ମୃତ୍ୟୁକୁ ସ୍ୱୀକାର ମଧ୍ୟ କରି ପାରୁ ନ ଥିଲେ । ଅତୀତର ସ୍ମୃତି ତାଙ୍କୁ ବାରମ୍ବାର ଯନ୍ତ୍ରଣା ଜର୍ଜରିତ କରୁଥିଲା; ଜୀବନ ପ୍ରତି ତାଙ୍କର ବିତୃଷ୍ଣା ଆସି ଯାଇଥିଲା । ଝିଅ ଦୁହେଁ ଆଶା କରିଥିଲେ ଯେ କ୍ରିଷ୍ଣମୂର୍ତ୍ତିଙ୍କ ଠାରୁ ସାନ୍ତ୍ୱନା ପାଇ ତାଙ୍କ ମାଆ ଟିକିଏ ଧଇର୍ଯ୍ୟ ଧରିବେ ।

ବୃଦ୍ଧା ଜଣକ ପ୍ରଥମେ କ୍ରିଷ୍ଣମୂର୍ତ୍ତିଙ୍କ ନିକଟରେ କିଛି ସମୟ ଚୁପ୍ ହୋଇ ବସି ରହିଲେ । ତା'ପରେ ଭାରି ଗଳାରେ ନିଜର ମୃତ ସ୍ୱାମୀଙ୍କ ବିଷୟରେ ଗୋଟି ଗୋଟି କରି କହିବାକୁ ଆରମ୍ଭ କଲେ । ସେମାନେ ପରସ୍ପରକୁ କିପରି ଭଲ ପାଉଥିଲେ ଆଉ ବର୍ତ୍ତମାନ କିପରି ସେ ତାଙ୍କ ବିଚ୍ଛେଦ ଆଦୌ ସହ୍ୟ କରି ପାରୁ ନାହାନ୍ତି—ଏଇ ସବୁ କଥା ସେ ଅତି ଦୁଃଖଭରା କଣ୍ଠରେ କହି ଚାଲିଥିଲେ, ଆଉ କ୍ରିଷ୍ଣମୂର୍ତ୍ତି ଗମ୍ଭୀର ଦରଦ ସହିତ ନୀରବରେ ବସି ରହି ସବୁ ଶୁଣୁଥିଲେ । ଶେଷକୁ ବୃଦ୍ଧାଜଣକ କ୍ରିଷ୍ଣମୂର୍ତ୍ତିଙ୍କୁ ପ୍ରଶ୍ନ କଲେ ଯେ ସେ କ'ଣ ଆଉ ପରିରେ ସତରେ ତାଙ୍କ ସ୍ୱାମୀଙ୍କୁ ପୁଣି ଭେଟି ପାରିବେ ?

ନୀରବତା ଭଙ୍ଗ କରି ହଠାତ୍ କ୍ରିଷ୍ଣମୂର୍ତ୍ତି କହି ଉଠିଲେ,— "ମତେ କ୍ଷମା କରିବେ । ଆପଣ ଭୁଲ ଲୋକଟି ପାଖରେ ଆସି ପହଞ୍ଚିଛନ୍ତି । ଆପଣ ଯେଉଁ ସାନ୍ତ୍ୱନାଟିକକ ଲାଭ କରିବା ଆଶାରେ ଏଠିକି ଆସିଛନ୍ତି ତାହା ମୁଁ ଆପଣଙ୍କୁ ଦେଇ ପାରିବି ନାହିଁ । ଆପଣ ମନ ଭିତରେ

ଖୋଜୁଛନ୍ତି ଯେ ମୁଁ କହିବି,—'ହଁ, ମୃତ୍ୟୁ ପରେ ଆପଣ ଆପଣଙ୍କ ସ୍ୱାମୀଙ୍କୁ ପୁଣି ଫେରି ପାଇବେ !' କିନ୍ତୁ ସ୍ୱାମୀ ବୋଲି ଆପଣ ଯାହାଙ୍କୁ ଫେରି ପାଇବାକୁ ଇଚ୍ଛା କରୁଛନ୍ତି, ସେ ଜଣକ ପ୍ରକୃତରେ କିଏ ? ଯାହାଙ୍କୁ ଆପଣ ବିବାହ କରିଥିଲେ ନା ଯୁବା ବୟସରେ ଯିଏ ଆପଣଙ୍କ ସାଥିରେ ରହୁଥିଲେ, ନା ଯେଉଁ ଜଣକ ଆଜି ମୃତ, ନା ବଞ୍ଚି ରହିଥିଲେ ସେ ବ୍ୟକ୍ତି ଜଣକ ଆଜି ଯାହା ହୋଇଥାନ୍ତେ ? ଏଥିରୁ କେଉଁଟିକୁ ଆପଣ ଖୋଜୁଛନ୍ତି ? କାରଣ ଏହା ନିଶ୍ଚିତ ଯେ ଯେଉଁ ଜଣକ ମରି ଯାଇଛନ୍ତି ଆପଣ ଠିକ୍ ତାଙ୍କୁ ହିଁ କଦାପି ବିବାହ କରି ନ ଥିଲେ ।"

ଏକଥା ଶୁଣି ବୃଦ୍ଧାଙ୍କ ପାଟିରୁ କଥା ବାହାରିଲି ନାହିଁ । ବୋଧହୁଏ ଏଭଳି ଏକ ପ୍ରଶ୍ନ ସେ କଳ୍ପନା କରି ନ ଥିଲେ । ଯେଉଁ ବ୍ୟକ୍ତିଜଣକୁ ସେ ବିବାହ କରିଥିଲେ, ଏତେ ଭଲ ପାଉଥିଲେ, ସେ ଯେ ପ୍ରତି ମୁହୂର୍ତ୍ତରେ ବଦଳୁଥାଇ ପାରନ୍ତି, ଏ ଧାରଣା ତାଙ୍କର ନ ଥିଲି । ଅତି କୋମଳ ଭାବରେ ବୃଦ୍ଧାଙ୍କର ପାପୁଲି ଦୁଇଟିକୁ ଧରି ସହାନୁଭୂତିଭରି ଗୃହାଣୀରେ କୃଷ୍ଣମୂର୍ତ୍ତି ପୁଣି କହିଲେ, "କାହିଁକି ଆପଣ ତାଙ୍କୁ ଫେରି ପାଇବା ଲାଗି ଏଭଳି ବ୍ୟସ୍ତ ହେଉଛନ୍ତି ? ପ୍ରକୃତରେ ଯଦି ଆପଣ କିଛି ହରାଇଥାନ୍ତି, ତେବେ ତାହା ତ ଆପଣଙ୍କ ସ୍ୱାମୀ ନୁହନ୍ତି— ତାଙ୍କର ସ୍ମୃତି ସମୂହ ମାତ୍ର । ଆପଣ ତାଙ୍କର ସ୍ମୃତିକୁ କାହିଁକି ଉଜ୍ଜୀବିତ କରି ରଖିଛନ୍ତି ? କାହିଁକି ତାଙ୍କର ସତ୍ତାକୁ ମନ ଭିତରେ ବାରମ୍ବାର ବଞ୍ଚାଇ ରଖିବାକୁ ଚେଷ୍ଟା କରୁଛନ୍ତି ? କାହିଁକି ଆପଣ ଦୁଃଖ ଭିତରେ ରହିବାକୁ ଓ ସେହି ଦୁଃଖକୁ ଲମ୍ବାଇ ରଖିବାକୁ ଚେଷ୍ଟା କରୁଛନ୍ତି ?" ଯଦିଓ କୃଷ୍ଣମୂର୍ତ୍ତିଙ୍କର କଥା ଶ୍ରୁତିକଟୁ ମନେ ହେଉଥିଲି ତଥାପି ଆଖିରୁ ତାଙ୍କର ଏକ ଅବର୍ଣ୍ଣନୀୟ ଦରଦ ଫୁଟି ଉଠୁଥିଲି । ମାଆଙ୍କୁ ସାଥିରେ ଆଣିଥିବା ମହିଳା ଦୁଇଜଣ ଆଶ୍ଚର୍ଯ୍ୟ ହୋଇ କୃଷ୍ଣମୂର୍ତ୍ତିଙ୍କୁ ଚାହିଁ ରହିଲେ ।

କୃଷ୍ଣମୂର୍ତ୍ତିଙ୍କ ମତରେ ସ୍ମୃତି ସଙ୍କଳନ ମାନବକେ ହିଁ ହୃଦ୍‌ବୋଧତା ଦିଗରେ ପ୍ରତିରୋଧ ସୃଷ୍ଟି କରେ ଏବଂ ପୂର୍ଣ୍ଣାଙ୍ଗ ଜୀବନ

ଯାପନ ପଥରେ ପ୍ରତିବନ୍ଧକ ଆଣି ଛିଡ଼ା କରାଏ । ସଙ୍କଳିତ ସ୍ମୃତିରାଜି ଜୀବନରେ 'ଗତକାଲି', 'ଆସନ୍ତାକାଲି' ଓ 'ଆଜି' ପ୍ରଭୃତି ତିଆରି କରି ଜୀବନକୁ ନୀରସ, ସୌନ୍ଦର୍ଯ୍ୟବିହୀନ କରି ପକାଏ । 'ଗତକାଲି'ର ସ୍ମୃତିକୁ ନେଇ 'ଆଜି' ଗଢ଼ା ଓ ସେଇଥିରୁ ପୁଣି 'ଆସନ୍ତା କାଲି' ମୁଣ୍ଡ ଟେକିବ । ଅର୍ଥାତ୍ ବର୍ତ୍ତମାନର ଭିତର ଦେଇ ଭବିଷ୍ୟତରେ ପରିଣତ ହେବ । ମନସ୍ତାତ୍ତ୍ୱିକ ସ୍ତରରେ ସ୍ମୃତି ପରସ୍ପରକୁ ବୁଝିବାରେ ବାଧା ଆଣେ ଏବଂ ମଣିଷକୁ କଦାପି ବର୍ତ୍ତମାନରେ, ବା 'ଯାହା ଅଛି', ତହିଁରେ ବଞ୍ଚିବାକୁ ଛାଡ଼େ ନାହିଁ । ଉଦାହରଣ ସ୍ୱରୂପ, ସେ କହିଛନ୍ତି, "ଧର ତମର ଜଣେ ବନ୍ଧୁ ତମକୁ ଗତକାଲି ଅପମାନ ଦେଇ କ'ଣ କଥାପଦେ କହିଥିଲା, ବା ପ୍ରଶଂସା କରି କିଛି ଗୋଟାଏ କହି ଦେଇଥିଲା । ତମେ ସେଇ କଥାପଦକୁ ସ୍ମୃତିରେ ବାନ୍ଧି ରଖ ଏବଂ ପରଦିନ ତମର ବନ୍ଧୁକୁ ଦେଖା କରିବା ସମୟରେ ସେହି ସ୍ମୃତି ତମ ମନରେ ଜାଗି ଉଠେ । ଫଳରେ ତମେ ବନ୍ଧୁକୁ ଆଉ 'ପ୍ରକୃତ'ରେ ଭେଟି ପାର ନାହିଁ—ତା'କୁ କେବଳ ପୂର୍ବର ସେହି ସ୍ମୃତି ମାଧ୍ୟମରେ ଭେଟ । ଗତକାଲିର ସ୍ମୃତି ଆସି ତମ ଦୁହିଁଙ୍କ ମଧ୍ୟରେ ମୁଣ୍ଡ ଟେକି ଛିଡ଼ା ହୁଏ ।"

ଦିନକର ଘଟଣା । କୃଷ୍ଣମୂର୍ତ୍ତିଙ୍କ ସହିତ ଦେଖା କରିବାକୁ ଜଣେ ଯୁବକ ଆସି ପହଞ୍ଚିଲେ । ବୟସ ବେଶୀ ନୁହେଁ । ସେ ଥିଲେ ଜଣେ ଚିତ୍ର ଶିଳ୍ପୀ । ହାତରେ ରଙ୍ଗତୁଳୀ ଓ କାନଭାସ୍ ଖଣ୍ଡିଏ ଧରିନେଲେ ଜୀବନର ସବୁକଥାକୁ ସେ ଭୁଲି ଯାଉଥିଲେ । ଯୁବସୁଲଭ ଆଖିରେ ତାଙ୍କର ଅନେକ ସ୍ୱପ୍ନ ରହି ଯାଇଥିଲା । ଛଅ ମାସ ତଳେ ସେ ଅକସ୍ମାତ୍ ନିଜର ପତ୍ନୀଙ୍କୁ ହରାଇ ବସିଥିଲେ । ସେହିଦିନ ଠାରୁ କ୍ଷଣକ ପାଇଁ ସୁଦ୍ଧା ସେ ଶାନ୍ତି ପାଇ ନ ଥିଲେ । ସ୍ତ୍ରୀ ତାଙ୍କର ଦେଖିବାକୁ ଅତି ସୁନ୍ଦରୀ ଥିଲେ ଓ ସେମାନେ ପରସ୍ପରକୁ ଅତିରିକ୍ତ ଭଲ ପାଉଥିଲେ । କହିବାକୁ ଗଲେ ଯୁବକ ଜଣକ ତାଙ୍କ ସ୍ତ୍ରୀଙ୍କୁ ନିଜ ଜୀବନର ଏକ ଅବିଚ୍ଛେଦ୍ୟ ଅଂଶ ବୋଲି ଗ୍ରହଣ କରି ନେଇଥିଲେ । ନିଜର ହସଖୁସି,

ଲୁହ, କୋହ ସବୁଥିରେ ସେ ତାଙ୍କର ଅସ୍ତିତ୍ୱ ହିଁ ଉପଲବ୍ଧି କରି ଆସୁଥିଲେ । ମାତ୍ର ଏବେ ଅତର୍କିତ ତାଙ୍କୁ ଏକାକୀ କରି ଦେଇ ସ୍ତ୍ରୀ ଯେ ଚିରକାଳ ଲାଗି ବିଦାୟ ନେଇଛନ୍ତି ଏକଥା ସେ ଆଦୌ ବିଶ୍ୱାସ କରି ପାରୁ ନ ଥିଲେ ।

କୃଷ୍ଣମୂର୍ତ୍ତିଙ୍କ ପାଖରେ ପହଞ୍ଚି ଯୁବକ ଜଣକ ନିଜକୁ ଆୟତ୍ତ କରି ପାରିଲେ ନାହିଁ । ନିଜକୁ ରୋକିବାର କୌଣସି ଚେଷ୍ଟା ନ କରି, କୋହ ଉଠାଇ ଅତି ଆତୁର ଭାବରେ ସେ କାନ୍ଦିବାରେ ଲାଗିଲେ । ସ୍ତ୍ରୀଙ୍କୁ ହରାଇବା ଦିନଠାରୁ ସେ ଏମିତି ଖୋଲାଖୋଲି କାନ୍ଦି ପାରି ନ ଥିଲେ । ତା'ପରେ କେତେକ ପରମାଣରେ ପ୍ରକୃତିସ୍ଥ ହୋଇ କହିବାକୁ ଆରମ୍ଭ କଲେ, "ଏମିତିକା କୋହ ଉଠାଇ କାନ୍ଦି ଥିବାରୁ ମତେ ବଡ଼ ଲାଜ ଲାଗୁଛି, ହେଲେ ମୋ ଭିତରୁ କାହିଁକି ଯେ ଏମିତି କାନ୍ଦଣା ଉଠିଲା ସେକଥା ଭଗବାନଙ୍କୁ ଜଣା । ଖାଲି ଏତିକି କହିପାରେ ଯେ ଏପରି କାନ୍ଦି କରି ମୁଁ ଖୁବ୍ ଭଲ କରିଛି । ଅବଶ୍ୟ ମୁଁ ଜାଣୁଛି ଯେ ମୁଁ ଆଉ କେବେହେଲେ ଆଗ ପରି ରହି ପାରିବି ନାହିଁ; ମୋ ପ୍ରାଣ ଭିତରୁ କ'ଣ ଗୋଟାଏ ହଜି ଯାଇଛି । × × × × × ଶୋଇଲେ, ବସିଲେ, ସ୍ୱପ୍ନ ଦେଖିଲେ ବା ଖାଇଲେ ସେ ସଦାବେଳେ ମୋରି ପାଖେ ପାଖେ ରହୁଥିଲେ । ହେଲେ ଏଣିକି ଆଉ ସେସବୁ ଆଗ ଭଳି ରହିବ ନାହିଁ × × × × × ଆଗେ ମୁଁ ବସି ବସି ପକ୍ଷୀର କାକଳୀକୁ ଶୁଣୁଥିଲି, ଏବେ କିନ୍ତୁ ମନ ହୁଏ ସବୁ କିଛି ଭାଙ୍ଗି ଚୁରମାର୍ କରି ଦିଅନ୍ତି କି ! ହେଲେ ଏମିତି ଆଉ କେତେ ଦିନ ଚାଲିବ ? ସେହି ଦିନଠାରୁ ମୁଁ ମୋର କୌଣସି ସାଙ୍ଗ ସାଥୀଙ୍କୁ ଭେଟିବାକୁ ଯାଇ ନାହିଁ, କାରଣ ମୋ ସ୍ତ୍ରୀଙ୍କ ବିନା ମୋ ପାଇଁ ସେ ସାଙ୍ଗସାଥୀର କୌଣସି ଅର୍ଥ ହିଁ ନାହିଁ । ଏବେ ମୁଁ କଣ କରିବି ମତେ କହି ଦିଅନ୍ତୁ, ମତେ ଟିକିଏ ବତେଇ ଦିଅନ୍ତୁ ।"

କୃଷ୍ଣମୂର୍ତ୍ତି ସେଦିନ ତାଙ୍କୁ ଯେଉଁ ଉତ୍ତର ଦେଇଥିଲେ ତା'ର କିଛି ଅଂଶ ଥିଲା—"ଯେଉଁ ପ୍ରେମ ଦୁଃଖ ଓ ଘୃଣାରେ ପରିଣତ

ହୋଇଯାଏ ତାହା ତ' ପ୍ରେମ ନୁହେଁ । ପ୍ରେମଟା ଯେ ପ୍ରକୃତରେ କି ଜିନିଷ ସେ କଥା କ'ଣ ଆମେ କେହି କେବେ ବୁଝିଛୁ କି ? ଯୋଉ ଭଲ ପାଇବାଟା ବାଧା ପାଇଲେ ରାଗ ବା କ୍ରୋଧରେ ପରିଣତ ହୁଏ ତାହା କ'ଣ ପ୍ରକୃତ ଭଲ ପାଇବା କି ?

କିନ୍ତୁ ଦେଖ, କେଡ଼େ ଚଞ୍ଚଳ ଆମର ଏଇ ଭଲ ପାଇବାଟା ଘୃଣା, ଈର୍ଷା ଆଉ ଦୁଃଖ ପାଲଟି ଯାଏ ! ଆଉ ପୁଣି କେଡ଼େ ଚଞ୍ଚଳ ଆମେ ନିଜକୁ ସେଇ ଧୂଆଁରେ ହଜାଇ ଦେଉ । ସେଇ ଯେଉଁ ପଦାର୍ଥଟି ଆମର ଏତେ ନିକଟରେ, ହାତ ପାଖରେ ଥାଏ, ତାହା ପୁଣି କେତେ ଦୂରକୁ ଘୁଞ୍ଚିଯାଏ । × × × × ଦୁଃଖକୁ ବୁଝିବା ଦରକାର । ତାକୁ ଅବଜ୍ଞା କରି, ଏଡ଼ାଇ ଚାଲିଯିବା କଥା ନୁହେଁ । ଅବଜ୍ଞାର ଅର୍ଥ ହେଉଛି ସେହି ଯାତନା, ଦୁଃଖକୁ ଲମ୍ବାଇ ରଖିବା; ଅବଜ୍ଞାର ଅର୍ଥ ହେଉଛି ଦୁଃଖ ଭିତରୁ ଖସି ପଳାଇବା × × × × ତମେ ଯେତେବେଳେ ଦୁଃଖ, ଯନ୍ତ୍ରଣାରୁ ବାଟ କାଟି ଚାଲି ଯିବାକୁ ଚେଷ୍ଟା କରୁଥାଅ, ସେତେବେଳେ ତମର ଏକମାତ୍ର ଚିନ୍ତା ଥାଏ କେମିତି ତା'ଠାରୁ ଦୂରେଇ ଯିବ । କିନ୍ତୁ ତମେ ଯଦି ମାନସିକ ଦୁଃଖ ଯନ୍ତ୍ରଣାକୁ ବୁଝିବାକୁ ଚାହୁଁଥାଅ, ତେବେ ତମ ମନ ଭିତରେ ତା'କୁ ଲାଗିପଡ଼ି ଠିକ୍ ବୋଲି ସାବ୍ୟସ୍ତ କରିବା କଥା ନୁହେଁ, କି ତା'କୁ ଜୟ କରିଯିବା କଥା ବି ନୁହେଁ, ବରଂ ଏଥିପାଇଁ ମନଟାକୁ ସମ୍ପୂର୍ଣ୍ଣ ନିଶ୍ଚେଷ୍ଟ ଭାବରେ ତଥା ନୀରବରେ ଜାଗ୍ରତ ରଖିବା ଆବଶ୍ୟକ, ଏବଂ ତାହାରି ଦ୍ୱାରା ହିଁ କେବଳ ବିନା ଦ୍ୱିଧାରେ ଦୁଃଖର ଉନ୍ମୋଚନକୁ ହୃଦୟଙ୍ଗମ କରି ହେବ । ଯେଉଁ ମନ ଆଶା, ବିଶ୍ୱାସ, ମୀମାଂସା ଗ୍ରହଣ ବା ସ୍ମୃତିର ଡୋରିରେ ବାନ୍ଧି ହୋଇ ରହିଥିବ ସେ ମନ କେବେହେଲେ ଦୁଃଖର ଗାଥାକୁ ବୁଝି ପାରିବ ନାହିଁ ।"

କୃଷ୍ଣମୂର୍ତ୍ତି ବରାବର ହୃଦୟଙ୍ଗମତା ଉପରେ ଜୋର ଦେଇ କହୁଥିଲେ ଯେ ପ୍ରତ୍ୟେକ ବ୍ୟକ୍ତି ଅନ୍ୟ କାହାରି ସାହାଯ୍ୟ ବିନା, ନିଜେ ନିଜେ ଜୀବନର ସତ୍ୟକୁ ଅତି ସହଜରେ ଉପଲବ୍ଧି କରି ପାରିବ । ଏଥିଲାଗି ତାକୁ କୌଣସି ଧର୍ମ ମାର୍ଗ, ମନ୍ତ୍ରପାଠ ବା ଆଧ୍ୟାତ୍ମିକ ଗୁରୁର

ସାହାଯ୍ୟ ଲୋଡ଼ିବାର ଆବଶ୍ୟକତା ନାହିଁ । ମଣିଷ ନିଜେ ହିଁ ନିଜର ଗୁରୁ ଓ ପଥ ପ୍ରଦର୍ଶକ । ଆଉ କେବଳ ସେହି କାରଣରୁ ସେ ତାଙ୍କ ଭାଷଣରେ ସର୍ବଦା ଗୁରୁବାଦ ଓ ଗୁରୁ-ଶିଷ୍ୟ ସମ୍ପର୍କର ବିରୋଧ କରି ଆସୁଥିଲେ । ଏକଦା ଦିଲ୍ଲୀରେ ଥିବାବେଳେ କୃଷ୍ଣମୂର୍ତ୍ତିଙ୍କୁ ସାକ୍ଷାତ କରିବା ଲାଗି ଉତ୍ତର ଭାରତର ପ୍ରସିଦ୍ଧ ସନ୍ୟାସିନୀ ଆନନ୍ଦମୟୀ ମାଆ ନିଜର ଶିଷ୍ୟାମାନଙ୍କୁ ଧରି ତାଙ୍କ ନିକଟକୁ ଆସିଥିଲେ । ଆନନ୍ଦମୟୀ ମାଆଙ୍କୁ ସାଦରେ ସ୍ୱାଗତ ଜଣାଇ କୃଷ୍ଣମୂର୍ତ୍ତି ବଗିଚାରେ ବସାଇଲେ । ଦୁହିଁଙ୍କ ଭିତରେ କଥୋପକଥନ ପାଇଁ ଜଣେ ଅନୁବାଦକ ରହିଲେ । ଆନନ୍ଦମୟୀ ମାଆ କୃଷ୍ଣମୂର୍ତ୍ତିଙ୍କୁ କହିଲେ ଯେ ସେ ଅନେକ ବର୍ଷ ତଳେ କୃଷ୍ଣମୂର୍ତ୍ତିଙ୍କର ଗୋଟିଏ ଫଟମାନ ଦେଖି ସେହି ଦିନରୁ ଜାଣି ପାରିଥିଲେ ଯେ ଦିନେ ନା ଦିନେ ସେ ମହର୍ଷି ରୂପେ ପରିଚିତ ହେବେ । ତା'ପରେ ସେ ପଚାରିଲେ,—"ଆଚ୍ଛା, ଆପଣ କାହିଁକି ଏଭଳି ଗୁରୁବାଦର ବିରୋଧ କରି ଆସୁଛନ୍ତି ? ଆପଣ ନିଜେ ହିଁ ତ' ଗୁରୁଶ୍ରେଷ୍ଠ ।"

— "ଏ ଲୋକମାନେ ଗୁରୁଙ୍କୁ ତ ତାଙ୍କର ଆଶାବାଡ଼ି କରି ପକାଇଛନ୍ତି । ନୁହେଁ କି ?"

— "ହଁ, ସେକଥା ସତ । କିନ୍ତୁ ଲୋକମାନେ ଯେ କାହିଁ କେତେ ଆଡୁ, ହଜାର ହଜାର ସଂଖ୍ୟାରେ ଆପଣଙ୍କ ଜ୍ଞାନବାଣୀ ଶୁଣିବାକୁ ଉତ୍କଣ୍ଠିତ ହୋଇ ଧାଇଁ ଆସୁଛନ୍ତି, ସେହି ତ' ସୂଚାଇ ଦେଉଛି ଯେ ଆପଣ ଜଣେ ଗୁରୁ ।"

କୃଷ୍ଣମୂର୍ତ୍ତି ଆଉ କିଛି ନ କହି ଅତ୍ୟନ୍ତ ଦରଦ ସହକାରେ ଆନନ୍ଦମୟୀ ମାଆଙ୍କ ପାପୁଲି ଦୁଇଟିକୁ ମୁଠାଇ ଧରି ବସି ରହିଲେ । ସତେ ଅବା ଉଭୟଙ୍କ ମଧ୍ୟରେ ଏକ ନିଃଶବ୍ଦ ଭାବ ବିନିମୟ ଘଟି ଚାଲିଥିଲା । କିଛି ସମୟ ପରେ ସନ୍ୟାସିନୀ ତାଙ୍କର ଶିଷ୍ୟାମାନଙ୍କୁ ଧରି ବିଦାୟ ନେଇ ଆପଣା ବାଟରେ ଚାଲିଗଲେ ।

ଏହି ଥିଲା କୃଷ୍ଣମୂର୍ତ୍ତିଙ୍କ ଜୀବନର ଏକ ବିଶେଷତ୍ୱ । ଯଦିଓ ସେ ଗୁରୁବାଦ ଓ ପାରମ୍ପରିକ ଆଚାର ଅନୁଷ୍ଠାନକୁ ଏକାନ୍ତ ବିରୋଧ

କରୁଥିଲେ ତଥାପି ତାଙ୍କୁ ସାକ୍ଷାତ କରିବାକୁ ଆସିଥିବା କୌଣସି ସାଧୁ ସନ୍ନ୍ୟାସୀ ବା ବୌଦ୍ଧ ଭିକ୍ଷୁଙ୍କୁ ସେ କେବେହେଲେ ଫେରାଇ ଦେଉ ନ ଥିଲେ । ତାଙ୍କ ନିକଟକୁ ଆସୁଥିବା ଲୋକଙ୍କ ଭିତରୁ ଯଦି କେହି କେବେ ତାଙ୍କ ପାଦତଳେ ପଡ଼ି ପ୍ରଣାମ କରୁଥିଲା, ବା ହାତ ଯୋଡ଼ି, ମୁଣ୍ଡ ଖାଙ୍ଗି ତାଙ୍କର ଆଶୀର୍ବାଦ ପାଇବାକୁ ଛିଡ଼ା ହୋଇ ରହୁଥିଲା, ତେବେ ସେ ଖୁବ୍ ଅପ୍ରସ୍ତୁତ ହୋଇ ପଡ଼ୁଥିଲେ । ସାଙ୍ଗେ ସାଙ୍ଗେ ଉଠି ଆସି ଛିଡ଼ା ହୋଇଥିବା ଲୋକଟିର ଯୋଡ଼ି ହସ୍ତକୁ ଅଲଗା କରି ଦେଉଥିଲେ, ଅଥବା ତା'ର ହାତ ଦୁଇଟିକୁ ନିଜର କୋମଳ ପାପୁଲିରେ ଚିପି ଧରି ସଶ୍ରଦ୍ଧ କରୁଣାଭରେ ତାକୁ ଚାହିଁ ରହୁଥିଲେ । ସେତେବେଳେ ସେ ଚାହାଣୀର କୋମଳତା ଓ ଅବିଶ୍ରାନ୍ତ ଆଶୀର୍ବାଦର ଧାରା ନୀରବରେ ଛିଡ଼ା ହୋଇଥିବା ବ୍ୟକ୍ତିଟିର ଅନ୍ତରକୁ ସିକ୍ତ କରି ଦେଉଥିଲା ।

କ୍ରିଷ୍ଣମୂର୍ତ୍ତିଙ୍କର ଶିକ୍ଷାକୁ ଉପଲବ୍ଧି କରିବା ଲାଗି ଏକ ମୁକ୍ତ ମନ ରହିବା ନିହାତି ଆବଶ୍ୟକ । ଯେଉଁମାନେ ବାନ୍ଧିବନ୍ଧା ଧାରଣା, ବିଶ୍ୱାସ ଓ ସଂଗୃହୀତ ତଥ୍ୟଜ୍ଞାନର ସମ୍ଭାର ନେଇ ତାଙ୍କର ଦର୍ଶନତତ୍ତ୍ୱକୁ ବୁଝିବାକୁ ଚେଷ୍ଟା କରନ୍ତି ସେମାନେ ତାଙ୍କୁ ଦୁର୍ବୋଧ ଓ ତାଙ୍କ ଭାଷଣକୁ ଅବାସ୍ତବ କହି ଅତି ସହଜରେ ପ୍ରତ୍ୟାଖ୍ୟାନ କରିଥାନ୍ତି । ଥରେ ତାଙ୍କୁ ଦେଖା କରିବା ପାଇଁ ବମ୍ବେରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଆସିଥିଲେ । ଶ୍ରୀଯୁକ୍ତ ଦେଶାଇ ସେତେବେଳେ ଗୁଜୁରାଟ ଓ ମହାରାଷ୍ଟ୍ର ମିଳିତ ପ୍ରଦେଶର ଅର୍ଥମନ୍ତ୍ରୀ ଥିଲେ । କହିବା ବାହୁଲ୍ୟ, ଜଣେ ମହାନ ସାଧୁ ହିସାବରେ ସେ କ୍ରିଷ୍ଣମୂର୍ତ୍ତିଙ୍କର ଅନେକ ସୁନାମ ଶୁଣିଥିଲେ ଓ ଥରେ ଅଧେ ତାଙ୍କୁ ଦେଖି ଥିଲେ ମଧ୍ୟ । କିନ୍ତୁ ତାଙ୍କ ସହିତ ବିଶଦ ଆଲୋଚନା କରି ଯେତେବେଳେ ସେ ଜାଣିବାକୁ ପାଇଲେ ଯେ କ୍ରିଷ୍ଣମୂର୍ତ୍ତି ଜୀବନରେ କେବେ ବେଦ, ଉପନିଷଦ, ଗୀତା ବା ତତ୍ସଦୃଶ କୌଣସି ଧର୍ମଗ୍ରନ୍ଥ ପାଠ କରି ନାହାନ୍ତି ସେତେବେଳେ ଚରମ ଅବିଶ୍ୱାସରେ ଶ୍ରୀ ଦେଶାଇ ଚମକି ପଡ଼ିଲେ । କିଛି ଦିନ ପରେ ନିରାଶ ମନରେ ସେ ପୁପୁଲ ଜୟକରଙ୍କୁ ଏକାନ୍ତରେ କହିଲେ ଯେ

କୃଷ୍ଣମୂର୍ତ୍ତିଙ୍କ ବ୍ୟକ୍ତିତ୍ୱ ତାଙ୍କୁ ଆଦୌ ପ୍ରଭାବିତ କରି ପାରିନି ନାହିଁ ।

ଅପର ପକ୍ଷେ ଏଭଳି ଅନେକ ଦୃଷ୍ଟାନ୍ତ ମଧ୍ୟ ରହିଛି ଯାହା ଦ୍ୱାରା କ କୃଷ୍ଣମୂର୍ତ୍ତିଙ୍କର ଭାଷଣ ଶୁଣିବା ପରେ ଓ ତାଙ୍କ ସହିତ ସାକ୍ଷାତ କରିବା ପରେ ଲୋକେ ନିଜର ସନ୍ନ୍ୟାସୀ ଜୀବନର ଜପାମାଳି ଓ ଗେରୁଆ ବସ୍ତ୍ରକୁ ପରିତ୍ୟାଗ କରି ବାସ୍ତବ ଜୀବନର ମୁକାବିଲା କରିବାକୁ ବାହାରି ପଡ଼ିଛନ୍ତି । ଏ ହେଉଛି ପଶ୍ଚିମ ବଙ୍ଗର ଜଣେ ସନ୍ନ୍ୟାସିନୀଙ୍କ କାହାଣୀ—ନାଆଁ ତାପସ୍ । ବଙ୍ଗ ପ୍ରଦେଶର ଏକ ସ୍ୱାଧୀନତା ସଂଗ୍ରାମୀ ପରିବାରରେ ତାଙ୍କର ଜନ୍ମ । ଖୁବ୍ ଅଳ୍ପ ବର୍ଷ ବୟସରେ ସେ ଗଣିତ ଶାସ୍ତ୍ର ଓ ଜ୍ୟୋତିଷ୍କ ବିଜ୍ଞାନରେ ବିଶେଷ ପାରଙ୍ଗମତା ଲାଭ କରିଥିଲେ । ମାତ୍ର ସାଂସାରିକ ଜୀବନରେ ସନ୍ତୁଷ୍ଟ ନ ରହି ସେ ତରୁଣୀ ଅବସ୍ଥାରେ ସଂସାର ଛାଡ଼ି ସନ୍ନ୍ୟାସିନୀ ବ୍ରତ ପାଳନ କରୁଥିଲେ । ବଙ୍ଗଳାର ପ୍ରସିଦ୍ଧ ସନ୍ନ୍ୟାସ-ଗୁରୁ ଅନିର୍ବାଣଙ୍କର ଶିଷ୍ୟତ୍ୱ ଲାଭ କରିବା ପରେ ସେ ନିଜର ନାମ ବଦଳାଇ 'ଚିନ୍ମୟୀ' ରଖିଲେ ଓ ସେହି ଦିନଠାରୁ ସନ୍ନ୍ୟାସିନୀ ବସ୍ତ୍ର ପରିଧାନ କରି ଗୁରୁ ସେବା ଓ ଲୋକହିତକର କାର୍ଯ୍ୟରେ ନିଜକୁ ନିୟୋଜିତ ରଖିଲେ । ତାହା ପରେ ଅବସ୍ଥା ଚକ୍ରରେ ଦିନେ ସେ ବମ୍ବେଠାରେ କୃଷ୍ଣମୂର୍ତ୍ତିଙ୍କର ଗୋଟିଏ ଭାଷଣ ସଭାରେ ଯୋଗ ଦେଇଥିଲେ ଏବଂ ତା' ପରେ ପରେ କୃଷ୍ଣମୂର୍ତ୍ତିଙ୍କର ଜୀବନ-ଦର୍ଶନରେ ଏତେ ମୁଗ୍ଧ ହୋଇଗଲେ ଯେ ତାଙ୍କୁ ଏକ ବ୍ୟକ୍ତିଗତ ସାକ୍ଷାତ୍କାରରେ ଭେଟିବାକୁ ଆସିଲେ । ସେହି ସାକ୍ଷାତକାର ପରଠାରୁ ତାପସ୍‌ଙ୍କ ଜୀବନରେ ପୁଣି ଏକ ପରିବର୍ତ୍ତନ ଆସିଗଲା । ଗୁରୁଙ୍କ ନିକଟକୁ ଫେରି ସବୁକଥା ଜଣାଇ ସେ ତାଙ୍କଠାରୁ ବିଦାୟ ନେଲେ ଏବଂ ସେହି ଦିନଠାରୁ ଗେରୁଆ ବସ୍ତ୍ର ଛାଡ଼ି ସ୍ୱାଧୀନ ଜୀବନ ଯାପନ କଲେ । ଶୃଙ୍ଖଳିତ, ସନ୍ନ୍ୟାସ ଜୀବନରୁ ମୁକ୍ତ ହୋଇ ତା' ପରଠାରୁ ସେ ପ୍ରତିବର୍ଷ କୃଷ୍ଣମୂର୍ତ୍ତି ଭାରତରେ ଥିବା ସମୟରେ ତାଙ୍କ ସହିତ ବିଭିନ୍ନ ସ୍ଥାନକୁ ଯାଇ ତାଙ୍କ ଭାଷଣ ଶୁଣୁଥିଲେ ଓ ବାକି ସମୟରେ ହିମାଳୟ, ମାନସରୋବର, କୈଳାଶ ଆଦି ଭ୍ରମଣ କରୁଥିଲେ ।

# 'ଭଗବାନ'ର ଅର୍ଥ କ'ଣ ?

କୃଷ୍ଣମୂର୍ତ୍ତିଙ୍କ ଦର୍ଶନରେ ଶିକ୍ଷା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ତଥା ମୌଳିକ ପର୍ଯ୍ୟାୟ ଅଟେ । ଶିକ୍ଷା କହିଲେ ସେ କେବେହେଲେ ତାହାର ଉପର ଠାଉରିଆ ଶୃଙ୍ଖଳତା ବା ଡିଗ୍ରୀ ପଦବୀର ସମ୍ମୋହନକୁ ବୁଝାଉ ନ ଥିଲେ । ତାଙ୍କ ମତରେ ଜଣେ ଶିକ୍ଷାଦାତା ଯଦି ବାସ୍ତବରେ ଛାତ୍ରକୁ ସାହାଯ୍ୟ କରିବାକୁ ଚାହୁଁଥାନ୍ତି ତେବେ ସେ ତାକୁ ସାମାଜିକ ନିରାପତ୍ତା ଓ ଖ୍ୟାତିଲାଭର ମୋହରେ ବାନ୍ଧି ନ ଦେଇ ବରଂ ତାକୁ ଏକ ସହିଷ୍ଣୁଶୀଳ, ସୃଜନଶୀଳ ମାନବ ଭାବରେ ଗଢ଼ିବାରେ ଉଦ୍ୟମ କରିବେ; ତା' ମନର ମିଥ୍ୟା ସାମାଜିକ ମୂଲ୍ୟବୋଧର ଆକର୍ଷଣକୁ ଦୂର କରିବା ସଙ୍ଗେ ସଙ୍ଗେ ତାକୁ ଭୟ-ମୁକ୍ତ କରିବା ଲାଗି ଚେଷ୍ଟା କରିବେ । ୧୯୫୩ ମସିହାରେ କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ ସମ୍ବଳିତ ଅଭିବ୍ୟକ୍ତି ସମୂହ 'ଏଡୁକେସନ୍ ଆଣ୍ଡ୍ ସିଗ୍‌ନିଫିକାନ୍‌ସ୍ ଅଫ୍ ଲାଇଫ୍' ନାମକ ଏକ ଇଂରାଜୀ ପୁସ୍ତକ ଆକାରରେ ପ୍ରକାଶିତ ହେଲା । ପୁସ୍ତକର ସର୍ବମୋଟ ଆଠଗୋଟି ଅଧ୍ୟାୟରେ ସେ 'ଯଥାର୍ଥ ଶିକ୍ଷା', 'ବିଦ୍ୟାଳୟ', 'ପିତାମାତା ଓ ଶିକ୍ଷକ', 'ଯୌନସମ୍ଭୋଗ ଓ ବିବାହ' ଏବଂ 'କଳା, ସୌନ୍ଦର୍ଯ୍ୟ ଓ ସୃଷ୍ଟି' ପ୍ରଭୃତି ଶୀର୍ଷକରେ ମାନବ ଜୀବନରେ ଶିକ୍ଷାର ଭୂମିକା ଏବଂ ଉପଯୁକ୍ତ ଶିକ୍ଷାଦାତାର ଦାୟିତ୍ୱ ଓ ସମସ୍ୟା ସମ୍ବନ୍ଧରେ ଆଲୋଚନା କରିଛନ୍ତି । ତାଙ୍କ ମତରେ, ଆମେ ଆଗ ଆପଣାର ଚିନ୍ତାଧାରା, ଆପଣାର ଭାବନା ଓ ଅନୁଭବକୁ ଭଲ କରି ବୁଝିବା ପରେ ହିଁ କେବଳ ପିଲାମାନଙ୍କୁ ମୁକ୍ତ ମଣିଷ ରୂପେ ଗଢ଼ିବାରେ ସାହାଯ୍ୟ କରି ପାରିବା ସିନା । ଜଣେ ଉପଯୁକ୍ତ ଶିକ୍ଷକଙ୍କର କର୍ତ୍ତବ୍ୟ ସମ୍ପର୍କରେ ବୁଝାଇବାକୁ ଯାଇ ସେହି ପୁସ୍ତକରେ ସେ ଲେଖିଛନ୍ତି, "ଜଣେ ଉପଯୁକ୍ତ ଶିକ୍ଷାଦାତା ନିଜର ବହିପତ୍ର ଓ ପଢ଼ାପଢ଼ି, ଗବେଷଣାରେ ଅନବରତ ବୁଡ଼ି ନ ରହି ବରଂ ତହିଁରୁ ମୁକ୍ତ ରହିବା ଆବଶ୍ୟକ । ଛାତ୍ରଛାତ୍ରୀମାନେ ଯେଉଁଭଳି ତାଙ୍କୁ ଗୋଟିଏ ଆଦର୍ଶ ବା ଦୃଷ୍ଟାନ୍ତ ବୋଲି ଧରି ନ ନିଅନ୍ତି, ବା ଜଣେ ବିଦ୍ୱାନ ପୁରୁଷ ଭାବେ ତାଙ୍କ ପାଇଁ ନିଜ ମନ ଭିତରେ

ସ୍ୱତନ୍ତ୍ର ସ୍ଥାନଟିଏ ଗଢ଼ି ନ ନଅନ୍ତି ସେଥି ପ୍ରତି ସେ ସର୍ବଦା ଦୃଷ୍ଟି ରଖିବା ଆବଶ୍ୟକ । ଶିକ୍ଷକ ଯେତେବେଳେ ଛାତ୍ରମାନଙ୍କ ଭିତର ଦେଇ ଆପଣାକୁ ଚରିତାର୍ଥ କରିବାକୁ ଖୋଜନ୍ତି, ସେତେବେଳେ ସେମାନଙ୍କ କୃତିତ୍ୱକୁ ଆପଣାର କୃତିତ୍ୱ ବୋଲନ୍ତି, ସେପରି ସ୍ଥଳେ ଶିକ୍ଷକଙ୍କର ଶିକ୍ଷାଦାନଟା ଏକ ପ୍ରକାର ଆତ୍ମ-ସମ୍ପ୍ରସାରଣ ବା ଆପଣାକୁ ବଢ଼ାଇବା, ପ୍ରକଟିତ କରାଇବା ଭଳି କଥାଟିଏ ହୁଏ ଏବଂ ସେଭଳି ଜନିଷ ଆତ୍ମଜ୍ଞାନ ଓ ସ୍ୱାଧୀନତା ହାସଲ ବାଟରେ ଏକ ବାଧକ ହୋଇ ଛିଡ଼ା ହୁଏ ।"

୧୯୫୪ ମସିହାରେ ରଷିଭ୍ୟାଲି ଟ୍ରଷ୍ଟ ପରିଚାଳନାରେ ବମ୍ବେଠାରେ 'ବାଲ ଆନନ୍ଦ' ନାମକ ଭାରତର ତୃତୀୟ କୃଷ୍ଣମୂର୍ତ୍ତି ସ୍କୁଲ ସ୍ଥାପିତ ହେଲା ଏବଂ ଶ୍ରୀମତୀ ନନ୍ଦିନୀ ମେହେଟା ତାହାର ଡିରେକ୍ଟର ରହିଲେ । ଏହା ଏକ ଦାତବ୍ୟ ଶିଶୁ ବିଦ୍ୟାଳୟ ଓ ଏହାର ଅଧିକାଂଶ ଛାତ୍ରଛାତ୍ରୀ ବମ୍ବେର ଗରିବ ବସ୍ତି ଅଞ୍ଚଳର ପିଲା । କ୍ରିଷ୍ଣମୂର୍ତ୍ତି ପ୍ରତି ବର୍ଷ ଭାରତ ଗସ୍ତ ସମୟରେ ଏହି ତିନୋଟି ସ୍କୁଲରେ ଭାଷଣ ଦେବା ସଙ୍ଗେ ସଙ୍ଗେ ସ୍କୁଲର ଶିକ୍ଷକ, ଶିକ୍ଷୟିତ୍ରୀ ଏବଂ ଛାତ୍ରଛାତ୍ରୀଙ୍କ ସହିତ ସମାଜ ତଥା ଜୀବନରେ ଦେଖା ଦେଉଥିବା ବିବିଧ ସମସ୍ୟା ନେଇ ଆଲୋଚନା କରୁଥିଲେ ଏବଂ ପିଲାମାନଙ୍କୁ ସଦାବେଳେ ନିର୍ଭୀକ ଭାବରେ ପ୍ରଶ୍ନ କରିବା ଲାଗି ଉତ୍ସାହିତ କରୁଥିଲେ । ଥରେ ରାଜଘାଟ ସ୍କୁଲ ସଭାରେ ଅଳ୍ପ ବୟସର ଝିଅଟିଏ ସଭା ମଝିରେ ଛିଡ଼ା ହୋଇ କ୍ରିଷ୍ଣମୂର୍ତ୍ତିଙ୍କୁ ପଚାରିଲା,—ଭଗବାନ' କହିଲେ କାହାକୁ ବୁଝାଏ ?

ଛୋଟ ଝିଅଟିଠାରୁ ଏଭଳି ଗୋଟିଏ ପ୍ରଶ୍ନ କେହି ଆଶା କରି ନ ଥିଲେ । ତେଣୁ କୃଷ୍ଣମୂର୍ତ୍ତି ତାକୁ କ'ଣ ବୁଝାଇବେ ବୋଲି ଅନ୍ୟମାନେ କାବା ହୋଇ ଚାହିଁ ରହିଲେ । କୃଷ୍ଣମୂର୍ତ୍ତି କହିଲେ, "ଆଚ୍ଛା କହିଲ ଦେଖି, ତମେ ସବୁ କେବେ ସୂର୍ଯ୍ୟାଲୋକରେ ପତ୍ରଟିଏ ନାଚି ଉଠିବାର ଦେଖିଛ କି ? ମାନେ ଏକଦମ୍ ଗୋଟିକିଆ ପତ୍ରଟିଏ ! ଆଉ ପୁଣି କେତେବେଳେ ପାଣି ଉପରେ ଝଲସୁଥିବା ଜହ୍ନ ଆଲୁଅକୁ ଦେଖିଛ ? ନ ହେଲେ କେବେ କେମିତି ରାତି ଆକାଶରେ ନାଲି ଜହ୍ନଟିଏ ବା ମୁକ୍ତ ଆକାଶରେ ଉଡ଼ି ବୁଲୁଥିବା ଚଢ଼େଇଟିକୁ ଚାହିଁ ଦେଖିଛ ?

କହିଲ ଦେଖି, ତମ ବାପା ବୋଉଙ୍କ ପ୍ରତି ତମ ମନରେ ଖୁବ୍ ଭଲ ପାଇବା ଭାବ ରହିଛି ? ତାଙ୍କ ପ୍ରତି ଭୟ, ଉଦ୍‌ବଗ୍ନତା ବା ତାଙ୍କର ଆଦେଶ ପାଳନ କରିବା କଥା ମୁଁ ଏଠି କହୁନାହିଁ । ବାଟରେ ଭିକାରୀଟିଏ ଦେଖିଲେ ବା ଚଢ଼େଇଟିକୁ ମରି ପଡ଼ିଥିବାର ଦେଖିଲେ ତମ ମନରେ ଯେଉଁ ପ୍ରକାର ଅନୁଭବ ହୁଏ, ଯେଉଁ ଗଭୀର ଦରଦ ଜାଗି ଉଠେ, ଠିକ୍ ତା'ର କଥା ମୁଁ କହୁଛି । ଯେତେବେଳେ ନଈ କୂଳରେ ଶବଟିଏ ପୋଡ଼ା ହେଉଥିବାର ଦୃଶ୍ୟ ତମେ ଦେଖ ସେତେବେଳେ ତମ ମନରେ ଯେଉଁ ଭାବ, ଯେଉଁ ଅନୁଭବ ଜାତ ହୁଏ—ଏ ତା'ର କଥା ମୁଁ କହୁଛି । ଆଉ ଏସବୁକୁ ଦେଖିବା ପରେ ମଟରଗାଡ଼ିରେ ବସି ଯାଉଥିବା ଧନୀ ଲୋକ ପ୍ରତି, ଗରିବ ନିରାଶ୍ରୟ ଭିକାରୀ ପ୍ରତି, ପୁଣି ରାସ୍ତାରେ ଗାଡ଼ି ଟାଣି ଚାଲିଥିବା କଙ୍କାଳସାର ଘୋଡ଼ାଟି ପ୍ରତି ତମ ମନରେ କେବେ ସମାନ ଭାବରେ ଗଭୀର ସହାନୁଭୂତି, ଦରଦ ଓ ହୃଦୟଙ୍ଗମତା ଆସିଛି କି ? ଏ ଧରଣୀ ଯେ ଆମରମାନଙ୍କର, ଆମେ ସମସ୍ତେ ମିଶି ଏହାକୁ ସୁନ୍ଦର କରି ପାରିବା— ଏ ପ୍ରକାର ଅନୁଭବ କେବେ ତମ ମନରେ ଜାତ ହୋଇଛି କି ?

ଜାଣ—ଏ ସବୁର ଅନ୍ତରାଳରେ ଏଭଳି କିଛି ରହିଛି ଯାହାକି ତା'ଠାରୁ କାହିଁ କେତେ ବେଶୀ ଗଭୀର, ଅତଳ । ଆଉ ସେହି ପଦାର୍ଥଟି, ଯାହାକି ମନଠାରୁ ଆହୁରି ଗଭୀର, ମନର ପରିସୀମାର ବାହାରେ, ତାହାକୁ ବୁଝିବାକୁ ହେଲେ ଏ ମନ ପ୍ରଥମେ ମୁକ୍ତ ଓ ଏକବାରେ ଶାନ୍ତ, ନିଥର ରହିବା ଦରକାର । ମାତ୍ର ତମ ଚାରିପଟର ଜଗତକୁ ନ ବୁଝିବା ଯାଏଁ ମନରେ ତ' କେବେ ଶାନ୍ତି ବା ନିଶ୍ଚଳତା ଆସି ପାରିବ ନାହିଁ । ତେଣୁ ପ୍ରଥମେ ଆମକୁ ନିଜ ପାଖରୁ ହିଁ ଆରମ୍ଭ କରିବାକୁ ପଡ଼ିବ । 'ଭଗବାନ' କ'ଣ ବୋଲି ଖୋଜି ହେବା ପୂର୍ବରୁ ପ୍ରଥମେ ଛୋଟ ଛୋଟ ଜିନିଷକୁ ବୁଝିବାକୁ ପଡ଼ିବ ।"

କୃଷ୍ଣମୂର୍ତ୍ତିଙ୍କର ଏହି ଉତ୍ତର ସେଦିନ କେବଳ ପ୍ରଶ୍ନ ପଚାରିଥିବା ସେହି ଛୋଟ ଝିଅଟି ଲାଗି ଉଦ୍ଦିଷ୍ଟ ନ ଥିଲା । ସ୍କୁଲର ସମସ୍ତ ଶିକ୍ଷକ, ଶିକ୍ଷୟିତ୍ରୀ ତଥା ସଭାରେ ଉପସ୍ଥିତ ଅନ୍ୟ ବୟସ୍କମାନଙ୍କ ପାଇଁ ମଧ୍ୟ

ତାହା ପ୍ରଯୁଜ୍ୟ ଥିଲା । ୧୯୫୪ ଓ ୧୯୫୬ ମସିହାରେ କୃଷ୍ଣମୂର୍ତ୍ତିଙ୍କର ଆଉ ଦୁଇଟି ପୁସ୍ତକ ଯଥାକ୍ରମେ 'ଦି ଫାର୍ଷ୍ଟ ଆଣ୍ଡ୍ ଲାଷ୍ଟ୍ ଫ୍ରିଡମ୍' ଏବଂ କମେନ୍ଟ୍ରିଜ୍ ଅନ୍ ଲିଭିଂ' ନାମରେ ପ୍ରକାଶିତ ହେଲା । 'କମେନ୍ଟ୍ରିଜ୍ ଅନ୍ ଲିଭିଂ' ପୁସ୍ତକର ସମୁଦାୟ ଅଠାଅଶୀଟି ଅଧ୍ୟାୟରେ ଦୈନନ୍ଦିନ ଛୋଟ ଛୋଟ ଘଟଣା ବା ଅନୁଭୂତିକୁ ଧରି ଜୀବନର ଗମ୍ଭୀର ସମସ୍ୟାମାନ ଆଲୋଚିତ ହୋଇଛି । ତାଙ୍କ ନିକଟକୁ ଆପଣା ସମସ୍ୟାର ସମାଧାନ ପାଇଁ ଆସିଥିବା କେତେ ଧନୀ, ଗରିବ, ସ୍ତ୍ରୀ, ପୁରୁଷ, ରାଜନୀତିଜ୍ଞ, ସନ୍ନ୍ୟାସୀ, ଶିକ୍ଷକ, ବେକାର ଯୁବକ ଓ ବଡ଼ ବଡ଼ ଅଫିସରମାନଙ୍କ ବ୍ୟକ୍ତିଗତ ମନସ୍ତାତ୍ତ୍ୱିକ ସମସ୍ୟା ଓ ସେଥିପ୍ରତି କୃଷ୍ଣମୂର୍ତ୍ତିଙ୍କର ଅନ୍ତର୍ଦୃଷ୍ଟି ଅତି ନିଖୁଣ ଭାବରେ ଉକ୍ତ ପୁସ୍ତକରେ ସ୍ଥାନ ପାଇଛି ।

## ରାଜଗୋପାଲ

'କୃଷ୍ଣମୂର୍ତ୍ତି ରାଇଟିଂସ୍' ପ୍ରକାଶନୀର ଟଙ୍କା ପଇସା ହିସାବ କିତାବ ଓ ଅନ୍ୟାନ୍ୟ ଅଫିସ ସମ୍ବନ୍ଧୀୟ କାରବାର ନେଇ କୃଷ୍ଣମୂର୍ତ୍ତି ଯେତିକ ଉଦାସୀନ ଓ ନିଷ୍କ୍ରିୟ ରହୁଥିଲେ, ଅପରପକ୍ଷେ ରାଜଗୋପାଲଙ୍କର ପ୍ରତିପତ୍ତି ଏହି ସବୁ କ୍ଷେତ୍ରରେ ଦିନକୁ ଦିନ ସେତିକ ବଢ଼ି ବଢ଼ି ଚାଲିଥିଲା । କୃଷ୍ଣମୂର୍ତ୍ତିଙ୍କୁ ବର୍ଷ ସାରା ଭାଷଣ ଓ ଗସ୍ତ କାର୍ଯ୍ୟକ୍ରମରେ ବ୍ୟସ୍ତ ରହୁଥିବାର ଦେଖି ସେ ଧୀରେ ଧୀରେ 'କୃଷ୍ଣମୂର୍ତ୍ତି ପ୍ରକାଶନୀ'ର ସମସ୍ତ ଦାୟିତ୍ୱ ଓ ଅଧିକାର ନିଜ ମୁଣ୍ଡକୁ ନେଇ ଯାଇଥିଲେ ଏବଂ ଅତ୍ୟନ୍ତ ସ୍ୱାର୍ଥପର ଭାବରେ ପ୍ରତ୍ୟେକ କ୍ଷେତ୍ରରେ ନିଜର ମାଲିକାନା ଜାହିର କରିବାରେ ଲାଗିଥିଲେ । କୃଷ୍ଣମୂର୍ତ୍ତିଙ୍କର ବନ୍ଧୁତ୍ୱ ଓ ସରଳତାର ସୁଯୋଗ ନେଇ ସେ ଯେ କେବଳ ଉପରୋକ୍ତ ସଂସ୍ଥାର ସର୍ବେସର୍ବା ହୋଇ ବସିଥିଲେ ସେତିକ ନୁହେଁ, କୃଷ୍ଣମୂର୍ତ୍ତିଙ୍କ ବାଲ୍ୟକାଳରୁ ଆରମ୍ଭ କରି ସେ ପର୍ଯ୍ୟନ୍ତ ଘଟିଥିବା ଯେତେକ ଅତୀନ୍ଦ୍ରିୟ ପ୍ରକ୍ରିୟା ଓ ଅନୁଭୂତିର ବିବରଣୀ ତଥା

ସେ ଆନି ବେସାନ୍ତ ଏବଂ ଲେଡ୍‌ବିଟରଙ୍କ ନିକଟକୁ ଲେଖିଥିବା ସମସ୍ତ ଗୁରୁତ୍ୱପୂର୍ଣ୍ଣ ଚିଠିଗୁଡ଼ିକ ଯେଉଁ ସଂଗ୍ରହାଳୟରେ ଗଚ୍ଛିତ ଥିଲା ତା'କୁ ମଧ୍ୟ ସେ ନିଜ ଅକ୍ତିଆରକୁ ନେଇ ସାରିଥିଲେ । କୃଷ୍ଣମୂର୍ତ୍ତିଙ୍କ ବ୍ୟକ୍ତିଗତ ଜୀବନର ପ୍ରତ୍ୟେକ ଘଟଣାରେ ହସ୍ତକ୍ଷେପ କରିବା ଏବଂ ତାଙ୍କର ସମସ୍ତ ଖର୍ଚ୍ଚ ଉପରେ ନିଜର ହୁକୁମଡ଼ି ଜାରି କରିବା ତାଙ୍କର ଏକ ଅଭ୍ୟାସରେ ପରିଣତ ହୋଇ ସାରିଥିଲା । ଏପରିକି କଥା ଏତେ ଦୂର ଯାଇଥିଲା ଯେ ରାଜଗୋପାଲଙ୍କର ବିନା ଅନୁମତିରେ କୃଷ୍ଣମୂର୍ତ୍ତି କୌଣସି ବ୍ୟକ୍ତିଗତ ଖର୍ଚ୍ଚ କରିବାର ଅଧିକାର ଟିକକ ମଧ୍ୟ ହରାଇ ବସିଲେ । କିନ୍ତୁ କଥା ତ ସେତିକରେ ଶେଷ ହେଲା ନାହିଁ ! କୃଷ୍ଣମୂର୍ତ୍ତିଙ୍କ ଉପରେ ସବୁଆଡ଼ୁ ମାଲିକ ସାଜିବା ପାଇଁ ରାଜଗୋପାଳ ଆଉ ଏକ ଫନ୍ଦି କାଢ଼ିଲେ । କ୍ରିଷ୍ଣମୂର୍ତ୍ତିଙ୍କ ଚିଠି ପତ୍ର ଓ ପାଣ୍ଡୁଲିପି ଉପରେ ରାଜଗୋପାଳଙ୍କୁ ମନ ମୁତାବକ ନିଷ୍ପତ୍ତି ନେବାର ଅଧିକାର ଦେଇ ସେହି ଅନୁଯାୟୀ କାଗଜରେ ଦସ୍ତଖତ ଦେବା ପାଇଁ ରାଜଗୋପାଲ ତାଙ୍କ ସହିତ ଜିଗର ଲଗାଇଲେ । ରାଜଗୋପାଳଙ୍କ ଏଭଳି ମତିଗତି ଦେଖି ସଂସ୍ଥାର ଅନ୍ୟ ଟ୍ରଷ୍ଟିମାନେ ତଥା କ୍ରିଷ୍ଣମୂର୍ତ୍ତିଙ୍କର ହିତାକାଂକ୍ଷୀମାନେ ପ୍ରମାଦ ଗଣିବାକୁ ଲାଗିଲେ । ଯଦି ଥରେ କୃଷ୍ଣମୂର୍ତ୍ତି ତାଙ୍କୁ ସେଭଳି କୌଣସି ଅଧିକାର ଦେଇ ବସିବେ ତେବେ ଭବିଷ୍ୟତରେ ଇଚ୍ଛା କଲେ ରାଜଗୋପାଳ ତାଙ୍କୁ କପର୍ଦ୍ଦ ହଇରାଣ କରି ଦେଇ ପାରିବେ ସେଇକଥା ବୁଝାଇ ସମସ୍ତେ କୃଷ୍ଣମୂର୍ତ୍ତିଙ୍କୁ ଦସ୍ତଖତ ଦେବାକୁ ବାରଣ କଲେ । କିନ୍ତୁ ଏ ପଟେ ଦସ୍ତଖତ ନ ପାଇ ରାଜଗୋପାଲ ଦିନକୁ ଦିନ ଉତ୍‌କ୍ଷିପ୍ତ ହେବାକୁ ଆରମ୍ଭ କଲେ ।

ଏଭଳି ପରିପ୍ରେକ୍ଷୀରେ ୧୯୫୭ ମସିହା ଜୁନ୍ ମାସରେ କୃଷ୍ଣମୂର୍ତ୍ତି ରାଜଗୋପାଳଙ୍କ ସହିତ ସୁଇଜରଲଣ୍ଡର ଭିଲାର୍ସ୍ ନାମକ ଗୋଟିଏ ସ୍ଥାନକୁ ଅବକାଶ ଉଦ୍ଦେଶ୍ୟରେ ଯାଇଥିଲେ । ସେଠାରେ ହୋଟେଲଟିଏ ଭଡ଼ା ନେଇ ଦିହେଁ ରହୁଥିଲେ । ଯଦିଓ କ୍ରିଷ୍ଣମୂର୍ତ୍ତିଙ୍କ ମନରେ ରାଜଗୋପାଳଙ୍କ ପ୍ରତି କୌଣସି ବିଧିତା ନ ଥିଲା ତଥାପି ରାଜଗୋପାଲଙ୍କ ଭିତରେ କୃଷ୍ଣମୂର୍ତ୍ତିଙ୍କ ପ୍ରତି ଏକ ତୀବ୍ର ଅସହିଷ୍ଣୁ ଭାବ ଠୁଳ ହୋଇ

ରହୁଥିଲା । ତା'ଛଡ଼ା ତାଙ୍କର ଏ ରାଗକୁ କୃଷ୍ଣମୂର୍ତ୍ତିଙ୍କ ଉଦାସୀନତା ଅଜାଣତରେ ଆହୁରି ତେଜିବାରେ ଲାଗିଥିଲା । ଏମିତି ଦୁଇ ସପ୍ତାହ କଟିଗଲା । ତା'ପରେ ହଠାତ୍ ଦିନେ କୃଷ୍ଣମୂର୍ତ୍ତିଙ୍କୁ ସେଠାରେ ଏକାକୀ ଛାଡ଼ି ରାଜଗୋପାଲ କାଲିଫର୍ଣ୍ଣିଆ ଫେରି ଆସିଲେ । ଆସିଲା ବେଳେ ସେ ଭଲ କରି ଜାଣିଥିଲେ ଯେ ତାଙ୍କ ବନ୍ଧୁଙ୍କ ହାତରେ କେବଳ ହୋଟେଲ ଭଡ଼ା ଭରିବା ପାଇଁ ଯେତିକି ଦରକାର କଣ୍ଟା କଣ୍ଟି ସେତିକି ଟଙ୍କା ଅଛି । ତେଣୁ ତାଙ୍କୁ ଯାନେ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସେ କହି ଆସିଥିଲେ ଯେ ଏକୁଟିଆ ରହିବାଟା କେଡ଼େ ମଜାଦାର ସେକଥା ଏଣିକି ବାବୁ ବେଶ୍ ବୁଝିଯିବେ ଯେ ! ମାତ୍ର ଏକାକୀତ୍ୱକୁ କ୍ରିଷ୍ଣମୂର୍ତ୍ତି ସଦାସର୍ବଦା ଭଲ ପାଇ ଆସୁଥିଲେ । ରାଜଗୋପାଲ ତାଙ୍କୁ ଏକୁଟିଆ ଛାଡ଼ି ଚାଲିଯିବା ଯୋଗୁ ତାଙ୍କ ମନରେ ଏତେ ଟିକିଏ ବି ଦୁଃଖ ହେଲା ନାହିଁ । ବରଂ ଏବେ ସେ ରାଜଗୋପାଲଙ୍କ ଅସହିଷ୍ଣୁ ମନୋଭାବରୁ ମୁକ୍ତି ପାଇ ଶାନ୍ତିରେ ଦିନ କଟାଇବାରେ ଲାଗିଲେ । ସେଠାରେ ତାଙ୍କର କେହି ହେଲେ ଚିହ୍ନା ଜଣା ତ' ନ ଥିଲେ, ଦିନ ତମାମ କାହାରି ସହିତ ପଦେ କଥାବାର୍ତ୍ତା ବି ନ ଥିଲା କହିଲେ ଚଳେ । ତାଙ୍କର ଅଧିକାଂଶ ସମୟ ଏକାକୀ ଭ୍ରମଣରେ ହିଁ କଟୁଥିଲା—ମନଟା ଅନବରତ ଏକ ଧ୍ୟାନଶୀଳ ଅବସ୍ଥାରେ ରହୁଥିଲା । ଶେଷରେ ପ୍ରାୟ ମାସେ ପରେ ଦିନେ ତାଙ୍କର ଜଣେ ବନ୍ଧୁ ଅଗ୍ନିନକ ତାଙ୍କୁ ସେଠାରେ ଦେଖି ଉଦ୍ଧାର କରି ନିଜ ଘରକୁ ଆଣିଲେ । ସେତେବେଳକୁ ପକେଟ ତାଙ୍କର ଏକବାରେ ଝଡ଼ାଝଡ଼—ପଇସାଟିଏ ବି ନ ଥିଲା ।

ରାଜଗୋପାଲଙ୍କର ଏ ଦୁର୍ବ୍ୟବହାର ସତ୍ତ୍ୱେ କ୍ରିଷ୍ଣମୂର୍ତ୍ତି ଯଦିଓ କେବେ କାହାରି ଆଗରେ ତାଙ୍କ ବିରୁଦ୍ଧରେ ପଦେ କହିବାର ଶୁଣାଯାଇ ନଥିଲା, ତଥାପି ରାଜଗୋପାଲଙ୍କ ରାଗ ଓ ଅସହିଷ୍ଣୁତା ଏ ଘଟଣା ପରେ ଓଲଟି ଆହୁରି ବଢ଼ିବାରେ ଲାଗିଲା । ଶେଷରେ ଦିନେ ଆଉ ସମ୍ଭାଳି ନ ପାରି ସେ କ୍ରିଷ୍ଣମୂର୍ତ୍ତିଙ୍କୁ ଖୋଲାଖୋଲି ଜଣାଇ ଦେଲେ ଯେ ତାଙ୍କ ସଙ୍ଗେ ଜାଗା ଜାଗା ବୁଲି ଭାଷଣସଭା ଆୟୋଜନ କରିବା ଓ ତାଙ୍କର ଯାହା ପ୍ରତିନିଧି ଭାବେ କାର୍ଯ୍ୟ କରିବାକୁ ସେ ଏଣିକି ଆଉ

ପ୍ରସ୍ତୁତ ନୁହନ୍ତି । ଆଉ ସତକୁ ସତ ଏକଥା କହିସାରି ସେ ଆସନ୍ତା କେତେ ବର୍ଷ ପାଇଁ ଇଉରୋପର ବିଭିନ୍ନ ସ୍ଥାନରେ କ୍ରିଷ୍ଣମୂର୍ତ୍ତିଙ୍କ ଲାଗି ପୂର୍ବରୁ ଆୟୋଜିତ ହୋଇଥିବା ସବୁତକ ଭାଷଣ କାର୍ଯ୍ୟକ୍ରମକୁ ବାତିଲ କରିବାକୁ ନିର୍ଦ୍ଦେଶ ପଠାଇ ଦେଲେ । ତାଙ୍କୁ ଖାସ୍ ପୁଣି ପଟାଏ ହଇରାଣ କରିବାକୁ ରାଜଗୋପାଳ ଏମିତି କଲେ ସିନା କିନ୍ତୁ ତା' ସାଥେ ସାଥେ ସେ ସେମିତି ପୂର୍ବଭଳି 'କ୍ରିଷ୍ଣମୂର୍ତ୍ତି ରାଇଟିଂସ୍' ସଂସ୍ଥାର ସମସ୍ତ ଆୟ ବ୍ୟୟର ନିୟନ୍ତ୍ରଣ ନିଜ ହାତରେ ରଖିଲେ ଏବଂ ପାଣ୍ଡୁଲିପି ଓ ରଚନାବଳୀର ସମ୍ପୂର୍ଣ୍ଣ ଆଇନ ସମ୍ମତ ଅଧିକାର ଲାଭ କରିବାକୁ କ୍ରିଷ୍ଣମୂର୍ତ୍ତିଙ୍କ ଉପରେ ବାରମ୍ବାର ଚାପ ପକାଇଲେ । ଶେଷରେ ବାଧ୍ୟ ହୋଇ ଦିନେ କ୍ରିଷ୍ଣମୂର୍ତ୍ତି ଆଇନସିଦ୍ଧ କାଗଜରେ ଦସ୍ତଖତ କରି ରାଜଗୋପାଳଙ୍କୁ ନିଜର ସମସ୍ତ ରଚନାବଳୀର ସ୍ୱତ୍ତ୍ୱାଧିକାର ପ୍ରଦାନ କରିଦେଲେ । ଏ ଅଧିକାର ବଳରେ ରାଜଗୋପାଳ ଏଣିକି ଇଚ୍ଛା ମୁତାବକ କ୍ରିଷ୍ଣମୂର୍ତ୍ତିଙ୍କର ବକ୍ତୃତା ଓ ପ୍ରବନ୍ଧ ସମୂହକୁ ସଙ୍କଳନ କରିବା ଓ ପ୍ରକାଶ କରିବାର ପୂର୍ଣ୍ଣ କ୍ଷମତା ଲାଭ କଲେ । ସେମାନଙ୍କ ନିକଟ ମହଲର ଲୋକମାନଙ୍କ ଠାରୁ ଶୁଣିବାକୁ ମିଳେ ଯେ ରାଜଗୋପାଳ କ୍ରିଷ୍ଣମୂର୍ତ୍ତିଙ୍କ ଉପରେ ଜୋର ଜବରଦସ୍ତି ଖଟାଇ ଏତକ ବ୍ୟବସ୍ଥା କରାଇ ନେଇଥିଲେ, କାରଣ ଏହା ପୂର୍ବରୁ ସେ ଉପାୟ ପାଞ୍ଚି କ୍ରିଷ୍ଣମୂର୍ତ୍ତିଙ୍କୁ ତାଙ୍କର ପୂର୍ବୋକ୍ତ ପ୍ରକାଶନୀ ସଂସ୍ଥାର ଟ୍ରଷ୍ଟି ପଦରୁ ମଧ୍ୟ ଓହରାଇ ଦେଇଥିଲେ ଯାହା ଦ୍ୱାରା କି ଅନୁଷ୍ଠାନର କାର୍ଯ୍ୟକଳାପ ଉପରେ କ୍ରିଷ୍ଣମୂର୍ତ୍ତିଙ୍କ କଥାର ଆଉ କୌଣସି ମୂଲ୍ୟ ରହୁ ନ ଥିଲା । କ୍ରିଷ୍ଣମୂର୍ତ୍ତିଙ୍କୁ ଏ ସମ୍ପର୍କରେ ପଚରା ଯିବାରେ ସେ ନିଜର ଜ୍ଞାତସାରରେ କେବେ ସଂସ୍ଥାର ଟ୍ରଷ୍ଟି ପଦରୁ ଇସ୍ତଫା ଦେଇଥିବା କଥା ସ୍ମରଣ କରି ପାରି ନ ଥିଲେ । ତେଣୁ ଯେତେ ଦୂର ସମ୍ଭବ ରାଜଗୋପାଳ ତାଙ୍କୁ ପ୍ରତାରିତ କରି ଇସ୍ତଫା କାଗଜରେ ଦସ୍ତଖତ କରାଇ ନେଇଥିଲେ । କାରଣ, ଅନେକ ସମୟରେ ରାଜଗୋପାଳ ତାଙ୍କୁ ଯେଉଁ ସବୁ କାଗଜପତ୍ରରେ ଦସ୍ତଖତ କରିବାକୁ ଦେଉଥିଲେ, ବନ୍ଧୁତ୍ୱର ବିଶ୍ୱାସରେ ସେ ତାକୁ ନ ପଢ଼ି ଦସ୍ତଖତ କରି ଦେଉଥିଲେ । ଏହା ହୁଏତ ସେଇଭଳି ଏକ ଚତୁର ଖେଳର ପରିଣତି ଥିଲା ।

କୃଷ୍ଣମୂର୍ତ୍ତିଙ୍କର ହିତାକାଂକ୍ଷୀମାନେ ତାଙ୍କୁ ରାଜଗୋପାଲଙ୍କର ଭିତର ମନ୍ଦ ଉଦ୍ଦେଶ୍ୟ ବିଷୟରେ ଅନେକ ଥର ଚେତାବନୀ ଦେଇଥିଲେ ସୁଦ୍ଧା କିଛି ଲାଭ ହୋଇ ନ ଥିଲା । କାରଣ ପ୍ରଥମତଃ ସେ ରାଜଗୋପାଲଙ୍କୁ କେବେବେଳେ ସନ୍ଦେହ ଚକ୍ଷୁରେ ଦେଖି ନ ଥିଲେ; ତା'ଛଡ଼ା ଯେତେବେଳେ ସେ ରାଜଗୋପାଲଙ୍କର ଅଭିପ୍ରାୟ ବୁଝି ପାରିଲେ ସେତେବେଳକୁ କଥା ଏତେ ଦୂର ବଢ଼ି ଯାଇଥିଲା ଯେ ରାଜଗୋପାଲଙ୍କୁ ତାଙ୍କ ଦାୟିତ୍ୱରୁ ଅନ୍ତର କରିବା ପାଇଁ କୋର୍ଟର ଆଶ୍ରୟ ନେବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଆଉ କିଷ୍ଣମୂର୍ତ୍ତି, ଯେ କି ମୂଳରୁ କୋର୍ଟ କଚେରୀ ଗଣ୍ଡଗୋଳରେ ପଶିବାକୁ ଇଚ୍ଛା କରୁ ନ ଥିଲେ ସେ ବା ଏଥିରେ ରାଜି ହୁଅନ୍ତେ କିପରି ? ତେଣୁ ନାନା ଜଟିଳତା ମଧ୍ୟରେ ଶେଷକୁ ସ୍ଥିର ହେଲା ଯେ ରାଜଗୋପାଲଙ୍କ ପରିବର୍ତ୍ତେ ଏଣିକି କିଷ୍ଣମୂର୍ତ୍ତିଙ୍କର ଜଣେ ପୁରୁଣା ଶିଷ୍ୟା, କୁମାରୀ ଡୋରିସ୍ ପ୍ରାଟ୍ ତାଙ୍କ ଲାଗି ଭାଷଣ ସଭା ଆୟୋଜନ କରିବାର ସମସ୍ତ ଦାୟିତ୍ୱ ନେବେ । କିନ୍ତୁ ଏଥିରେ ବି ରାଜଗୋପାଲ ସନ୍ତୁଷ୍ଟ ହେଲେ ନାହିଁ । ସେ ଦାବୀ କରି ବସିଲେ ଯେ ଡୋରିସ୍ ପ୍ରାଟ୍ ଭାଷଣ ବା ଗସ୍ତ ଇତ୍ୟାଦିର ଯେତେ ଯାହା ବନ୍ଦୋବସ୍ତ କଲେ ସୁଦ୍ଧା ସମସ୍ତ ବ୍ୟୟର ଠିକଣାକି ହିସାବ ଯେମିତି ତାଙ୍କ ପାଖକୁ ନିୟମିତ ପଠାଇବେ ଓ ତାଙ୍କ ଅଜାଣତରେ କିଷ୍ଣମୂର୍ତ୍ତିଙ୍କ ପାଇଁ ପାହୁଲାଏ ସୁଦ୍ଧା ଖର୍ଚ୍ଚ କରିବେ ନାହିଁ । ରାଜଗୋପାଲଙ୍କର ହୀନମନ୍ୟତା ବିଷୟରେ ସମସ୍ତେ ପୂରାମାତ୍ରାରେ ସଚେତନ ଥିଲେ ସୁଦ୍ଧା ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ବା ତାଙ୍କର ଇଚ୍ଛା ବିରୁଦ୍ଧରେ ଯିବାକୁ କାହାରି ଯୁ' ନ ଥିଲା । ଏପରିକି ପ୍ରକାଶନୀ ସଂସ୍ଥାର ଅନ୍ୟ ଟ୍ରଷ୍ଟିମାନେ ମଧ୍ୟ ରାଜଗୋପାଲଙ୍କ ଉପରେ କାଠ କଣ୍ଢେଇ ଭଳି ତାଙ୍କର ସବୁ କଥା ମାନି ନେଉଥିଲେ । ଆଉ କିଷ୍ଣମୂର୍ତ୍ତି ତ ସହଜେ ଟ୍ରଷ୍ଟରୁ ବିଦା ହୋଇ ସାରିଥିଲେ । ତେଣୁ ସେଠାରେ ରାଜଗୋପାଲଙ୍କର ଏକକର୍ତ୍ତୃକ କାରବାର ଚାଲିଥିଲା କହିଲେ ଚଳେ । ସେ ତାଙ୍କର ଦୁଇ ଜଣ ସହଯୋଗୀ—ଆର. ମାଧବାଚାରୀ ଓ ବାଇରନ୍ କାସଲ୍‌ବେରିଙ୍କ ସହାୟତାରେ କାର୍ଯ୍ୟରେ

କ୍ରିଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀ ଉପରେ ଆପଣାର ହୁକୁମାତ୍ତ ଚଳାଇବାକୁ ଲାଗିଲେ ।

ଦିନକୁ ଦିନ ଅବସ୍ଥା ସୁଧୁରିବା ପରିବର୍ତ୍ତେ ଆହୁରି ଜଟିଳ ହେବାରେ ଲାଗିଲା । ପରିସ୍ଥିତିର ଭୟାବହତା ଉପଲବ୍ଧି କରି କ୍ରିଷ୍ଣମୂର୍ତ୍ତିଙ୍କର ଜଣେ ହିତାକାଂକ୍ଷୀ ଦିନେ ତାଙ୍କୁ ସବୁକଥା ବୁଝାଇ କହିଲେ ଯେ ଉକ୍ତ ସଂସ୍ଥା ଅଧୀନରେ ରହିଥିବା ବିପୁଳ ଅର୍ଥକୁ ଜନସାଧାରଣ ଖାସ୍ କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷାର ପ୍ରସାର ଉଦ୍ଦେଶ୍ୟରେ ହିଁ ଦାନ କରିଛନ୍ତି । ତେଣୁ ସେ ଅର୍ଥ ପ୍ରତି କ୍ରିଷ୍ଣମୂର୍ତ୍ତିଙ୍କର ମଧ୍ୟ ଏକ ଗୁରୁ ଦାୟିତ୍ୱ ରହିଛି । ସେଥିପାଇଁ ରାଜଗୋପାଳଙ୍କ ହାତରେ ଏଭଳି ଭାବରେ ଟ୍ରଷ୍ଟର ସମସ୍ତ ଅଧିକାର ସମର୍ପି ନ ଦେଇ ସେ ନିଜେ ଏ ବିଷୟରେ କିଛିଟା ବୁଝାବୁଝି କରିବା ଆବଶ୍ୟକ । କିନ୍ତୁ ରାଜଗୋପାଳ ସେତେବେଳକୁ ଜିଦ ଓ କ୍ଷମତାଲିପ୍ସାର ଚରମ ସୀମାରେ ପହଞ୍ଚି ସାରିଥିଲେ । ତେଣୁ କ୍ରିଷ୍ଣମୂର୍ତ୍ତି ଯେତେବେଳେ ଦିନେ ତାଙ୍କଠାରୁ ପ୍ରକାଶନୀ ସଂସ୍ଥାର ଟଙ୍କା ପଇସା ନେଇ କିଛି ବିବରଣୀ ଜାଣିବାକୁ ଚାହିଁଲେ, ସେ ରୋକ୍‌ଠୋକ୍ ଶୁଣାଇ ଦେଲେ ଯେ କ୍ରିଷ୍ଣମୂର୍ତ୍ତି ଆଉ ଟ୍ରଷ୍ଟି ପଦରେ ନ ଥିବା ଦୃଷ୍ଟିରୁ ତାଙ୍କୁ ଟ୍ରଷ୍ଟର କୌଣସି ତଥ୍ୟ ଯୋଗାଇବାକୁ ସେ ବାଧ୍ୟ ନୁହନ୍ତି । ତେଣୁ କ୍ରିଷ୍ଣମୂର୍ତ୍ତି ଆଉ କୌଣସି ଉପାୟ ନ ଦେଖି ତାଙ୍କୁ ପୁଣି ଥରେ ଟ୍ରଷ୍ଟି କରି ନେବାକୁ ଅନୁରୋଧ କଲେ । କିନ୍ତୁ ରାଜଗୋପାଳ ସେଥିରେ ବି ରାଜି ହେଲେ ନାହିଁ । କଥା ହେଲା ଦୀର୍ଘ ତିରିଶ ବର୍ଷ ଧରି ବିନା ପ୍ରଶ୍ନ, ବିନା ବାଧାରେ ରାଜଗୋପାଳ ଯେଉଁ ଏକଚାଟିଆ ହୁକୁମତର ଅଧିକାରଟିକକ ହାସଲ କରି ବସିଥିଲେ ସେତକ ହାତଛଡ଼ା କରିବା ପାଇଁ ସେ ଆଉ ପ୍ରସ୍ତୁତ ନ ଥିଲେ । ହୁଅନ୍ତୁ ପଛକେ ସ୍ୱୟଂ କ୍ରିଷ୍ଣମୂର୍ତ୍ତି—ଯାହା ଉଦ୍ଦେଶ୍ୟରେ ଏ ଅନୁଷ୍ଠାନର ଉତ୍ପତ୍ତି, ଯାହାର ଶିକ୍ଷା ପାଇଁ ଏ ଧନ ସମ୍ପତ୍ତି ସବୁ, ତଥାପି ତାଙ୍କର ଯେ ଏଥିରେ କୌଣସି ଅଧିକାର ଥାଇପାରେ ଏକଥା ସ୍ୱୀକାର କରିବାକୁ ସେ ବିଲକୁଲ ରାଜି ନ ଥିଲେ । ବିନା କାରଣରେ କ୍ରିଷ୍ଣମୂର୍ତ୍ତିଙ୍କ ପ୍ରତି ତାଙ୍କ ହୃଦୟରେ ଏତେ

ବିଦ୍ୱେଷ ଭାବ ଭରି ରହିଥିଲା ଯେ ସେ ଯାବତ୍ପର୍ଯ୍ୟନ୍ତ ତାଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଥିଲେ ଓ ସୁବିଧା ପାଇଲେ ତାଙ୍କୁ ହଇରାଣ କରିବାକୁ ପଛାଉ ନ ଥିଲେ ।

## ପହଲଗାଓଁରେ କୃଷ୍ଣମୂର୍ତ୍ତି

କୃଷ୍ଣମୂର୍ତ୍ତିଙ୍କର ଭାଷଣ ସଭା ଆୟୋଜନ କରିବାର ଦାୟିତ୍ୱରୁ ରାଜଗୋପାଲ ଅନ୍ତର ହୋଇଯିବା ପରେ ଭାରତରେ ତାଙ୍କର ଗସ୍ତ ଓ ଭାଷଣ ପ୍ରଭୃତି ବନ୍ଦୋବସ୍ତ କରିବାର ଦାୟିତ୍ୱ ପଡ଼ିଲା ମାଧବାଚାରୀଙ୍କ ଉପରେ । ଏଣିକି ତାଙ୍କର ଭାରତ ଗସ୍ତ ସମୟରେ ମାଧବାଚାରୀ ଅଧିକାଂଶ ସମୟ ତାଙ୍କ ସହିତ ବିଭିନ୍ନ ସ୍ଥାନ ବୁଲି ତାଙ୍କର ସଭା ଓ ରହିବା ଆଦିର ବନ୍ଦୋବସ୍ତ କରିବା ସଙ୍ଗେ ସଙ୍ଗେ ତାଙ୍କର ଭାଷଣଗୁଡ଼ିକୁ ରେକର୍ଡ୍ ଦ୍ୱାରା ସଂଗ୍ରହ କରିବାର ଦାୟିତ୍ୱ ମଧ୍ୟ ନେଲେ । ୧୯୫୭ ମସିହା ନଭେମ୍ବର ମାସରୁ ୧୯୬୦ ମାର୍ଚ୍ଚ ପର୍ଯ୍ୟନ୍ତ କୃଷ୍ଣମୂର୍ତ୍ତି ନିଜର ଇଉରୋପ ଗସ୍ତ ବନ୍ଦ ରଖି କେବଳ ଭାରତରେ ରହିଥିଲେ । ସେହି ଅଢ଼େଇ ବର୍ଷ ଭିତରେ ମାଡ୍ରାସ, ଋଷିଭାଲି, ବମ୍ବେ ଓ ବନାରସଠାରେ କେତେକ ଭାଷଣକୁ ବାଦ ଦେଲେ ସେ ମୁଖ୍ୟତଃ ଏକାନ୍ତ ବିଶ୍ରାମ ନେଇଥିଲେ ଓ ସେତିକବେଳେ ଆପଣା ଅନ୍ତରକୁ ତଥା ବାହାର ଦୁନିଆକୁ ଗଭୀରଭାବରେ ଲକ୍ଷ୍ୟ କରି ଚାଲିଥିଲେ । ଗଭୀର ନିରୀକ୍ଷଣର ଏହି ପ୍ରକ୍ରିୟା ତାଙ୍କୁ ଆହୁରି ପ୍ରତିଷ୍ଠିତ ହୋଇ ଉଠିବାରେ ସାହାଯ୍ୟ କରିଥିଲା, ତାଙ୍କର ଅନ୍ତର ଅଧିକରୁ ଅଧିକ ଉନ୍ମୀଳିତ ହୋଇଥିଲା । ପ୍ରାକୃତିକ ଶୋଭା, ଗଛଲତା, ନଈ, ପାହାଡ଼ ପ୍ରତି କୃଷ୍ଣମୂର୍ତ୍ତିଙ୍କର ମନରେ ସଦାବେଳେ ଗୋଟାଏ ଦୁର୍ବଳତା ରହିଥିଲା । ଭାରତରେ ହେଉ କି ବାହାରେ ହେଉ, ଭାଷଣ-ଜୀବନର କାର୍ଯ୍ୟବ୍ୟସ୍ତତାରୁ ଟିକିଏ ରେହାଇ ପାଇଲେ ସେ ସଙ୍ଗେ ସଙ୍ଗେ ପ୍ରକୃତିର ସଂସର୍ଗ ଲାଭ କରିବାକୁ ବ୍ୟଗ୍ର

ହୋଇ ଉଠୁଥିଲେ । ସେ କହୁଥିଲେ ଯେ, "ନିଶ୍ୱାସ ନେବାଟା ଯେପରି ଆମ ଜୀବନର ଏକ ଅପରିହାର୍ଯ୍ୟ ପ୍ରକ୍ରିୟା, ଗଛଲତା ପ୍ରତି ମନରେ ଶ୍ରଦ୍ଧା, ଭଲ ପାଇବା ଇଚ୍ଛାଟା ବି ଠିକ୍ ସେମିତି ଆମ ସ୍ୱଭାବର ଏକ ଅପରିହାର୍ଯ୍ୟ ଅଂଶ ହେବା ଉଚିତ । ଆମ ଭଳି ଉଦ୍ଭିଦଗୁଡ଼ିକ ମଧ୍ୟ ପ୍ରକୃତିରାଜ୍ୟର ଗୋଟିଏ ଅଂଶ ବିଶେଷ । ଆହା, କି ସୁନ୍ଦର ! ପୁଣି ସୌନ୍ଦର୍ଯ୍ୟ ସାଥିକୁ ତା'ର ସେ ବିଚିତ୍ର ଏକାକୀତ୍ୱର ଭାବ ! ଗଛଗୁଡ଼ାକ କେତେ ନିଥର ସତେ ! ଖାଲି ଝଙ୍କା ବହଳ ପତ୍ରରେ ଭରା । ଆଲୋକ ପ୍ରାଚୁର୍ଯ୍ୟରେ ଭରପୂର—କେତେ ଲମ୍ବା ଲମ୍ବା ଛାଇ ତା'ର । ଆଉ ପୁଣି ତୋଫାନ ସମୟରେ ସେ ଗଛଗୁଡ଼ାକ ଆନନ୍ଦରେ ପାଗଳ ହୋଇଯାନ୍ତି ପରା ! ଧୀର ପବନ ବହିଲେ ଗଛର ଗୋଟି ଗୋଟି ପତ୍ର, ଏମିତିକି ସବା ଅଗରେ ଥିବା ପତ୍ରଟି ବି ଝିରିଝିରି ନାଚି ଉଠେ...... ତମେ ଯଦି ସେଇ ଗଛର ଦେହକୁ ଆଉଜି କରି ବସିଯିବ, ଆଉ ତମ ମନ ଭିତରଟା ଏକବାରେ ସ୍ଥିର, ନିଶ୍ଚଳ ଥିବ, ତେବେ ନିମିଷକେ ତମର ପ୍ରକୃତି ସହିତ ସମ୍ପର୍କ ଗଢ଼ି ଉଠିବ । ସେ ସମ୍ପର୍କ ହେବ ଅନନ୍ତ, ଅବିଚ୍ଛିନ୍ନ । କିନ୍ତୁ ଅଧିକାଂଶ ଲୋକ ସେହି ସମ୍ପର୍କଟିକକୁ ହରାଇ ବସିଥାନ୍ତି । ଗାଡ଼ି ମଟରରେ ବସି ଗଲାବେଳେ, ନ ହେଲେ ଗପସପ କରି ପାହାଡ଼ ଉପର ଦେଇ ଚାଲି ଚାଲି ଗଲାବେଳେ ପାହାଡ଼, ଉପତ୍ୟକା, ଝରଣା, ଜଙ୍ଗଲ — ସବୁ ତାଙ୍କ ଆଖିରେ ପଡ଼େ ସତ କିନ୍ତୁ ସେମାନେ ନିଜ ନିଜ ସମସ୍ୟାରେ ଏତେ ଉଦ୍ବିଗ୍ନ ରହିଥାନ୍ତି ଯେ ଏସବୁକୁ ଲକ୍ଷ୍ୟ କରିବାକୁ ବା ନୀରବ, ନିଶ୍ଚଳ ରହିବାକୁ ତାଙ୍କର ବେଳ ନ ଥାଏ ।"

୧୯୫୯ ମସିହା ଏପ୍ରିଲ ମାସରେ ଉତ୍ତର ଭାରତ ତଥା ହିମାଳୟର ପାଦଦେଶରେ କିଛିକାଳ ଏକାକୀ କଟାଇବା ଲାଗି କୃଷ୍ଣମୂର୍ତ୍ତି କାଶ୍ମୀର ଯାତ୍ରା କଲେ । ସାଙ୍ଗରେ ତାଙ୍କର ସେବେଷେଇ ବାସ କରିବା ପାଇଁ ଗଲେ ଋଷିଭାଲି ସ୍କୁଲର ମୁଖ୍ୟ ରାନ୍ଧୁଣିଆ — ପରମେଶ୍ୱରନ୍ । ଶ୍ରୀନଗରରେ ଅଳ୍ପ କେତେ ଦିନ କଟାଇ ସେମାନେ ସେଠାରୁ କିଛି ଦୂରରେ ଅବସ୍ଥିତ ଅଛବଲ୍ ଓ ତା'ପରେ ପହଲଗାଓଁକୁ

ଯାତ୍ରା କଲେ । ସେଠାରେ ଦୁହେଁଯାକ ଏକ ଯାତ୍ରୀ ନିବାସର ଶ୍ରେଷ୍ଠ କୋଠରି ଭଡ଼ା ନେଇ ରହିଲେ । କାଶ୍ମୀରର ରମଣୀୟ ଶୋଭା—ତା'ର ସେହି ବରଫଘେରା ଉଚ୍ଚ ପର୍ବତମାଳା, ଚଳ ଚଞ୍ଚଳ ପାହାଡ଼ ଝରଣା, ଆଉ ରଙ୍ଗ ବେରଙ୍ଗ ଫୁଲରେ ଉଜାଡ଼ି ପଡ଼ୁଥିବା ଜାତି ଜାତିର ଶ୍ରେଷ୍ଠ ବଡ଼ ଗଛ—କୃଷ୍ଣମୂର୍ତ୍ତିଙ୍କ ପାଇଁ ଏକ ବଡ଼ ଆକର୍ଷଣ ଥିଲା । ସେଠାରେ ବିତାଇଥିବା ଦିନତକ ସେ ପ୍ରାୟ ପ୍ରତ୍ୟହ ବଣ ଭିତରକୁ ଭ୍ରମଣରେ ଯାଉଥିଲେ; ପାହାଡ଼ ଦେଇ ଚଢ଼ି ଚଢ଼ି ଘଞ୍ଚ ପାଇନ୍ ଅରଣ୍ୟ ମଧ୍ୟରେ ଅନେକ ଦୂର ପର୍ଯ୍ୟନ୍ତ ଚାଲି ଯାଉଥିଲେ । ସେ ପାହାଡ଼ ରାସ୍ତା ଯେତେ ଆବଡ଼ା ଖାବଡ଼ା, ଯେତେ ଉଠାଣି ହେଲେ ସୁଦ୍ଧା ମାଇଲ ମାଇଲ ବାଟ ଚାଲି ଫେରିବା ପରେ ତାଙ୍କର ଦେହ ମୁହଁରେ କ୍ଲାନ୍ତିର ଚିହ୍ନ ସୁଦ୍ଧା ଦେଖାଯାଉ ନ ଥିଲା । ଅବୟବର ନମନୀୟତାରେ ସେ ଯେଭଳି ଅକ୍ଲେଶରେ କ୍ଷିପ୍ର ପଦରେ ସେହି ପାହାଡ଼ ରାସ୍ତାରେ ବାଟ ଚାଲୁଥିଲେ, ତାଙ୍କର କୌଣସି ବନ୍ଧୁ ମଧ୍ୟ ତାଙ୍କ ସହିତ ଚାଲି ପାରୁ ନ ଥିଲେ । ଥରେ ଥରେ ଅମାବାସ୍ୟା ରାତିରେ ଅନେକ ସମୟ ଧରି ସେ ନିର୍ମଳ ଆକାଶର ତାରକାରାଶିକୁ ମୁଗ୍ଧ ଦୃଷ୍ଟିରେ ଚାହିଁ ଭୋଳ ହୋଇ ରହି ଯାଉଥିଲେ । ପ୍ରକୃତିର ଶ୍ରେଷ୍ଠ ବଡ଼ ପ୍ରତିଟି ପରିପ୍ରକାଶ ତାଙ୍କ ପ୍ରାଣରେ ଏକ ଅଭିନବ ପୁଲକ ଓ ଉଚ୍ଛୁଳା ଉଲ୍ଲାସର ସଞ୍ଚାର କରୁଥିଲା । କିନ୍ତୁ ଖାଲି ପ୍ରକୃତି କାହିଁକି—ଆଧୁନିକ ପଦାର୍ଥ ବିଜ୍ଞାନ, ଜ୍ୟୋତିଷ ବିଜ୍ଞାନରୁ ଆରମ୍ଭ କରି ସଂସ୍କୃତ ଭାଷା ଓ ଇଂରାଜୀ ସାହିତ୍ୟରେ ମଧ୍ୟ ତାଙ୍କର ଗଭୀର ଅନୁରାଗ ରହିଥିଲା । ପହଲଗାଓଁରେ ଥିବାବେଳେ ଅନେକ ସମୟରେ ସେ ସନ୍ଧ୍ୟାବେଳେ ଇଂରାଜୀ କବିତା ବହିରୁ କବିତାମାନ ବଡ଼ ପାଟିରେ ଆବୃତ୍ତି କରି ପଢୁଥିଲେ । ପୁଣି କେବେ କେବେ ସଂସ୍କୃତ ଶ୍ଳୋକ ମଧ୍ୟ ଆବୃତ୍ତି କରୁଥିଲେ । ସ୍ୱରରେ ତାଙ୍କର ସତେ ଅବା ଏକ ଅଦ୍ଭୁତ ମନ୍ତ୍ର ଗୁଣ ରହିଥିଲା । ତା'ର ଗୁରୁଗମ୍ଭୀର ଝଙ୍କାର ସେଇ ଦିଗନ୍ତ ବିସ୍ତାରୀ ନିସ୍ତବ୍ଧତାକୁ ଥରାଇ ଏକ ଅପୂର୍ବ ପରିବେଶ ସୃଷ୍ଟି କରୁଥିଲା ।

ପହଲଗାଓଁଠାରେ ଥିବାବେଳେ ଜନେ ବିଶିଷ୍ଟ ଗାନ୍ଧିବାଦୀ ତଥା ଭୂଦାନକର୍ମୀ ବିନୋବା ଭାବେ କ୍ରିଷ୍ଣମୂର୍ତ୍ତିଙ୍କ ସହିତ ଦେଖା କରିବାକୁ ଆସି ପହଞ୍ଚିଲେ । ସେତେବେଳେ ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନ ସାରା ଦେଶରେ ଖୁବ୍ ଲୋକପ୍ରିୟତା ଲାଭ କରିଥିଲା ଓ ବହୁ ସଂଖ୍ୟକ ଭାରତୀୟ ଉକ୍ତ ଆନ୍ଦୋଳନରେ ସାମିଲ ହୋଇଥିଲେ । ନିଜର ପରିଚୟ ଦେଇ ବିନୋବାଜୀ ପ୍ରଥମେ କ୍ରିଷ୍ଣମୂର୍ତ୍ତିଙ୍କୁ ପ୍ରଶ୍ନ କଲେ,—'ଆପଣଙ୍କ ବୟସ ପ୍ରାୟ କେତେ ହେବ?'

କ୍ରିଷ୍ଣମୂର୍ତ୍ତି—'ଚଉଷଠି ।'

ବିନୋବାଜୀ—'ତେବେ ତ ଆପଣ ଠିକ୍ ମୋର ସାନ ଭାଇ ସଦୃଶ । ଆପଣଙ୍କୁ ଦେଖା କରି ମୋର ବିନମ୍ର ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ଆପଣଙ୍କ ଆଶୀର୍ବାଦ ଲାଭ କରିବା ଲାଗି ମୁଁ ଆଜି ଏଠାକୁ ଆସିଛି ।'

ଏଣୁ ତେଣୁ ଅଳ୍ପ କଥାବାର୍ତ୍ତା କରି ସାରିବା ପରେ ବିନୋବାଜୀ କ୍ରିଷ୍ଣମୂର୍ତ୍ତିଙ୍କଠାରୁ କିଛି ଜ୍ଞାନବାଣୀ ଶୁଣିବାକୁ ଅପେକ୍ଷା କରି ବସି ରହିଲେ । ମାତ୍ର ନିଜର ଲାଜକୁଳା ସ୍ୱଭାବ ବଶତଃ କ୍ରିଷ୍ଣମୂର୍ତ୍ତି ପ୍ରଥମେ କିଛି କହିବାକୁ ସଙ୍କୋଚ ବୋଧ କରି ନୀରବ ରହିଲେ । ବିନୋବାଜୀ ପୁଣି ପଚାରିଲେ,—'କହନ୍ତୁ ତେବେ ଆମେ କୋଉଠୁ ଆରମ୍ଭ କରିବା ?'

କ୍ରିଷ୍ଣମୂର୍ତ୍ତି—'ଆପଣ ନିଜେ ହିଁ କହନ୍ତୁ ନା ଆପଣ କେଉଁ ପ୍ରସଙ୍ଗ ନେଇ ଆଗ୍ରହୀ ।'

ବିନୋବାଜୀ—'ହଉ ତେବେ, 'ଜୀବନ' ବିଷୟରେ କିଛି କହନ୍ତୁ । ଆମେ ପ୍ରତ୍ୟେକେ ତ' ଏଇ ଜୀବନ ସମ୍ପର୍କରେ ଜାଣିବାକୁ ଆଗ୍ରହୀ···କିନ୍ତୁ ଆଲୋଚନା ତ' ଆଉ ବିନା ବାକ୍ୟ, ବିନା ଶବ୍ଦ ବିନିମୟରେ ହୋଇ ପାରିବ ନାହିଁ···ଆଲୋଚନାର ଅର୍ଥ ହିଁ ହେଉଛି ପରସ୍ପର ଅନୁଭୂତିର ବିନିମୟ ।'

ସେହିଠାରେ ବିନୋବାଜୀଙ୍କ ସହିତ ଏକ ଦୀର୍ଘ ଆଲୋଚନା କ୍ରମରେ କ୍ରିଷ୍ଣମୂର୍ତ୍ତି କହିଲେ, "ଅନୁଭୂତିଟା ସଦାବେଳେ ସୀମାବଦ୍ଧ ।

···ତେଣୁ କୌଣସି ପ୍ରସଙ୍ଗ ଆଲୋଚନା କରିବାକୁ ବସିଲେ ଆଗ ଆମଠାରେ ଏଭଳି ଏକ ମନ ରହିଥିବା ଆବଶ୍ୟକ ଯାହା କି ଅନୁଭୂତିର ଉପରେ ଭାବାନ୍ଧ ହୋଇ ନ ଥିବ; ଯାହା କି ସମ୍ପୂର୍ଣ୍ଣ ମୁକ୍ତ ଥିବ ଓ ଅନୁଭୂତିର ସୀମାକୁ ଅତିକ୍ରମ କରି ବୁଝିବା ଲାଗି ତା'ଠାରେ ଶକ୍ତି ଥିବ । ମନୁଷ୍ୟକୁ ପ୍ରତିଦିନ ତା'ର ଅନୁଭୂତି ନିକଟରେ ବଳିପଡ଼ି ଭଜିବାକୁ ହେବ । × × × × × ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଆଦି ନାମରେ ଯେଉଁଆଡ଼େ ଏଇ ଯୋଉ ବିଭାଜନ ଘଟି ଚାଲିଛି, ତାହାକୁ ସମ୍ପୂର୍ଣ୍ଣ ରୂପେ ମୂଳପୋଛ କରିବାକୁ ହେବ ।" ବିନୋବା ଭାବେ ତାଙ୍କ କଥାରେ ସହମତ ହୋଇ ସାଙ୍ଗେ ସାଙ୍ଗେ 'ହଁ' ମାରିଲେ । କିନ୍ତୁ କୃଷ୍ଣମୂର୍ତ୍ତି କହି ଉଠିଲେ—"ଆହା, ଆପଣ ହଁ ସିନା ମାରିଦେଲେ, କିନ୍ତୁ ତାହା ତ କେବଳ ମୁହଁର କଥା । କାରଣ ଆପଣ କ'ଣ ନିଜକୁ ଜଣେ ହିନ୍ଦୁ ଭାବରେ ଗଣନା କରିବାକୁ ବନ୍ଦ କରି ଦେଇ ପାରିବେ ? ଜାଣନ୍ତି, ବିଜ୍ଞାନ କ୍ଷେତ୍ରରେ ଏକ ନୂତନ ଅନ୍ତର୍ଦୃଷ୍ଟି ଆବିଷ୍କାର କରିବା ଲାଗି ଆମକୁ ସବୁତକ ପିଛିଲା ଅଭିଜ୍ଞତାକୁ ଛାଡ଼ି ଦେବାକୁ ପଡ଼ିଥାଏ । ସେହିଭଳି ମଣିଷକୁ ମୂଳରୁ ହିଁ ସକଳ ପ୍ରକାର ସ୍ଥିତିବଦ୍ଧତାରୁ ମୁକ୍ତ ରହିବାକୁ ଶିକ୍ଷା ଦିଆଯିବା ଉଚିତ । କିନ୍ତୁ ଆମ ଭିତରୁ କେହିହେଲେ ସେ କଥା କରନ୍ତି ନାହିଁ, କେବଳ ଲୋକଦେଖାକୁ ସେପରି ଛଳନା କରିଥାନ୍ତି ସିନା ।"

ଏତିକବେଳେ ବିନୋବାଜୀଙ୍କର ଜଣେ ଅନୁଗାମୀ ଉଠି ପଡ଼ି ପଚାରିଲେ, "ତେବେ ଆତ୍ମ-ଉପଲବ୍ଧି କହିଲେ କ'ଣ ବୁଝାଏ ?"

କୃଷ୍ଣମୂର୍ତ୍ତି—"କ'ଣ ହୋଇଥିବ ବୋଲି ଆପଣ ନିଜେ ଭାବୁଛନ୍ତି ଆଗ କହନ୍ତୁ ?"

ଶିଷ୍ୟ—"ମୋ ମତରେ ଏହାର ଅର୍ଥ ହେଉଛି 'ବ୍ରହ୍ମନ୍, ଅର୍ଥାତ ପରମାତ୍ମା ସହିତ ମିଶି ଏକାକାର ହୋଇଯିବା ।"

କୃଷ୍ଣମୂର୍ତ୍ତି—"ଏଇ ପରମାତ୍ମା ହେଉଛି ଏକ ଶବ୍ଦ ମାତ୍ର । ପରମାତ୍ମାକୁ ଉପଲବ୍ଧି କରିବାକୁ ହେଲେ ସେଥିପାଇଁ ତମଠାରେ

ଏକ ମୁକ୍ତ ମନ ଥିବା ଆବଶ୍ୟକ—ଏଭଳି ଏକ ନିର୍ମଳ ମନ ଯାହା କି କାହାରିକୁ ଅନୁସରଣ କରୁ ନ ଥିବ, ଯାହାର କୌଣସି ଗୁରୁ ନ ଥିବ ବା ଅବଲମ୍ବନ କରିବା ପାଇଁ କୌଣସି ମାର୍ଗ, ପଦ୍ଧତି ମଧ୍ୟ ନ ଥିବ । ଦେଖ, ଥରେ ଚେଷ୍ଟା କରି ଦେଖ ।"

ଶିଷ୍ୟ—"କିନ୍ତୁ ଏଭଳି ଗୋଟିଏ ମନ କିପରି ଲାଭ କରି ହେବ ?"

କୃଷ୍ଣମୂର୍ତ୍ତି — "ଏଥିପାଇଁ ତମଠାରେ ତମ ନିଜ ବିଷୟରେ ଯଥେଷ୍ଟ ଜ୍ଞାନ ଥିବା ଆବଶ୍ୟକ । 'ଆତ୍ମନ୍' ସମ୍ପର୍କରେ ଜ୍ଞାନ କଥା ମୁଁ କହୁ ନାହିଁ; ତମ ନିଜ ସମ୍ପର୍କରେ ଜ୍ଞାନ — ଅର୍ଥାତ, ତମେ କିଭଳି ଚିନ୍ତା କର, କାହିଁକି ଏଭଳି ଚିନ୍ତା କର, କିଭଳି କାର୍ଯ୍ୟ କର, ତମେ ନିଜେ କିଏ, ଏହି ସବୁ ବିଷୟରେ — କେବଳ ସଚେତନ ସ୍ତରରେ ନୁହେଁ, ଗଭୀର ଅବଚେତନ ସ୍ତରରେ ମଧ୍ୟ ଜ୍ଞାନ ଥିବା ଆବଶ୍ୟକ । ଆଉ ଏଥିଲାଗି ଏକ ବିପ୍ଳବାତ୍ମକ ମନ ରହିବା ନିତାନ୍ତ ଆବଶ୍ୟକ, କାରଣ ସାଧନ ଦ୍ୱାରା ତାହା କେବେ ଲାଭ ହେବ ନାହିଁ ।"

କୃଷ୍ଣମୂର୍ତ୍ତି ଆହୁରି ପୁଣି କହିଲେ ଯେ ଭାରତର ଅଧିକାଂଶ ବୁଦ୍ଧିଜୀବି ଓ ତଥାକଥିତ ଆଧ୍ୟାତ୍ମିକବାଦୀ କେବଳ ସଂସ୍କାର ଆଣିବା ଦିଗରେ ଆଗ୍ରହୀ ଥାଆନ୍ତି । ମାତ୍ର ଏ ସଂସ୍କାର ଜିନିଷଟା ପ୍ରକୃତରେ ଗୋଟାଏ ଅତି ସାମାନ୍ୟ କଥା । ସଂସ୍କାର କଦାପି ବି ହେଲେ ଏକ ଗଭୀର ବିପ୍ଳବର ସୂତ୍ରପାତ କରି ପାରିବ ନାହିଁ । ଭାରତୀୟମାନଙ୍କ ମନରେ କେବଳ ଦ୍ୱନ୍ଦ୍ୱ ଭରି ରହିଛି । ଯଦିଓ କଥା କଥାରେ ସେମାନେ ଆଦର୍ଶ ବିଷୟରେ ଅନେକ କିଛି କହି ଯାଆନ୍ତି କିନ୍ତୁ ବାସ୍ତବ କ୍ଷେତ୍ରରେ ଠିକ୍ ତା'ର ବିପରୀତ ହିଁ କରନ୍ତି । କୃଷ୍ଣମୂର୍ତ୍ତିଙ୍କ ଭାଷାରେ, "ଆମେମାନେ ଈଶ୍ୱରଙ୍କୁ ଖୋଜି ହେଉ କିନ୍ତୁ କିଭଳି ବଞ୍ଚିବାକୁ ହୁଏ ସେତିକି ଆମକୁ ଜଣା ନ ଥାଏ । ଆଉ ବୋଧହୁଏ ସେଇଥିପାଇଁ ଖାସ୍ ଆମେ ସଂସ୍କାର ନାମକ ସେହି ଉପର ଦେଖାଣିଆ ଜିନିଷଟି ପଛରେ ମାତି ଥାଉ, ତାରି ପଛରେ ଧାଇଁ ଥାଉ । × × × × ଲୋକେ ଭଗବାନଙ୍କୁ ଖୋଜିବା ପାଇଁ ଅମରନାଥ ଆଦିକୁ ଯାତ୍ରା କରନ୍ତି । କିନ୍ତୁ ତା'ର ଅର୍ଥ

କ'ଣ ? ଆମେ ନିଜର ମନ ଭିତରୁ ସମସ୍ତ ସ୍ନେହ ପ୍ରେମ ପୋଛି ପାଛି ଦେଇଛୁ; ସୌନ୍ଦର୍ଯ୍ୟକୁ ପୋଛି ଦେଇଛୁ; ଆମର ଯେତେକ ବ୍ୟକ୍ତିଗତ ଚିନ୍ତା ଭାବନା, ଆବେଗ ତଥା ବୌଦ୍ଧିକ କୌତୁହଳ — ସବୁକୁ ବିଲୋପ କରି ତା' ସ୍ଥାନରେ କର୍ତ୍ତୃତ୍ୱ ଓ ପ୍ରଥା ପଦ୍ଧତି ପ୍ରତି ଆନୁଗତ୍ୟକୁ ଆଣି ଭର୍ତ୍ତି କରିଛୁ । ମନ ଭିତରେ ଜିଜ୍ଞାସା ବା ପ୍ରଶ୍ନଶୀଳତା ପାଇଁ ଏତେ ଟିକିଏ ବି ସ୍ଥାନ ଖାଲି ରଖିବାକୁ ଦେଇ ନାହୁଁ । ଏଇଆ ତ' ? ସୃଷ୍ଟି କହିଲେ ପ୍ରକୃତରେ ଯାହା ବୁଝାଏ, ତାକୁ ଆମେ କ'ଣ କରି ବସିଛୁ ସତେ ! ଆମେ ଭାବୁ ଯେ ଭଗବାନଙ୍କୁ ଉପଲବ୍ଧି କରିବାକୁ ହେଲେ ଆମକୁ ଗେରୁଆ ବସ୍ତ୍ର ପରିଧାନ କରିବାକୁ ହେବ, ଯୌନ ସମ୍ଭୋଗ, ଇନ୍ଦ୍ରିୟାନୁଭବରୁ ସମ୍ପୂର୍ଣ୍ଣ ଦୂରେଇ ରହିବାକୁ ହେବ, ଆକାଶର ମେଘ ଖଣ୍ଡ, ପ୍ରକୃତି — ଏସବୁ ପ୍ରତି ଆଖି ମୁଦି ଦେବାକୁ ହେବ । ଆଉ ତା ବଦଳରେ କେବଳ ଧ୍ୟାନ କରିବାକୁ ହେବ । କିନ୍ତୁ ସେଭଳି ଧ୍ୟାନ ତ' ସମ୍ମୋହନ ବ୍ୟତୀତ ଅନ୍ୟ କିଛି ନୁହେଁ । × × × × × × ବାସ୍ତବତାକୁ ଲାଭ କରିବାକୁ ହେଲେ ତମକୁ ଏକାକୀ ହେବାକୁ ପଡ଼ିବ — ଏକାନ୍ତ ଭାବେ ଏକାକୀ । କିନ୍ତୁ ଏକ ପ୍ରାଚୀନ ଦେଶ, ଯେଉଁଠାରେ କି ଗୁରୁବାଦ ଓ ସଂସ୍କୃତି ଉପରେ ଏତେ ବେଶି ଗୁରୁତ୍ୱ ଦିଆଯାଇଥାଏ, ସେଠାରେ ଏହା ଏକ କଠିନ ବ୍ୟାପାର ।" ଏକଥା କହି ସାରି କ୍ରିଷ୍ଣମୂର୍ତ୍ତି ଗୃହ ପଟେ ଘେରି ବସିଥିବା ଲୋକମାନଙ୍କୁ ଗ୍ଲହିଁ ବିନୋବାଜୀଙ୍କୁ ପଚାରିଲେ, — "ଏ ସଭିଏଁ କ'ଣ ଆପଣଙ୍କର ଚେଲା ? କି ଦୁଃଖର କଥା ସତେ !" ବିନୋବାଜୀ ଉତ୍ତର ଦେଲେ, "ମୁଁ କିନ୍ତୁ ଜାଣେ ନାହିଁ ସେମାନେ କାହିଁକି ମତେ ଅନୁସରଣ କରୁଛନ୍ତି..." × × × ×

କ୍ରିଷ୍ଣମୂର୍ତ୍ତି— "ତେବେ କହନ୍ତୁ, ବିନୋବାଜୀ କ'ଣ ଶିଷ୍ୟଭାବକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ?..."

ବିନୋବାଜୀ ପ୍ରସଙ୍ଗ ବଦଳାଇ ଅନ୍ୟ କଥା ପକାଇଲେ । କ୍ରିଷ୍ଣମୂର୍ତ୍ତି ଓ ବିନୋବା ଭାବେଙ୍କ ମଧ୍ୟରେ ପହିଲଗାଓଁଠାରେ ମାତ୍ର

ଦୁଇଥର ସାକ୍ଷାତ ହୋଇଥିଲା । ବିନୋବାଜୀଙ୍କ ନିକଟ ମଣ୍ଡଳରୁ ଶୁଣିବା କଥା ଯେ ପ୍ରଥମ ଦିନର ଆଲୋଚନା ତାଙ୍କ ଉପରେ ବେଶ୍ ପ୍ରଭାବ ପକାଇଥିଲା । କ୍ରିଷ୍ଣମୂର୍ତ୍ତିଙ୍କ ବିଚାରଧାରା ତାଙ୍କ ଅନ୍ତରରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା ତାହା ଅନେକ ଦିନ ପର୍ଯ୍ୟନ୍ତ ତାଙ୍କୁ ଏକ ନୂତନ ପ୍ରେରଣା ଯୋଗାଇଥିଲା । ସେ ପୂର୍ଣ୍ଣ ପ୍ରାଣରେ ବିଶ୍ୱାସ କରୁଥିଲେ ଯେ କ୍ରିଷ୍ଣମୂର୍ତ୍ତି ହିଁ ବିଶ୍ୱଗୁରୁ -- ଏ ଯୁଗର ପଥ ପ୍ରବର୍ତ୍ତକ ।

ଏ ଘଟଣାର ଠିକ୍ ତିନି ବର୍ଷ ପୂର୍ବେ ୧୯୫୬ ମସିହାରେ କ୍ରିଷ୍ଣମୂର୍ତ୍ତି ମାଡ୍ରାସରେ ଥିବାବେଳେ ଥରେ ତାଙ୍କ ସହିତ ତିବ୍ବତର ଧର୍ମଗୁରୁ ଦଲାଇଲାମାଙ୍କର ସାକ୍ଷାତ ହୋଇଥିଲା । ତିବ୍ବତର ଲୋକେ ଦଲାଇଲାମାଙ୍କୁ ଶ୍ରେଷ୍ଠ ଧର୍ମଗୁରୁ ହିସାବରେ ଗଭୀର ଭକ୍ତି, ସମ୍ମାନ ପ୍ରଦର୍ଶନ କରିଥାନ୍ତି । କଠୋର ନିଷ୍ଠା ଓ ଆଧ୍ୟାତ୍ମିକ ସାଧନାର ଜୀବନ ଯାପନ କରି ଏହି ଧର୍ମଗୁରୁ ଅଧିକାଂଶ ସମୟ ଲୋକଲୋଚନରୁ ଦୂରରେ ଏକ ନିକାଞ୍ଚନ ସ୍ଥାନରେ ବାସ କରନ୍ତି ଓ ଦେଶ ଛାଡ଼ି ପ୍ରାୟ କେବେ ବାହାରନ୍ତି ନାହିଁ । ମାତ୍ର ସେ ବର୍ଷ ପ୍ରଥମ ଥର ପାଇଁ ଭାରତ ସରକାରଙ୍କ ନିମନ୍ତ୍ରଣ କ୍ରମେ ବୁଦ୍ଧ ଜୟନ୍ତୀ ସମାରୋହ ଉପଲକ୍ଷେ ଦଲାଇଲାମା ଭାରତ ଭ୍ରମଣରେ ଆସିଥିଲେ । ଯୋଗକୁ ସେ ମାଡ୍ରାସରେ ପହଞ୍ଚିବା ବେଳକୁ କ୍ରିଷ୍ଣମୂର୍ତ୍ତି ମଧ୍ୟ ବସନ୍ତ ବିହାରରେ ରହୁଥିଲେ । ତାଙ୍କ ଦାୟିତ୍ୱ ନେଇ ଥିବା ଜଣେ ଉଚ୍ଚପଦସ୍ଥ ଅଫିସରଙ୍କଠାରୁ ଦଲାଇଲାମା କ୍ରିଷ୍ଣମୂର୍ତ୍ତିଙ୍କର ରହସ୍ୟମୟ ଜୀବନ ଓ ଅଭୂତପୂର୍ବ ଦର୍ଶନ ସମ୍ପର୍କରେ ଶୁଣି ତାଙ୍କୁ ଦେଖା କରିବା ପାଇଁ ମନ ବଳାଇଲେ । ଆଉ ସତକୁ ସତ, ସେହି ଅଫିସର ଜଣଙ୍କୁ ଧରି ଦିନେ ସେ ଆସି ବସନ୍ତ ବିହାରରେ ପହଞ୍ଚିଗଲେ । ଦଲାଇଲାମାଙ୍କୁ ଦେଖି କ୍ରିଷ୍ଣମୂର୍ତ୍ତି ଅତିଶୟ ଆନନ୍ଦିତ ହେଲେ ଓ ଗଭୀର ଆନ୍ତରିକତାର ସହ ନିରାଡ଼ମ୍ବର ଭାବରେ ତାଙ୍କୁ ପାଗ୍ଲେଟି ନେଇଗଲେ । ସେଠାରେ ଉପସ୍ଥିତ ଅଫିସର ଜଣକ ବର୍ଣ୍ଣନା କରିଛନ୍ତି ସତେ ଅବା କ୍ଷଣକ ଭିତରେ ଉଭୟଙ୍କ ମଧ୍ୟରେ ବିଜୁଳି ବେଗରେ ସଶ୍ରଦ୍ଧ ଭାବ ଓ ଆନ୍ତରିକତାର ବିନିମୟ ଘଟିଗଲା । ତା'ପରେ ଉଭୟଙ୍କ ମଧ୍ୟରେ କଥୋପକଥନ ବିନା ବାକ୍ୟ ବ୍ୟୟରେ,

ବା ଖୁବ୍ ଶ୍ରେଷ୍ଠ ଶ୍ରେଷ୍ଠ ଶବ୍ଦରେ ଦେବାକୁ ଲାଗିଲା । ଜଣା ଯାଉଥିଲା ଯେ ବିଶେଷ କଥାବାର୍ତ୍ତା ନ କରି ସୁଦ୍ଧା ଉଭୟେ ପରସ୍ପରର ଚିନ୍ତାକୁ ଅକ୍ଳେଶରେ ଉପଲବ୍ଧି କରି ପାରୁଥିଲେ । କୃଷ୍ଣମୂର୍ତ୍ତିଙ୍କ ସହିତ କଥାବାର୍ତ୍ତା କରି ଦଲାଇଲାମା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ପରେ ସେ ତାଙ୍କୁ ଜଣେ 'ମହାନ୍ ଆତ୍ମା' 'a great Soul' ବୋଲି ବର୍ଣ୍ଣନା କରିଥିଲେ ଓ ଦ୍ୱିତୀୟ ଶତାବ୍ଦୀର ପ୍ରସିଦ୍ଧ ବୌଦ୍ଧ 'ନାଗାର୍ଜ୍ଜୁନ' ବୋଲି ଉଲ୍ଲେଖ କରିଥିଲେ ।

କୃଷ୍ଣମୂର୍ତ୍ତିଙ୍କ ସଂସ୍ପର୍ଶରେ ଆସିଥିବା ଅନେକ ବଡ଼ ବଡ଼ ସନ୍ଥ ଓ ସାଧୁ ପୁରୁଷ ତାଙ୍କୁ ପ୍ରଭୁ ବୁଦ୍ଧଙ୍କର ଏକ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ବର୍ଣ୍ଣନା କରିଯାଇଛନ୍ତି । କେତେକ ତାଙ୍କୁ ବୁଦ୍ଧଙ୍କର ଏକ ଅବତାର ବୋଲି ମଧ୍ୟ ସ୍ୱୀକାର କରନ୍ତି । ଏ ସମ୍ପର୍କରେ ଗୋଟିଏ ଚମତ୍କାର ତଥ୍ୟ ସଂଗୃହୀତ ହୋଇଛି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବନାରସଠାରେ ସ୍ୱାମୀ ବିଶୁଦ୍ଧାନନ୍ଦ ନାମରେ ଜଣେ ଅତି ବଡ଼ ସିଦ୍ଧ ଯୋଗୀ ଥିଲେ । ତନ୍ତ୍ର ସାଧନା ଓ ଅତୀନ୍ଦ୍ରିୟ ଶକ୍ତି ବଳରେ ସେ କେତେକ ଦୁଃସାଧ୍ୟ ସିଦ୍ଧି ଲାଭ କରିଥିଲେ । ସ୍ୱାମୀ ବିଶୁଦ୍ଧାନନ୍ଦଙ୍କର କହିବା କଥା ଯେ ସେ ନିଜର ସିଦ୍ଧି ବଳରେ ତିବ୍ବତର ଜନମାନବଶୂନ୍ୟ ଗିରିଶୃଙ୍ଗରେ ମହାତ୍ମାମାନଙ୍କ ଦ୍ୱାରା ସୁରକ୍ଷିତ କେତେକ ଅତି ପ୍ରାଚୀନ ଆଧ୍ୟାତ୍ମିକ ଗ୍ରନ୍ଥାବଳୀର ସୂତ୍ର ଆୟତ୍ତ କରିବାକୁ ସମର୍ଥ ହୋଇଥିଲେ । ସ୍ୱାମୀ ବିଶୁଦ୍ଧାନନ୍ଦଙ୍କର ଅନ୍ୟତମ ଶିଷ୍ୟ ପଣ୍ଡିତ ଗୋପୀନାଥ କବିରାଜଙ୍କଠାରୁ ଶୁଣିବାକୁ ମିଳେ ଯେ ଆନି ବେସାନ୍ତ କୁଆଡ଼େ ସେହି ସମୟରେ ସ୍ୱାମୀଜୀଙ୍କ ସହିତ ସାକ୍ଷାତ କରିବାକୁ ଅନେକ ଥର ବନାରସ ଆସୁଥିଲେ, ଆଉ ସେତିକବେଳେ ସ୍ୱାମୀଜୀ ଶ୍ରୀମତୀ ବେସାନ୍ତଙ୍କୁ ଜଣାଇଥିଲେ ଯେ ଅତି ନିକଟ ଭବିଷ୍ୟତରେ ମୈତ୍ରେୟ ବୋଧିସତ୍ତ୍ୱ ଏକ ମାନବକାୟାରେ ପୃଥିବୀରେ ଅବତରଣ କରିବେ । ତା ସଙ୍ଗେ ସଙ୍ଗେ ନିଜର ସିଦ୍ଧି ବଳରେ ସେ ଏକଥା ମଧ୍ୟ ଜାଣିପାରି କହିଥିଲେ ଯେ ମୈତ୍ରେୟ ବୋଧିସତ୍ତ୍ୱଙ୍କ ନିମନ୍ତେ ଉଦ୍ଦିଷ୍ଟ ମାନବ କାୟାଟି ସ୍ୱୟଂ କୃଷ୍ଣମୂର୍ତ୍ତିଙ୍କ ଶରୀର ବ୍ୟତୀତ ଅନ୍ୟ କାହାର ହେବ ନାହିଁ । ଏଠାରେ

କହିବା ବାହୁଲ୍ୟ ଯେ ସ୍ୱାମୀ ବିଶୁଦ୍ଧାନନ୍ଦଙ୍କର ଏହି ଉକ୍ତି ଲେଡ଼ବିଟର ତଥା ଆନ ବେସାନ୍ତ ମହାଗୁରୁଙ୍କଠାରୁ ପାଇଥିବା ସନ୍ଦେଶ ସହିତ ପୂରା ମେଳ ଖାଇ ଯାଉଥିଲା ।

ପହଲଗାଓଁ ଠାରେ ଅଗଷ୍ଟ ମାସ ମଝାମଝିରେ କୃଷ୍ଣମୂର୍ତ୍ତି ପୁଣି ଥରେ ମୂତ୍ରାଶୟ ରୋଗରେ ଆକ୍ରାନ୍ତ ହେଲେ । ପୂର୍ବ ଥର ଅପେକ୍ଷା ଏଥରକ ତାଙ୍କ ଅବସ୍ଥା ଆହୁରି ଉଦ୍‌ବେଗଜନକ ହୋଇ ପଡ଼ିବାରୁ ତାଙ୍କୁ ଯଥାଶୀଘ୍ର ଦିଲ୍ଲୀ ଅଣାଗଲା । ଦିଲ୍ଲୀରେ ପହଞ୍ଚିବା ବେଳକୁ ତାଙ୍କର ଅବସ୍ଥା ଏତେ ସାଂଘାତିକ ହୋଇ ପଡ଼ିଥିଲା ଯେ ଡାକ୍ତର ଆଣ୍ଟିବାଓଟିକ ଔଷଧ ଦେବା ଛଡ଼ା ଅନ୍ୟ ଉପାୟ ଦେଖିଲେ ନାହିଁ । ବାଧ୍ୟ ହୋଇ କୃଷ୍ଣମୂର୍ତ୍ତି ସେ ଔଷଧ ଖାଇଲେ ସିନା କିନ୍ତୁ କଡ଼ା ଔଷଧର ପ୍ରଭାବରେ ତା'ପର ଅନେକ ଦିନ ପାଇଁ ସେ ଏକରକମ ଚଳନ୍ତିଶକ୍ତିହୀନ ହୋଇ ବିଛଣାରେ ପଡ଼ି ରହିଲେ । ଜୀବନରେ ପ୍ରଥମ ଥର ପାଇଁ ସେ ଆଣ୍ଟିବାଓଟିକ ଔଷଧ ଖାଉଥିଲେ, ତେଣୁ ଶାରୀରିକ ଦୁର୍ବଳତା ସାଙ୍ଗକୁ ଔଷଧର କୁପ୍ରଭାବରେ ତାଙ୍କ ସ୍ୱାସ୍ଥ୍ୟ ଏକଦମ ଭାଙ୍ଗି ପଡ଼ିଲା । ସେତେବେଳେ ପରମେଶ୍ୱରନ୍ ନିଜର ଅନ୍ୟ ସବୁ କାମ ପଛରେ ପକାଇ ଦିନରାତି କୃଷ୍ଣମୂର୍ତ୍ତିଙ୍କ ପାଖେ ପାଖେ ରହି ତାଙ୍କୁ ନିଜ ହାତରେ ଖୁଆଇ ଦେବାଠୁ ଆରମ୍ଭ କରି ତାଙ୍କର ସବୁ କାମ କରିବାରେ ଲାଗିଲେ । କୃଷ୍ଣମୂର୍ତ୍ତି ମଧ୍ୟ ପରମେଶ୍ୱରନ୍‌ଙ୍କୁ ଅତିମାତ୍ରାରେ ଭଲ ପାଉଥିଲେ ଓ ଠିକ୍ ନିଜର ବନ୍ଧୁ ଭଳି ବ୍ୟବହାର କରୁଥିଲେ । ପରମେଶ୍ୱରନ୍‌ଙ୍କର ଅକ୍ଳାନ୍ତ ସେବା ଓ ଯତ୍ନ ଫଳରେ କୃଷ୍ଣମୂର୍ତ୍ତି ଧୀରେ ଧୀରେ ଆରୋଗ୍ୟ ଲାଭ କରିବାକୁ ଲାଗିଲେ ।

# 'କୃଷ୍ଣମୂର୍ତ୍ତି ନୋଟବୁକ୍'

ସୁଦୀର୍ଘ ଭାରତ ରହଣି ଶେଷ କରି ୧୯୬୦ ମସିହା ମାର୍ଚ୍ଚ ମାସରେ କୃଷ୍ଣମୂର୍ତ୍ତି ରୋମ, ଇଂଲଣ୍ଡ ଓ ଆମେରିକା ବାଟ ଦେଇ ଓହାଇ ଠାରେ ଆସି ପହଞ୍ଚିଲେ । ସେତେବେଳକୁ ପ୍ରାୟ ଦୁଇ ବର୍ଷରୁ ଉପର ସେ ଓହାଇ ଛାଡ଼ିଲେଣି । ଓହାଇରେ ପହଞ୍ଚିବା ପରେ ପରେ ସେ ପୁଣି ପୂର୍ବ ଭଳି ଭାଷଣ ଦେବା କାର୍ଯ୍ୟ ଆରମ୍ଭ କରିଦେଲେ । କିନ୍ତୁ ପୂର୍ବ ଅସୁସ୍ଥତା ବଶତଃ ତାଙ୍କର ସ୍ୱାସ୍ଥ୍ୟ ଏତେ ଭାଙ୍ଗି ପଡ଼ିଥିଲା ଯେ ମାତ୍ର ଗୋଟିଏ ଭାଷଣ ଦେଇ ସେ ବାକି କାର୍ଯ୍ୟକ୍ରମତକ ବାତିଲ କରିବାକୁ ବାଧ୍ୟ ହେଲେ । ତାହାର ପରବର୍ତ୍ତୀ ଛଅ ମାସ ସେ ଡାକ୍ତରଙ୍କ ପରାମର୍ଶ କ୍ରମେ ନାନା ସ୍ୱାସ୍ଥ୍ୟ ପରୀକ୍ଷା, ନିୟମିତ ପଥ୍ୟ ଓ ବିଶ୍ରାମରେ କଟାଇ ୧୯୬୦ ମସିହା ଶେଷ ଭାଗକୁ ପୁଣି ଭାରତ ଫେରିଲେ ।

ସେ ବର୍ଷ ସେ ଭାରତଂର ମାତ୍ର ଚାରିମାସ କଟାଇଲେ ଓ ତା'ରି ଭିତରେ ଦିଲ୍ଲୀ, ବମ୍ବେ, ମାଡ୍ରାସ ଓ ବନାରସ ପ୍ରଭୃତିଠାରେ ଅନେକ ଗୁଡ଼ିଏ ଜନସଭାରେ ଭାଷଣ ଦେବା ସଙ୍ଗେ ସଙ୍ଗେ କେତେକ ଛୋଟବଡ଼ ଦଳଗତ ଆଲୋଚନାରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ଭାରତ ଗସ୍ତରୁ ଫେରି ୧୯୬୧ ମସିହା ମେ' ମାସରେ କୃଷ୍ଣମୂର୍ତ୍ତି ଲଣ୍ଡନ ଆସିଲେ । ଡୋରିସ ପ୍ରାଟ୍ ଆଗରୁ ତାଙ୍କ ଲାଗି ଲଣ୍ଡନର ଉଇମ୍ବଲଡନ୍ କମନ୍ ନିକଟରେ ଗୋଟିଏ ଛୋଟ ଘର ଠିକଣା କରି ରଖିଥିଲେ । ସେଇଠାରେ କୃଷ୍ଣମୂର୍ତ୍ତି ରହିଲେ । ସେତେବେଳକୁ ତାଙ୍କର ପ୍ରକ୍ରିୟା ପୁଣି ଥରେ ତୀବ୍ର ଭାବରେ ଆରମ୍ଭ ହୋଇ ଯାଇଥିଲା ଏବଂ ପୂର୍ବରୁ ଓହାଇ ଓ ଉଟକାମଣ୍ଡଠାରେ ଯାହା ସବୁ ଘଟିଥିଲା, ସେହି ସବୁ ଲକ୍ଷଣ ଦେଖା ଦେଲା । ପ୍ରଥମେ ହଠାତ୍ ତାଙ୍କର ଏଭଳି ଅବସ୍ଥା ଦେଖି ଡୋରିସ ପ୍ରାଟ୍ ବଡ଼ ବିଚଳିତ ହୋଇ ପଡ଼ିଲେ । ପୂର୍ବରୁ ସେ କେବେହେଲେ ତାଙ୍କୁ ପ୍ରକ୍ରିୟା ସମୟରେ ଦେଖି ନ ଥିଲେ, ତେଣୁ ଏସବୁ ତାଙ୍କୁ ବଡ଼ ବିଚିତ୍ର ବୋଧ ହେଉଥିଲା । ଥରେ ଥରେ ରାତିରେ

କ୍ରିଷ୍ଣମୂର୍ତ୍ତିଙ୍କ ଆର୍ତ୍ତନାଦରେ ତାଙ୍କର ନିଦ ଭାଙ୍ଗିଗଲେ ସେ କ'ଣ କରିବେ ଜାଣି ନ ପାରି ବ୍ୟସ୍ତ ହୋଇ ପଡ଼ୁଥିଲେ । ଆଉ ପୁଣି ଦିନସାରା କାଳେ କେତେବେଳେ କ'ଣ ହୋଇଯିବ ବୋଲି ଭୟରେ ସେ ଉଦ୍‌ବିଗ୍ନ ରହୁଥିଲେ । ପୂର୍ବ ଭଳି ଏଥର ମଧ୍ୟ ପ୍ରକ୍ରିୟାର କୌଣସି ନିର୍ଦ୍ଦିଷ୍ଟ ସମୟ ନ ଥିଲା — ସକାଳେ, ଦ୍ୱିପ୍ରହରରେ, କି ସନ୍ଧ୍ୟାବେଳେ ଏହା ଅଚାନକ ଆରମ୍ଭ ହୋଇ ଯାଉଥିଲା । ପୁଣି କେବେ କେବେ ଟେବୁଲରେ ବସି ଖାଉ ଖାଉ ପ୍ରକ୍ରିୟାର ପ୍ରଭାବରେ ତାଙ୍କ ହାତରୁ ଚାମୁଚ ଖସି ପଡ଼ୁଥିଲା — ସେହି ମୁହୂର୍ତ୍ତକ ଲାଗି ସେ, ସ୍ଥାଣୁ ପାଲଟି ଯାଉଥିଲେ । ତାଙ୍କୁ ଦେଖି ସ୍କଟ୍‌ଙ୍କର ଭୟ ହେଉଥିଲା — କ୍ରିଷ୍ଣମୂର୍ତ୍ତି ସେଇଠି ଭୂଇଁରେ ଟଳି ପଡ଼ିବେ ନା କ'ଣ ! କିନ୍ତୁ ପର ମୁହୂର୍ତ୍ତରେ ସେ ପୁଣି ପ୍ରକୃତିସ୍ଥ ହୋଇ ଉଠି ବସୁଥିଲେ ।

ଏହିପରି ଅବସ୍ଥାରେ ଜୁନ ମାସ ତୃତୀୟ ସପ୍ତାହରେ ପ୍ରକ୍ରିୟା ପୂରା ଦମ୍‌ରେ ଚାଲିଥିବାବେଳେ କ୍ରିଷ୍ଣମୂର୍ତ୍ତି ଲଣ୍ଡନ ଛାଡ଼ି ଓହାଇ ଆସିବାକୁ ବାହାରିଲେ । ଲଣ୍ଡନ ଛାଡ଼ିବାର ଠିକ୍ ଚାରି ଦିନ ପରେ, ଜୁନ ମାସ ୧୮ ତାରିଖଠାରୁ ଅପ୍ରତ୍ୟାଶିତ ଭାବରେ ସେ ଏକ ଡାଏରି ଲେଖିବାକୁ ଆରମ୍ଭ କଲେ । ଆଗରୁ ଯଦିଓ ସେ କେବେ କେମିତି ନିଜ ଚିଠାଖାତାରେ କିଛି କିଛି ଲେଖୁଥିଲେ, ଏମିତି ନିୟମିତ ଭାବରେ ନିଜସ୍ୱ ଅନୁଭବକୁ ଭାଷାରେ ରୂପ ଦେବା ଏଇ ଥିଲା ପ୍ରଥମ । ପରବର୍ତ୍ତୀ ସାତ ମାସ କାଳ ନିୟମିତ ଲେଖି ଚାଲିଥିବା ଏହି ଡାଏରିର ଅନେକ ସ୍ଥାନରେ ସେ ନିଜର ବିଚିତ୍ର ପ୍ରକ୍ରିୟା ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ତାଙ୍କର ମସ୍ତିଷ୍କ ଓ ଶରୀରରେ ଅନୁଭୂତ ହେଉଥିବା ଭୟାନକ ଯନ୍ତ୍ରଣା ଓ ତା' ସାଙ୍ଗକୁ ଅନ୍ତରକୁ ଉଚ୍ଛୁଳାଇ ଝରି ପଡ଼ୁଥିବା ପରମ ଆଶିଷ, ପ୍ରେମ ଓ ପରିପୂର୍ଣ୍ଣତାର ଅନୁଭବ — ଏସବୁ ଅତି ନିଖୁଣ ଭାବରେ ଉକ୍ତ ଲେଖାରେ ସ୍ଥାନ ପାଇଛି । ପରେ, ୧୯୭୬ ମସିହାରେ ଡାଏରିଟି 'କ୍ରିଷ୍ଣମୂର୍ତ୍ତି ନୋଟ୍‌ବୁକ୍' ନାମରେ ଇଂରାଜୀରେ ପ୍ରକାଶ ପାଇଲା । ସେହି ପୁସ୍ତକରେ ପ୍ରକ୍ରିୟାର ଅନୁଭୂତିକୁ ବର୍ଣ୍ଣନା

କରି ଦିନେ ସେ ଲେଖିଛନ୍ତି, —'ଓହାଇକୁ ଯିବା ବାଟରେ, କାର ଭିତରେ ହିଁ ତାହା ପୁଣି ଥରେ ଆରମ୍ଭ ହୋଇଗଲା । ଠିକ୍ ସେହି ଗୃପ ଆଉ ଅସୀମ ବିଶାଳତାର ଅନୁଭବ । କିନ୍ତୁ ସେ ବିଶାଳତାକୁ ମୁଁ ଯେ ଅନୁଭବ କରି ଚାଲିଥିଲି ତା ନୁହେଁ, ସେଇଟା ସେମିତି ତା'ର ଆପଣାଛାଏଁ ରହିଥିଲା । କୌଣସି ଏକ ନିର୍ଦ୍ଦିଷ୍ଟ କେନ୍ଦ୍ରରୁ ଯେ ସେ ଅନୁଭବ ଉଠୁଥିଲା, ବା ନିର୍ଦ୍ଦିଷ୍ଟ ସ୍ଥାନରେ ଅନୁଭୂତ ହେଉଥିଲା, ତାହା ମଧ୍ୟ ନୁହେଁ । ଗାଡ଼ି ମଟର, ଲୋକବାକ, ବିଜ୍ଞାପନ ପଟା ଆଦି ସବୁ ଜିନିଷ ଜଳ ଜଳ ସ୍ପଷ୍ଟ ହୋଇ ଉଠିଥିଲା, ଆଉ ତାର ରଙ୍ଗ ସବୁ ତୀବ୍ର, ଅସହ୍ୟ ବୋଧ ହେଉଥିଲା । ଏହିଭଳି ପୂରା ଘଣ୍ଟାକରୁ ଉପର ଚାଲିଲା । ଏଣେ ମୁଣ୍ଡ ଭିତରଟା ଯନ୍ତ୍ରଣାରେ ଫାଟି ପଡ଼ୁଥିଲା — ଏକବାରେ ମୁଣ୍ଡର ଅତି ଭିତରୁ ସେ ତୀବ୍ର ଯନ୍ତ୍ରଣା ଉଠୁଥିଲା ।

ପୁଣି ଆଉ ଦିନକର ଲେଖା —'ଏ ଶରୀର ଭିତରେ କିଛି ଗୋଟାଏ ବିଚିତ୍ର ଜିନିଷ ଘଟିବାରେ ଲାଗିଛି । କିନ୍ତୁ ସେ ଜିନିଷଟା ନିର୍ଦ୍ଦିଷ୍ଟ ଭାବରେ ଯେ କ'ଣ ସେକଥା ଜାଣିବା ଏତେ ସହଜ ନୁହେଁ । ଏକ 'ଅଦ୍ଭୁତ' ତୀବ୍ରତା ଆଉ ତା' ସାଥିକୁ ଏକ ଆଭ୍ୟନ୍ତରୀଣ ଉଜ୍ଜ୍ୱଳତା । ନା, ନା, ଏହା ମୋଟେ ହେଲେ ମୋର ନିଜସ୍ୱ-ସୃଷ୍ଟ ବା କଳ୍ପନା ପ୍ରସୂତ ନୁହେଁ । ଯେତେବେଳେ ଘର ଭିତରେ ହେଉ କି ଗଛ ମୂଳେ ହେଉ, ମୁଁ ସ୍ଥିର ହୋଇ ବସି ଯାଉଛି, କି ଏକାକୀ ହୋଇ ଯାଉଛି ସେତିକିବେଳେ ତା'ର ସ୍ପନ୍ଦନ ଅତି ସ୍ପଷ୍ଟ ହୋଇ ଉଠୁଛି । ପୁଣି ଠିକ୍ ନିଦ ଲାଗି ଆସିବା ବେଳକୁ ତାହା ନିଶ୍ଚିତ ଭାବରେ ଦେଖା ଦେଉଛି ।

ଓମେନଠାରେ ବାର୍ଷିକ କ୍ୟାମ୍ପ୍ ବନ୍ଦ ହେବା ପରଠାରୁ କୃଷ୍ଣମୂର୍ତ୍ତି ତା' ପରିବର୍ତ୍ତେ ଆଉ ଗୋଟିଏ ଉପଯୁକ୍ତ ସ୍ଥାନ ଠିକଣା କରିବାକୁ ମନେ ମନେ ଖୋଜି ହେଉଥିଲେ । ଏତିକିବେଳେ ସୁଇଜରଲଣ୍ଡର ଜେନେଭା ନିକଟବର୍ତ୍ତୀ ସାନେନ୍ ନାମକ ଏକ ଛୋଟ ସହର ଏଥିଲାଗି ଅନୁକୂଳ ହେବ ବୋଲି ତାଙ୍କର ମନେ ହେଲା । ତେଣୁ ୧୯୬୧ ମସିହାରେ ପ୍ରଥମ କରି ସେଠାରେ ଏକ ସମ୍ମିଳନୀର ଆୟୋଜନ କରାଗଲା । ସମ୍ମିଳନୀ ଆରମ୍ଭ ହେବାର କିଛି ଦିନ ପୂର୍ବରୁ କୃଷ୍ଣମୂର୍ତ୍ତି

ସେଠାରୁ ଅଳ୍ପ ଦୂରରେ ଗ'ଷ୍ଟାଡ୍ ସହରରେ 'ଗ୍ଲେଟ୍ ଟାନ୍ନେଗ' ନାମକ ଏକ ଘର ଭଡ଼ା ନେଇ ରହିବାକୁ ଲାଗିଲେ । ସେଠାରେ ତାଙ୍କର ରହିବାର ସମସ୍ତ ବନ୍ଦୋବସ୍ତ କରିଥିଲେ ତାଙ୍କର ଜଣେ ପୁରାତନ ବିଶ୍ୱସ୍ତ ବନ୍ଧୁ ଶ୍ରୀମତୀ ଭାନ୍ଡ଼ା ସ୍କାରଭେଲି । ଗ'ଷ୍ଟାଡ୍‌ରେ ଥିବାବେଳେ ନିଜର ଦୈନନ୍ଦିନ କାର୍ଯ୍ୟ ଭିତରେ ତାଙ୍କର ପ୍ରକ୍ରିୟା ସେମିତି ଜୋରସୋର୍‌ରେ ଚାଲୁ ରହିଥିଲା । ତାଙ୍କ ପାଖେ ପାଖେ ରହି ଶ୍ରୀମତୀ ସ୍କାରଭେଲି ଅସୀମ ବିସ୍ମୟଭରେ ତାଙ୍କର ଏହି ପ୍ରକ୍ରିୟାକୁ ଲକ୍ଷ୍ୟ କରିବାକୁ ଲାଗିଲେ । ସେବେକାର ଘଟଣାକୁ ବର୍ଣ୍ଣନା କରି ସେ ଲେଖିଛନ୍ତି, 'କ୍ରିଷ୍ଣମୂର୍ତ୍ତିଙ୍କର ମୁହଁଟି କେମିତି ଅଦ୍ଭୁତ ଭାବରେ ବଦଳି ଯାଇଥିଲା, ଆଖି ଯୋଡ଼ିକ ବିସ୍ତାରିତ ହୋଇ ଅତି ଗଭୀର ଦିଶୁଥିଲା ଓ ତହିଁରୁ ଏକ ଅଦ୍ଭୁତ, ପ୍ରଚଣ୍ଡ ତେଜ ନିଃସୃତ ହେଉଥିଲା । ଓଃ, ସେ ଗୃହାଣୀରେ କ'ଣ ଯେ ଥିଲା, ସେ କଥା ମୁଁ ଭାଷାରେ ବର୍ଣ୍ଣନା କରି ପାରିବି ନାହିଁ । ମନେ ହେଉଥିଲା, ଯେପରି ଅନ୍ୟ ଏକ ଜଗତରୁ, ଅନ୍ୟ ଏକ ସ୍ତରରୁ ଏକ ଅସୀମ, ଦିବ୍ୟ ଶକ୍ତି ଆସି ସେଇଠି ଉଭା ହୋଇଛି । ଏହି ସମୟରେ ଅଦ୍ଭୁତ ଶୂନ୍ୟତା ଓ ପ୍ରାଚୁର୍ଯ୍ୟରେ ସେ ସ୍ଥାନଟି ଭରି ଉଠିଥିଲା ।' ସ୍କାରଭେଲଙ୍କ ଉପସ୍ଥିତିରେ ଏ ପ୍ରକ୍ରିୟା ବାରମ୍ବାର ଦେଖା ହେଉଥିଲା ଓ ପୂର୍ବଭଳି ସେ ଅନେକ ସମୟରେ ଶରୀରରୁ ବାହାରି ଯାଉଥିଲେ । ମାତ୍ର କ୍ରିଷ୍ଣମୂର୍ତ୍ତିଙ୍କ କଥା ମାନି ସେହି ସମୟଗୁଡ଼ିକ ସେ ବଡ଼ ଯତ୍ନ ସହକାରେ ତାଙ୍କୁ ଜଗି ବସୁଥିଲେ ଓ କେହି ଯେପରି ତାଙ୍କ ନିକଟକୁ ନ ଆସନ୍ତି ବା ତାଙ୍କୁ ସ୍ପର୍ଶ ନ କରନ୍ତି, ସେତିକି ଦେଖୁଥିଲେ ।

ଅଗଷ୍ଟ ୧୩ ତାରିଖରେ ସାନେନ୍ ସମ୍ମିଳନୀ ଶେଷ ହେଲା । ତାହା ପରେ ପରେ ସେହିଠାରେ ପ୍ରସ୍ତାବ କ୍ରମେ 'ସାନେନ କମିଟି' ନାମରେ ଏକ ନୂତନ କମିଟି ଗଠିତ ହୋଇ ପ୍ରତିବର୍ଷ ଜୁଲାଇ-ଅଗଷ୍ଟ ମାସକୁ ଏକ ବାର୍ଷିକ କାମ୍ପର ଆୟୋଜନ କରାଯିବାକୁ ନିଷ୍ପତ୍ତି ନିଆଗଲା । ସେହି ବର୍ଷ ଠାରୁ କ୍ରିଷ୍ଣମୂର୍ତ୍ତି ନିୟମିତ ସାନେନର ବାର୍ଷିକ

କାର୍ଯ୍ୟରେ ଯୋଗ ଦେଇ ଭାଷଣ ଦେବାକୁ ଆରମ୍ଭ କଲେ । ଏଣେ ରାଜଗୋପାଲଙ୍କୁ ବାଦ ଦେଇ ଏଭଳି ଏକ ନୂଆ କମିଟି ଗଠନ ହୋଇଥିବା କଥାଟା ଯେତେବେଳେ ରାଜଗୋପାଲଙ୍କ କାନରେ ପଡ଼ିଲା, ସେ ରାଗରେ ତାତି ଉଠିଲେ । ତାଙ୍କର ଭୟ ହେଲା, କାଳେ କୃଷ୍ଣମୂର୍ତ୍ତି ଉହାଇ ସହିତ ସବୁ ସମ୍ପର୍କ କାଟି ଅଲଗା ହୋଇଯିବେ ଓ ତାଙ୍କର ଅଧିକାରକୁ ଉପେକ୍ଷା କରିବେ । ମାତ୍ର ବାସ୍ତବରେ କୃଷ୍ଣମୂର୍ତ୍ତିଙ୍କର ସେଭଳି କୌଣସି ଉଦ୍ଦେଶ୍ୟ ନ ଥିଲା । ତେଣୁ ସାନେନ କମିଟି ଗଠନ ହେବା ପରେ ମଧ୍ୟ ସେ ରାଜଗୋପାଲଙ୍କର ଅଧିକାରକୁ ସମ୍ମାନ ଜଣାଇ ସାନେନ କାର୍ଯ୍ୟରେ ସଂଗୃହୀତ ସମସ୍ତ ଭାଷଣର ସତ୍ତ୍ୱ 'କୃଷ୍ଣମୂର୍ତ୍ତି ରାଇଟିଂସ୍' ସଂସ୍ଥାକୁ ଯଥାରୀତି ପ୍ରଦାନ କଲେ ।

ଗ'ଷ୍ଟାଡ୍‌ଠାରେ ଛଅ ମାସ ପାଖାପାଖି ରହିବା ପରେ ୧୯୬୧ ମସିହା ଅକ୍ଟୋବର ମାସରେ କୃଷ୍ଣମୂର୍ତ୍ତି ଭାରତକୁ ଫେରି ପ୍ରଥମେ ଋଷିଭାଲି ଗଲେ । ସେତେବେଳକୁ ଋଷିଭାଲି ସ୍କୁଲର ଛାତ୍ରଛାତ୍ରୀ ସଂଖ୍ୟା ଅନେକ ବୃଦ୍ଧି ପାଇଥିଲା । କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାର ନୂତନତ୍ୱରେ ଅନୁପ୍ରାଣିତ ହୋଇ ଭାରତ ତଥା ଭାରତ ବାହାରର ଅନେକ ବ୍ୟକ୍ତି ତାଙ୍କ ପିଲାଙ୍କର ନାମ ଋଷିଭାଲି ସ୍କୁଲରେ ଲେଖାଇଥିଲେ । ସେଥରକ କୃଷ୍ଣମୂର୍ତ୍ତି ସ୍କୁଲ ପିଲାମାନଙ୍କ ସହିତ ପ୍ରାୟ ମାସେ ଏକାଠି କଟାଇଥିଲେ ଓ ତାର ଭିତରେ ସ୍କୁଲର ଛାତ୍ରଛାତ୍ରୀ ତଥା ଶିକ୍ଷକମାନେ ନିଜ ନିଜର ଅନେକ ବ୍ୟକ୍ତିଗତ, ସାମାଜିକ ତଥା ମନସ୍ତାତ୍ତ୍ୱିକ ସମସ୍ୟା ନେଇ ତାଙ୍କ ସହିତ ଆଲୋଚନା କରିବାର ସୁଯୋଗ ପାଇଥିଲେ । ସେତିକିବେଳେ ଦିନକର ସଭାରେ ଗୋଟିଏ ପିଲା କୃଷ୍ଣମୂର୍ତ୍ତିଙ୍କୁ ମୃତ୍ୟୁ ବିଷୟରେ ପଚାରିବାରେ ସେ କହିଲେ ଯେ ଦୁଇ ପ୍ରକାରର ମୃତ୍ୟୁ ଅଛି । ସେଥିରୁ ଗୋଟିଏ ହେଉଛି ଏ ଶରୀରର ମୃତ୍ୟୁ ଓ ଅନ୍ୟଟି ଭାବନାର ମୃତ୍ୟୁ । ଯେତେବେଳେ ଏ ଦେହର ସମସ୍ତ କ୍ରିୟା ପ୍ରକ୍ରିୟା ବନ୍ଦ ହୋଇଯାଏ, ସେତେବେଳେ ଶରୀରର ମୃତ୍ୟୁ ଘଟେ । କିନ୍ତୁ ସେ ପ୍ରକାର ମୃତ୍ୟୁ ନେଇ ମଣିଷ ଭୟଭୀତ ହେଉ ନ ଥାଏ । ତା'ର ଭୟ ଥାଏ ଯେ 'ମୁଁ' ବା 'ମୋର' ବୋଲି ଯେଉଁ କଥାଟା, ସେଇଟା କାଳେ ଅନ୍ତ ଲଭିବ — 'ମୁଁ'

ବା 'ମୋର' ବୋଲି ଯେଉଁ ଭାବନା, ଯାହାକୁ ଧରି ଆମେ ବଞ୍ଚି ରହିଛୁ, ଟଙ୍କା ପଇସା ଜମାଇ ରଖିଛୁ, ଆତ୍ମୀୟ ପରିବାର ଗଢ଼ିଛୁ, ପୁଣି ନିଜେ ବଡ଼ ହେବାକୁ ବା ଜଣେ ମହାନ ବ୍ୟକ୍ତି ପାଲଟିବାକୁ ଚେଷ୍ଟା କରୁଛୁ, ସେଇ କଥାଟାରି କାଳେ ମୃତ୍ୟୁ ଘଟିବ ବୋଲି ମଣିଷ ଭୟାତୁର ଥାଏ । ତେଣୁ ମଣିଷର ଶାରୀରିକ ମୃତ୍ୟୁ ଠାରୁ ଏହି 'ମୁଁ' ବୋଲି ବସ୍ତୁଟିର ମୃତ୍ୟୁ ନିଶ୍ଚିତ ରୂପେ ଭିନ୍ନ ଓ ଅଲଗା ।

କ୍ରିଷ୍ଣମୂର୍ତ୍ତିଙ୍କ ଦର୍ଶନରେ ମୃତ୍ୟୁର ତାତ୍ପର୍ଯ୍ୟକୁ ଉପଲବ୍‌ଧି କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତାଙ୍କ ମତରେ ଏହି ମୃତ୍ୟୁ ହେଉଛି ଭାବନାର ବିଲୁପ୍ତି । ଏହା ଏଭଳି ଏକ ନୂତନତ୍ୱ ଯହିଁରେ କି ଭାବନାର ଲେଶ ସୁଦ୍ଧା ନ ଥାଏ । ତେଣୁ ଯେଉଁ ବ୍ୟକ୍ତି ସନ୍ନ୍ୟାସୀ ସାଜି ଗେରୁଆ ବସ୍ତ୍ର ପରିଧାନ କରେ ବା ଜୀବନ ଠାରୁ ଖସି ପଳାଇବା ଉଦ୍ଦେଶ୍ୟରେ ଲମ୍ବା ଦାଡ଼ି ଛାଡ଼ି ବେଜ୍ ମନ୍ଦିରକୁ ଯାଏ ତାକୁ କୌଣସିମତେ ଧାର୍ମିକ ବୋଲି କୁହାଯାଇ ପାରିବ ନାହିଁ । ବରଂ ଯେଉଁ ବ୍ୟକ୍ତି ମନସ୍ତାତ୍ତ୍ୱିକ ସ୍ତରରେ ପ୍ରତି ମୁହୂର୍ତ୍ତରେ ମୃତ୍ୟୁ ବରଣ କରେ ଓ ପୁଣି ସଦ୍ୟ ଜନ୍ମ ନିଏ ସେ ହେଉଛି ପ୍ରକୃତରେ ଧାର୍ମିକ । କାରଣ, ସେଭଳି ବ୍ୟକ୍ତିର ମନଟା ସଦା ସତେଜ, ସଦା ତରୁଣ ଓ ନିରୀହ ଥାଏ । ତାଙ୍କ ଭାଷାରେ, "ତମ ମନ ତଳେ ଲୁଚି ରହିଥିବା ସୁଖ, ଦୁଃଖ, ଆମୋଦ, ଆଉ ଯେତେ ଯାହା, ସେସବୁ ନିକଟରେ ନିଜକୁ ମରିବାକୁ ଛାଡ଼ି ଦିଅ । ତେବେ ଯାଇ ଜାଣିବ ଯେ ଜୀବନଟାକୁ ତମେ ନଷ୍ଟ କରି ଦେଉ ନାହିଁ । ଆଉ ସେତିକିବେଳେ ଜାଣି ତମେ ଏଭଳି ଏକ ଅଭାବନୀୟ ପଦାର୍ଥର ସନ୍ଧାନ ପାଇବ ଯାହା କି ଆଉ କେହି କେବେ ଲାଭ କରି ନ ଥିବ ।"

ଥରେ କାଶ୍ମୀରରେ ଥିବାବେଳେ କ୍ରିଷ୍ଣମୂର୍ତ୍ତିଙ୍କୁ ଦେଖା କରିବା ପାଇଁ ଦଳେ ସାଧୁ ଆସିଥିଲେ । ହିମାଳୟର କେଉଁ ଜନମାନବ ଶୂନ୍ୟ ପର୍ବତ କନ୍ଦରର ନିକାଞ୍ଚନତା ଭିତରେ ରହି ସେମାନେ ଅନେକ ଗୁଡ଼ାଏ ବର୍ଷ ବେଦାଭ୍ୟାସ ଓ ଜପତପରେ କଟାଇ ଦେଇଥିଲେ । ବାହାର ଜଗତର ଗୀତନୀତ ଆମୋଦ ପ୍ରମୋଦ ବା ଲୋକମାନଙ୍କ ସହିତ ସେମାନଙ୍କର କୌଣସି ସମ୍ପର୍କ ନ ଥିଲି କହିଲେ ଚଳେ । କ୍ରିଷ୍ଣମୂର୍ତ୍ତିଙ୍କ

ନିକଟରେ ନିଜର ପରିଚୟ ଦେଇ ସାଧୁମାନେ କହିଲେ ଯେ ସେମାନେ ବହୁ ବର୍ଷ ଧରି ଏମିତି ଏକା ଏକା ରହି ଆସୁଛନ୍ତି; ନା କେହି ତାଙ୍କୁ ଦେଖା କରିବାକୁ ଆସନ୍ତି, ନା ସେମାନେ କାହାରିକୁ ଦେଖିବାକୁ ଯାଆନ୍ତି । ବରଫଢେଙ୍କା ଗିରି ଗହ୍ୱରରେ ସେମାନେ ସମ୍ପୂର୍ଣ୍ଣ ଏକାକୀ ଥାଇ ଜୀବନ ବିତାନ୍ତି । କୃଷ୍ଣମୂର୍ତ୍ତି ସେମାନଙ୍କଠାରୁ ସବୁ ଶୁଣି ତାଙ୍କୁ ପଚାରିଲେ, "ସତରେ କ'ଣ ଆପଣମାନେ ଏକାକୀ ? ନା, କେବଳ ଶାରୀରିକ ସ୍ତରରେ ଜନସମାଜଠାରୁ ଦୂରେଇ ରହି ଚଳୁଛନ୍ତି ?" ସାଧୁମାନେ ତାଙ୍କ କଥାର ମର୍ମ ବୁଝି ପାରିଲେ ନାହିଁ । ତାଙ୍କ କହିବାର ଉଦ୍ଦେଶ୍ୟ ଥିଲା ଯେ ଲୋକ ଗହଳଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହୁଥିଲେ ସୁଦ୍ଧା ସେମାନେ ଆପଣାର ଜପତପ, ଧ୍ୟାନ, ବେଦ ଉପନିଷଦ ଓ ଜୀବନର ସକଳ ଅନୁଭୂତି ଏବଂ ସଂଗୃହୀତ ଜ୍ଞାନ ଗରିମାକୁ ନେଇ ବଞ୍ଚୁଥିଲେ । ସ୍ମୃତିବଦ୍ଧତାର ବୋଝରୁ ସେମାନେ ଆପଣାକୁ କୌଣସି ପ୍ରକାରେ ହେଲେ ମୁକୁଳାଇ ପାରି ନ ଥିଲେ । କିନ୍ତୁ ସେଭଳି ବଞ୍ଚିବା ତ ଏକାକୀ ବଞ୍ଚିବା ନୁହେଁ । ଗେରୁଆ ପିନ୍ଧିବାର ଅର୍ଥ ସଂସାର ତ୍ୟାଗ ନୁହେଁ । ଏ ପୃଥିବୀ ତ' ସେମାନଙ୍କ ଜୀବନର ଏକ ଅଂଶ; ତେଣୁ ତାକୁ ବାଦ ଦେଇ ବଞ୍ଚିବା କଥାଟା ହିଁ ଅସମ୍ଭବ । ଘର-ଖଣ୍ଡିଏ ବା ନିଜର ଗାଈ କେତୋଟିକୁ ତ୍ୟାଗ କରି ଚାଲି ଆସିବାଟା ତ ବଡ଼ ସହଜ । ମାତ୍ର ନିଜର ବଂଶାନୁକ୍ରମିକତା, ପ୍ରଥା ପରମ୍ପରା ଓ ସ୍ମୃତିବଦ୍ଧତାର ବୋଝକୁ ପରିତ୍ୟାଗ କରିବା ଲାଗି ମଣିଷଠାରେ ଗଭୀର ଜିଜ୍ଞାସା ଥିବା ଆବଶ୍ୟକ । କିନ୍ତୁ ସେହି ଜିଜ୍ଞାସା କେବେହେଲେ ଏକ ଧନ୍ଦାଳିଆ ମନରେ ଦେଖା ଦେଇ ପାରିବ ନାହିଁ । କୃଷ୍ଣମୂର୍ତ୍ତି କହୁଥିଲେ ଯେ ମଣିଷ ମାତ୍ରକେ ତା'ର ଘର ସଂସାର, ଚାକିରି, ପଢ଼ାପଢ଼ି, ଭଗବତ ଚିନ୍ତା, ରନ୍ଧାବଢ଼ା ବା ତାକୁ ସୁଖ ଲାଗୁଥିବା ସିନେମା, ଖେଳବୁଲ ଇତ୍ୟାଦିରେ ବୁଡ଼ି ରହିବାକୁ ଭଲ ପାଏ । କିନ୍ତୁ ଯେଉଁ ମୁହୂର୍ତ୍ତରେ ମନଟା ସେଥିରୁ କିଛି ଗୋଟାଏ 'ଖେଳନା' ଧରିବାକୁ ନ ପାଏ, ପୁରାପୁରି ନିଃସଙ୍ଗ ହୋଇଯାଏ ସେତେବେଳେ ସେ ବିରକ୍ତ ହୋଇଉଠେ । ଦୈନନ୍ଦିନ କାର୍ଯ୍ୟ ଭଳି ମନକୁ ବି ଗୋଟାଏ ଧରାବନ୍ଧା

ଭାବନାର ରୁଟିନ୍‌ରେ ବାନ୍ଧିଦେବା ବଡ଼ ସହଜ । ଆଜି ଆମ ଭିତରୁ ଅଧିକାଂଶ ଠିକ୍ ତାହା ହିଁ କରିଥାନ୍ତି । କିନ୍ତୁ ଏପରି କରିବା ଦ୍ୱାରା ମନଟା ଖୁବ୍ ଶୀଘ୍ର ତା'ର ସତେଜତା ହରାଇ ବସେ, ଶୁଷ୍କ ଓ ନୀରସ ପାଲଟିଯାଏ । ଯେଉଁ ମନ ସାଦା ସିଧା, ଖୋଲା, ଯେଉଁ ମନ ପ୍ରତି ମୁହୂର୍ତ୍ତରେ ନିଜର ସୁରକ୍ଷା, ନିରାପତ୍ତା କି ଭୟ ଚିନ୍ତା ନେଇ ଆଉଟୁ ପାଉଟୁ ହେଉ ନ ଥାଏ, ବା ଯେଉଁଥିରେ ଗୋଟିକୁ ଆଉଟି ସାଥିରେ ତୁଳନା କରିବାର ଅହରହ ପ୍ରକ୍ରିୟା ଚାଲି ନ ଥାଏ, ସେହି ମନ ହିଁ ହେଉଛି ସୃଜନଶୀଳ ଓ ବାସ୍ତବରେ ଦରଦୀ, ସଚେତନ ମନ ।

ନିଜ ଭିତରୁ ନିଜକୁ ଖୋଜି ବାହାର କରିବା ଓ ନିଜର ଭାବନା, ଆବେଗ ଉଚ୍ଛ୍ୱାସ, ପ୍ରତିକ୍ରିୟା ଆଦିକୁ ଚିହ୍ନିବା କୃଷ୍ଣମୂର୍ତ୍ତିଙ୍କ ଦର୍ଶନତତ୍ତ୍ୱର ଏକ ଅତି ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ସେ କହୁଥିଲେ ଯେ ନିଜକୁ ନିଜେ ଆବିଷ୍କାର କରିବାଟା ହିଁ ପ୍ରଜ୍ଞାର ପ୍ରଥମ ସୂଚନା । ଏଭଳି ଏକ ଆତ୍ମ-ଆବିଷ୍କାର ପାଇଁ ମଣିଷ ଠାରେ ଅତ୍ୟଧିକ ପରିମାଣରେ ସଜାଗତା ରହିଥିବା ଦରକାର, ତା'ର ମନ ସକଳ ପ୍ରକାର ବିଶ୍ୱାସ, ବିଧିବଦ୍ଧ ଆଦର୍ଶ ଓ ପୂର୍ବ ସ୍ମୃତିରୁ ମୁକ୍ତ ରହିଥିବା ଦରକାର । ଥରେ ଭାରତରେ ଥିବାବେଳେ ତାଙ୍କର ଜଣେ ପରିଚିତ ମହିଳା ତାଙ୍କ ନିକଟକୁ ଆସିଥିଲେ । ମହିଳା ଜଣକ ସମ୍ଭ୍ରାନ୍ତ ପରିବାରର ଓ ବେଶ୍ ଶିକ୍ଷିତା ମଧ୍ୟ ଥିଲେ । କିନ୍ତୁ ତାଙ୍କର ସବୁଠାରୁ ବଡ଼ ଦୁଃଖ ଥିଲା ଯେ ତାଙ୍କର ପିଲାପିଲି ନ ଥିଲେ । ଆଉ ଡାକ୍ତର ମଧ୍ୟ ତାଙ୍କୁ ଏକଥା ଜଣାଇ ଦେଇଥିଲେ ଯେ ସେ କୌଣସି ଦିନ ମାତୃତ୍ୱ ଲାଭ କରି ପାରିବେ ନାହିଁ । କୃଷ୍ଣମୂର୍ତ୍ତିଙ୍କୁ ଦେଖା କରି ନିଜର ମନ କଥା ଜଣାଇବା ସଙ୍ଗେ ସଙ୍ଗେ ମହିଳା ଜଣକ ସେଇଠି ଝରଝର ହୋଇ କାନ୍ଦିବାକୁ ଲାଗିଲେ । ଆଖିରୁ ତାଙ୍କର ଲୁହ ପୋଛି ଦେଇ କିଛି ସମୟ ପରେ କୃଷ୍ଣମୂର୍ତ୍ତି କହିଲେ, "ମାତୃତ୍ୱ ହେଉଛି ନାରୀର ଏକ ଆଦିମ ପ୍ରବୃତ୍ତି । ଉଚ୍ଚାଭିଳାଷ, ଉଚ୍ଚାକାଂକ୍ଷା ବା କିଛି ଗୋଟାଏ ବନିଯିବାର ପ୍ରବୃତ୍ତି ଭଳି କଥାଟିଏ ଏହା ନୁହେଁ । ମାତୃତ୍ୱ ଏକ ନିରାଟ ନିଛକ, ସ୍ୱାଭାବିକ ପ୍ରବୃତ୍ତି ଅଟେ । ଗୋଟିଏ ନାରୀଠାରେ

ଯେପରି ତା'ର ଶରୀର ଧୀରେ ଧୀରେ ମେଲି ଫୁଟି ଉଠେ, ତା'ର ଭାବାବେଗ ଉଚ୍ଛ୍ୱାସ ପ୍ରଭୃତି ମଧ୍ୟ ଠିକ୍ ସେହି ପରି ମେଲି ଫୁଟି ଉଠିଥାଏ । କିନ୍ତୁ କହିଲ ଦେଖି, ତମ ଜୀବନରେ ଏହି ବାସ୍ତବତାଟିକୁ ତମର ଶରୀର ସ୍ୱୀକାର କରି ନେଇଛି କି......ବା ତମର ମନ ଏ ସତ୍ୟକୁ ମାନି ନେଇଛି କି ?............ ଏହା ତମ ଶରୀର ଉପରେ କୌଣସି ଦାଗ ବା ଚିହ୍ନ ଛାଡ଼ି ଯାଇଛି କି ? ପ୍ରକୃତରେ ଯଦି ତମ ଶରୀର ଏ ସତ୍ୟକୁ ଗ୍ରହଣ କରି ନେଇଥାଏ ତେବେ ତ ଶରୀର ଓ ମନ ଭିତରେ ଦ୍ୱନ୍ଦ୍ୱର କୌଣସି ପ୍ରଶ୍ନ ହିଁ ନାହିଁ । ......ହେଲେ, ତମେ ତାହା ଜାଣିବ କିପରି ? ଏକ ଗଭୀର ଆକାଂକ୍ଷା, ବା ଅଭିଳାଷ ତମ ଚେତନାରେ ଏବେ ବି ଲୁକ୍କାୟିତ ଅବସ୍ଥାରେ ରହିଛି କି ନାହିଁ ବୋଲି ତମେ ଜାଣିବ କେମିତି ? ଏଥିପାଇଁ ତମକୁ ତାହା ଉପରଲୁ କାଢ଼ି ଫୁଟାଇବାକୁ ପଡ଼ିବ, ତା'ର ଗାଥାକୁ ଶୁଣିବାକୁ ପଡ଼ିବ ।"

ଏକଥା କହିବାର କିଛି ଦିନ ପରେ, ଥରେ ସେହି ଭଦ୍ରମହିଳା ଜଣକ କୃଷ୍ଣମୂର୍ତ୍ତିଙ୍କ ସହିତ ଭ୍ରମଣରେ ଯାଉଥିଲେ । ବାଟରେ ସେମାନେ ଦେଖିଲେ ଗୋଟିଏ ଗର୍ଭବତୀ ମହିଳା ତା'ର ଛୁଆଟିକୁ ଧରି ବାଟ ଚାଲିଛି । ସେ ଦିହିଁଙ୍କୁ ଦେଖାଇ କୃଷ୍ଣମୂର୍ତ୍ତି କହିଲେ, "ହେଇ, ଚାହିଁ ଦେଖ ସେଇ ସ୍ତ୍ରୀ ଲୋକଟି ଆଡ଼େ, ଆଉ ତା'ର ପିଲାଟିକୁ ବି ଭଲ କରି ଲକ୍ଷ୍ୟ କର । ତାଙ୍କୁ ଦେଖି ତମ ଅନ୍ତରରେ ଯେଉଁ ଭାବ ଉଠୁଛି ସେଥି ପ୍ରତି ଲଜ୍ଜା ବୋଧ କର ନାହିଁ କି ବୁଦ୍ଧି ଖଟାଇ ଭଲ ମନ୍ଦ ବିଚାର କରି ବସ ନାହିଁ । ଖାଲି ତମ ମନ ଭିତରର ପ୍ରତିକ୍ରିୟାକୁ ଚୁପ୍‌ଚାପ୍ ଶୁଣିଯାଅ । ଠିକ୍‌ଠାକ୍ କରି ପ୍ରତିଟି ଅନୁକ୍ରିୟା ପ୍ରତି ସଚେତ ରହ । ତାକୁ ମୂଳରୁ ଶେଷ ଯାକେ ଅନୁଭବ କର । ......ତମର ନିଃସଙ୍ଗତା, ହତାଶା, ପୁଣି ମନରେ ଉଠୁଥିବା ତୁଳନା — ତାକୁ ସବୁ ଶୁଣିବାକୁ ଚେଷ୍ଟା କର । ଦେଖିବ ଯଦି ତମେ ଏମିତି ଖାଲି ଶୁଣି ଚାଲିବ, ତେବେ ତମଠାରେ ନିଶ୍ଚୟ କିଛି ଗୋଟାଏ ଘଟିବ, ଆଉ ବ୍ୟକ୍ତିଗତ ଭାବେ ମାତୃତ୍ୱରୁ ବଞ୍ଚିତ ହୋଇ ଥିବାରୁ ତମର ସେ ଯେଉଁ ଭାବନା, ସେ କାହିଁ କୁଆଡ଼େ ନିଃଶେଷ ହୋଇଯିବ ।"

# କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍

ଭାରତରେ ହେଉ କି ଆଧୁନିକ ପାଶ୍ଚାତ୍ୟ ସମାଜରେ ହେଉ, ମଣିଷ ମାତ୍ରକେ ସମାନ । ତା'ର ବାହାରଆ ଭଦ୍ରାମି, ବେଶଭୂଷା ଓ ଚାଲି ଚଳନର ପରଦା ଆଡ଼େଇ ଭିତରକୁ ଚାହିଁଲେ ଦେଖାଯିବ ଯେ ମନସ୍ତାତ୍ତ୍ୱିକ ସ୍ତରରେ ସେ ଅନ୍ୟମାନଙ୍କ ଠାରୁ କେଉଁ ଗୁଣରେ ହେଲେ ଭିନ୍ନ ନୁହେଁ । ଅନ୍ତରଟା ତା'ର ସଦାବେଳେ ଖାଲି ନାନା ସମସ୍ୟା ନେଇ ଧନ୍ଦ ହେଉଥାଏ, କାମନା ବାସନାରେ ଜଳୁଥାଏ; ଭୟ ଓ ଅନିଶ୍ଚିତତାରେ ସାଙ୍କୁଡ଼ି ହୋଇ ରହିଥାଏ । ଆଉ ତା'ର ଭିତରେ ସେ ଅଖତର କୋଉ ସୁଖ ଆମୋଦଟିକକୁ, ନ ହେଲେ କୋଉ ମାନସିକ କ୍ଷତକୁ ଉଖାରି ଉଖାରି ବଞ୍ଚିବାରେ ଲାଗିଥାଏ । ଏଥିପାଇଁ ମଣିଷ ତା' ସମାଜର ଦୋଷ ବାଛି ବସେ, ତା'ର ଯାଇ ପଡ଼ଶାଙ୍କୁ ଦାୟୀ ମନେ କରେ, ସମାଜର ସମଗ୍ର ଢାଞ୍ଚାକୁ ତ୍ରୁଟିପୂର୍ଣ୍ଣ ମନେ କରି ତା'ର ସଂସ୍କାର ଲୋଡ଼େ । କିନ୍ତୁ ଏ ସମାଜଟା ପ୍ରକୃତରେ କ'ଣ ? ଆମେ କ'ଣ ଚାହିଁଲେ ସତରେ ଏଥିରୁ ମୁକ୍ତ ହୋଇ ପାରିବା ? ଏହାକୁ ସୁନ୍ଦର କରି ଗଢ଼ି ପାରିବା ? ଏହି ପ୍ରସଙ୍ଗରେ ଦିନେ କୃଷ୍ଣମୂର୍ତ୍ତି କହିଥିଲେ "ଏ ଯେଉଁ ସମାଜରେ ଆମେ ଚଳୁଛୁ ତାହା ଆମମାନଙ୍କ ମନସ୍ତାତ୍ତ୍ୱିକ ଅବସ୍ଥାର ପରିଣାମ ମାତ୍ର । ଏ ସମାଜର ଅର୍ଥ ହିଁ ଆମେ ନିଜେ । ଆଉ ଏ ଜଗତ ବି ହେଉଛୁ ଆମେ । ଏ ଜଗତଠାରୁ ଆମେ କୌଣସିମତେ ଅଲଗା ନୋହୁଁ । କିନ୍ତୁ ଯେହେତୁ ଆମେମାନେ ନିଜେ ବିଭ୍ରାନ୍ତ ହୋଇ ପଡ଼ିଛୁ, ଆମଠାରେ ଉଚ୍ଚାକାଂକ୍ଷା, ଲୋଭ ଭରି ରହିଛି, ଆମେମାନେ କ୍ଷମତା, ପଦବୀ, ସମ୍ମାନ ଲାଭ କରିବାକୁ ବ୍ୟାକୁଳ ହେଉଛୁ, ତେଣୁ ଏ ଜଗତଟାକୁ ଆମେ ଅବିକଳ ସେହି ରୂପରେ ହିଁ ଗଢ଼ିଛୁ । ଆମେ ନିଜେ ଉଦ୍ଧତ, ଜୁଲମଖୋର, ତୁଳନାପ୍ରିୟ, ନିର୍ମମ ଓ ନୃଶଂସ ହୋଇଥିବା ହେତୁ ଆମେ ଗଢ଼ିଥିବା ଏ ସମାଜ ମଧ୍ୟ ଠିକ୍ ସେମିତି ତଉଲ ତୁଳନାରେ ଭରା, ନୃଶଂସ ଓ ନିର୍ମମ । ତେଣୁ ଆମର ସବୁ

ପ୍ରଥମ ଦାୟିତ୍ୱ ହେଉଛି ଆମ ନିଜକୁ ବୁଝିବା । କାରଣ 'ଆମେ ହିଁ' ହେଉଛୁ ଏ ଦୁନିଆ, ଏ ଜଗତ ।" × × × ×

"ତମେମାନେ ଜାଣିଛ, ଏ ପୃଥିବୀଟା ଭୟରେ କେତେ ବେଶି ଭାରାକ୍ରାନ୍ତ ହୋଇ ଯାଇଛି, ଆଉ ସେଇ ମାରାତ୍ମକ ସମସ୍ୟାଟି ଆମ ସମସ୍ତଙ୍କୁ କେମିତି ଘାରି ରଖିଛି । ତମ ବିଷୟରେ କାଳେ କେହି କିଛି ଜାଣି ପକାଇବ ବୋଲି ଭୟ, ନିଜ କଥା କାଳେ ପଦାରେ ପଡ଼ିଯିବ ବୋଲି ଭୟ, ପୁଣି ଅତୀତରେ ତମେ ଯାହା କହିଥିଲ ସେ କଥା କାଳେ ପୁଣି ପାଟିରୁ ବାହାରିଯିବ ବୋଲି ତମ ମନରେ ହବାବେଳେ ଖାଲି ଭୟ ହେଉଥାଏ; ସେହି ଭୟରେ ତମେ ଗୁନିଆ ହୋଇ ପଡ଼ — ମିଛ କହିଦିଅ । ତେଣୁ ଭୟର ଏହି ବିଶେଷ ଗୁଣ ସମ୍ପର୍କରେ ତମମାନଙ୍କର ଜାଣିବା ନିହାତି ଦରକାର । ତାହା ଛଡ଼ା ଏକଥା ମଧ୍ୟ ଜାଣିବା ଦରକାର ଯେ, ଯେ ପର୍ଯ୍ୟନ୍ତ ତମେ ଭୟ ଭିତରେ ବଞ୍ଚି ରହିଥିବ ସେ ପର୍ଯ୍ୟନ୍ତ ତମେ କେବଳ ଅନ୍ଧକାରରେ ହିଁ ଦିନ କାଟୁଥିବ । × × × × × କିନ୍ତୁ ମନେ ରଖ, ଭୟଟା ଏଭଳି ଏକ ସମସ୍ୟା ନୁହେଁ ଯାହାର କି ଆଦୌ ସମାଧାନ ହୋଇ ପାରିବ ନାହିଁ । ଯେତେବେଳେ ତମେ ନିଜର ଭୟକୁ ବୁଝିଯାଅ, ସେତେବେଳେ ସେଇ ଭୟ ସହିତ ସଂଶ୍ଳିଷ୍ଟ ପ୍ରତ୍ୟେକ ସମସ୍ୟାକୁ ମଧ୍ୟ ବୁଝିପାର । ଭୟ ଜିନିଷଟା ସମ୍ପୂର୍ଣ୍ଣ ଭାବେ ଲୋପ ପାଇଗଲେ କେବଳ ମୁକ୍ତି ସମ୍ଭବ ହୋଇଥାଏ...... ସ୍ନେହ, ପ୍ରେମ, ବା ଭଲ ପାଇବା ନିକଟରେ ପହଞ୍ଚିବାକୁ ହେଲେ ଏକ ମୁକ୍ତ ଅବସ୍ଥା ଏକାନ୍ତ ଆବଶ୍ୟକ । ଆଉ ଜାଣ, ଏ ମନ ଯେତେବେଳେ ମୁକ୍ତ ରହି, ସମ୍ପୂର୍ଣ୍ଣ ନୀରବ, ନିଶ୍ଚଳ ହୋଇଯାଏ, ସେତିକବେଳେ ଯାଇ ସେହି 'ଅସମ୍ଭବ' ଜିନିଷଟି — ଯାହାକି ପ୍ରକୃତ ଭଲ ପାଇବା — ତାହା ସମ୍ଭବ ହୋଇଥାଏ ।"

୧୯୬୪ ମସିହା ସାନେନ୍ କାମ୍ପରେ ଆଲାନ୍ ନଡ଼୍ ନାମକ ଜଣେ ଯୁବ କଳାକାରଙ୍କର କୃଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ ହୋଇଥିଲା । ସେ ଥିଲେ ଜଣେ ଦକ୍ଷ ପିଆନୋବାଦକ — ଦକ୍ଷିଣ ଆଫ୍ରିକାର

ପ୍ରିନ୍ସେଟନ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟ କରୁଥିଲେ । କୃଷ୍ଣମୂର୍ତ୍ତିଙ୍କର ଭାଷଣ ଶୁଣି ଓ ତାଙ୍କର କେତେକ ବହି ପଢ଼ି ସେ ବିଶେଷ ଆକୃଷ୍ଟ ହୋଇଥିଲେ । ପ୍ରାୟ ଦୁଇ ବର୍ଷ କାଳ ନିୟମିତ ଭାଷଣ ଶୁଣିବା ପରେ ଦିନେ ସେ ତାଙ୍କୁ ବ୍ୟକ୍ତିଗତ ଭାବେ ଦେଖା କରି ତାଙ୍କ ପାଇଁ କାର୍ଯ୍ୟ କରିବାକୁ ଆଗଭର ହେଲେ । ଯୋଗକୁ ସେତିକିବେଳେ କୃଷ୍ଣମୂର୍ତ୍ତିଙ୍କର ଜଣେ ସେକ୍ରେଟାରୀ ଆବଶ୍ୟକ ଥିଲା । ତେଣୁ ଆଲାନ ନଡ଼ ସଙ୍ଗେ ସଙ୍ଗେ ନିଜର ଅଧ୍ୟାପକ ଚାକିରୀ ଛାଡ଼ି ସ୍ୱଳ୍ପ ବେତନରେ ଏହି ନୂତନ ଦାୟିତ୍ୱ ତୁଲାଇବାକୁ ପ୍ରସ୍ତାବ ଦେଲେ ଏବଂ ସେହି ଦିନଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ କୃଷ୍ଣମୂର୍ତ୍ତି ଇଉରୋପରେ ଥିବା ସମୟତକ ସେ ତାଙ୍କର ସହିତ ବିଭିନ୍ନ ସ୍ଥାନ ଗସ୍ତ କରି ତାଙ୍କର ଅଫିସ ସମ୍ପର୍କୀୟ କାର୍ଯ୍ୟରେ ସାହାଯ୍ୟ କରିବାରେ ଲାଗିଲେ । ଆଲାନ ନଡ଼ଙ୍କ ଭଳି ମେରୀ ଜିମ୍ବାଲିଷ୍ଟ ନାମରେ ଆଉ ଜଣେ ସମ୍ଭ୍ରାନ୍ତ ବଂଶୀୟା ଆମେରିକୀୟ ମହିଳା ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାରେ ଅତିଶୟ ଆକୃଷ୍ଟ ହୋଇ ତାଙ୍କ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରି ଦେଇଥିଲେ । କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାର ପ୍ରସାର ଦିଗରେ ଆବଶ୍ୟକୀୟ ଅଫିସ କାର୍ଯ୍ୟ ତୁଲାଇବା ସଙ୍ଗେ ସଙ୍ଗେ ସେ ଅନେକ ସମୟରେ କୃଷ୍ଣମୂର୍ତ୍ତିଙ୍କ ସହିତ ବିଭିନ୍ନ ସ୍ଥାନ ଗସ୍ତ ମଧ୍ୟ କରୁଥିଲେ । ୧୯୭୫ ମସିହା ନଭେମ୍ବର ମାସରେ ଏହି ଦୁଇ ବନ୍ଧୁ କୃଷ୍ଣମୂର୍ତ୍ତିଙ୍କ ସହିତ ଭାରତ ଆସିଲେ । ଭାରତୀୟ ଚଳଣି ସାଙ୍ଗରେ ସମ୍ପୂର୍ଣ୍ଣ ଅନଭ୍ୟସ୍ତ ଥିବା ହେତୁ ସେ ଦିହିଁଙ୍କର ରହିବାରେ ଯେପରି କୌଣସି ଅସୁବିଧା ନ ହୁଏ, ସେ ଦିଗରେ କୃଷ୍ଣମୂର୍ତ୍ତି ବଡ଼ ତତ୍ପର ଥିଲେ । ତେଣୁ ରାଜଘାଟ ଠାରେ ସେଇ ଦିହିଁଙ୍କର ରହିବାର ସମସ୍ତ ବନ୍ଦୋବସ୍ତ କରିବାକୁ ବିଶେଷ ଅନୁରୋଧ କରି ସେ ବହୁ ପୂର୍ବରୁ ମାଧବାଚାରୀଙ୍କ ପାଖକୁ ଚିଠି ଦେଇଥିଲେ । ମାତ୍ର ରାଜଗୋପାଲଙ୍କର ବିଶ୍ୱସ୍ତ ବନ୍ଧୁ ମାଧବାଚାରୀ କେତେକ ନିର୍ଦ୍ଦିଷ୍ଟ କାରଣବଶତଃ କୃଷ୍ଣମୂର୍ତ୍ତିଙ୍କ ଅନୁରୋଧକୁ କୌଣସି ଗୁରୁତ୍ୱ ଦେଲେ ନାହିଁ । ଯାହି ତାହି କରି ଦୁଇ ବଖରା ସଜାଡ଼ି ଦେଇ ସେ ଚୁପ୍ ହୋଇ ବସିଗଲେ । ଫଳରେ ଭାରତକୁ ଆସି ବିଦେଶୀ

ଅନ୍ତତଃ ଦ୍ୱୟ ଶୋଇବା, ଗାଧୋଇବା, ଓ ପାଇଖାନା ଯିବାରେ ଘୋର ଅସୁବିଧାର ସମ୍ମୁଖୀନ ହେଲେ । ଏକଥା ଯେତେବେଳେ କୃଷ୍ଣମୂର୍ତ୍ତି ଜାଣିବାକୁ ପାଇଲେ ସେ ଭୀଷଣ ମର୍ମାହତ ହେଲେ । ମାତ୍ର ପ୍ରତିକାର ପାଇଁ ମାଧବାଚାରୀଙ୍କୁ ଯେତେ ଅନୁରୋଧ କଲେ ସୁଦ୍ଧା ସେ ଏ ଦିଗରେ ଆଦୌ ଦୃଷ୍ଟି ଦେଲେ ନାହିଁ । ନିରୁପାୟ ହୋଇ କୃଷ୍ଣମୂର୍ତ୍ତି ଚୁପ୍ ରହିଲେ । ବୋଧହୁଏ ରାଜଗୋପାଲ ଓ କୃଷ୍ଣମୂର୍ତ୍ତିଙ୍କ ମଧ୍ୟରେ ମନୋମାଳିନ୍ୟ ମାଧବାଚାରୀଙ୍କର ଉଦାସୀନତାର ଏକ ପ୍ରଧାନ କାରଣ ଥିଲା ।

ଭାରତରୁ ଫେରି କୃଷ୍ଣମୂର୍ତ୍ତି ୧୯୬୬ ମସିହା ଅକ୍ଟୋବର ମାସକୁ ଓହାଇରେ ପହଞ୍ଚିଲେ । ମାତ୍ର ସେଠାରେ ମଧ୍ୟ ରାଜଗୋପାଲଙ୍କ ଅସହିଷ୍ଣୁ ମନୋଭାବ ହେତୁ ପରିବେଶ ସେମିତି ତିକ୍ତ ଥିଲା । ଯଦିଓ ଦୀର୍ଘ ପାଞ୍ଚ ବର୍ଷ ଧରି ସେ ତାଙ୍କର ପ୍ରିୟ ଓହାଇକୁ ଆସି ନ ଥିଲେ ତଥାପି ସେଠାରେ ପାଦ ଦେବା ପରେ ପରେ ରାଜଗୋପାଲଙ୍କ ବ୍ୟବହାର ତାଙ୍କ ଜୀବନକୁ ପୁଣି ଅତିଷ୍ଠ କରି ପକାଇଲା । ରାଜଗୋପାଲ ସେ ପର୍ଯ୍ୟନ୍ତ ନିଜର ଜିଦରେ ସେମିତି ଅଟଳ ରହିଥିଲେ ଯେ କୃଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀର କୌଣସି ତଥ୍ୟ କୃଷ୍ଣମୂର୍ତ୍ତିଙ୍କୁ ଜଣାଇ ଦିଆଯିବ ନାହିଁ କି ୧୯୬୧-୬୨ରେ କୃଷ୍ଣମୂର୍ତ୍ତି ଲେଖିଥିବା 'ଦିନଲିପି' ବା 'ଜର୍ଣ୍ଣାଲ'ର ପାଣ୍ଡୁଲିପିକୁ ମଧ୍ୟ ତାଙ୍କ ହାତକୁ ଫେରାଇ ଦିଆଯିବ ନାହିଁ । ତାଙ୍କର ଏଭଳି ରୁକ୍ଷ ବ୍ୟବହାରରେ ଅତ୍ୟନ୍ତ ମର୍ମାହତ ହୋଇ କୃଷ୍ଣମୂର୍ତ୍ତି ଓହାଇରୁ ଫେରି ଆସିଲେ । ଯୋଗକୁ ସେତିକବେଳେ ତାଙ୍କର ଜଣେ ବନ୍ଧୁ ତଥା ସାନେନ କମିଟିର ସଦସ୍ୟ, ଜେରାଲଡ୍ ବ୍ଲକ୍ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ଶ୍ରୀଯୁକ୍ତ ବ୍ଲକ୍ କେତେକ ଓକିଲଙ୍କ ସାହାଯ୍ୟ ନେଇ ଓହାଇ ଆସି ରାଜଗୋପାଲ ଓ କୃଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରି ଜାଣିବାକୁ ପାଇଲେ ଯେ କୃଷ୍ଣମୂର୍ତ୍ତିଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ପ୍ରକାଶନୀ ସଂସ୍ଥା ସହିତ ତାଳ ଦେଇ ରାଜଗୋପାଲ ୧୯୨୯ ମସିହାରେ ଓହାଇଠାରେ 'ଓହାଇ ଷ୍ଟାର ଇନ୍‌ଷ୍ଟିଚ୍ୟୁଟ୍'

ନାମରେ ଆଉ ଏକ ଶ୍ରେଷ୍ଠ ସଂସ୍ଥା ପ୍ରତିଷ୍ଠା କରିଛନ୍ତି । ଏହା ପରେ ୧୯୫୭ ମସିହାରେ କୃଷ୍ଣମୂର୍ତ୍ତିଙ୍କ ଅଜାଣତରେ ଦିନେ ତାଙ୍କଠାରୁ ସମ୍ମତିସୂଚକ ଦସ୍ତଖତ ନେଇ ରାଜଗୋପାଲ 'କୃଷ୍ଣମୂର୍ତ୍ତି ରାଇଟିଂସ୍' ନାମରେ ଥିବା କୋଟି କୋଟି ଟଙ୍କା ଓ ଅନ୍ୟାନ୍ୟ ସମସ୍ତ ସମ୍ପତ୍ତି ନିଜର 'ଓହାଇ ଷ୍ଟାର ଇନ୍‌ଷ୍ଟିଚ୍ୟୁସନ୍'କୁ ହସ୍ତାନ୍ତର କରି ଦେଇଛନ୍ତି । ଫଳରେ ସେହି ଦିନଠାରୁ ଆଇନତଃ ରାଜଗୋପାଲ ଦୁଇଟିଯାକ ସଂସ୍ଥାର ଏକକର୍ତ୍ତୃକ ମାଲିକ ସାଜି ବସିଛନ୍ତି । ଏଣେ କୃଷ୍ଣମୂର୍ତ୍ତି, ଯେ କି ଏହି ବନ୍ଧୁଟି ଉପରେ ଅଗାଧ ବିଶ୍ୱାସରେ ସବୁ ଦାୟିତ୍ୱ ଛାଡ଼ି ଦେଇ ବସିଥିଲେ, ସେ ଦିନେ ହେଲେ ବି ଏକଥା ସନ୍ଦେହ କରି ନାହାନ୍ତି ।

ବ୍ଲାକ୍‌ଙ୍କର ଅନୁସନ୍ଧାନର ରିପୋର୍ଟ ପାଇବା ପରେ ଯାଇ କୃଷ୍ଣମୂର୍ତ୍ତି ଅବସ୍ଥାର ଗାମ୍ଭୀର୍ଯ୍ୟ ଉପଲବ୍‌ଧି କଲେ । ହେଲେ ସେତେବେଳକୁ ଅନେକ ଡେରି ହୋଇ ଯାଇଥିଲା । ତେଣୁ ବାଧ୍ୟ ହୋଇ ସେ କୃଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀରୁ ନିଜର ସମସ୍ତ ସମ୍ପର୍କ ତୁଟାଇ ଦେବାର ସିଦ୍ଧାନ୍ତ ନେଲେ ଏବଂ ଭବିଷ୍ୟତରେ ନିଜର କୌଣସି ଖର୍ଚ୍ଚ ରାଜଗୋପାଲଙ୍କ ଅଧୀନସ୍ଥ ଉକ୍ତ ସଂସ୍ଥାରୁ ଗ୍ରହଣ କରିବେ ନାହିଁ ବୋଲି ମଧ୍ୟ ଜଣାଇଦେଲେ । ସେହି ବର୍ଷ, ଅର୍ଥାତ ୧୯୬୮ ଜୁଲାଇ ୯ ତାରିଖ ଦିନ ସାନେନ ଠାରେ କୃଷ୍ଣମୂର୍ତ୍ତି ପୂର୍ବୋକ୍ତ ପ୍ରକାଶନୀ ସଂସ୍ଥାଠାରୁ ନିଜର ସମସ୍ତ ସମ୍ପର୍କ ତୁଟାଇ ଦେଇଥିବା କଥା ସର୍ବସାଧାରଣରେ ଘୋଷଣା କଲେ । ଏହାର ଅଳ୍ପ ଦିନ ପରେ, ଅଗଷ୍ଟ ମାସ ୨୮ ତାରିଖ ଦିନ ଲଣ୍ଡନଠାରେ 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍' ନାମରେ ଏକ ନୂତନ ପ୍ରକାଶନ ସଂସ୍ଥା ଗଠିତ ହେଲା । ଲଣ୍ଡନରେ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ଉପରେ ପର୍ଯ୍ୟବସିତ ଏକ ଶିକ୍ଷାନୁଷ୍ଠାନ ଗଠନ କରିବା ଏବଂ ତାଙ୍କର ଭାଷଣଗୁଡ଼ିକ ଏକତ୍ର କରି ପୁସ୍ତକ ଆକାରରେ ପ୍ରକାଶ କରିବା ଏହି ଫାଉଣ୍ଡେସନ୍‌ର ମୁଖ୍ୟ ଉଦ୍ଦେଶ୍ୟ ରହିଲା । ଉକ୍ତ ନୂତନ ସଂସ୍ଥାଟିକୁ ବ୍ୟକ୍ତିଗତ ମାଲିକାନାର ଆଶଙ୍କାରୁ ପାରୁପର୍ଯ୍ୟନ୍ତ ସୁରକ୍ଷିତ ରଖିବା ନିମନ୍ତେ କେତେକ ସ୍ୱତନ୍ତ୍ର ସର୍ତ୍ତ ମଧ୍ୟ ତହିଁରେ ସ୍ଥାନ ପାଇଲା ଏବଂ ମେରି ଲାଟେନ୍ସ ଏହାର ସେକ୍ରେଟାରୀ ରୂପେ ଅବସ୍ଥାପିତ ହେଲେ ।

ଏତଦ୍‌ବ୍ୟତୀତ ମେରୀ ଲ୍ୟୁଟେନ୍‌ସ୍, ଇଆନ୍ ହାମଣ୍ଡ୍, ଜର୍ଜ ଡିଗ୍‌ବାଇ ପ୍ରଭୃତି କେତେଜଣ ବିଶ୍ୱସ୍ତ ବନ୍ଧୁଙ୍କୁ ନେଇ ଏକ ପ୍ରକାଶନ ମଣ୍ଡଳୀ ଗଠିତ ହୋଇ ତା'ର ଜରିଆରେ ୧୯୬୮ ମସିହା ଜୁଲାଇ ମାସଠାରୁ କୃଷ୍ଣମୂର୍ତ୍ତିଙ୍କର ସମସ୍ତ ଭାଷଣ, ଆଲୋଚନା ଆଦି 'କ୍ରିଷ୍ଣମୂର୍ତ୍ତି ଫାଉଣ୍ଡେସନ୍' ଦ୍ୱାରା ନିୟମିତ ଭାବରେ ପ୍ରକାଶିତ ହେବାକୁ ଲାଗିଲା ।

ସେହି ବର୍ଷ ଡିସେମ୍ବର ମାସରେ କ୍ରିଷ୍ଣମୂର୍ତ୍ତି ଫାଉଣ୍ଡେସନର ଇଂଲଣ୍ଡ ଶାଖା ତରଫରୁ ଲଣ୍ଡନ ନିକଟବର୍ତ୍ତୀ କାଉଣ୍ଟି ହାମ୍ପସାୟାର ଠାରେ ଏକ ପୁରୁଣା ବଙ୍ଗଳା ସମେତ ପ୍ରାୟ ୩୬ ଏକର ଜମି କଣା ଯାଇ ସେଠାରେ ଇଂଲଣ୍ଡର ନୂଆ କ୍ରିଷ୍ଣମୂର୍ତ୍ତି ସ୍କୁଲ ପ୍ରତିଷ୍ଠା କରାଯିବାର ଆୟୋଜନ ଆରମ୍ଭ ହେଲା । 'ବ୍ରକ୍‌ଉଡ୍ ପାର୍କ' ନାମିତ ଉକ୍ତ ସ୍ଥାନଟି ପ୍ରାକୃତିକ ସମ୍ପଦରେ ଭରପୂର ଏକ ରମଣୀୟ ସ୍ଥଳୀ । ଉଚା ଉଚା ସିକ୍ୱୋଆ ଆଦି କେତେ ଜାତିର ବୃକ୍ଷରେ ପରିପୂର୍ଣ୍ଣ ଏହି ପାର୍କର ଗୋଟିଏ ଅଂଶରେ ଗ୍ରୀଷ୍ଟ ସଂରକ୍ଷଣାଗାରଟିଏ ଅଛି ଏବଂ ତା'ର ଅନତିଦୂରରେ ପନିପରିବା ଫସଲ ପାଇଁ ଗ୍ରୀଷ୍ଟକାଟିଆ ବଗିଚା ମଧ୍ୟ ରହିଛି ।

ଗୋଟିଏ ଉପଯୁକ୍ତ ସ୍କୁଲ ନିମନ୍ତେ ଯୋଗ୍ୟ ପ୍ରାକୃତିକ ବାତାବରଣ ଉପରେ କ୍ରିଷ୍ଣମୂର୍ତ୍ତି ବରାବର ଗୁରୁତ୍ୱ ଦେଉଥିଲେ । ଶୁଷ୍କ ମରୁଭୂମିରେ ମରୁଦ୍ୟାନଟିଏ ଯତ୍ନରେ ବଞ୍ଚାଇ ରଖିବା ଭଳି ଏହି ଉଦ୍‌ଭ୍ରାନ୍ତ ଜଗତରେ ଶିକ୍ଷାନୁଷ୍ଠାନଗୁଡ଼ିକୁ ବଞ୍ଚାଇ ରଖିବା ଲାଗି ସେ କଠୋର ପ୍ରୟାସ କରୁଥିଲେ, ଆଉ ସେଥିପାଇଁ କ'ଣ ସବୁ କରିବାକୁ ହେବ ସେକଥା ଚେତାଇ ସେ ସ୍କୁଲ ପରିଚାଳନାର ଦାୟିତ୍ୱରେ ଥିବା ଟ୍ରଷ୍ଟିମାନଙ୍କୁ ବାରମ୍ବାର ପ୍ରଶ୍ନ କରୁଥିଲେ । ବଡ଼ ଉଦ୍‌ବିଗ୍ନତାର ସହ ସେ ସେମାନଙ୍କୁ ପଚାରୁଥିଲେ, "ବିଗତ ଏହି ଚାଳିଶ ବର୍ଷ ଧରି ଆମେମାନେ କ'ଣ କରି ପାରିଛୁ କହ ? ତମେମାନେ ଆପଣା ଜୀବନକୁ ଯେ ଏଇଥିରେ ଢାଳିଦେଲ, ତମର ଅଧିକାଂଶ ସମୟ ଏଇଥିରେ ଖଟାଇଲ, ହେଲେ ପ୍ରକୃତରେ ଘଟିଛି କ'ଣ ? ମୋ କଥାରୁ ଏ ଅର୍ଥ କାଢ଼ ନାହିଁ ଯେ ତମେ ସବୁ ଯାହା କରୁଛ ତାହା ଠିକ୍ କି ଭୁଲ ବୋଲି ମୁଁ କହୁଛି । ମୁଁ ସେଭଳି କିଛି ଆଦୌ ଭାବୁ ନାହିଁ । ମୋର

ଅସଲ କଥାଟା ହେଉଛି, ଏ ବିଷୟରେ ଆମେମାନେ ବାସ୍ତବରେ କ'ଣ କରି ପାରିବା । × × × ଶିକ୍ଷାକ୍ଷେତ୍ରରେ ଏହାକୁ ମରୁଦ୍ୟାନ ସଦୃଶ ଗଢ଼ି ତୋଳିବାକୁ ଆମେ କ'ଣ କରି ପାରିବା ? ଏହାକୁ କିପରି ବାସ୍ତବରେ ଯୋଗ୍ୟ, ଉପଯୁକ୍ତ କରି ପାରିବା ?……"

ଏହି ପ୍ରସଙ୍ଗରେ ଥରେ ଋଷିଭ୍ୟାଲି ସ୍କୁଲରେ ଆଲୋଚନା କରୁ କରୁ କ୍ରିଷ୍ଣମୂର୍ତ୍ତି ହଠାତ୍ ପିଲାମାନଙ୍କୁ ପଚାରିଲେ, "ଆଚ୍ଛା ପିଲାଏ, କହିଲ ଦେଖି ତମେସବୁ ଜୀବନରେ କ'ଣ କରିବାକୁ ଚାହୁଁଛ ?" ସେଇଠୁ ବଡ଼ କ୍ଲାସ ପିଲାମାନେ ଗୋଟି ଗୋଟି କରି ଏ ପୃଥିବୀରେ ବଢ଼ି ଚାଲିଥିବା ବିଭିନ୍ନ ସମସ୍ୟା ସମ୍ପର୍କରେ ଦର୍ଶାଇ ତାରି ଉପରେ ଚର୍ଚ୍ଚା କରିବାକୁ ଆରମ୍ଭ କଲେ — କେମିତି ଆଜିକାଲିକା ଦୁନିଆରେ ଚାକିରି ଖଣ୍ଡିଏ ଯୋଗାଡ଼ କରିବା କଷ୍ଟକର ହୋଇ ପଡ଼ୁଛି, ଚାରିଆଡ଼େ ଲୋକ ସଂଖ୍ୟା ବଢ଼ିବାରେ ଲାଗିଛି, ପୁଣି ଆହୁରି କେତେ ଯେ ସମସ୍ୟା ପୂରି ରହିଛି··· । ଏତିକିବେଳେ ଦଶ ଏଗାର ବର୍ଷର ପିଲାଟିଏ ଛିଡ଼ା ହୋଇ ପଡ଼ି କ୍ରିଷ୍ଣମୂର୍ତ୍ତିଙ୍କୁ ଚାହିଁ ଓଲଟା ପ୍ରଶ୍ନ କଲା, "ପୃଥିବୀଯାକ ଯେ ଏତେ ବଡ଼ ବଡ଼ ସମସ୍ୟା ଭରି ରହିଛି, ସେଥିକୁ ଗୋଟିଏ ମାତ୍ର ପିଲା ଏକୁଟିଆ କ'ଣ ବା କରି ପାରିବ କହିଲେ !"

କ୍ରିଷ୍ଣମୂର୍ତ୍ତିଙ୍କ ଦୃଷ୍ଟି ସଙ୍ଗେ ସଙ୍ଗେ ଘୁରି ଆସି ପିଲାଟି ଉପରେ ନିବଦ୍ଧ ହୋଇଗଲା । ତାକୁଇ' ଚାହିଁ ସେ କହିଲେ — "ଚାଲ ତେବେ ଆମେ ସେହି ଛୋଟ କଥାଟିରୁ ଆରମ୍ଭ କରି ଦେଖିବା । ଏହି ମନୋରମ ଉପତ୍ୟକାର ସ୍କୁଲଟିରେ ଆଜି ଆମେସବୁ ଯେଉଁ ଏକାଠି ହୋଇଛୁ, ସେହି ଆମରିମାନଙ୍କ କଥାରୁ ହିଁ ଆରମ୍ଭ କରିବା । ଦେଖ ବାବୁ, ଯେତେବେଳଯାକେ ତମେସବୁ ଏଇଠି ଥାଅ, ସେତେବେଳଯାକେ ତମେ ତମର ସାଙ୍ଗସାଥୀ ଆଉ ଶିକ୍ଷକମାନଙ୍କ ସହିତ ସମ୍ପୃକ୍ତ ରହିଥାଅ; ସେଇଟା ହିଁ ହୋଇଥାଏ ତମର ନିଜ ଦୁନିଆ । ଆସ ତେବେ ତମରି ସେଇ ନିଜ ଦୁନିଆକୁ ନେଇ ଆରମ୍ଭ କରି 'ଦେଖିବା । ଏବେ ମତେ ଆଗ କହିଲ ଦେଖି ତମର ସେଇ ଜଣାଶୁଣା, ପରିଚିତ ନିଜଦୁନିଆ

ଜଗତକୁ ବଦଳାଇବାକୁ ତୁମେ କଣ କରି ପାରିବ ? ଟିକିଏ ଭାବି ଦେଖ ।" ସଙ୍ଗେ ସଙ୍ଗେ ପିଲାଟି ଜବାବ ଦେଲା, — "କାହିଁକି — ମୁଁ ସେମାନଙ୍କୁ ଆହୁରି ଭଲ ଭାବରେ ବୁଝିବାକୁ ଚେଷ୍ଟା କରିବି ।"

କୃଷ୍ଣମୂର୍ତ୍ତି— "ହଁ ତାହା ତ' ସତ । କିନ୍ତୁ କେବଳ ଗୋଟିଏ କଥା — ତୁମେ କେବେ କାହାରି ସାଥିରେ ମାରପିଟ କରିଛ ? କେବେ କାହାରି ଉପରେ ରାଗିଛ ?"

ପିଲା—"ହଁ, କେବେ କେମିତି ରାଗି କଳି କଜିଆ କରିଛି ।"

କୃଷ୍ଣମୂର୍ତ୍ତି— "ବାସ୍ ତେବେ ତ ତୁମେ ତା'ର ଭିତରକୁ ଚାହିଁ ଦେଖି ପାରିବ । କେଉଁ ଜିନିଷଟା ତୁମଠାରେ ଏମିତି ରାଗ ଆଣୁଛି, ସେତକ ଖୋଜି କାଢ଼ି ପାରିବ । ନା କ'ଣ କହୁଛ ?"

ପିଲା—"ସତ ଯେ, ହେଲେ ତାହା ତ' ଆଉ ସାରା ଦୁନିଆଟାକୁ ବଦଳାଇ ଦେଇ ପାରିବ ନାହିଁ ।"

କୃଷ୍ଣମୂର୍ତ୍ତି—"ସେକଥା ତୁମେ କେମିତି ଜାଣିଲ ରେ ?"

କୃଷ୍ଣମୂର୍ତ୍ତିଙ୍କର ଏ ଉତ୍ତର ସଭାରେ ବସିଥିବା ଗୋଟି ଗୋଟି କରି ସବୁ ଛାତ୍ରଛାତ୍ରୀଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ··· 'ସତରେ କ'ଣ ନିଜକୁ ବଦଳି ନେଲେ ଆମେ ଦୁନିଆଟାକୁ ବଦଳି ନେବା ? ···ଆମର ପ୍ରତ୍ୟେକଙ୍କ ଭିତରେ କ'ଣ ଏ ଜଗତଟା ପ୍ରତିଫଳିତ ହେଉଛି ? ···ମୁଁ ଯଦି ନିଜେ ବଦଳିଯିବି ତେବେ କ'ଣ ପୂରା ସମାଜଟା ଆପଣାଛାଏଁ ବଦଳିଯିବ ?' ଏକ ନୂତନ ଉପଲବ୍ଧିର ପୁଲକରେ ସମସ୍ତେ କିଛି କ୍ଷଣ ଲାଗି ନୀରବ ପାଲଟି ଯାଇଥିଲେ ।

'କୃଷ୍ଣମୂର୍ତ୍ତି ରାଇଟିଂସ୍ ପ୍ରକାଶନୀ'ଠାରୁ କୃଷ୍ଣମୂର୍ତ୍ତି ବିଚ୍ଛିନ୍ନ ହୋଇଯିବା ପରେ ଉକ୍ତ ସଂସ୍ଥାର ଆୟର ପରିମାଣ କ୍ରମଶଃ ହ୍ରାସ ପାଇବାକୁ ଲାଗିଲା । ତାହାଛଡ଼ା ଯେଉଁ ଲୋକମାନେ ଖାସ୍ କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ଉଦ୍ଦେଶ୍ୟରେ ଅର୍ଥ ସମ୍ପତ୍ତି ଆଦି ଉକ୍ତ ଅନୁଷ୍ଠାନକୁ ଦାନ କରିଥିଲେ ସେମାନେ ଏବେ ନିଜ ନିଜର ଦତ୍ତ ସମ୍ପତ୍ତିକୁ 'କୃଷ୍ଣମୂର୍ତ୍ତି

ଫାଉଣ୍ଡେସନ୍' ନାମକୁ ହସ୍ତାନ୍ତର କରିବା ଲାଗି ତତ୍ପର ହୋଇ ଉଠିଲେ । କିନ୍ତୁ ଭଲରେ ଭଲରେ ସମ୍ପତ୍ତି ହସ୍ତାନ୍ତର କରିଦେବାକୁ ରାଜଗୋପାଲଙ୍କୁ ଯେତେ ବୁଝାଇଲେ ସୁଦ୍ଧା ସେ ଆଦୌ ରାଜି ହେଲେ ନାହିଁ । ଶେଷକୁ ଅନ୍ୟ କୌଣସି ଉପାୟ ନ ଦେଖି ବାଧ୍ୟ ହୋଇ କୃଷ୍ଣମୂର୍ତ୍ତି ୧୯୭୪ ମସିହା ଜାନୁଆରୀ ମାସରେ ମେରୀ ଜିମ୍ବାଲିଷ୍ଟ ଓ ଅନ୍ୟ ଦୁଇ ଜଣ ସହକର୍ମୀଙ୍କ ସହିତ ମିଳିତ ଭାବରେ କୋର୍ଟରେ ଅପିଲ କରି ପୂର୍ବୋକ୍ତ ପ୍ରକାଶନୀ ସଂସ୍ଥାଠାରୁ ସମ୍ପତ୍ତି ଓ ନିଜର ରଚନାବଳୀର ସ୍ୱତ୍ୱ ଉଦ୍ଧାର କରିବା ପାଇଁ ଆଇନର ସହାୟତା ଲୋଡ଼ିଲେ । ଯଦିଓ ଘଟଣାଟିକୁ ବିଚାରାଳୟକୁ ନେବା ପାଇଁ କୃଷ୍ଣମୂର୍ତ୍ତିଙ୍କର ଆଦୌ ଇଚ୍ଛା ନ ଥିଲା ତଥାପି ସେ ଅନୁଭବ କଲେ ଯେ ହଜାର ହଜାର ବ୍ୟକ୍ତି ଯେତେବେଳେ ଏହି ବିପୁଳ ଅର୍ଥକୁ ତାଙ୍କ ନାମରେ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ ଉଦ୍ଦେଶ୍ୟରେ ଦାନ କରି ଯାଇଛନ୍ତି, ସେତେବେଳେ ତାହାର ତତ୍ତ୍ୱାବଧାନର ସମସ୍ତ ନୈତିକ ଦାୟିତ୍ୱ ତାଙ୍କର ଉପରେ ନ୍ୟସ୍ତ । ତେଣୁ ଖାସ୍ ସେହି କାରଣରୁ ହିଁ ସେ ଅଦାଲତର ସାହାଯ୍ୟ ନେବାକୁ ରାଜି ହେଲେ ।

କିନ୍ତୁ ରାଜଗୋପାଲ ଏପଟେ ପରିସ୍ଥିତିକୁ ଏମିତି ଅଡୁଆ ତଡୁଆ କରି ରଖିଥିଲେ ଯେ କେଉଁଟରେ ଏହାର ପୂର୍ଣ୍ଣ ସମାଧାନ ହେବାକୁ ପ୍ରାୟ ଛଅ ବର୍ଷରୁ ବେଶୀ ଲାଗିଗଲା ଆଉ ସେହି ଛଅ ବର୍ଷ କାଳ କୃଷ୍ଣମୂର୍ତ୍ତିଙ୍କୁ ଯାବତୀୟ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ମାଡ୍ରାସସ୍ଥ ବସନ୍ତ ବିହାରକୁ ରାଜଗୋପାଲ କୃଷ୍ଣମୂର୍ତ୍ତି ରାଇଟିଂସ୍ ସଂସ୍ଥାର ସମ୍ପତ୍ତି ବୋଲି ଦାବୀ କରି ବସିବାରୁ କୃଷ୍ଣମୂର୍ତ୍ତିଙ୍କ ପକ୍ଷେ ସେଠାରେ ରହିବା ଆଉ ସମ୍ଭବ ନ ଥିଲା । ତେଣୁ ସେହି କେତେ ବର୍ଷ ପାଇଁ ମାଡ୍ରାସ ଗସ୍ତ ସମୟରେ ସେ ବସନ୍ତ ବିହାର ନିକଟସ୍ଥ ଜଣେ ବନ୍ଧୁଙ୍କ ଘରେ ଅତିଥି ହୋଇ ରହିଲେ । କିନ୍ତୁ ରାଜଗୋପାଲ ସେତିକରେ ଚୁପ୍ ରହିଲେ ନାହିଁ । ଆଉ କେଉଁ ପ୍ରକାରେ କୃଷ୍ଣମୂର୍ତ୍ତିଙ୍କୁ ହଇରାଣ କରି ହେବ, ସେଇକଥା ଚିନ୍ତା କରିବାରେ ଲାଗିଲେ । ଏହାର ପ୍ରାୟ ତିନ ବର୍ଷ ପରେ, ୧୯୭୭ ମସିହା ମାର୍ଚ୍ଚ ମାସରେ ଦିନେ କୃଷ୍ଣମୂର୍ତ୍ତି ଅଚାନକ ରାଜଗୋପାଲଙ୍କ ତରଫରୁ ଗୋଟିଏ କୋର୍ଟ ସମନ ପାଇଲେ । ତାଙ୍କୁ

ଲୋକ ସମ୍ମୁଖରେ ହାସ୍ୟାସ୍ପଦ କରିବାକୁ ଜାଣିଶୁଣି ରାଜଗୋପାଲ ଏହି ସମନ ଆଦେଶଟିକୁ ସେ ଠିକ୍ ଭାଷଣ ଦେବା ଲାଗି ମଞ୍ଚ ଉପରକୁ ଉଠିବା ବେଳକୁ କରି ଜଣକ ହାତରେ ସଭାଗୃହ ଭିତରକୁ ପଠାଇଥିଲେ । ଅଭିଯୋଗ ପତ୍ରରେ ସେ କୃଷ୍ଣମୂର୍ତ୍ତିଙ୍କୁ ପ୍ରକାଶନୀ ସଂସ୍ଥା ସମ୍ବନ୍ଧୀୟ କେତେକ ମୌଖିକ ତଥା ଲିଖିତ ଚୁକ୍ତିର ଖିଲାପ କରିଥିବା ଅଭିଯୋଗରେ ଦୋଷୀ ଦର୍ଶାଇ ତାଙ୍କଠାରୁ କ୍ଷତିପୂରଣ ଦାବୀ କରିଥିଲେ । ଅପ୍ରତ୍ୟାଶିତ ଭାବରେ କୃଷ୍ଣମୂର୍ତ୍ତିଙ୍କ ନାମରେ ଏଭଳି ପାଲଟା ଅଭିଯୋଗ ଆଣିବା ପଛରେ ରାଜଗୋପାଲଙ୍କର ଦୁଇଟି ଉଦ୍ଦେଶ୍ୟ ରହିଥିଲା । ପ୍ରଥମତଃ ସେ ନିଶ୍ଚିତ ଭାବରେ ମନେ କରିଥିଲେ ଯେ ସମନ ଆଦେଶଟି ପଢ଼ି କୃଷ୍ଣମୂର୍ତ୍ତି ଭାଷଣ ଅପ୍ରସ୍ତୁତ ହୋଇ ପଡ଼ିବେ ଓ ତାଙ୍କର ଭାଷଣରେ ସେଦିନ ନିଶ୍ଚୟ ଏକ ବଡ଼ ଧରଣର ବିପର୍ଯ୍ୟୟ ହେବ । ତାହାଛଡ଼ା ଏକଥା ମଧ୍ୟ ରାଜଗୋପାଲଙ୍କ ମନକୁ ଆସିଥିଲା ଯେ ପ୍ରଶ୍ନୋତ୍ତର ଓ ଜେରା ପାଇଁ କୋର୍ଟରେ ହାଜର ହେବା ଦ୍ୱାରା ତାଙ୍କୁ ଗୋଟାଏ ବଡ଼ ଅପମାନ ହେବ ଓ ତାଙ୍କ ସୁନାମରେ ଆଞ୍ଚ ଆସିବ । କିନ୍ତୁ ସମନଟିକୁ ପଢ଼ି କୃଷ୍ଣମୂର୍ତ୍ତିଙ୍କଠାରେ କୌଣସି ପ୍ରତିକ୍ରିୟା ଦେଖା ଦେଇ ନ ଥିଲା । ତିଳେ ମାତ୍ର ବିବ୍ରତ ନ ହୋଇ ସେ ନିର୍ବିକାର ଭାବରେ ନିଜର ଭାଷଣ ଦେଇଥିଲେ ।

ରାଜଗୋପାଲ ଯାହା ଚାହିଁଥିଲେ ଶେଷକୁ ତାହା ହିଁ ହେଲା । ତାଙ୍କ ଅଭିଯୋଗର ଉତ୍ତର ଦେବା ପାଇଁ କାଲିଫର୍ଣ୍ଣିଆର ମାଲିବୁ ଠାରେ କୃଷ୍ଣମୂର୍ତ୍ତିଙ୍କୁ ଦୁଇ ଦିନ ଧରି କଚେରୀ ଗଡ଼ାରେ ଛିଡ଼ା ହୋଇ ବିଚାରକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିଲା, ଆଉ ସେ ଦୃଶ୍ୟ ଦେଖିବା ପାଇଁ ରାଜଗୋପାଲ ନିଜର ସମର୍ଥକମାନଙ୍କୁ ଧରି ଠିକ୍ ସମୟରେ ସେଠାରେ ପହଞ୍ଚି ମଧ୍ୟ ଯାଇଥିଲେ । ଓକିଲଙ୍କ ଜବାବ-ସୁଆଲ ଶେଷ ହେବା ପରେ କୃଷ୍ଣମୂର୍ତ୍ତି ବିଧିବଦ୍ଧ ଭାବରେ ଏକ ଘୋଷଣା କରି ଜଣାଇଲେ ଯେ ତାଙ୍କ ମୃତ୍ୟୁ ପରେ ରାଜଗୋପାଲ କିମ୍ବା 'କୃଷ୍ଣମୂର୍ତ୍ତି ରାଇଟିଂସ୍' ପ୍ରକାଶନୀର ତାଙ୍କ ରଚନାବଳୀ ସହିତ କୌଣସି ସମ୍ପର୍କ ରହିବ ନାହିଁ ।

ଦୀର୍ଘ ଛଅ ବର୍ଷ କାଳ ତଦନ୍ତ ଓ ଅନୁସନ୍ଧାନ ପରେ ଶେଷରେ କାଲିଫର୍ଣ୍ଣିଆ ବିଚାରାଳୟ ଦୁଇ ପକ୍ଷ ମଧ୍ୟରେ ଏକ ଆପୋଷ ମିଳାମିଶା ଆଣିବାକୁ ସକ୍ଷମ ହେଲା । ଉକ୍ତ ମୀମାଂସାର ପରିଣାମ ସ୍ୱରୂପ ରାଜଗୋପାଳ ଅନ୍ୟାନ୍ୟ ସମ୍ପତ୍ତି ସମେତ ଓହାଇ ଉପତ୍ୟକାରେ ଅଧିକାର କରି ବସିଥିବା ଜମିତକ 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ'କୁ ହସ୍ତାନ୍ତର କରିବାକୁ ବାଧ୍ୟ ହେଲେ । 'କୃଷ୍ଣମୂର୍ତ୍ତି ରାଇଟିଂସ୍' ସଂସ୍ଥାଟି ରଦ୍ଦ ହୋଇ ତା' ସ୍ଥାନରେ "କୃଷ୍ଣମୂର୍ତ୍ତି ଆଣ୍ଡ ରାଜଗୋପାଲ ଫାଉଣ୍ଡେସନ୍' ନାମରେ ଏକ ନୂଆ ସଂସ୍ଥା ଗଠିତ ହେଲା ଏବଂ ତା'ର ମୁଖ୍ୟ ହିସାବରେ ରାଜଗୋପଲ ୧୯୬୮ ଜୁଲାଇ ମାସ ପୂର୍ବର ସମସ୍ତ କୃଷ୍ଣମୂର୍ତ୍ତି-ରଚନାବଳୀର ସ୍ୱତ୍ୱାଧିକାରୀ ହୋଇ ରହିଲେ । ମାତ୍ର ରାଜଗୋପାଲଙ୍କ ଅଧୀନସ୍ଥ ଓହାଇର ସଂଗ୍ରହାଳୟରେ ଥିବା ସମସ୍ତ ପାଣ୍ଡୁଲିପି, ରେକର୍ଡ଼ ହୋଇଥିବା ଭାଷଣାବଳୀ ଓ ସମ୍ବାଦର ନକଲ ପାଇବା ଲାଗି କୃଷ୍ଣମୂର୍ତ୍ତି ତଥା 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଆମେରିକା'ର ଟ୍ରଷ୍ଟିମାନେ ପୂର୍ଣ୍ଣ ଅଧିକାର ଲାଭ କଲେ । ଦୀର୍ଘ କାଳର ଏହି ବିବାଦ ତୁଟିବା ପରେ ରାଜଗୋପାଳଙ୍କ ପରାଧୀନତାରୁ ମୁକ୍ତ ହୋଇ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ସମଗ୍ର ବିଶ୍ୱରେ ଦ୍ରୁତ ଲୋକପ୍ରିୟତା ଲାଭ କରିବାକୁ ଲାଗିଲା । ଇତି ମଧ୍ୟରେ ୧୯୭୦ ମସିହାରେ ଭାରତର ଋଷିଭ୍ୟାଲି ଟ୍ରଷ୍ଟଟି 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଇଣ୍ଡିଆ' ନାମରେ ପୁନଃ ନାମିତ ହୋଇ ସାରିଥିଲା ଓ ଶ୍ରୀମତୀ ପୁପୁଲ ଜୟକର, ନନ୍ଦିନୀ ମେହେଟା, ବାଲସୁନ୍ଦରମ୍ ଓ ସୁନନ୍ଦା ପଟବର୍ଦ୍ଧନ ପ୍ରଭୃତି ଏହାର ଟ୍ରଷ୍ଟି ନିଯୁକ୍ତ ହୋଇଥିଲେ । ସେହିଭଳି ତା'ର ବର୍ଷକ ପୂର୍ବରୁ ୧୯୬୯ ମସିହାରେ ଆମେରିକାରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଆମେରିକା, ଓ ତା' ପରେ ପରେ କାନାଡ଼ା, ସ୍ପେନ୍ ଓ ଓ୍ୱେଷ୍ଟଇଣ୍ଡିଜ୍‌ଠାରେ ମଧ୍ୟ ଫାଉଣ୍ଡେସନର ନୂଆ ନୂଆ ଶାଖାମାନ ଉଦ୍‌ଘାଟିତ ହେଲା । କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ପ୍ରଣାଳୀରେ ନୂତନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିବା ଉକ୍ତ ସଂସ୍ଥାଗୁଡ଼ିକର ମୁଖ୍ୟ ଧର୍ମ ହେଲା । ତାହାଛଡ଼ା, କୃଷ୍ଣମୂର୍ତ୍ତି ଫାଉଣ୍ଡେସନ ଇଣ୍ଡିଆକୁ ସ୍କୁଲ ପରିଚାଳନା ଦାୟିତ୍ୱ ବ୍ୟତୀତ କୃଷ୍ଣମୂର୍ତ୍ତିଙ୍କ ପୁସ୍ତକଗୁଡ଼ିକୁ ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରି ପ୍ରକାଶ କରିବା, ଭାରତ ଭିତରେ ତାଙ୍କ ପାଇଁ ଭାଷଣସଭା

ଆୟୋଜନ କରିବା ତଥା ତାଙ୍କର ଇଂରାଜୀ ପୁସ୍ତକକୁ ଭାରତରେ ଛପାଇବାର ଦାୟିତ୍ୱ ମଧ୍ୟ ପ୍ରଦାନ କରାଗଲା ।

## ଆଧ୍ୟାତ୍ମିକ ଶକ୍ତି ଓ ଉପଗୁରୁ

୧୯୬୯ ମସିହାରେ ଭାରତ ଆସି କ୍ରିଷ୍ଣମୂର୍ତ୍ତି ପ୍ରଥମେ ବମ୍ବେଠାରେ କିଛି ଦିନ କଟାଇଲେ । ସେଠାରେ ଦିନେ ସନ୍ଧ୍ୟାରେ ପୁପୁଲଜୀ, ନନ୍ଦିନୀ ମେହେତା ଓ ଅନ୍ୟ କେତେଜଣ ପରିଚିତ ବନ୍ଧୁଙ୍କ ସହିତ କଥାଭାଷା କରୁ କରୁ ହଠାତ ସେ କାହିଁ କେଉଁ ଅତୀତ ଦିନର ଘଟଣାମାନ ଗପିବାକୁ ଆରମ୍ଭ କଲେ । ନିଜର ପିଲା ଦିନ, ଆନି ବେସାନ୍ତ, ଲେଡ଼ବିଟର ଓ ଥିଓସଫିକାଲ ସୋସାଇଟି — ଏମିତି କେତେ କ'ଣ । ସାଧାରଣତଃ ଏସବୁ ବିଷୟରେ ତାଙ୍କର କୌଣସି ସ୍ମରଣ ନ ଥାଏ ଓ କେହି ତାଙ୍କୁ ଏ ବିଷୟରେ କିଛି ପଚାରିଲେ ସୁଦ୍ଧା ସେ କୌଣସି ସଠିକ ଉତ୍ତର ଦେଇ ପାରନ୍ତି ନାହିଁ । ତେଣୁ ସେଦିନ ତାଙ୍କୁ ଅକସ୍ମାତ ଏଭଳି ଗପିବାର ଦେଖି ଅନ୍ୟମାନେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । କ୍ରିଷ୍ଣମୂର୍ତ୍ତି କିନ୍ତୁ କହି ଚାଲିଲେ, କିଭଳି ମହାଗୁରୁଙ୍କ ନିର୍ଦ୍ଦେଶକ୍ରମେ ଲେଡ଼ବିଟର ତାଙ୍କୁ ଆଡାୟାର ସମୁଦ୍ରକୂଳରୁ ଆବିଷ୍କାର କଲେ, ତାଙ୍କ ଶାରୀରିକ ନିରାପତ୍ତାର ସମସ୍ତ ଦାୟିତ୍ୱ ଗ୍ରହଣ କରି ମହାମୁନୀ ମୈତ୍ରେୟଙ୍କ ଅବିର୍ଭାବ ନିମନ୍ତେ ତାଙ୍କ ଶରୀରକୁ ପ୍ରସ୍ତୁତ କରାଇବାକୁ ଲାଗିଲେ, ଇତ୍ୟାଦି ଇତ୍ୟାଦି । କହୁ କହୁ କ୍ରିଷ୍ଣମୂର୍ତ୍ତି ଧୀରେ ଧୀରେ ମହାଗୁରୁ ତଥା 'ହ୍ୱାଇଟ୍ ବ୍ରଦରହୁଡ୍'ର ସୋପାନକ୍ରମ ସମ୍ପର୍କରେ ମଧ୍ୟ ବର୍ଣ୍ଣନା କରିବାକୁ ଲାଗିଲେ । ଏମିତି କିଛି ସମୟ କହିଯିବା ପରେ ଅଚାନକ କଥା ବନ୍ଦ କରି ସେ ଚୁପ୍ ହୋଇଗଲେ । ତା'ପରେ ଅତି ଗମ୍ଭୀର ଭାବରେ କହିଲେ, "ଦେଖ, ଆମେ ଏବେ ଯାହା ଆଲୋଚନା କରୁଛେ ସେସବୁ ବଡ଼ ସଙ୍ଗିନ ପ୍ରସଙ୍ଗ । ଆମର କଥା ହିଁ ତାକୁ ଏଇଠାକୁ ଟାଣି ଆଣି ପାରେ ଯେ !" ଅନ୍ୟମାନେ ଲକ୍ଷ୍ୟ କଲେ, କ୍ରିଷ୍ଣମୂର୍ତ୍ତିଙ୍କ କଣ୍ଠସ୍ୱର

ଅସମ୍ଭବ ଭାବରେ ବଦଳି ଯାଇଥିଲା, ହାତ ଗୋଡ଼ ଜାକି ଜୁକି ହୋଇ ସେ ନିଜ ସ୍ଥାନରେ ବସି ରହି ପଚାରିଲେ, "ହେଇ ! ତମେମାନେ ତାକୁ ଏବେ ଏଇ ବଖରା ଭିତରେ ଅନୁଭବ କରି ପାରୁଛ ?" ସତକୁ ସତ ବଖରା ଭିତରଟା ସେତେବେଳକୁ ଏକ ଅଫୁରନ୍ତ ଜୀବନ୍ମୀ ଶକ୍ତିରେ ପ୍ରାଣବନ୍ତ ହୋଇ ଉଠିଥିଲା । ମନେ ହେଉଥିଲା ସତେ ଯେପରି କେତେକ ବଳିଷ୍ଠ ଶକ୍ତି ସେଠାରେ ସହସା ସକ୍ରିୟ ହୋଇ ଉଠିଛନ୍ତି । କୃଷ୍ଣମୂର୍ତ୍ତି ଏକବାରେ ନିଶ୍ଚଳ ହୋଇ ନିଜ ସ୍ଥାନରେ ବସି ରହିଥିଲେ । ବେଶ୍ କିଛି ବେଳ ଏମିତି ଅଖଣ୍ଡ ନୀରବତା ଭିତରେ କଟିଗଲା । ତା'ପରେ କ୍ରିଷ୍ଣମୂର୍ତ୍ତି ଯେତେବେଳେ ପୁଣି କଥା ଆରମ୍ଭ କଲେ ସେତେବେଳେ ବଖରା ଭିତରେ ଏକ ଦିବ୍ୟ ପ୍ରଶାନ୍ତମୟ ଭାବ ଖେଳୁଥିଲା । ସେ ପୁଣି କହିବାକୁ ଲାଗିଲେ ଯେ ଆନି ବେସାନ୍ତ ବଞ୍ଚିଥିବାବେଳେ ବରାବର କହୁଥିଲେ ଯେ କୃଷ୍ଣମୂର୍ତ୍ତି ନିଜ ଅନ୍ତରରେ ସଦାବେଳେ ଏକାନ୍ତରେ ରହୁଥିବା ଦୃଷ୍ଟିରୁ ଶାରୀରିକ ଭାବରେ ଏକାକୀ ରହିବାଟା ତାଙ୍କ ପକ୍ଷରେ ଆଦୌ ଉଚିତ ନୁହେଁ । ତେଣୁ 'ହ୍ୱାଇଟ୍ ବ୍ରଦରହୁଡ଼'ର ଦୁଇଜଣ ମହାଗୁରୁ ବରାବର ତାଙ୍କ ପାଖେ ପାଖେ ରହି ତାଙ୍କୁ ଜଗି ଆସୁଥିଲେ । ଏପରିକି ୧୯୬୯ ମସିହାରେ ମଧ୍ୟ ସେହି ଶିକ୍ଷାଧାରୀ ମହାତ୍ମାଦ୍ୱୟ ତାଙ୍କ ପାଖେ ପାଖେ ରହି ତାଙ୍କୁ ଶାରୀରିକ ନିରାପତ୍ତା ପ୍ରଦାନ କରୁଥିଲେ ବୋଲି କୃଷ୍ଣମୂର୍ତ୍ତି କହିଥିଲେ । ସେ ଆହୁରି ମଧ୍ୟ କହିଥିଲେ ଯେ ତାଙ୍କ ମସ୍ତିଷ୍କରେ ଥିବା ସମସ୍ତ ଦୋଷ ଦୁର୍ବଳତାକୁ ଦୂର କରିବା ପାଇଁ ତାଙ୍କ ଶରୀରକୁ ଅନେକ ଅସହନୀୟ ଯନ୍ତ୍ରଣା ଓ କଷ୍ଟ ଭିତର ଦେଇ ଯିବାକୁ ପଡ଼ୁଥିଲା । କହିବା ବାହୁଲ୍ୟ, ଏଠାରେ ସେ ଓହାଇ ଓ ଉଟକାମଣ୍ଡ ଠାରେ ଘଟିଥିବା ଯନ୍ତ୍ରଣାଦାୟକ 'ପ୍ରକ୍ରିୟା' ବିଷୟରେ ହିଁ କହୁଥିଲେ ।

କ୍ରିଷ୍ଣମୂର୍ତ୍ତିଙ୍କଠାରୁ ଏସବୁ ଶୁଣି ସେତିକିବେଳେ ଜଣେ ବନ୍ଧୁ ତାଙ୍କୁ ପଚାରିଲେ, "ତେବେ ଏତେ ବର୍ଷ ଭିତରେ କେତେକ ଖଳ ବ୍ୟକ୍ତି ଆପଣଙ୍କର ନିକଟବର୍ତ୍ତୀ ହୋଇ ପାରିଲେ ପୁଣି କିପରି ? ମନ୍ଦ ଶକ୍ତିର ବଶବର୍ତ୍ତୀ ହୋଇ ସୁଦ୍ଧା ସେମାନେ ଆପଣଙ୍କ ସାନ୍ନିଧ୍ୟ ଲାଭ କରି ପାରିଲେ କିପରି ?" ଉତ୍ତର ଦେଇ କ୍ରିଷ୍ଣମୂର୍ତ୍ତି କହିଲେ,

"କିନ୍ତୁ ମୁଁ ତ' କେବେହେଲେ କାହାରିକୁ ମୋ ନିକଟରୁ ତଡ଼ି ଦେଇ ପାରିବି ନାହିଁ, ବା ମୋ'ଠାରୁ ଦୂରେଇ ଯାଅ ବୋଲି କାହାରିକୁ କହି ପାରିବି ନାହିଁ । ସେହି ଜିନିଷଟି ବା ସେହି ବ୍ୟକ୍ତି ଜଣକ ଆପଣାଛାଏଁ ମୋ'ଠାରୁ ଦୂରେଇ ଯିବା କଥା । ଆଉ ତମେ ନିଜେ ଦେଖ, ପ୍ରକୃତିରେ କ'ଣ ସେଇଆ ଘଟୁନାହିଁ କି ? ...... ନିଜର ଦ୍ୱାର ଉନ୍ମୁକ୍ତ କରିଦେବା ପୂର୍ବରୁ ତମକୁ ଯଥେଷ୍ଟ ସାବଧାନ ରହିବାକୁ ପଡ଼ିବ । କାରଣ ତା' ମଧ୍ୟକୁ 'ଭଲ' ପ୍ରବେଶ କରିପାରେ, ଆଉ 'ମନ୍ଦ' ବି । ବରଂ 'ମନ୍ଦ'ର ପ୍ରବେଶ କରିବାଟା 'ଭଲ' ଅପେକ୍ଷା ଯଥେଷ୍ଟ ସହଜ । 'ମନ୍ଦ'ଟା 'ଭଲ'ର ବିପରୀତ ନୁହେଁ । ସେ ଦୁହିଁଙ୍କ ମଧ୍ୟରେ ଆଦୌ କୌଣସି ସମ୍ପର୍କ ନାହିଁ ।"

ମହାଗୁରୁ ବା ଥିଓସଫିକାଲ ସୋସାଇଟିର ମହାତ୍ମାମାନଙ୍କ ଅସ୍ତିତ୍ୱ ସମ୍ପର୍କରେ କୃଷ୍ଣମୂର୍ତ୍ତି କ'ଣ ବିଶ୍ୱାସ କରନ୍ତି ସେକଥା ଜାଣିବା ପାଇଁ ଲୋକେ ତାଙ୍କୁ ନାନା ପ୍ରଶ୍ନ ପଚାରିଥାନ୍ତି । ଏହି ପ୍ରସଙ୍ଗରେ ଦିନେ ସେ ଜଣେ ବନ୍ଧୁଙ୍କ ଆଗରେ ମହାଗୁରୁ କୁଠହୁମିଙ୍କୁ ସ୍ୱଚକ୍ଷୁରେ ଦେଖିଥିବା କଥା ପ୍ରକାଶ କରିଥିଲେ । କୃଷ୍ଣମୂର୍ତ୍ତି, ଯେ କି ସଦାସର୍ବଦା ଗୁରୁଙ୍କୁ ଅସ୍ୱୀକାର କରି ଆସିଛନ୍ତି ତାଙ୍କୁ ସେଦିନ ମହାଗୁରୁଙ୍କ ସମ୍ପର୍କରେ ଏତେ ସ୍ପଷ୍ଟ ଭାବରେ କହୁଥିବାର ଶୁଣି ବନ୍ଧୁଜଣଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ପଚାରିଲେ, "ଆପଣ କ'ଣ ସତରେ କେବେ ମହାଗୁରୁ କୁଠହୁମିଙ୍କ ସହିତ କଥାଭାଷା ହୋଇଛନ୍ତି ?"

କୃଷ୍ଣମୂର୍ତ୍ତି— "ହଁ, କେବେ କେବେ ମୋର ପ୍ରାତଃ ଧ୍ୟାନ ସମୟରେ ମୁଁ ତାଙ୍କ ସହିତ କଥା କହିଛି ।" ଏକଥା କହି ସେ ଦିନକର ଘଟଣା ବର୍ଣ୍ଣନା କରିବାକୁ ଲାଗିଲେ । ସେଦିନ ସୂର୍ଯ୍ୟୋଦୟର ଠିକ୍ ପରେ ପରେ ପୂର୍ବ ଦିଗକୁ ମୁହଁ କରି କୃଷ୍ଣମୂର୍ତ୍ତି ପଦ୍ମାସନରେ ବସିଥିଲେ । ଏତିକବେଳେ ହଠାତ୍ ସେ ଦେଖିଲେ ଯେ ଦ୍ୱାରଦେଶରେ ମହାଗୁରୁ କୁଠହୁମି ଛିଡ଼ା ହୋଇଛନ୍ତି । ତା' ପୂର୍ବରୁ ସେ ଅନେକ ଥର ଏମିତି ମହାଗୁରୁଙ୍କୁ ଦେଖି ତାଙ୍କ ସହିତ କଥାଭାଷା କରିଛନ୍ତି, ତାଙ୍କ କଣ୍ଠସ୍ୱର ଶୁଣିଛନ୍ତି ଓ ତାଙ୍କ ଉପସ୍ଥିତିକୁ ଅନୁଭବ ମଧ୍ୟ କରିଛନ୍ତି ।

କିନ୍ତୁ ସେଦିନ କାହିଁକି ପ୍ରଥମ ଥର ପାଇଁ ତାଙ୍କୁ ହାତରେ ଛୁଇଁବାକୁ ଘିର ଇଚ୍ଛା ହେଲା । ଆଗରେ ତାଙ୍କର ଖୋଲା ଦରଜା ଦେଇ ସ୍ୱଚ୍ଛ ସୂର୍ଯ୍ୟ କିରଣ ଘର ଭିତରକୁ ଆସୁଥାଏ । ଆଉ ସେହି ଦ୍ୱାରବନ୍ଧରେ ଖସି ଆଡ଼କୁ ପିଠି କରି ମହାଗୁରୁ ଛିଡ଼ା ହୋଇ ରହିଥାନ୍ତି । ତାଙ୍କୁ ଛୁଇଁବା ଆଶାରେ କ୍ରିଷ୍ଣମୂର୍ତ୍ତି ସଙ୍ଗେ ସଙ୍ଗେ ଉଠିପଡ଼ି ଦ୍ୱାର ଆଡ଼େ ଆଗେଇଲେ, ମହାଗୁରୁଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କ ଭିତର ଦେଇ ଦ୍ୱାର ଆରପଟକୁ ଚାଲିଗଲେ । ଫେରି ଚାହିଁଲା ବେଳକୁ କେହି କୁଆଡ଼େ ନ ଥିଲେ । ସେ କାହିଁ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ବାସ୍ — ସେହି ଦିନଠାରୁ ସେ ଆଉ କେବେ ତାଙ୍କର ଦର୍ଶନ ପାଇ ନାହାନ୍ତି ।

୧୯୭୦ ମସିହା ଫେବୃଆରି ମାସରେ କାଲିଫର୍ଣ୍ଣିଆ ଫେରିବା ପୂର୍ବରୁ କ୍ରିଷ୍ଣମୂର୍ତ୍ତି ଦିଲ୍ଲୀରେ ତାଙ୍କର ଜଣେ ପୂର୍ବତନ ଶିକ୍ଷକ — ଶିବ ରାଓଙ୍କ ଘରେ କିଛି ଦିନ ପାଇଁ ରହିଥିଲେ । ଶିବ ରାଓଙ୍କର ସେତେବେଳକୁ ଗୁରୁତର ଅସୁସ୍ଥ ଅବସ୍ଥା । ଡାକ୍ତରମାନେ ଆଶା ଛାଡ଼ି ବସିଥିଲେ । କ୍ରିଷ୍ଣମୂର୍ତ୍ତି ଶିବରାଓଙ୍କ ବିଛଣା ପାଖରେ ତାଙ୍କ ହାତଟିକୁ ମୁଠାଇ ଧରି ଅନେକ ସମୟ ପାଇଁ ବସି ରହିଲେ । ତା'ପର ଦିନ ଏମିତି କହୁ କହୁ ସେ କହି ପକାଇଲେ ଯେ ଆଜି ପର୍ଯ୍ୟନ୍ତ ସେ ରହୁଥିବାବେଳେ ସେହି ଏକା ଘରେ କେହି କେବେହେଲେ ମୃତ୍ୟୁ ବରଣ କରିନାହାନ୍ତି । ତାଙ୍କର ଏ ବକ୍ତବ୍ୟରେ ଗର୍ବ ବା ଅହଙ୍କାରର ଲେଶମାତ୍ର ଚିହ୍ନ ନ ଥିଲା । ଅତି ସାଧାରଣ କଥାଟିଏ ଭଳି ସେ ଏହାକୁ କହି ପକାଇଥିଲେ । ପ୍ରକୃତରେ ବି ତା' ପରେ ପରେ ଶିବରାଓଙ୍କ ଅବସ୍ଥାରେ ଉନ୍ନତି ହେବାର ଦେଖାଗଲା ଓ ସେ ସୁସ୍ଥ ହେବାରେ ଲାଗିଲେ ।

ସେମିତି ଆଉ ଗୋଟିଏ ଘଟଣା । ଥରେ ଭାରତର ବିଶିଷ୍ଟ ଭୂଦାନକର୍ମୀ ତଥା ଦାର୍ଶନିକ କବି ଶ୍ରୀମତୀ ବିମଳା ଥାକର୍ କ୍ରିଷ୍ଣମୂର୍ତ୍ତିଙ୍କୁ ସାକ୍ଷାତ କରିବା ପାଇଁ ଆସିଥିଲେ । ଖୁବ୍ ଅଳ୍ପ ବୟସରୁ ସେ କଠିନ ଯୋଗାଭ୍ୟାସ ଓ ସାଧନାଦି କରୁଥିଲେ । ସେତେବେଳକୁ ସେହି କେତେ ବର୍ଷ ଧରି ତାଙ୍କର କାନ ଭିତରେ ଏକ ତୀବ୍ର ଯନ୍ତ୍ରଣା ଦେଖାଦେଉଥିଲା

ଏବଂ ଶୋଇବା, ବସିବା, ସଦାବେଳେ ତାଙ୍କୁ ବଡ଼ କଷ୍ଟ ହେଉଥିଲା । ଶ୍ରୀମତୀ ଥାକର୍ ମନେ କରି ନେଇଥିଲେ ଯେ କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେଉଥିବା ଯୋଗୁ ତାଙ୍କର ଏଭଳି ଯନ୍ତ୍ରଣା ହେଉଛି । କ୍ରିଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ କରି କଥା ପ୍ରସଙ୍ଗରେ ସେ ନିଜ କାନର ଯନ୍ତ୍ରଣା ଓ ତାଙ୍କର ଅନୁମାନ ବିଷୟରେ ଜଣାଇଲେ । କ୍ରିଷ୍ଣମୂର୍ତ୍ତି କିନ୍ତୁ ଏକଥା ଶୁଣି ତାଙ୍କୁ ଆଉ ଡେରି ନ କରି ଶୀଘ୍ର ଯାଇ ଜଣେ ଡାକ୍ତରଙ୍କୁ ଦେଖାଇବାକୁ ଉପଦେଶ ଦେଲେ । ତାଙ୍କ କଥା ମାନି ବିମଳା ଦେବୀ ବମ୍ବେରେ ଡାକ୍ତର ଦେଖାଇଲେ ଓ ଡାକ୍ତରଙ୍କ କଥାରେ କାନ ଅପରେସନ ବି କରାଇଲେ । ମାତ୍ର ଦୁର୍ଭାଗ୍ୟକୁ ଅପରେସନ ପରେ କାନର ଯନ୍ତ୍ରଣା ବନ୍ଦ ହୋଇଗଲା ସିନା ହେଲେ ସେ ନିଜର ଶ୍ରବଣ ଶକ୍ତିକୁ ପୁରାପୁରି ହରାଇ ବସିଲେ । ଘଟଣା ଚକ୍ରରେ କିଛି ମାସ ପରେ ତାଙ୍କର ପୁଣି ଥରେ କ୍ରିଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ ହେଲା । ସେତେବେଳକୁ କ୍ରିଷ୍ଣମୂର୍ତ୍ତି ତାଙ୍କର ଅପରେସନ ଓ ତାର ପରିଣାମ ସମ୍ପର୍କରେ ଖବର ପାଇ ସାରିଥିଲେ । ଦିନେ ଲାଜ ଲାଜ ହୋଇ ସେ ତାଙ୍କୁ କହିଲେ, "ପିଲାଦିନେ ମୋର ମାଆ କହୁଥିଲେ ଯେ ମୁଁ କୁଆଡ଼େ ମୋର ଏଇ ହାତରେ ଲୋକମାନଙ୍କ ରୋଗ ଭଲ କରି ଦେଇ ପାରୁଥିଲି······ ଦେଖିବା କି ମୁଁ ତମର କାନ ନେଇ କାଲେ କିଛି କରି ପାରିବି ?······"

ପରବର୍ତ୍ତୀ ଲଗାଏତ କେତେ ଦିନ ଧରି କ୍ରିଷ୍ଣମୂର୍ତ୍ତି ବିମଳା ଥାକର୍ଙ୍କ ମୁଣ୍ଡ ଉପରେ ଓ କାନ ପାଖରେ ନିଜର ଦୁଇ ହାତ ଥାପି କିଛି ସମୟ ତାଙ୍କ ପାଖରେ ଛିଡ଼ା ହୋଇ କ'ଣ ଗୋଟାଏ କରୁଥିବା ଭଳି ଲାଗିଲେ । ଆଉ ସତକୁ ସତ ତା'ପରେ ବିମଳା ଦେବୀଙ୍କର ଶ୍ରବଣ ଶକ୍ତି ଫେରିବାକୁ ଆରମ୍ଭ କଲା ଓ ସେ ଆଗ ଭଳି ପରିଷ୍କାର ଶୁଣି ପାରିଲେ । ସେମିତି ଆଉଥରେ ସୁନାମଧନ୍ୟ ଗାନ୍ଧିବାଦୀ ନେତା ବ୍ରହ୍ମଗୁରୀ ଶଙ୍କର ଦେଓ ଏକ ମାନସିକ ଆଘାତରେ ନିଜର ବାକ୍‌ଶକ୍ତି ହରାଇ ବସିଥିଲେ । କ୍ରିଷ୍ଣମୂର୍ତ୍ତିଙ୍କ ସହିତ ଆଗରୁ ତାଙ୍କର ଖୁବ୍ ଭଲ ପରିଚୟ ଥିଲା ଓ ସେ ବହୁ ବର୍ଷ ଧରି ତାଙ୍କର ଭାଷଣ ଶୁଣି ଆସୁଥିଲେ ।

ମାତ୍ର ସନ୍ନ୍ୟାସ ଗ୍ରହଣ ପରେ ଜଡ଼ିତ ହେବା ପରଠାରୁ ସେ ତାଙ୍କ ସହିତ ଆଉ ସମ୍ପର୍କ ରଖି ପାରି ନ ଥିଲେ । ଏବେ ବାକ୍‌ଶକ୍ତି ହରାଇ ସେ ଏକରକମ ପାଗଳ ସଦୃଶ ହୋଇ ଯାଇଥିଲେ । ବର୍ଷେ କ୍ରିଷ୍ଣମୂର୍ତ୍ତି ବମ୍ବେରେ ଥିବାବେଳେ ଶଙ୍କର ରାଓଙ୍କର କେତେକ ବନ୍ଧୁ ତାଙ୍କୁ ଧରି କ୍ରିଷ୍ଣମୂର୍ତ୍ତିଙ୍କ ନିକଟକୁ ନେଇ ଆସିଲେ । ସେ ଶଙ୍କର ରାଓଙ୍କୁ ଦେଖୁ ଦେଖୁ ତତ୍‌କ୍ଷଣାତ୍ ନିକଟକୁ ଧାଇଁ ଆସି ତାଙ୍କୁ ଦୁଇ ହାତରେ କୁଣ୍ଢାଇ ଧରି ଗଭୀର ଶ୍ରଦ୍ଧାଭରେ ପଚାରିଲେ, "ଆହା, ତମେ ନିଜକୁ ଏ କ'ଣ କରି ପକାଇଛ ସତେ !" ନିର୍ବାକ ଶଙ୍କର ରାଓଙ୍କ ଆଖିରୁ ଧାର ଧାର ଲୁହ ଝରିବାରେ ଲାଗିଥାଏ । କ୍ରିଷ୍ଣମୂର୍ତ୍ତି ହାତ ଧରି ତାଙ୍କୁ ନିଜ ବଖରାକୁ ନେଇଗଲେ । ପ୍ରାୟ ଘଣ୍ଟାଏ ପରେ ସେଠାରୁ ବାହାରିବା ବେଳକୁ ଦେଖାଗଲା ଯେ ଶଙ୍କର ରାଓଙ୍କ ମୁହଁର ଭାବ ପୂରାପୂରି ବଦଳି ଯାଇଛି ଓ ସେ ଖୁବ୍ ଶାନ୍ତ, ସ୍ୱାଭାବିକ ଭାବରେ କଥାବାର୍ତ୍ତା କରୁଛନ୍ତି !

ରୋଗ ଭଲ କରିବାର ଯେଉଁ ଶକ୍ତିଟା ପିଲା ଦିନେ କ୍ରିଷ୍ଣମୂର୍ତ୍ତିଙ୍କ ପାଖରେ ଥିଲା, ବଡ଼ ଦିନକୁ ମଧ୍ୟ ତାହା ଠିକ୍ ସେହିଭଳି ରହିଥିଲା । କିନ୍ତୁ ସେ ନିଜର ଏ ଶକ୍ତି ବିଷୟରେ କେବେହେଲେ କାହାରି ଆଗରେ ଉଲ୍ଲେଖ କରୁ ନ ଥିଲେ ଏବଂ ଅଧିକାଂଶ କ୍ଷେତ୍ରରେ ଏହାକୁ ବ୍ୟବହାର କରିବାକୁ ସଂକୋଚ ବୋଧ କରୁଥିଲେ । ଥରେ ତାଙ୍କୁ ଏ ବିଷୟରେ ଜଣେ ପଚାରିବାରେ ଗୋଟିଏ ଭାରି ସୁନ୍ଦର ଘଟଣା ଉଲ୍ଲେଖ କରି ସେ କହିଥିଲେ — "ବହୁ ବର୍ଷ ତଳେ ଥରେ ମୁଁ ମୋର ଜଣେ ବନ୍ଧୁଙ୍କୁ ଶାରୀରିକ ପୀଡ଼ାରୁ ଆରୋଗ୍ୟ କରି ଦେଇଥିଲି । ମାତ୍ର ତା'ର ଅଳ୍ପ କିଛି ମାସ ଭିତରେ କୌଣସି ଏକ ଅପରାଧରେ ଗିରଫ କରି ତାଙ୍କୁ ଜେଲ୍‌କୁ ପଠାଇ ଦିଆଗଲା । ଏବେ ତମେ ନିଜେ ଦେଖି କହ ତ, ତମର କେଉଁଟା ଦରକାର — ଏଭଳି ଜଣେ ଉପଦେଷ୍ଟା ଯେ କି ତମକୁ ଚିରଦିନ ମାନସିକ ସୁସ୍ଥତାର ବାଟ ଦେଖାଇ ପାରିବ, ନା ଜଣେ ବ୍ୟକ୍ତି ଯେ କି ସାମୟିକ ଭାବରେ ତମକୁ କଷ୍ଟ ଯନ୍ତ୍ରଣାରୁ ଉଦ୍ଧାର କରି ପାରିବ ? ...... ମୋର ଏପରି ଅନେକ ବନ୍ଧୁ ଅଛନ୍ତି ଯେଉଁମାନେ କି ଆଧ୍ୟାତ୍ମିକ ଆରୋଗ୍ୟକାରୀ ଶକ୍ତିର ଅଧିକାରୀ; ହେଲେ

ସେମାନେ ଯିନା ଶାରୀରିକ ପୀଡ଼ାକୁ ଦୂର କରିଦେଇ ପାରିବେ, କିନ୍ତୁ ଯେ ପର୍ଯ୍ୟନ୍ତ ତମର ମନ ଓ ହୃଦୟ ସମ୍ପୂର୍ଣ୍ଣ ସୁସ୍ଥ ନ ହୋଇଛି ସେ ପର୍ଯ୍ୟନ୍ତ ସେ ରୋଗ ତ' ପୁଣି ଲେଉଟି ଆସିବ । ମୁଁ ତମ ମନ ଓ ହୃଦୟର ସମ୍ପୂର୍ଣ୍ଣ ଆରୋଗ୍ୟ ନେଇ ଚିନ୍ତିତ — ତମ ଶରୀର ନେଇ ନୁହେଁ । ମୁଁ ଦୃଢ଼ ଭାବରେ କହି ପାରେ ଯେ କୌଣସି ମହାନ୍ ଗୁରୁ କେବେହେଲେ ଚମତ୍କାରିତା ଦେଖାଇବାକୁ ଯିବେ ନାହିଁ, କାରଣ ସେଭଳି କରିବା ସତ୍ୟର ପ୍ରବଞ୍ଚନା ଛଡ଼ା ଅନ୍ୟ କିଛି ନୁହେଁ ।"

## ପ୍ରଶ୍ନଶୀଳ ଶିକ୍ଷାତତ୍ତ୍ୱ

କୃଷ୍ଣମୂର୍ତ୍ତିଙ୍କର ଶିକ୍ଷାଦାନର ଏକ ବୈଶିଷ୍ଟ୍ୟ ହେଉଛି ସେ ପ୍ରଶ୍ନ ବା ସମସ୍ୟାଟିର ସମାଧାନ ପାଇଁ ଚୂପ୍‌ଚାପ୍ ବସିଯିବା ଅପେକ୍ଷା ପ୍ରଶ୍ନ କରିବା ଓ ଅନୁସନ୍ଧାନ କରିବା ଉପରେ ସଦାବେଳେ ଅଧିକ ଗୁରୁତ୍ୱ ଦେଇଥାନ୍ତି । ତାଙ୍କ ଦର୍ଶନର ଏହି ଦିଗଟି ତାଙ୍କୁ ଅନ୍ୟାନ୍ୟ ପାରମ୍ପରିକ ଧର୍ମଗୁରୁଙ୍କଠାରୁ ନିଶ୍ଚିତ ଭାବରେ ଭିନ୍ନ କରି ଉପସ୍ଥାପିତ କରାଇଛି । ଭାରତରେ ହେଉ କି ଭାରତ ବାହାରେ ହେଉ, ଯେତେକ ଆଧ୍ୟାତ୍ମିକ ଗୁରୁ ସମସ୍ତେ ସାଧାରଣତଃ ଜନସାଧାରଣଙ୍କୁ ଯାବତୀୟ ସମସ୍ୟାର ମୌଳିକ ସମାଧାନର ପ୍ରଲୋଭନ ହିଁ ଦେଖାଇଥାନ୍ତି । ଭଗବତ୍ ପ୍ରାପ୍ତି ଲାଗି ଏ ସଂସାରର କାମୁକତାରୁ ଆପଣାକୁ ମୁକ୍ତ ରଖିବା ପାଇଁ, ଆତ୍ମୀୟ ସ୍ୱଜନର ମୃତ୍ୟୁ ଘଟିଲେ ସେ ଶୋକରୁ ତ୍ରାହି ପାଇବା ପାଇଁ ଓ ଆହୁରି କେତେ କ'ଣ ପ୍ରତିଶ୍ରୁତି ଦେଇ ସେମାନେ ମଣିଷକୁ ଧର୍ମଜ୍ଞାନ ବା ଦର୍ଶନ ନାମରେ ଖୁବ୍ ଶୀଘ୍ର ଆଶାବାଡ଼ିଟିଏ ଧରାଇ ଦିଅନ୍ତି । କିନ୍ତୁ ସେସବୁ ତୁଳନାରେ କୃଷ୍ଣମୂର୍ତ୍ତିଙ୍କ ଦର୍ଶନ ସମ୍ପୂର୍ଣ୍ଣ ଭିନ୍ନ ଅଟେ । ସମସ୍ୟାଟିର ଅନ୍ତ ଖୋଜି ନ ହୋଇ ବରଂ ତା' ଭିତରେ ପଶି ସମସ୍ୟାକୁ ସର୍ବାଙ୍ଗ ଭାବରେ ତନ୍ନତନ୍ନ କରି ଦେଖିବାକୁ ସେ ବରାବର

ଉପଦେଶ ଦେଇ ଆସିଛନ୍ତି । ୧୯୬୮ ମସିହାରେ ସାନେନ୍ ଠାରେ ଗୋଟିଏ ଭାଷଣ ଦେଇ ସେ କହିଥିଲେ --

"ଦୁଃଖ ହେଉଛି ଆମ ଜୀବନର ଏକ ସବୁଠାରୁ ବଡ଼ ସମସ୍ୟା । ଯୁଦ୍ଧ, ସଂଘର୍ଷକୁ ଯେମିତି ଆମେ ଜୀବନର ଏକ ଅଂଶ ବୋଲି ଧରି ନେଇଛୁ, ଦୁଃଖଟାକୁ ବି ଠିକ୍ ସେମିତି ଆମେ ଜୀବନର ଅଂଶ ବୋଲି ଗ୍ରହଣ କରି ନେଇଛୁ । ଯୁଦ୍ଧ କହିଲେ ମୁଁ ଖାଲି ସମରଭୂମିର ଯୁଦ୍ଧକୁ ବୁଝାଉ ନାହିଁ — ଆମ ଅନ୍ତର ଭିତରେ ଚାଲିଥିବା ଅହରହ ସଂଘର୍ଷ, ପୁଣି ବାହ୍ୟାନ୍ତଆ ଭାବରେ ପ୍ରକାଶ ପାଉଥିବା ସଂଘର୍ଷ, ଏ ସବୁକୁ ଉଦ୍ଦେଶ୍ୟ କରି କହୁଛି । × × × ×

ଯଦି ତମେ କେବେ ତମ ନିଜ ଭିତରକୁ ଚାହିଁ ପଚାରିବ, 'ଏ ଦୁଃଖଟା କ'ଣ ?' ତେବେ ତା'ର କି ଉତ୍ତର ପାଇବ ? ସାଧାରଣ ଦୈହିକ ଦୁଃଖ କଷ୍ଟ କଥା ମୁଁ ତମକୁ ପଚାରୁ ନାହିଁ । ସେହି ଯେଉଁ ଦୁଃଖ, ଚରମ ଦୈନ୍ୟ, ଅସହାୟତା ଓ ନିରୁପାୟତାର ଅନୁଭବ, ତା'ର କଥା ମୁଁ କହୁଛି । ସତରେ, ଦୁଃଖ ବୋଲି କହିଲେ ତମେ କ'ଣ ବୁଝ ? ନା ତମେ ତାକୁ ପ୍ରାରୁ ପର୍ଯ୍ୟନ୍ତ କେବଳ ଠେଲି ଏଡ଼ାଇ ଦେଇ ଯିବାକୁ ଚେଷ୍ଟା କରିଥାଅ ? ତା' ନିକଟକୁ ଆସିବାକୁ କେବେହେଲେ ତ ଇଚ୍ଛା କରିନାହିଁ ? କିନ୍ତୁ ଜାଣିଛ କି — ସେଇ ଦୁଃଖକୁ ଏଡ଼ାଇ ଯିବା ହିଁ ଆଉ ଏକ ପ୍ରକାର ଦୁଃଖ ?"

୧୯୭୧ ମସିହାରେ କ୍ରିଷ୍ଣମୂର୍ତ୍ତିଙ୍କର ପ୍ରଶ୍ନୋତ୍ତର ସମ୍ବଳିତ ଗୋଟିଏ ପୁସ୍ତକ 'ଦି ଅର୍ଜେନ୍ସି ଅଫ୍ ଚେଞ୍ଜ୍' ନାମରେ ପ୍ରକାଶ ପାଇଲା । ଉକ୍ତ ପୁସ୍ତକରେ ପ୍ରଶ୍ନକର୍ତ୍ତାମାନଙ୍କର ବିବିଧ ପ୍ରଶ୍ନ ସହିତ କ୍ରିଷ୍ଣମୂର୍ତ୍ତିଙ୍କର ଉତ୍ତର ସମୂହ ସ୍ଥାନ ପାଇଛି । ତାଙ୍କର ଏତାଦୃଶ ପ୍ରଶ୍ନଶୀଳ ଶିକ୍ଷାତନ୍ତ୍ର କ୍ରିଷ୍ଣମୂର୍ତ୍ତି ସ୍କୁଲ ଗୁଡ଼ିକରେ ବିଶେଷ ଭାବରେ ପ୍ରତିଫଳିତ ହେଉଥିଲା । ଇଂଲଣ୍ଡର ବ୍ରକ୍‌ଉଡ୍ ପାର୍କ ସ୍କୁଲଟି ସେତେବେଳକୁ ନୂଆ ନୂଆ ଖୋଲିଥାଏ । ସ୍କୁଲରେ ପୁଅ ଝିଅ ମିଶି ମୋଟ ଚଉଦ ଜଣ । ଅନ୍ୟ ସବୁ କ୍ରିଷ୍ଣମୂର୍ତ୍ତି ସ୍କୁଲ ପରି ସେଠାରେ

ମଧ୍ୟ ଛାତ୍ରଛାତ୍ରୀ ଓ ଶିକ୍ଷାଦାତାଙ୍କ ମଧ୍ୟରେ ଏକ ମୁକ୍ତ ନିବିଡ଼ ସମ୍ପର୍କ ରହିଥିଲା । ପିଲାମାନଙ୍କ ମନରେ ଯେପରି ଶିକ୍ଷକ ପ୍ରତି କୌଣସି ଡରଭୟ ବା ବିତୃଷ୍ଣା ସୃଷ୍ଟି ନ ହୁଏ ସେଥିପ୍ରତି ସ୍କୁଲର କର୍ତ୍ତୃପକ୍ଷ ଓ ଶିକ୍ଷକବୃନ୍ଦ ଅତିମାତ୍ରାରେ ଯତ୍ନଶୀଳ ଥିଲେ । ଏପରିକି ସ୍କୁଲ ସମ୍ବନ୍ଧୀୟ କୌଣସି ପ୍ରସଙ୍ଗ ବା ପଢ଼ା ପଢ଼ି ନେଇ ନିଷ୍ପତ୍ତି ନେବା ପୂର୍ବରୁ ପିଲାମାନଙ୍କ ସହିତ ସେ ବିଷୟରେ ଖୋଲାଖୋଲି ଆଲୋଚନା କରାଯାଉଥିଲା ଓ ସେମାନଙ୍କ ମତାମତକୁ ବୁଝିବାକୁ ଚେଷ୍ଟା କରା ଯାଉଥିଲା । ପ୍ରତିଦିନ ସକାଳେ କ୍ଲାସ ଆରମ୍ଭ ହେବା ପୂର୍ବରୁ ଛାତ୍ରଛାତ୍ରୀ ଓ ଶିକ୍ଷକମାନେ କିଛି ସମୟ ପାଇଁ ଗୋଟିଏ ସ୍ଥାନରେ ଏକତ୍ର ହେଉଥିଲେ ଓ ସେତିକିବେଳେ ସେମାନେ ପ୍ରତ୍ୟେକେ ଯାହା ଯାହା ଅନୁଭବ କରୁଥିଲେ ବା ଯାହା ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରୁଥିଲେ ସେଠାରେ ସେହି ପ୍ରସଙ୍ଗଗୁଡ଼ିକ ଆଲୋଚନା କରାଯାଉଥିଲା । ୧୯୭୦ ମସିହାଠାରୁ କୃଷ୍ଣମୂର୍ତ୍ତି ନିୟମିତ ପ୍ରତିବର୍ଷ ଭାଷଣ ଦେବାଲାଗି ବ୍ରକ୍‌ଉଡ୍ ପାର୍କ ଆସିଥାନ୍ତି ଏବଂ ଭାଷଣ କାର୍ଯ୍ୟକ୍ରମ ଶେଷ ହେବା ପରେ କିଛି ଦିନ ସେଠାରେ ରହି ସ୍କୁଲର ଶିକ୍ଷକ, ଛାତ୍ରଛାତ୍ରୀ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ସହିତ ସମୟ କଟାନ୍ତି । ସେତିକିବେଳେ ସେମାନଙ୍କ ସହ ସେ ଜୀବନର ବିବିଧ ସମସ୍ୟା ଓ ନାନା ମନସ୍ତାତ୍ତ୍ୱିକ ପ୍ରସଙ୍ଗ ନେଇ ବିଶଦ ଆଲୋଚନା ମଧ୍ୟ କରିଥାନ୍ତି । ପିଲା, ବଡ଼ ସମସ୍ତେ ସେଠାରେ ମନଖୋଲା କଥାବାର୍ତ୍ତା ହେବା ସଙ୍ଗେ ସଙ୍ଗେ ନିଜର ମନ ଭିତରକୁ, ଭାବନା ଓ ଚିନ୍ତାଧାରା ଭିତରକୁ ପଶି ଅନୁସନ୍ଧାନ କରିବାର ଉଦ୍ୟମ କରିଥାନ୍ତି ।

ବ୍ରକ୍‌ଉଡ୍ ପାର୍କ ଭଳି ଭାରତରେ ମଧ୍ୟ ଋଷିଭାଲି ଓ ରାଜଘାଟ ସ୍କୁଲ ଧୀରେ ଧୀରେ ଲୋକପ୍ରିୟ ହେବାରେ ଲାଗିଲା । ସ୍କୁଲର ଅଭିନବ ଶିକ୍ଷା ପ୍ରଣାଳୀରେ ଆକୃଷ୍ଟ ହୋଇ ଅନେକ ପିତାମାତା ନିଜର ପିଲାମାନଙ୍କୁ କୃଷ୍ଣମୂର୍ତ୍ତି ସ୍କୁଲରେ ନାମ ଲେଖାଇଲେ । ଋଷିଭାଲି ଓ ରାଜଘାଟ ଉଭୟ ହେଉଛି ଆବାସୀ ସ୍କୁଲ ଏବଂ ଏହା ଭାରତୀୟ ଢାଞ୍ଚାରେ ଗଢ଼ା । ଏଠାରେ ଅଧ୍ୟୟନର ମୂଳ ମାଧ୍ୟମ ଇଂରାଜୀ

ହୋଇଥିଲେ ସୁଦ୍ଧା ହିନ୍ଦି, ସଂସ୍କୃତ, ତେଲଗୁ ଆଦି ଭାରତୀୟ ଭାଷା ଉପରେ ଯଥାର୍ଥ ଗୁରୁତ୍ୱ ଦିଆ ଯାଇଥାଏ । ପିଲମାନଙ୍କୁ ଭବିଷ୍ୟତରେ ବୃତ୍ତିଗତ କ୍ଷେତ୍ରେ ଲାଗି ଯୋଗ୍ୟ କରି ଗଢ଼ିବା କିମ୍ବା ଅର୍ଥ ଉପାର୍ଜନରେ ସକ୍ଷମ କରାଇବା ଉକ୍ତ ସ୍କୁଲର ମାତ୍ର ନୁହେଁ । ବରଂ ସେମାନଙ୍କୁ ଜୀବନର ବହୁବିଧ ସମସ୍ୟା ସହିତ ମୁକାବିଲା କରାଇବା ପାଇଁ ଏବଂ ପ୍ରତ୍ୟେକଙ୍କୁ ଅଖଣ୍ଡ ମାନବ ରୂପେ ଗଢ଼ି ଉଠିବାରେ ସାହାଯ୍ୟ କରିବା ପାଇଁ ଏହି ସ୍କୁଲଗୁଡ଼ିକ ସର୍ବଦା ଚେଷ୍ଟିତ । ଋଷିଭାଲି ସ୍କୁଲର ନିୟମାବଳୀରେ ଲିପିବଦ୍ଧ ନିମ୍ନୋକ୍ତ ଧାଡ଼ିଟି ସ୍କୁଲର ମୌଳିକ ଉଦ୍ଦେଶ୍ୟକୁ ସ୍ପଷ୍ଟ ପ୍ରକାଶ କରିଥାଏ — "ଛାତ୍ରଛାତ୍ରୀଙ୍କ ଠାରେ ଧୀଶକ୍ତି ଜାତ କରାଇବା ଏବଂ 'କ'ଣ ଚିନ୍ତା କରିବା' ଉଚିତ, ବଦଳରେ 'କିପରି ଚିନ୍ତା କରିବା' ଉଚିତ — ସେଇକଥା ସେମାନଙ୍କୁ ଶିକ୍ଷା ଦେବା ଉକ୍ତ ବିଦ୍ୟାଳୟର ମୁଖ୍ୟ ଲକ୍ଷ୍ୟ ଅଟେ ।"

ସ୍କୁଲରେ ପାଠପଢ଼ା ବ୍ୟତୀତ ପିଲମାନଙ୍କର ରୁଚି ଅନୁଯାୟୀ ଖେଳ କସରତ, ସଂଗୀତ, ନୃତ୍ୟ, ଚିତ୍ରାଙ୍କନ, ହସ୍ତଶିଳ୍ପ, ମୂର୍ତ୍ତିଗଠନ, ବାଟିକ୍ ପ୍ରିଣ୍ଟ୍, ଚମଡ଼ାକାମ, ସିଲାଇ, କାଠକାମ ଓ ଆହୁରି ଅନେକ ବିଷୟରେ ତାଲିମ ଦିଆଯାଇଥାଏ । ପାଠପଢ଼ା ବ୍ୟତୀତ ପ୍ରକୃତି ସହିତ ବନ୍ଧୁତା ସ୍ଥାପନ କରିବା ଦିଗରେ ପିଲମାନଙ୍କୁ ସହାୟତା କରିବା ଶିକ୍ଷାଦାତାମାନଙ୍କର ଏକ ବିଶେଷ କର୍ତ୍ତବ୍ୟ । ପ୍ରାୟ ପ୍ରତ୍ୟହ ସୂର୍ଯ୍ୟାସ୍ତ ସମୟରେ ସ୍କୁଲର ପିଲା ଓ ଶିକ୍ଷକ ଉଭୟେ କିଛି ବାଟ ଦୂରକୁ ଯାଇ ଏକ ଖୋଲା ପଡ଼ିଆରେ ବସି ଅଦୂରରେ ଥିବା ଗଛପତ୍ର, ସବୁଜ ପ୍ରାନ୍ତର, ଦିଗ୍‌ବଳୟ ପ୍ରଭୃତିର ଶୋଭାକୁ ନୀରବରେ ଉପଭୋଗ କରିଥାନ୍ତି ।

ନିଜର ଅନ୍ତରକୁ ତଥା ପରିପାର୍ଶ୍ୱକୁ 'ନିର୍ବିଶେଷ' ଭାବରେ ଲକ୍ଷ୍ୟ କରିବାର ତାତ୍ପର୍ଯ୍ୟ ବିଷୟରେ କ୍ରିଷ୍ଣମୂର୍ତ୍ତି ଅନେକ ଥର ସ୍କୁଲ ପିଲା ମାନଙ୍କୁ ବୁଝାଇଛନ୍ତି । ତାଙ୍କ ଭାଷାରେ, "ଗୋଟିଏ ଦର୍ପଣ ସାମନାରେ ଛିଡ଼ା ହୋଇ ନିଜର ଅବିକଳ ପ୍ରତିବିମ୍ବକୁ ଦେଖିବା ଭଳି ମନସ୍ତାତ୍ତ୍ୱିକ ସ୍ତରରେ ନିଜକୁ ନିଜେ ଦେଖିବାଟା ଯେ ପ୍ରକୃତରେ ଅତ୍ୟଧିକ ମାତ୍ରାରେ ଗୁରୁତ୍ୱପୂର୍ଣ୍ଣ ତାହା ବୋଧହୁଏ କେହି ହୃଦୟଙ୍ଗମ କରି ପାରନ୍ତି ନାହିଁ ।

ମାତ୍ର ସେଭଳି କରିବା ଦ୍ୱାରା ମଣିଷ ନିଜର ଆଭ୍ୟନ୍ତରିକ ଗଠନରେ ଏକ ପରିବର୍ତ୍ତନ ଘଟାଇଥାଏ । ଆଉ, ଯେତେବେଳେ ତା'ର ଗଭୀର ସ୍ତରରେ, ମୌଳିକ ସ୍ତରରେ ଏହି ରୂପାନ୍ତରଟି ଜାତ ହୁଏ, ସେତେବେଳେ ସେହି ଆମୂଳ ପରିବର୍ତ୍ତନ ମଣିଷର ସମଗ୍ର ଚେତନାକୁ ପ୍ରଭାବିତ କରିଥାଏ । ଏକଥା ବାସ୍ତବ ଓ ଚରମ ସତ୍ୟ ଅଟେ ।"

କ୍ରିଷ୍ଣମୂର୍ତ୍ତି ଯେ କେବଳ ଅନ୍ୟମାନଙ୍କୁ ଏଭଳି ଉପଦେଶ ଦେଉଥିଲେ ତା' ନୁହେଁ, ସେ ଯାହା ଯାହା କହୁଥିଲେ ନିଜ ଜୀବନର ପ୍ରତି ମୁହୂର୍ତ୍ତରେ ଠିକ୍ ତାହା ହିଁ ପାଳନ କରୁଥିଲେ । ମନଟା ତାଙ୍କର ସଦାସର୍ବଦା ଏକ ତୀକ୍ଷ୍ଣ ସଚେତନ ଅବସ୍ଥାରେ ରହୁଥିଲା । ସେ ଏକାକୀ ବସିଥାନ୍ତୁ ବା ଜନାକୀର୍ଣ୍ଣ ସଭାରେ ଭାଷଣ ଦେଉଥାନ୍ତୁ, ଅଥବା ଗୋଟିଏ ଲୋକ ସାଥିରେ ତା'ର ବ୍ୟକ୍ତିଗତ ସମସ୍ୟା ନେଇ ଆଲୋଚନାରତ ଥାଆନ୍ତୁ, ତାଙ୍କର ମନଟା ସଦାବେଳେ ଶୂନ୍ୟ ରହିଥାଏ — ତହିଁରେ ଚିନ୍ତା ଭାବନାର ଖିଅ ସୁଦ୍ଧା ନ ଥାଏ । ଏପରିକି ବଡ଼ ବଡ଼ ସଭାରେ ଭାଷଣ ଦେବାର ମାତ୍ର ପାଞ୍ଚ ମିନିଟ ପୂର୍ବରୁ ତାଙ୍କୁ ପଚାରିଲେ ସୁଦ୍ଧା ସେ କେଉଁ ପ୍ରସଙ୍ଗରେ ଭାଷଣ ଦେବାକୁ ଯାଉଛନ୍ତି ସେକଥା କହି ପାରନ୍ତି ନାହିଁ । ହେଲେ ଅଳ୍ପ ସମୟ ପରେ ମଞ୍ଚ ଉପରେ କ୍ରିଷ୍ଣମୂର୍ତ୍ତିଙ୍କୁ ଦୀର୍ଘ କାଳ ଧରି ଏତେ ସୁନ୍ଦର ଅନର୍ଗଳ ଭାଷଣ ଦେବାର ଦେଖି ପ୍ରଶ୍ନ ପଚାରିଥିବା ବ୍ୟକ୍ତିଟିର ଆଶ୍ଚର୍ଯ୍ୟର ସୀମା ରହେ ନାହିଁ । ଭାରତରେ ସେ ପ୍ରାୟ ସଦାବେଳେ ମୁକ୍ତ ଆକାଶ ତଳେ ବା ଝଙ୍କା ଗଛମୂଳେ ବସି ଭାଷଣ ଦେବାକୁ ପସନ୍ଦ କରିଥାନ୍ତି । ସେଥିପାଇଁ ଉପଯୁକ୍ତ ସ୍ଥାନଟିଏ ଦେଖି ଗଛମୂଳ ଗୁଡ଼ିକରେ ତାଙ୍କ ପାଇଁ ଶ୍ୱେତ ସାମିଆନା ବନ୍ଧାଯାଏ । ତା'ରି ତଳେ ଏକ ଅଳ୍ପ ଉଚ୍ଚ ପିଣ୍ଡି ଉପରେ ଧୋବ ଗୃଦରିଟିଏ ବିଛାଇ ଦିଆଯାଏ । ସାମନାରେ ମାଇକ୍ରୋଫୋନ୍ ଓ ଆବଶ୍ୟକୀୟ ଅଡିଓ ଓ ଭିଡିଓ ରେକର୍ଡିଂର ବ୍ୟବସ୍ଥା ହୋଇ ରହିଥାଏ । ତା'ର କିଛି ସମୟ ପରେ ହଠାତ ଦେଖିଲାବେଳକୁ କ୍ରିଷ୍ଣମୂର୍ତ୍ତି କେତେବେଳ ଆସି ସେହି ପିଣ୍ଡି ଉପରେ ଚକାମାରି ବସି ଯାଇଛନ୍ତି । ସେ ଯେ କେତେବେଳେ ମଞ୍ଚ ଉପରକୁ ଉଠି ଆସି ବସିଛନ୍ତି, ଅନେକ ସମୟରେ ଲୋକେ ତାହା

ଜାଣିବାକୁ ବି ପାଆନ୍ତି ନାହିଁ । ଭାରତରେ ଥିବା ଦିନତକ ସେ ସଦାବେଳେ ଭାରତୀୟ ପୋଷାକ — ଲୁଙ୍ଗି କୁର୍ତ୍ତା ଅଥବା ପାଇଜାମା କୁର୍ତ୍ତା ପିନ୍ଧିଥାଆନ୍ତି — ହାତ ମୁଠାରେ ଧଳା ରୁମାଲଟିଏ । ତାଙ୍କର ଉପସ୍ଥିତି ହିଁ ଲୋକମାନଙ୍କ ଭିତରେ ଏକ ଶାନ୍ତ ସ୍ନିଗ୍ଧ ଶିହରଣ ସୃଷ୍ଟି କରିଥାଏ ।

ସଭାରେ ପ୍ରଥମ କେତେ ମିନଟ୍ ସେ ସମ୍ପୂର୍ଣ୍ଣ ନିଶ୍ଚଳ ଭାବରେ ଲୋକମାନଙ୍କୁ ଚାହିଁ ବସିରହନ୍ତି, ବେଳେବେଳେ ଆକାଶକୁ ବା ଗଛପତ୍ର ଆଡ଼କୁ ମଧ୍ୟ ମୁହଁ ଘୁରାଇ ଚାହିଁ ରହନ୍ତି । ତାଙ୍କର ନିସ୍ତବ୍ଧତା ଭିତରେ ଚାରିଆଡ଼ର ଶବ୍ଦ କୋଳାହଳ ଧୀରେ ଧୀରେ ସ୍ପଷ୍ଟରୁ ସ୍ପଷ୍ଟତର ହୋଇଉଠେ । ମୁଣ୍ଡ ଉପରେ କାଉର କର୍କଶ ରବ, ଦୂରରେ ପକ୍ଷୀମାନଙ୍କର କିଚିର ମିଚିର, ରାସ୍ତା ସେପଟୁ ବଡ଼ ବଡ଼ ଓଜନଦାର ଟ୍ରକ୍ ବସ୍‌ର ଶବ୍ଦ, ଟ୍ରେନ ହୁଇସିଲ, ପୁଣି ଆଉ କେତେବେଳେ ଦୂରରୁ ଭାସି ଆସୁଥିବା ସିନେମା ଗୀତ ' ସେଇ ବାହାରିଆ ଶବ୍ଦ ସବୁ ଧୀରେ ଧୀରେ ଏତେ ସ୍ପଷ୍ଟ ହୋଇଉଠେ ଯେ ତହିଁରୁ ବି ଏକ ପ୍ରକାର ନିସ୍ତବ୍ଧତା ସଞ୍ଚରିବାରେ ଲାଗେ । ଏତିକବେଳେ କ୍ରିଷ୍ଣମୂର୍ତ୍ତି ଅଗ୍ରନକ ତାଙ୍କର ଭାଷଣ ଆରମ୍ଭ କରନ୍ତି । ଭାଷଣରେ ତାଙ୍କର କେବେହେଲେ କୌଣସି ପାରମ୍ପରିକ ବକ୍ତା-ପରିଚୟ ବା ବିଷୟ-ପରିଚୟର ପର୍ବ ନ ଥାଏ । ଖୁବ୍ ସାଦାସିଧା ଭାବରେ ସେ କହିବାକୁ ଆରମ୍ଭ କରନ୍ତି, "ଜଣେ ବ୍ୟକ୍ତି ତା'ର ଜୀବନଯାକ ଅସରନ୍ତି ଭାବରେ କେବଳ ବହି ପଢ଼ି ତାକୁଇ' ଆଲୋଚନା କରିବାରେ ଲାଗିଥାଏ, କିନ୍ତୁ ତା' ଆଗକୁ ସେ କେବେ ବଢ଼େ ନାହିଁ — ଠିକ୍ ଯେମିତି ଲୋକଟିଏ ବିଲରେ ଖାଲି ହଳ କରିବାରେ ଲାଗିଥାଏ; କେବେହେଲେ ବିହନ ବୁଣେ ନାହିଁ କି ଫସଲ କାଟେ ନାହିଁ ।" ଅଥବା, — "ଜୀବନର ଛୋଟ ଛୋଟ ଜିନିଷକୁ ଆମେ ସଦାବେଳେ ବଡ଼ ଗୁରୁତ୍ୱ ଦେଇ ଆସିଥାଉ, କିନ୍ତୁ ଜୀବନରେ ଯାହା ପ୍ରକୃତରେ ଗୁରୁତର ବା ଯାହାକି ଜୀବନର ମୌଳିକ ପ୍ରସଙ୍ଗ, ସେଥିନେଇ ଚିନ୍ତା କରିବା ବ୍ୟକ୍ତି ବିରଳ ।"

କେବେ କେବେ ଭାଷଣ ମଝିରେ ସେ ହଠାତ୍ ଅଟକି ଯାଇ ଗଛ ଡାଳରୁ କୋଇଲିର ଅଧୀର କୁହୁତାନ ଶୁଣିବାରେ ଲାଗନ୍ତି ଓ ଶ୍ରୋତାମାନଙ୍କୁ ମଧ୍ୟ ତାହା ଶୁଣିବା ପାଇଁ କହନ୍ତି । ଭାଷଣ ଶେଷ ହେବା ପରେ ସେମିତି, ସେ କିଛି ସମୟ ପାଇଁ ସ୍ଥିର ଭାବରେ ଲୋକମାନଙ୍କୁ ଚାହିଁ ବସି ରହନ୍ତି । ତା'ପରେ ହଠାତ ଉଠି ପଡ଼ି ବଡ଼ ବଡ଼ ଖୋଜରେ ମଞ୍ଚରୁ ଓହ୍ଲାଇ ସିଧା ଫେରି ଯାଆନ୍ତି । ୧୯୭୦ ମସିହାର ଗୋଟିଏ ଘଟଣା । କୃଷ୍ଣମୂର୍ତ୍ତି ସିଡନୀଠାରେ ଗୋଟିଏ ସଭାରେ ଭାଷଣ ଦେଉଥିଲେ । ହଲ ଭିତରଟା ପୂରା ଖୁନ୍ଦା ଖୁନ୍ଦି । ପୁଣି ବାହାର ବାରନ୍ଦାର ଦୁଇ କଡ଼ରେ ବି ଲୋକେ ଛିଡ଼ା ହୋଇ ରହିଥିଲେ । ଏତିକିବେଳେ, ଭାଷଣ ମଝିରେ କୁଆଡ଼ୁ ଗୋଟିଏ ଲୋକ ଭିଡ଼ ଠେଲି ଆଗକୁ ମାଡ଼ି ମାଡ଼ି ଆସିଲା । ସେ ଟିକିଏ ବେଶୀ ପିଇ ଦେଇଥିଲା; ଠିକ୍ ହୋସ୍‌ରେ ନ ଥିଲା । ହଲ୍ ମଝିରେ ଛିଡ଼ା ହୋଇ ଯାଇ ପ୍ରଥମେ କିଛି କ୍ଷଣ ପାଇଁ ସେ କୃଷ୍ଣମୂର୍ତ୍ତିଙ୍କ କଥା ଶୁଣିବା ଭଳି ମନେ ହେଲା । ତା'ପରେ ଆଉ କାହାରିକୁ ନ ଚାହିଁ ସିଧା ଚାଲିଲା ମଞ୍ଚ ଉପରକୁ । ଅନ୍ୟମାନେ ପ୍ରମାଦ ଗଣିଲେ । ସେମାନେ ବୁଝିଲେ ଯେ ଲୋକଟି କିଛି ଗୋଟାଏ ଅନର୍ଥ ସୃଷ୍ଟି କରିବାକୁ ଯାଉଛି । ଆଗକୁ ଯାଉ ଯାଉ ଲୋକଟି କ୍ରିଷ୍ଣମୂର୍ତ୍ତିଙ୍କୁ ଚାହିଁ ଜୋର୍‌ରେ ପାଟି କରି ଚାଲିଥାଏ, "ନା, ନା, ·· ···କିଏ କହିଲା ? ଆପଣ ଯାହା କହୁଛନ୍ତି କାହିଁ ମୁଁ ତ ତାକୁ ଠିକ୍ ବୋଲି ଭାବୁନାହିଁ !"

କୃଷ୍ଣମୂର୍ତ୍ତି ମଦୁଆଟିକୁ କେମିତି ସମ୍ଭାଳିବେ ବୋଲି ଦେଖିବା ପାଇଁ ସମସ୍ତେ ଉଦ୍‌ବିଗ୍ନ ହୋଇ ଚାହିଁ ବସିଥାନ୍ତି । କ୍ରିଷ୍ଣମୂର୍ତ୍ତି ହଠାତ୍ ସେଇ ଲୋକଟିକୁ ମଞ୍ଚ ଉପରକୁ ଉଠି ଆସିବାକୁ ଡାକିଲେ । ଲୋକଟି ମଧ୍ୟ କିଛି ନ ଭାବିକି ସିଧା ଉପରକୁ ମାଡ଼ିଗଲା । କିଛି ସମୟ ପାଇଁ କୃଷ୍ଣମୂର୍ତ୍ତି ନିଶ୍ଚଳ ଭାବରେ ନିଜ ଆସନରେ ବସି ରହିଲେ । ତା'ପରେ ଚଉକିଟିଏ ମଗାଇ ତା'କୁ ନିଜ ପାଖରେ ବସିବାକୁ ଦେଲେ । ବଡ଼ ଆଶ୍ଚର୍ଯ୍ୟର କଥା, ଲୋକଟି ନୀରବରେ ବସି ରହି ଅତ୍ୟନ୍ତ ମନଧ୍ୟାନ ସହକାରେ ଭାଷଣର ଅବଶିଷ୍ଟାଂଶ ଶୁଣିବାକୁ ଲାଗିଲା । ଲୋକଟି ଯେ ସେଠାରେ ବସିଛି, କେତେ ମିନିଟ୍ ଭିତରେ ଶ୍ରୋତାମଣ୍ଡଳୀ ସେ କଥା ଭୁଲି ବି ଗଲେ ।

କେବଳ ମଣିଷ ନୁହେଁ ପଶୁ ପକ୍ଷୀ ନେଇ ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ଜୀବନରେ ଏଭଳି କେତେକ ଘଟଣା ଘଟିଛି, ଯାହା କି ସେମାନଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କକୁ ସୂଚାଇ ଦେଇଛି । ଅନେକ ବର୍ଷ ତଳେ ଭାରତରେ ଥିବା ସମୟରେ ଏକଦା ସେ ହିମାଳୟର ଏକ ଶୈଳ ନିବାସ — 'ଆର୍ଭି'ଠାରେ ରହୁଥିଲେ । ତାଙ୍କ ରହିବା ଘରର ଚାରିକଡ଼େ ଥିବା ବଡ଼ ବଡ଼ ଗଛରେ ପଞ୍ଝାଏ ହନୁମାଙ୍କଡ଼ ରହୁଥିଲେ । ଦିନ ତମାମ ସେମାନେ ଖାଲି ଏ ଡାଳରୁ ସେ ଡାଳ, ଏ ଗଛରୁ ସେ ଗଛ ଡିଆଁ କୁଦା, ନାଚ ନାଚ ଲଗାଇଥାନ୍ତି । ଦିନେ ସକାଳ ବେଳା କୃଷ୍ଣମୂର୍ତ୍ତି ବଖରା ଭିତରେ ବସି କ'ଣ ଗୋଟାଏ ଲେଖୁଛନ୍ତି, ହଠାତ୍ ତାଙ୍କର ମନେ ହେଲା କେହି ଯେପରି ତାଙ୍କୁ ଏକ ଲୟରେ ଚାହିଁ ରହିଛି । ମୁହଁ ଉଠାଇ ଦେଖିଲାବେଳକୁ ଗୋଟାଏ ମସ୍ତ ବଡ଼ ଗେଧ ମାଙ୍କଡ଼ ଆସି ତାଙ୍କର ଖୋଲା ଝରକାର ବନ୍ଧରେ ବସି ଘର ଭିତରକୁ ଏକ ଲୟରେ ଚାହିଁ ରହିଛି । କୃଷ୍ଣମୂର୍ତ୍ତି ଉଠି ଝରକା ପାଖକୁ ଆସିଲେ । ଯେମିତି ଦିହେଁ ମୁହାଁ ମୁହିଁ ହୋଇଛନ୍ତି, ସାଙ୍ଗେ ସାଙ୍ଗେ ମାଙ୍କଡ଼ଟି ତା'ର ରୁମରୁମିକା ନରମ ପାଉଁଶିଆ ହାତଟିକୁ ଝରକାବାଟେ ଭିତରକୁ ବଢ଼ାଇ ଦେଲା । କୃଷ୍ଣମୂର୍ତ୍ତି ତା'ର ରୁଗୁରୁଗିଆ ପାପୁଲିଟିକୁ ଧରି କେତେ ସମୟ ସେଇଠି ଛିଡ଼ା ହୋଇ ରହିଲେ । ଦିହିଁଙ୍କ ଭିତରେ ସତେ ଅବା ଚରମ ବିଶ୍ୱାସର ଏକ ସ୍ରୋତ ବହି ଚାଲିଥିଲା । କିଛି ସମୟ ପରେ ମାଙ୍କଡ଼ଟି ଠେଲି ହୋଇ ବଖରା ଭିତରକୁ ପଶିବାକୁ ଚେଷ୍ଟା କଲା । କୃଷ୍ଣମୂର୍ତ୍ତି ତା'କୁ ଧୀରେ ହାତରେ ବାହାରକୁ ଠେଲି ଝରକା ବନ୍ଦ କରିଦେବାକୁ ବାଧ୍ୟ ହେଲେ ।

# 'ଭୟ' ଓ ମାନସିକ ଚଳତ୍ସା

୧୯୬୩ ମସିହା ଜୁନ୍ ମାସରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ପ୍ରଥମ ଆନ୍ତର୍ଜାତୀୟ ସମ୍ମିଳନୀ ବ୍ରକ୍‌ଉଡ଼୍ ଠାରେ ଅନୁଷ୍ଠିତ ହେଲା । ଏଥିରେ ଇଂଲଣ୍ଡ, ଭାରତ, ଆମେରିକା ଓ ୱେଷ୍ଟ ଇଣ୍ଡିଜ୍ ଫାଉଣ୍ଡେସନ୍ ଶାଖାର ପ୍ରତିନିଧିମାନେ ଯୋଗ ଦେଇ ପ୍ରାୟ ଦଶ ଦିନ ବ୍ୟାପି କୃଷ୍ଣମୂର୍ତ୍ତିଙ୍କ ସହ ସେମାନଙ୍କ ଦାୟିତ୍ୱ, ସମସ୍ୟା ଓ ଫାଉଣ୍ଡେସନର କାର୍ଯ୍ୟକଳାପ ସମ୍ବନ୍ଧରେ ବିଶଦ ଆଲୋଚନା କରିଥିଲେ । ସେହିଠାରେ ସର୍ବସମ୍ମତିକ୍ରମେ ଗୃହିତ ହେଲା ଯେ ଭବିଷ୍ୟତରେ କୃଷ୍ଣମୂର୍ତ୍ତିଙ୍କର ସମସ୍ତ ରଚନାବଳୀର ସ୍ୱତ୍ତ୍ୱ ପୂର୍ବ ଭଳି କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍ ଇଂଲଣ୍ଡ (କେ. ଏଫ୍. ଇ.) ଠାରେ ନ୍ୟସ୍ତ ରହିବ ଏବଂ ତାହା ସଙ୍ଗେ ସଙ୍ଗେ ଭାରତୀୟ ଶାଖା (କେ· ଏଫ୍· ଆଇ) ଭାରତରେ ଅନୁଷ୍ଠିତ ସମସ୍ତ ଭାଷଣ ତଥା ଆଲୋଚନାକୁ ପ୍ରକାଶ କରିବାର ଅଧିକାର ଲାଭ କରି ପାରିବ । ସେହିଠାରେ ଦିନେ ପ୍ରସଙ୍ଗକ୍ରମେ ବିଭିନ୍ନ ଫାଉଣ୍ଡେସନର ପ୍ରତିନିଧିମାନଙ୍କୁ ଉଦ୍ଦେଶ୍ୟ କରି କୃଷ୍ଣମୂର୍ତ୍ତି କହିଥିଲେ, "ଆପଣମାନେ ତ' ସମସ୍ତେ ଜାଣନ୍ତି, ମୁଁ ଏକଦା ୧୯୧୧ ମସିହାରେ ପ୍ରତିଷ୍ଠିତ ଏକ ବୃହତ୍ ସଙ୍ଗଠନର ମୁଖ୍ୟ ପୁରୋଧା ଥିଲି ଏବଂ ସେହି ପୃଥିବୀବ୍ୟାପୀ ସଙ୍ଗଠନର ସଭ୍ୟ ସଂଖ୍ୟା ମଧ୍ୟ ବହୁତ ଥିଲା । ମାତ୍ର ୧୯୨୯ ମସିହାରେ ସେହି ସଙ୍ଗଠନକୁ ମୁଁ ନିଜେ ଭାଙ୍ଗି ଦେଲି । ସେତେବେଳେ ମୁଁ କହିଥିଲି ଯେ ସତ୍ୟ ନିକଟରେ ପହଞ୍ଚିବା ଲାଗି କୌଣସି ମାର୍ଗ ନାହିଁ, କିମ୍ବା କୌଣସି ସଙ୍ଗଠନ ବା ଧର୍ମ ଅନୁଷ୍ଠାନ ମନୁଷ୍ୟକୁ କଦାପି ସତ୍ୟ ବା ମୁକ୍ତି ନିକଟରେ ପହଞ୍ଚାଇ ମଧ୍ୟ ପାରିବ ନାହିଁ । ତା'ଛଡ଼ା ମୁଁ ଏକଥା ମଧ୍ୟ କହିଥିଲି ଯେ ଏହିସବୁ ତଥାକଥିତ ଆଧ୍ୟାତ୍ମିକ ପଥରେ କୌଣସି ଧରଣର କର୍ତ୍ତୃତ୍ୱ ବା ଦିଗ୍‌ଦ୍ରଷ୍ଟା — 'ଗୁରୁ'ର ସ୍ଥାନ ନାହିଁ । ଏ ପଥରେ କୌଣସି ପ୍ରକାର ଅନୁସରଣ କ୍ରିୟା ରହିଲେ ତାହା କେବଳ ଅନୁସରଣକାରୀକୁ ଭ୍ରଷ୍ଟ କରାଇ ଥାଏ । ସେଥି ପାଇଁ ତମକୁ ନିଜେ ହିଁ ନିଜର ଗୁରୁ ତଥା ଶିଷ୍ୟର ଆସନ ନେବାକୁ ପଡ଼ିବ ।

× × × × ×

୧୯୭୩, ସେପ୍ଟେମ୍ବର ମାସରେ ବ୍ରକ୍‌ଉଡ୍‌ଠାରେ ଥିବାବେଳେ କୃଷ୍ଣମୂର୍ତ୍ତି ପୁଣି ଥରେ ପ୍ରତିଦିନ ଡାଏରି ଲେଖିବାକୁ ଆରମ୍ଭ କରିଥିଲେ । ଛଅ ସପ୍ତାହକାଳ ନିୟମିତ ଏହିଭଳି ଲେଖିବା ପରେ ନଭେମ୍ବର ମାସରେ ଭାରତ ଆସିବା ସମୟରେ କିଛି ମାସ ପାଇଁ ଲେଖା ବନ୍ଦ ରଖିଥିଲେ । ତା'ପରେ ପୁଣି ୧୯୭୫, ଏପ୍ରିଲ ମାସରେ ଯେତେବେଳେ ସେ ଲେଖିବାକୁ ଆରମ୍ଭ କଲେ ସେତେବେଳକୁ ସେ ଆସି କାଲିଫର୍ଣ୍ଣିଆରେ । ପରେ, ୧୯୮୨ ମସିହାରେ ତାଙ୍କର ସେହି ଟିପା ଖାତାଟି 'କୃଷ୍ଣମୂର୍ତ୍ତିଜ ଜର୍ଣ୍ଣାଲ' ନାମରେ ପ୍ରକାଶ ପାଇଲା । ଟିପାଖାତାର ପ୍ରତିଟି ପରିଚ୍ଛେଦରେ ସେ ନିଜକୁ ତୃତୀୟ ପୁରୁଷରେ ଉଲ୍ଲେଖ କରି ଦୈନନ୍ଦିନ ଜୀବନର କେତେକ ଅନୁଭବକୁ ଭାଷାରେ ରୂପ ଦେଇଛନ୍ତି । ଉକ୍ତ ଡାଏରିଟି ତାଙ୍କର ବ୍ୟକ୍ତିତ୍ୱ ଓ ବୈଶିଷ୍ଟ୍ୟର ଏକ ନିଖୁଣ ନିଦର୍ଶନ । ଦୀର୍ଘକାଳ ବ୍ୟାପୀ ଲେଖା ଯାଇଥିବା ଏହି ଡାଏରିର ପ୍ରତ୍ୟେକ ଦିବସ ଏକ ପରିପାର୍ଶ୍ୱିକ ପ୍ରାକୃତିକ ବର୍ଣ୍ଣନାରୁ ଆରମ୍ଭ ହୋଇ ଶୃଙ୍ଖଳା, ନିର୍ଭରଶୀଳତା, ପବିତ୍ରତା, ଆମୋଦ ଉଲ୍ଲାସ, ଭାବନା, ଦୁଃଖ — ଆଦି ଅନେକ ଗଭୀର ମନସ୍ତାତ୍ତ୍ୱିକ ସମସ୍ୟା ଉପରେ ଆଲୋକପାତ କରିଛି ।

ଓହାଇଠାରେ ଗୋଟିଏ ସ୍କୁଲ ଖୋଲିବା ପାଇଁ କୃଷ୍ଣମୂର୍ତ୍ତିଙ୍କ ମନରେ ବହୁତ ଦିନରୁ ଇଚ୍ଛା ଥିଲା । ସେଥିଲାଗି ଆବଶ୍ୟକୀୟ ଅର୍ଥ ଆଦି ସଂଗ୍ରହ ହେବା ପରେ ୧୯୭୫ ମସିହା ସୁଦ୍ଧା ଓହାଇ ଉପତ୍ୟକାର ପଶ୍ଚିମ ପଟେ ସ୍କୁଲ ଉଦ୍ଦେଶ୍ୟରେ କୋଠାଘର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ଯାଇଥିଲା । ସେହି ବର୍ଷ ମାର୍ଚ୍ଚ ମାସରେ କୃଷ୍ଣମୂର୍ତ୍ତି ଆସି ନିଜର ପ୍ରିୟ ପାଇନ୍ କଟେଜ୍‌ରେ ତିନି ଦିନ କଟାଇଥିଲେ । ସେତେବେଳକୁ ରାଜଗୋପାଳ-ଗଣ୍ଡଗୋଳ ସମ୍ପୂର୍ଣ୍ଣ ତୁଟି ଯାଇଥିଲା ଏବଂ ଆପୋଷ ମିଳାମିଶାର ଚୁକ୍ତି ଅନୁଯାୟୀ ରାଜଗୋପାଳ ଉକ୍ତ ଘରଟିକୁ ଖାଲି କରି ଦେଇଥିଲେ । ତେଣୁ ସେଠାରେ କୃଷ୍ଣମୂର୍ତ୍ତିଙ୍କର ରହିବାର

ଆଉ କୌଣସି ଅସୁବିଧା ନ ଥିଲା । ଓହାଇରେ ତିନି ଦିନ କଟାଇ ସାରିବା ପରେ ସେ ଏପ୍ରିଲ ୨୯ ଓ ୩୦ ତାରିଖ — ଦୁଇ ଦିନ ଧରି ନିଉୟର୍କ ଠାରେ ମନସ୍ତତ୍ତ୍ୱବିତ୍‌ମାନଙ୍କର ଏକ ଉଚ୍ଚସ୍ତରୀୟ ଆଲୋଚନା ସଭାରେ ଯୋଗ ଦେବାପାଇଁ ସେଠାକୁ ଯାତ୍ରା କଲେ । ବିଖ୍ୟାତ ମନସ୍ତତ୍ତ୍ୱବିତ୍, ମାନସିକ ଚିକିତ୍ସକ ଓ ସମାଜସେବୀ ମିଶି ମୋଟ ପଚାଶ ଜଣ ବୁଦ୍ଧିଜୀବୀ ସେଠାରେ ଉପସ୍ଥିତ ଥିଲେ । ପାରସ୍ପରିକ ସମ୍ପର୍କର ବାସ୍ତବ ଅର୍ଥ ଉନ୍ମୋଚନ କରିବା ତଥା ସେମାନଙ୍କ କର୍ମକ୍ଷେତ୍ରରେ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ପ୍ରଣାଳୀର ତାତ୍ପର୍ଯ୍ୟ ଆଲୋଚନା କରିବା ଉକ୍ତ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଆଲୋଚନାର ପ୍ରଥମ ପର୍ଯ୍ୟାୟରେ ପ୍ରଶ୍ନ ଉଠିଲା — 'ଭୟର ମୂଳ ତଥା ଅନ୍ତର୍ନିହିତ କାରଣଟି କ'ଣ ?' କ୍ରମଶଃ ଆଲୋଚନାରୁ ଜଣାଗଲା ଯେ ଭୟଟା ଦୁଇ ପ୍ରକାରର । ପ୍ରଥମଟି ହେଲା ଆତ୍ମରକ୍ଷା ସମ୍ବନ୍ଧୀୟ ସହଜାତ ଜ୍ଞାନ । ଅର୍ଥାତ, ସାପଟାଏ ଦେଖି ପକେଇଲେ ବା ଘରେ ନିଆଁ ଲାଗିଛି ବୋଲି ଦେଖିଲେ ଶରୀରରେ ଯେଉଁ ପ୍ରତିକ୍ରିୟା ଜାତ ହୁଏ, ତାହା ଗୋଟିଏ ପ୍ରକାର ଭୟ । ମାତ୍ର ଅନ୍ୟଟି ହେଉଛି ମାନସିକ ଭୟ, ଯାହା କି ପ୍ରଥମଟି ଠାରୁ ସମ୍ପୂର୍ଣ୍ଣ ପୃଥକ । ସେହି ଦ୍ୱିତୀୟ ପ୍ରକାର ଭୟ ବିଷୟରେ ଆଲୋଚନା କରି କୃଷ୍ଣମୂର୍ତ୍ତି ସେଠାରେ ଦୃଢ଼ ଭାବରେ କହିଥିଲେ ଯେ ମାନସିକ ଭୟଟା କେବଳ ଭାବନା ଦ୍ୱାରା ହିଁ ସୃଷ୍ଟ ହୋଇଥାଏ; ଭାବନା ନ ଥିଲେ ଏ ପ୍ରକାର ଭୟର ଅସ୍ତିତ୍ୱ ହିଁ ନାହିଁ । ଏକଥା ଶୁଣି ଜଣେ ମନସ୍ତତ୍ତ୍ୱବିତ୍ ତାଙ୍କୁ ପଚାରିଲେ "କିନ୍ତୁ ଭାବନା ନ ଥାଇ ବ୍ୟକ୍ତି ମନୁଷ୍ୟ ପଦବାଚ୍ୟ ହେବ ବା କିପରି ?" କୃଷ୍ଣମୂର୍ତ୍ତି ତାଙ୍କୁ ଆଲୋଚନାର ପ୍ରସଙ୍ଗକ୍ରମେ ବୁଝାଇ ଦେଲେ ଯେ ମନୁଷ୍ୟ ସମ୍ପୂର୍ଣ୍ଣ ଭୟହୀନ ଭାବରେ ଚଳିବା ସମ୍ଭବ ଏବଂ ଭୟର ଆଦି ଉତ୍ସକୁ ଯାଇ ତାହାକୁ ଆବିଷ୍କାର କରିପାରିବା ମଧ୍ୟ ସମ୍ଭବପର । ତେଣୁ ଏ ଦିଗରେ ଚିନ୍ତା କରିବା ପାଇଁ ସେ ବୁଦ୍ଧିଜୀବୀମାନଙ୍କୁ ଉତ୍ସାହିତ କରିଥିଲେ । ମାନସିକ ଭୟ ବିଷୟରେ ସେ କହିଥିଲେ ଯେ, ଥରେ କିଛି ଗୋଟାଏ 'ହାସଲ' କରିନେବା ପରେ ବା କିଛି ଗୋଟାଏ 'ପାଲଟିଯିବା' ପରେ ପୁଣି କାଳେ ସେଇଟା

'ହାତରୁ ଖସିଯିବ' — ସେଇ ଭୟଟା ହେଉଛି ସକଳ ଭୟର ଉତ୍ସ । ତାଙ୍କଠାରୁ ଏକଥା ଶୁଣି ମାନସିକରୋଗ ବିଶେଷଜ୍ଞମାନେ ମନେ ମନେ ଚମକି ପଡ଼ିଥିଲେ । କାରଣ ସେମାନେ ଅବଲମ୍ବନ କରି ଆସୁଥିବା ଚିକିତ୍ସା ପଦ୍ଧତିରେ ସାଧାରଣତଃ ରୋଗୀକୁ ଭୟମୁକ୍ତ କରାଇବାଲାଗି ତାର ମାନସିକ ଭାବନାକୁ ବଢ଼ାଇବାକୁ ସେମାନେ ଚେଷ୍ଟା କରିଥାନ୍ତି । ସେ ଯେପରି ସମାଜରେ କିଛି ଗୋଟାଏ ପାଲଟିଯାଇ ପାରିବ, ସେଇକଥା ତା' ମୁଣ୍ଡରେ ଢୁକାଇବାକୁ ବରାବର ଚେଷ୍ଟା କରିଥାନ୍ତି । ଅଥଚ କୃଷ୍ଣମୂର୍ତ୍ତି ଯେ କହୁଛନ୍ତି 'କିଛି ଗୋଟାଏ ପାଲଟିବାକୁ ବସିବା'ଟା ହିଁ ଭୟର ମୂଳ କାରଣ !

ପରେ ଆଲୋଚନାରେ ଭାଗ ନେଇଥିବା ବୁଦ୍ଧିଜୀବୀମାନଙ୍କୁ ବ୍ୟକ୍ତିଗତ ଭାବରେ ପଚାରିବାରେ ଜଣାଯାଇଥିଲା ଯେ ଯଦିଓ ସେମାନେ ପ୍ରଥମେ 'କୃଷ୍ଣମୂର୍ତ୍ତି'ଙ୍କର ମର୍ମାର୍ଥକୁ ଧରି ପାରି ନ ଥିଲେ ତଥାପି ଧୀରେ ଧୀରେ ସେମାନେ ଅନୁଭବ କରିଥିଲେ ଯେ ଏହା ଦ୍ୱାରା ଏକ ଅଭିନବ ସୃଜନଶୀଳ ପନ୍ଥା ତାଙ୍କ ସମ୍ମୁଖରେ ଉନ୍ମୁକ୍ତ ହୋଇପାରିଛି । ଭାବନା ଓ ସମୟକାଳର ମାଡରୁ ସମ୍ପୂର୍ଣ୍ଣ ଭିନ୍ନ, ଅର୍ଥାତ ପ୍ରତ୍ୟେକ ମୁହୂର୍ତ୍ତରେ ନୂଆ କରି ବଞ୍ଚିବାର ଏକ ଅଭୂତପୂର୍ବ ଉପାୟଟି ସେମାନଙ୍କ ମନ ଓ ଅନ୍ତରକୁ ବାସ୍ତବରେ ଚହଲାଇ ଦେଇଥିଲା ।

୧୯୭୫ ମସିହା ଅକ୍ଟୋବର ମାସରେ ଭାରତରେ ଜରୁରୀକାଳୀନ ପରିସ୍ଥିତି ଜାରି ହେଲା । ସେତେବେଳକୁ ଦେଶ ଯେ କେବଳ ଏକ ରାଜନୈତିକ ସଙ୍କଟ ମଧ୍ୟରେ ଗତି କରୁଥିଲା ତା' ନୁହେଁ; ବ୍ୟକ୍ତିଗତ ସ୍ୱାଧୀନତା କ୍ଷେତ୍ରରେ ମଧ୍ୟ ସମାଜରେ ନାନା ରକମର କଟକଣା ଲାଗୁ ହୋଇଥିଲା । ସେ ବର୍ଷ କୃଷ୍ଣମୂର୍ତ୍ତି ଜାଣିଶୁଣି ନିଜର ଭାରତ ଗସ୍ତ ବନ୍ଦ ରଖିଥିଲେ । ତାଙ୍କର ବିଭିନ୍ନ ଦେଶ ଗସ୍ତର ଏକମାତ୍ର ଉଦ୍ଦେଶ୍ୟ ଥାଏ ଭାଷଣ ଓ ଆଲୋଚନା ମାଧ୍ୟମରେ ଲୋକଙ୍କୁ ଶିକ୍ଷାଦାନ କରିବା । ସେ କେବେହେଲେ ତାଙ୍କର କୌଣସି ଭାଷଣ ବା ବକ୍ତୃତାରେ ଲୋକଙ୍କୁ ତାଙ୍କର ଦର୍ଶନ ଗ୍ରହଣ କରିବାକୁ କିମ୍ବା ତାଙ୍କର ବହି ପଢ଼ିବାକୁ ବାଧ୍ୟ କରିନାହାନ୍ତି । ବରଂ ସେ ସଦାବେଳେ ଶ୍ରୋତା ଓ ପାଠକଙ୍କୁ ଏକ ମୁକ୍ତ

ଓ ନିର୍ମଳ ମନ ନେଇ ଜୀବନକୁ ଅନୁଭବ କରିବାକୁ କହି ଥାଆନ୍ତି । ତେଣୁ ଯେତେବେଳେ ସେ ଜାଣିବାକୁ ପାଇଲେ ଯେ ରାଜନୈତିକ ପରିସ୍ଥିତି ଯୋଗୁ ଭାରତରେ ତାଙ୍କର ସ୍ୱଚ୍ଛନ୍ଦରେ ଭାଷଣ ଦେବା ଉପରେ କଟକଣା ଜାରି ହୋଇ ପାରେ ଓ ଜନସାଧାରଣ ଭାଷଣ ସଭାରେ ଯୋଗ ଦେବା ଉପରେ ମଧ୍ୟ ଆଇନ୍ ବ୍ୟବସ୍ଥା କରାଯାଇ ପାରେ, ସେତେବେଳେ ସେ ଇଚ୍ଛା କରି ସେ ବର୍ଷର ଭାରତ ଗସ୍ତ ବନ୍ଦ ରଖିଲେ । କୃଷ୍ଣମୂର୍ତ୍ତି ତାଙ୍କର ଅଧିକାଂଶ ଭାଷଣରେ ସ୍ୱାଧୀନତା ଉପରେ ଜୋର୍ ଦେଇଥାନ୍ତି । ବାକ୍ ସ୍ୱାଧୀନତା, ଆପଣାକୁ ପ୍ରକାଶ କରିବାର ସ୍ୱାଧୀନତା ଏବଂ ବଞ୍ଚିବାର ସ୍ୱାଧୀନତା ଇତ୍ୟାଦିକୁ ସେ ଜୀବନରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରିଥାନ୍ତି । ତେଣୁ ସେ ଯଦି ସେ ବର୍ଷ ଭାରତରେ ଭାଷଣ ଦେବାକୁ ଆସିଥାନ୍ତେ ତେବେ ଶ୍ରୋତାମାନେ ତାଙ୍କୁ ନିଶ୍ଚିତ ଭାବରେ ତତ୍କାଳୀନ ରାଜନୈତିକ ପରିସ୍ଥିତି ସମ୍ପର୍କରେ କେତେକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଥାନ୍ତେ ଓ କୃଷ୍ଣମୂର୍ତ୍ତି ତା'ର ଖୋଲାଖୋଲି ଉତ୍ତର ମଧ୍ୟ ଦେଇଥାନ୍ତେ, ଯାହା ଦ୍ୱାରା କି ଭାରତ ସରକାର ତାଙ୍କ ସଭା ଉପରେ ନିଷେଧାଦେଶ ଜାରି କରି ପାରିଥାନ୍ତେ ଓ ତାଙ୍କୁ ଦେଶରେ ଅଟକ ମଧ୍ୟ ରଖି ପାରିଥାନ୍ତେ । ତେଣୁ ସେ ବର୍ଷ ଭାରତ କାର୍ଯ୍ୟକ୍ରମ ବନ୍ଦ କରି ସେ କାଲିଫର୍ଣ୍ଣିଆର ଓହାଇ ଓ ମାଲିବୁ ଠାରେ ସମୟ କଟାଇବାକୁ ନିଷ୍ପତ୍ତି ନେଲେ । ସେତେବେଳକୁ ଓହାଇର ନୂଆ ଓକ୍‌ଗ୍ରୋଭ୍ ସ୍କୁଲ୍ ଖୋଲିବା ଉପରେ । ତା'ଛଡ଼ା କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାକୁ ଆଗ୍ରହୀ ଓ ଉତ୍ସୁକ ବୟସ୍କ ଜନସାଧାରଣ ନିକଟରେ ପହଞ୍ଚାଇବା ଉଦ୍ଦେଶ୍ୟରେ ସେଠାରେ ଏକ ଅଧ୍ୟୟନ କେନ୍ଦ୍ର ଖୋଲିବାର ପ୍ରସ୍ତାବକୁ ମଧ୍ୟ ବିଚାର କରାଯାଉଥିଲା । କୃଷ୍ଣମୂର୍ତ୍ତିଙ୍କର ସଙ୍କଳିତ ଭାଷଣକୁ ପୁସ୍ତକ ଓ କ୍ୟାସେଟ୍ ଆକାରରେ ସଂଗ୍ରହ କରି ଆଗ୍ରହୀ ଜନସାଧାରଣ ନିକଟରେ ଉପସ୍ଥାପିତ କରାଇବା ଉଦ୍ଦେଶ୍ୟରେ ଏହି ଅଧ୍ୟୟନ କେନ୍ଦ୍ର ନିର୍ମିତ ହୋଇଥିଲା । ଓହାଇରେ ଥିବା ଚାରିମାସ କାଳ କୃଷ୍ଣମୂର୍ତ୍ତି ଓକ୍‌ଗ୍ରୋଭ୍ ସ୍କୁଲ୍ ଓ ଅଧ୍ୟୟନ କେନ୍ଦ୍ରର କର୍ତ୍ତୃପକ୍ଷ, ଶିକ୍ଷାଦାତା ଓ ନାମଲେଖାଇବାକୁ ଆସିଥିବା ପିଲାମାନଙ୍କର ଅଭିଭାବକମାନଙ୍କ ସହିତ ଅନେକ ଆଲୋଚନା କରିବାର ସୁଯୋଗ ପାଇଥିଲେ ।

କ୍ରିଷ୍ଣମୂର୍ତ୍ତି-ସ୍କୁଲର ଲୋକପ୍ରିୟତା ଧୀରେ ଧୀରେ ଚାରିଆଡ଼େ ବ୍ୟାପିବାରେ ଲାଗିଲା । ପୃଥିବୀର ବିଭିନ୍ନ ସ୍ଥାନରୁ ଅନୁଷ୍ଠାନମାନ ନିଜ ନିଜ ଦେଶରେ କ୍ରିଷ୍ଣମୂର୍ତ୍ତି ସ୍କୁଲ ସ୍ଥାପନ କରିବାକୁ ବଡ଼ ଆଗ୍ରହୀ ହୋଇ ବ୍ରକ୍‌ଉଡ୍ ପାର୍କ କେନ୍ଦ୍ରକୁ ଚିଠି ଦେବାରେ ଲାଗିଲେ । ମାତ୍ର 'କ୍ରିଷ୍ଣମୂର୍ତ୍ତି ଫାଉଣ୍ଡେସନ୍' ପରିଚାଳନାରେ ଏତେଗୁଡ଼ିଏ ସ୍କୁଲ ବିଭିନ୍ନ ସ୍ଥାନରେ ଚଳାଇବାର ଅସୁବିଧାକୁ ଉପଲବ୍ଧି କରି କ୍ରିଷ୍ଣମୂର୍ତ୍ତି ଏକ ବିବୃତ୍ତିରେ କହିଥିଲେ ଯେ ଯେଉଁମାନେ ଏଭଳି ସ୍କୁଲ ପ୍ରତିଷ୍ଠା କରିବାକୁ ଚାହୁଁଛନ୍ତି ସେମାନେ "କ୍ରିଷ୍ଣମୂର୍ତ୍ତି" ନାମ ନ ରଖି ସ୍ୱାଧୀନ ଭାବରେ ସେ ଧରଣର ସ୍କୁଲ ଗଠନ କରିପାରିବେ ଓ ଛାତ୍ରଛାତ୍ରୀଙ୍କୁ ମୁକ୍ତ, ଭୟହୀନ ଭାବରେ ବଢ଼ିବାକୁ ସାହାଯ୍ୟ କରି ପାରିବେ ।

## ମୃତ୍ୟୁ ସହ କଥୋପକଥନ

୧୯୭୫ ଭଳି ୧୯୭୬ ମସିହାଟି ମଧ୍ୟ ଭାରତ ପାଇଁ ଏକ ସଙ୍କଟପୂର୍ଣ୍ଣ ବର୍ଷ ଥିଲା । କେବଳ ରାଜନୈତିକ କ୍ଷେତ୍ରରେ ନୁହେଁ, ସାମାଜିକ ଜୀବନର ପ୍ରତ୍ୟେକ ସ୍ତରରେ ଏକ ପ୍ରକାର ଭୟ ଓ ଅନିଶ୍ଚିତତା ଭରି ରହିଥିଲା । ଏଭଳି ପରିସ୍ଥିତିରେ କ୍ରିଷ୍ଣମୂର୍ତ୍ତି ଦିନେ କାଲିଫର୍ଣ୍ଣିଆରେ ଥାଇ ପୁପୁଲ ଜୟକରଙ୍କ ଠାରୁ ଗୋଟିଏ ଚିଠି ପାଇଲେ । ସେଥିରେ ଶ୍ରୀମତୀ ଜୟକର ତାଙ୍କୁ ସେ ବର୍ଷ ଭାଷଣ କାର୍ଯ୍ୟକ୍ରମରେ ଭାରତ ଆସିବାକୁ ଅନୁରୋଧ ଜଣାଇ ଲେଖିଥିଲେ ଯେ ତାଙ୍କର ଭାଷଣ ଓ ଆଲୋଚନା ସଭାର ଆୟୋଜନରେ ଅଥବା ସଭାରେ ଯୋଗଦାନ କରିଥିବା ଶ୍ରୋତାମାନଙ୍କ ଉପରେ କୌଣସି କଟକଣା ଲାଗୁ ହେବାର ସମ୍ଭାବନା ନାହିଁ । କହିବା ବାହୁଲ୍ୟ ଯେ, ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ-ଇନ୍ଦିରା ଗାନ୍ଧିଙ୍କ ସହିତ ଏ ବିଷୟରେ ଆଲୋଚନା କରି ଏବଂ ତାଙ୍କଠାରୁ ଆଗ୍ରହସୂଚକ ଆଶ୍ୱାସନା ପାଇ ପୁପୁଲ ଜୟକର ଏଭଳି ଚିଠି ଲେଖିଥିଲେ ।

କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ପ୍ରତି ଇନ୍ଦିରା ଗାନ୍ଧି ମୂଳରୁ ହିଁ ଆକୃଷ୍ଟ ଥିଲେ । ତାଙ୍କର ମୁକ୍ତି ବା ସ୍ୱାଧୀନତା ସମ୍ବନ୍ଧୀୟ ମନୋଭାବ, ଏବଂ ଆପଣା ଅନ୍ତରକୁ ନିରୀକ୍ଷଣ କରିବାର ପନ୍ଥା ଶ୍ରୀମତୀ ଗାନ୍ଧିଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ସେ ବର୍ଷ କୃଷ୍ଣମୂର୍ତ୍ତି ଭାରତ ଆସିବେ ବୋଲି ଜାଣି ସେ ଅତିଶୟ ଆନନ୍ଦିତ ମଧ୍ୟ ହୋଇଥିଲେ । ୧୯୭୬ ମସିହା ଅକ୍ଟୋବରରେ କୃଷ୍ଣମୂର୍ତ୍ତି ଦିଲ୍ଲୀରେ ପହଞ୍ଚି ପୁପୁଲଜୀଙ୍କ ଘରେ ଅତିଥି ହୋଇ ରହିଲେ । ସେଠାରେ ତାଙ୍କୁ ସାକ୍ଷାତ କରିବା ଲାଗି ଦିନେ ସନ୍ଧ୍ୟାରେ ଶ୍ରୀମତୀ ଗାନ୍ଧି ଆସି ପହଞ୍ଚିଲେ । ସେ ଦିନ ଥିଲା ଅକ୍ଟୋବର ୨୭ ତାରିଖ । ନନ୍ଦିନୀ ମେହେଟା, ଅଚ୍ୟୁତ ପଟବର୍ଦ୍ଧନ, ସୁନନ୍ଦା ପଟବର୍ଦ୍ଧନ, କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍ ଇଣ୍ଡିଆର ସେକ୍ରେଟାରୀ ପାମା ପଟବର୍ଦ୍ଧନ ଏବଂ ଲକ୍ଷ୍ମୀକାନ୍ତ ଝା' ପ୍ରଭୃତି ପୁପୁଲଜୀଙ୍କ ଘରେ ଆଗରୁ ଆସି ଉପସ୍ଥିତ ଥିଲେ । ସେଦିନ ସନ୍ଧ୍ୟାରେ ଅନେକ ସମୟ ଧରି ଶ୍ରୀମତୀ ଗାନ୍ଧି ଏକାନ୍ତରେ କୃଷ୍ଣମୂର୍ତ୍ତିଙ୍କ ସହିତ କଥାବାର୍ତ୍ତା କରିଥିଲେ । ରାତି ପ୍ରାୟ ନଅଟା ବେଳକୁ କଥା ସାରି କୋଠରୀରୁ ବାହାରିବାବେଳକୁ ସେ ଖୁବ୍ ଗମ୍ଭୀର ଦିଶୁଥିଲେ । ତା' ପରେ ରାତ୍ରୀ-ଭୋଜନ ସମୟରେ ସମସ୍ତଙ୍କ ସଙ୍ଗେ ଏକାଠି ବସିଥିଲେ ସୁଦ୍ଧା ସେ ଯେପରି କାହିଁ ଗଭୀର ଭାବରେ ଚିନ୍ତା କରୁଥିଲେ । ସେଦିନ ରାତିରେ ବହୁ ଡେରି ଯାଏଁ ସେଠାରେ ରହି ସେ ଘରକୁ ଫେରିଲେ । କିନ୍ତୁ ତା'ପରଦିନ ଏଗାରଟାବେଳେ ସେ ପୁଣି ଅଚୃନକ ଆସି ପହଞ୍ଚିଗଲେ — କୃଷ୍ଣମୂର୍ତ୍ତିଙ୍କ ସହିତ ଆଉ ଥରେ ସାକ୍ଷାତ କରିବା ଲାଗି । ସେଦିନ ଗାଡ଼ିରେ ସେ ଏକାକୀ ଆସିଥିଲେ; ସାଥିରେ କୌଣସି ଦେହରକ୍ଷୀଙ୍କୁ ସୁଦ୍ଧା ଆଣି ନ ଥିଲେ । ପ୍ରାୟ ଘଣ୍ଟାକରୁ ଉପର ସମୟ ସେ କୃଷ୍ଣମୂର୍ତ୍ତିଙ୍କ ସହ ନିରୋଳାରେ କଥାବାର୍ତ୍ତା କରିଥିଲେ । ଶେଷରେ ବଖରାରୁ ବାହାରି ଆସିବାବେଳକୁ ଆଖିରୁ ତାଙ୍କର ଝରଝର ହୋଇ ଲୁହ ଝରି ଯାଉଥିଲା । ତାଙ୍କୁ ଦେଖିଲେ ମନେ ହେଉଥିଲା ସତେ ଯେମିତି ଅନ୍ତରଟା ତାଙ୍କର ଚହଲି ଯାଇଛି । ବଖରାରୁ ବାହାରି ଆସି ସେ ପ୍ରଥମେ ନିଜକୁ ସମ୍ଭାଳି ନେବାକୁ ଚେଷ୍ଟା କଲେ । ତା'ପରେ ଚୁପ୍‌ଚାପ୍ ନିଜ ଗାଡ଼ିରେ ବସି ଫେରିଗଲେ । ଏ

ଘଟଣାର ଅନେକ ଦିନ ପରେ ସେ ପୁପୁଲ ଜୟକରଙ୍କ ଆଗରେ ସ୍ୱୀକାର କରିଥିଲେ ଯେ ସେହି ବିଶିଷ୍ଟ ଦିନ କୃଷ୍ଣମୂର୍ତ୍ତିଙ୍କ ସହିତ କଥାବାର୍ତ୍ତା କରି ସାରିବା ପରେ ହିଁ ଜରୁରୀ ପରିସ୍ଥିତି ଉଠାଇ ଦେବା ଲାଗି ତାଙ୍କ ମନରେ ପ୍ରଥମ ଥର ପାଇଁ ଭାବନା ଉଠିଥିଲା । ଆଉ ସତକୁ ସତ, ୧୯୭୭ ମସିହା ଜାନୁଆରୀ ମାସରେ କୃଷ୍ଣମୂର୍ତ୍ତି ଇଉରୋପ ଫେରିବା ପୂର୍ବରୁ ଭାରତରେ ନିର୍ବାଚନ ଘୋଷଣା ହୋଇଥିଲା ଓ ତା' ସଙ୍ଗେ ସଙ୍ଗେ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରି ଦିଆଯାଇଥିଲା ।

ବମ୍ବେଠାରେ ଥାଇ କୃଷ୍ଣମୂର୍ତ୍ତି ଯେତେବେଳେ ଏ ଖବର ପାଇଲେ ସେ ଏତେ ଖୁସି ହୋଇଗଲେ ଯେ ଇଉରୋପ ଫେରିବା ପୂର୍ବରୁ ଇନ୍ଦିରା ଗାନ୍ଧିଙ୍କୁ ପୁଣିଥରେ ଦେଖା କରିବା ପାଇଁ ଦିଲ୍ଲୀ ଯିବାକୁ ମଧ୍ୟ ସେ ପ୍ରସ୍ତୁତ ଥିଲେ । ମାତ୍ର କେତେକ ଅସୁବିଧାବଶତଃ ତାହା ସମ୍ଭବ ହୋଇ ନ ଥିଲା । ତେବେ ଭାରତ ଛାଡ଼ିବାର ଠିକ୍ ପୂର୍ବ ଦିନ ହଠାତ୍ ସେ କହୁ କହୁ କହି ପକାଇଲେ, "ଯଦି ଇନ୍ଦିରା ଗାନ୍ଧି ନିର୍ବାଚନରେ ହାରିଯାଆନ୍ତି ?"......

ଇଉରୋପରେ ରହି ମଧ୍ୟ କିଷ୍ଣମୂର୍ତ୍ତି ପୁପୁଲଜୀଙ୍କ ଜରିଆରେ ବରାବର ଭାରତ ବିଷୟରେ ଖବର ରଖୁଥିଲେ ଓ ଶ୍ରୀମତୀ ଜୟକର ତାଙ୍କୁ ଇନ୍ଦିରା ଗାନ୍ଧିଙ୍କ ବିଷୟରେ ନିୟମିତ ଚିଠିରେ ଲେଖି ଜଣାଉ-ଥିଲେ । ପରେ ନିର୍ବାଚନରେ ଇନ୍ଦିରା ଗାନ୍ଧିଙ୍କ ପରାଜୟ କଥା ପୁପୁଲ ଜୟକରଙ୍କଠାରୁ ଶୁଣି ସେ ଲେଖିଥିଲେ, "ଏ ଘଟଣାରେ ମୁଁ ନିଜକୁ କିଛି ଅଂଶରେ ଦାୟୀ ମଣୁଛି । ମୁଁ ବମ୍ବେରେ ଥିଲାବେଳେ ତମକୁ କହିଥିଲି ଯେ ସେ ପରାଜିତ ହୋଇଯାଇ ପାରନ୍ତି । ··· ଯାହାହେଉ, ତାଙ୍କୁ ମୋର ଅଶେଷ ସ୍ନେହ ଜଣାଇ ଦେବ ।" ପୁପୁଲ ଜୟକରଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ କିଷ୍ଣମୂର୍ତ୍ତି ଇନ୍ଦିରା ଗାନ୍ଧିଙ୍କ ପ୍ରତି ଅତ୍ୟନ୍ତ ଦରଦଶୀଳ ଥିଲେ ଏବଂ ସେ ଯେଉଁଭଳି ଭାବରେ ବିନା ପ୍ରତିରୋଧରେ, ଆପଣାକୁ ସୁରକ୍ଷିତ ରଖିବାର ବିନା ପ୍ରୟାସରେ, ଅର୍ଥାତ ମୁକ୍ତ

ଭାବରେ ସବୁ କଥା ଶୁଣୁଥିଲେ ସେଥିରେ କୃଷ୍ଣମୂର୍ତ୍ତି ମୁଗ୍ଧ ହୋଇ ଯାଇଥିଲେ ।

୧୯୭୭ ମସିହା ମେ' ମାସରେ କାଲିଫର୍ଣ୍ଣିଆର ଲସ୍ ଆଞ୍ଜେଲେସ୍ ଠାରେ କୃଷ୍ଣମୂର୍ତ୍ତିଙ୍କର ପ୍ରୋଷ୍ଟ୍ରେଟ୍ ଅପରେସନ୍ ହେଲା । ପିଲାଟି ଦିନରୁ କୃଷ୍ଣମୂର୍ତ୍ତି କେବେହେଲେ ଯନ୍ତ୍ରଣା ଉପଶମକାରୀ ବଟିକା ବା କଡ଼ା ଡାକ୍ତରୀ ଔଷଧ ଖାଇ ନ ଥିଲେ । ତେଣୁ ଏଇ ଅପରେସନ ସମୟରେ ତାଙ୍କୁ କେଉଁ ପ୍ରକାରର ନିଶା ଔଷଧ ଦିଆଯିବ ସେଥି ନେଇ ଡାକ୍ତରଙ୍କ ଭିତରେ ଭାବନା ପଡ଼ିଲା । କୃଷ୍ଣମୂର୍ତ୍ତି ସେମାନଙ୍କୁ ଅପରେସନ୍ ଆଗରୁ ଜଣାଇ ଦେଇଥିଲେ ଯେ ତାଙ୍କର ଶରୀର ଅତି ମାତ୍ରାରେ କାତରକ୍ଷମ ହୋଇଥିବାରୁ ତାହା ଜେନେରାଲ ଆନାସ୍ଥେସିଆର ପ୍ରଭାବକୁ ଆଦୌ ସହ୍ୟ କରି ପାରିବ ନାହିଁ । ଏପରିକି ମେରୁଦଣ୍ଡରେ ଦିଆ ଯାଉଥିବା ନିଶା ଇଞ୍ଜେକ୍ସନ୍ ମଧ୍ୟ ସ୍ନାୟୁବିକ ଅବରୁଦ୍ଧ ଘଟାଇ ତାଙ୍କ ଜୀବନ ଉପରେ ଆଞ୍ଚ ଆଣି ପାରିବ । ଅପରେସନ୍ କୋଠରୀ ଭିତରକୁ ଯିବା ପୂର୍ବରୁ ପାଖରେ ଥିବା ମେରୀ ଜିମ୍ବାଲିଷ୍ଟଙ୍କୁ ସତର୍କ କରାଇ ସେ କହିଥିଲେ ଯେ ସେ ଯେପରି 'ଶରୀରରୁ ବାହାରି ନ ଯାଆନ୍ତି' ସେଥିପ୍ରତି ସର୍ବଦା ଦୃଷ୍ଟି ରଖିଥିବା ଆବଶ୍ୟକ । ସେ ସଦାସର୍ବଦା ଜୀବନ ଓ ମୃତ୍ୟୁର ଧାରେ ଧାରେ ବଞ୍ଚି ଆସିଛନ୍ତି ଏବଂ ବାଉନ ବର୍ଷର ଭୀଷଣ ଜୀବନକୁ ଯଥେଷ୍ଟ ମନେ କରି ହୁଏତ ଏତିକିବେଳେ 'ଚାଲି ବି ଯାଇ ପାରନ୍ତି ।'

ଅପରେସନ୍ ପୂରା ଦୁଇଘଣ୍ଟା ଲାଗିଲା । ମେରୀ ଜିମ୍ବାଲିଷ୍ଟଙ୍କ ଅନୁରୋଧ ରକ୍ଷା କରି, କୃଷ୍ଣମୂର୍ତ୍ତି ଯେପରି 'ଶରୀରରୁ ବାହାରି ନ ଯାଆନ୍ତି' ସେଥିପାଇଁ ଜଣେ ଡାକ୍ତର ଅପରେସନ୍‌ର ଆରମ୍ଭରୁ ଶେଷ ଯାଏ ତାଙ୍କ ସହିତ କଥାବାର୍ତ୍ତା କରି ଚାଲିଥିଲେ । ଅପରେସନ୍ ସରିବା ପରେ କୃଷ୍ଣମୂର୍ତ୍ତି ଖୁବ୍ ସତେଜ ଓ ପ୍ରଫୁଲ୍ଲ ଦିଶୁଥିଲେ । କିନ୍ତୁ ଉପରଓଳିକୁ ଧୀରେ ଧୀରେ ଯନ୍ତ୍ରଣା ଆରମ୍ଭ ହେବାକୁ ଲାଗିଲା ଏବଂ ସନ୍ଧ୍ୟାବେଳକୁ ସେ ପ୍ରାୟ ଘଣ୍ଟାଏ ପାଇଁ 'ଶରୀରରୁ ବାହାରିଗଲେ ।'

ସେହି ସମୟରେ, ଅର୍ଥାତ୍ ଶରୀରରୁ ବାହାର ଯାଇଥିବା ଅବସ୍ଥାରେ ତାଙ୍କର ଏକ ଚମକପ୍ରଦ ଅନୁଭୂତି ହୋଇଥିଲା । ପରଦିନ ନିଜର ସେହି ଅନୁଭୂତିକୁ ସେ ମେରୀଙ୍କ ସମ୍ମୁଖରେ ବର୍ଣ୍ଣନା କରି କହିଥିଲେ, "ଏଇଟା ସେମିତି କିଛି ବଡ଼ ଧରଣର ଅପରେସନ ନ ଥିଲା ସତ କିନ୍ତୁ ଅତିଶୟ ଯନ୍ତ୍ରଣା ହେଉଥିଲା । ଏମିତି ଯନ୍ତ୍ରଣା ଚାଲିଥିବା-ବେଳେ ହଠାତ୍ ମୁଁ ଆବିଷ୍କାର କଲି ଯେ ମୋର ଶରୀରଟା ଶୂନ୍ୟରେ ଏକ ପ୍ରକାର ଭାସମାନ ଅବସ୍ଥାରେ ରହିଛି । ହୁଏତ ଏହା ମୋର ଏକ ଚିତ୍ତ-ବିଭ୍ରମ ହୋଇପାରେ, କିନ୍ତୁ ତାର ଅଳ୍ପ କେତେ ମିନିଟ୍ ଭିତରେ ସେଠାରେ ଏକ ସଶରୀର ଆବିର୍ଭାବ ଘଟିଲା । ତାହା କୌଣସି ବ୍ୟକ୍ତି ବିଶେଷର ନୁହେଁ, ସ୍ୱୟଂ ମୃତ୍ୟୁ ସେଠାରେ ମୂର୍ତ୍ତିମନ୍ତ ହୋଇଥିଲା । ଶରୀର ଓ ମୃତ୍ୟୁର ଏ ପ୍ରକାର ଅଦ୍ଭୁତ ଯୋଗାଯୋଗକୁ ଲକ୍ଷ୍ୟ କରିବାବେଳେ ମନେ ହେଉଥିଲା ଯେ ଦୁହିଁଙ୍କ ମଧ୍ୟରେ କିଛି କଥୋପକଥନ ଚାଲିଥିଲା । ବୋଧହୁଏ ମୃତ୍ୟୁ ଖୁବ୍ ଦୃଢ଼ତାର ସହିତ ଶରୀରକୁ କିଛି କହୁଥିଲା, କିନ୍ତୁ ଶରୀର ତାହାର ଅନିଚ୍ଛା ପ୍ରକାଶ କରି ମୃତ୍ୟୁର ଦାବୀକୁ ଟାଳି ଦେବାକୁ ଚେଷ୍ଟା କରୁଥିଲା । ବଖରା ଭିତରେ ଅନ୍ୟମାନେ ଉପସ୍ଥିତ ଥିଲେ ସୁଦ୍ଧା ଏ ଘଟଣା ସେମିତି ଘଟି ଚାଲିଥିଲା—ମୃତ୍ୟୁର ଆମନ୍ତ୍ରଣ ଓ ଶରୀରର ପ୍ରତ୍ୟାଖ୍ୟାନ ।

ମୃତ୍ୟୁର ଦାବିକୁ ଶରୀର ଯେ ଭୟ ହେତୁ ଉପେକ୍ଷା କରୁଥିଲା ତା' ନୁହେଁ । ଶରୀର ଜାଣିଥିଲା ଯେ ଏଇଟା ତା'ର ଦାୟିତ୍ୱ ଅନ୍ତର୍ଭୁକ୍ତ ନୁହେଁ । ଅନ୍ୟ ଏକ ଶକ୍ତି ଯେ କି ମୃତ୍ୟୁ ଠାରୁ ଢେର ଶକ୍ତିଶାଳୀ, ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ, ସିଏ ଏ ଶରୀରକୁ ନିୟନ୍ତ୍ରଣ କରୁଛି । ମୃତ୍ୟୁର ଦାବି କିନ୍ତୁ ଏଣେ ବଢ଼ି ଚାଲିଥିଲା । ତେଣୁ ବାଧ୍ୟ ହୋଇ ଶେଷରେ ସେଇ 'ଆରକ'ଟି ଆସି ହସ୍ତକ୍ଷେପ କଲା । ତା'ପରେ ଶରୀର, ମୃତ୍ୟୁ ଓ ସେ 'ଆରକ' — ଏହି ତିନୋଟି ଶକ୍ତି ମଧ୍ୟରେ ଏକ କଥୋପକଥନ ଆରମ୍ଭ ହେଲା ।

ହସପିଟାଲ ଯିବା ଆଗରୁ ହିଁ ସେ ସତର୍କ କରାଇ ଦେଇଥିଲେ ଯେ ସେ ଶରୀରରୁ ବିଚ୍ଛିନ୍ନ ହୋଇଯାଇ ପାରନ୍ତି ଓ ସେତେବେଳେ ମୃତ୍ୟୁ ଆସି ଯାଇପାରେ । ବଖରା ଭିତରେ ମେରୀ ବସି ରହିଥିଲେ ଓ ଜଣେ ନର୍ସ ମଧ୍ୟ ଯା' ଆସ କରୁଥିଲେ । ଏହା କୌଣସି ପ୍ରକାରେ ଆତ୍ମ-ପ୍ରବଞ୍ଚନା ବା ଚିତ୍ତ-ବିଭ୍ରମ ନ ଥିଲା । ବିଛଣାରେ ଶୋଇ ଶୋଇ ସେ ଆକାଶର ବର୍ଷାଭରା ବାଦଲଖଣ୍ଡକୁ ଦେଖୁଥିଲେ । ତୋଫା ଆଲୁଅରେ ଝରକାଗୁଡ଼ିକ ବଡ଼ ଉଜ୍ଜଳ ଦିଶୁଥିଲା ଆଉ ଠିକ୍ ଝରକା ତଳକୁ କରି ମାଇଲ ମାଇଲ ଧରି ନଗରୀ ବିସ୍ତୃତ ହୋଇ ରହିଥିଲା । ଝରକା କାଚରେ ବର୍ଷା ଟୋପାମାନ ଟପ୍ ଟପ୍ କରି ବାଡ଼େଇ ହେଉଥିଲା । ସାଲାଇନ୍ ବୋତଲରୁ ଟୋପା ଟୋପା ସାଲାଇନ୍ ଝରି ଦେହରେ ପ୍ରବେଶ କରୁଥିଲା । ଏତିକିବେଳେ ସେ 'ଆରକ' ଯଦି ମଝିରେ ଆସି ହସ୍ତକ୍ଷେପ କରି ନ ଥାନ୍ତା ତେବେ ମୃତ୍ୟୁ ନିଶ୍ଚିତ ରୂପେ ଜିଣି ଯାଇଥାନ୍ତା — ଏକଥା ସ୍ପଷ୍ଟ ବୁଝା ପଡ଼ୁଥିଲା ।

ପ୍ରଥମେ ଭାଷା ଓ ଶବ୍ଦ ମାଧ୍ୟମରେ ସଂଳାପ ଆରମ୍ଭ ହେଲା । ସେତେବେଳେ ଭାବନା ଶକ୍ତି ଖୁବ୍ ସ୍ପଷ୍ଟ ଥିଲା । ବାହାରେ ବିଜୁଳି ଘଡ଼ଘଡ଼ି ସାଙ୍ଗକୁ ଏ ସଂଳାପ ସେମିତି ଚାଲିଥିଲା । ଯେହେତୁ 'ଶରୀର' ଓ 'ଆରକ'ଟିଠାରେ ଉଭୟର ଲେଶମାତ୍ର ସତ୍ତା ନ ଥିଲା ତେଣୁ ଏ କଥୋପକଥନ ଖୁବ୍ ଖୋଲାଖୋଲି ଓ ଗମ୍ଭୀର ଭାବରେ ଚାଲିଥିଲା । ସେଭଳି ଏକ କଥୋପକଥନକୁ ଭାଷାରେ ବର୍ଣ୍ଣନା କରିବା ବାସ୍ତବିକ ଦୁଃସାଧ୍ୟକର । ଯେହେତୁ ସେଠାରେ ଉଭୟର ଚିହ୍ନବର୍ଣ୍ଣ ସୁଦ୍ଧା ନ ଥିଲା, ତେଣୁ ବଡ଼ ଅଦ୍ଭୁତ ଭାବରେ ମୃତ୍ୟୁ ବି ମନଟାକୁ ଅତୀତର ସ୍ମୃତିରେ ବାନ୍ଧି ପାରୁ ନ ଥିଲା । ସଂଳାପର ପରିଣାମ ଥିଲା ଅତି ସ୍ପଷ୍ଟ । ଶରୀରକୁ ଅତିଶୟ ଯନ୍ତ୍ରଣା ହେଉଥିଲା ସତ କିନ୍ତୁ ତା'ଠାରେ ଶଙ୍କା ବା ଉଦ୍‌ବିଗ୍ନତା ଆଦୌ ନ ଥିଲା ଏବଂ ସେ 'ଆରକ'ଟି ଏ ଦୁହିଁଙ୍କଠାରୁ ଊର୍ଦ୍ଧ୍ୱରେ ଥିଲା । ତାହା ଥିଲା ଏକ ଭୟଙ୍କର ଖେଳ — ଶରୀର ସୁଦ୍ଧା ତା' ସମ୍ପର୍କରେ ପୂର୍ଣ୍ଣ ଅବଗତ ନ ଥିଲା—ସେ 'ଅନ୍ୟ'ଟି ସବୁ ନିଷ୍ପତ୍ତି ନେଉଥିଲା ।

ମୃତ୍ୟୁ ଯଦିଓ ବରାବର ପାଖେ ପାଖେ ରହି ଆସୁଥିଲା ତଥାପି ମୃତ୍ୟୁକୁ ତ ଆମନ୍ତ୍ରଣ କରାଯାଇ ପାରେନା ! ସେଭଳି କରିବା ଆତ୍ମହତ୍ୟା ସାଙ୍ଗେ ସମାନ, ଯାହାକି ନିତାନ୍ତ ନିର୍ବୋଧତା ଛଡ଼ା ଅନ୍ୟ କିଛି ନୁହେଁ ।

କଥୋପକଥନ ଚାଲିଥିବା ବେଳେ ସମୟର କୌଣସି ଅନ୍ଦାଜ ନଥିଲା । କିନ୍ତୁ ବୋଧହୁଏ ତାହା ପୂରା ଘଣ୍ଟାଏ ଧରି ଲାଗିଥିଲା, ମାତ୍ର ଘଣ୍ଟା-କଣ୍ଟାର ମାପ ସେଥିରେ ନ ଥିଲା । ଭାଷାର ଶବ୍ଦ ବନ୍ଦ ହୋଇ-ଯାଇଥିଲା, କିନ୍ତୁ ସେମାନେ ପ୍ରତ୍ୟେକେ ଯାହା ଯାହା କହୁଥିଲେ ତାହାର ମର୍ମାର୍ଥ ଉପଲବ୍ଧି କରି ହେଉଥିଲା । ଅବଶ୍ୟ ଏକଥା ନିଶ୍ଚୟ ଯେ ଜଣେ ଯଦି କୌଣସି ଧାରଣା, ବିଶ୍ୱାସ, ଧନ ସମ୍ପତ୍ତି, ବ୍ୟକ୍ତି ବିଶେଷ ବା ଅନ୍ୟ କିଛି ପ୍ରତି ଆସକ୍ତ ଥିବ, ତେବେ ତା' ସହିତ କଥାବାର୍ତ୍ତା କରିବାକୁ ମୃତ୍ୟୁ କେବେହେଲେ ଆସିବ ନାହିଁ । ମୃତ୍ୟୁକୁ ଯଦି 'ବିଲୟ ଲଭିବା' ଅର୍ଥରେ ନିଆଯାଏ, ତେବେ ତାହା ପରମ ମୁକ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ ।

କଥୋପକଥନ ବେଶ୍ ମାର୍ଜିତ ଓ ରୁଚିମନ୍ତ ଭାବରେ ଚାଲିଥିଲା । ସେଥିରେ ଭାବପ୍ରବଣତା ବା ମାତ୍ରାଧିକ ଆବେଗ ଉଚ୍ଛ୍ୱାସର ପ୍ରଶ୍ନ ନ ଥିଲା । ସମୟକାଳର ସ୍ଥିତି କାହିଁ ଉଭେଇ ଯାଇଥିଲା । ମୃତ୍ୟୁ ଯେତେବେଳେ ଦୈନନ୍ଦିନ ଜୀବନର ଏକ ଅଂଶ ସ୍ୱରୂପ ହୋଇଯାଏ, ସେତେବେଳେ ଯେଉଁ ଅସୀମତା ଦେଖାଦିଏ ସେହି ବାସ୍ତବତାକୁ ବିକୃତ କଲାଭଳି ଏଥିରେ କିଛି ହେଲେ ନ ଥିଲା । ଜଣାଯାଉଥିଲା ଯେ ଏ ଶରୀର ଆହୁରି ଅନେକ ବର୍ଷ ବଞ୍ଚି ରହିବ । କିନ୍ତୁ ଏ ଶରୀରର କ୍ରିୟା ବନ୍ଦ ହେବା ପର୍ଯ୍ୟନ୍ତ 'ମୃତ୍ୟୁ' ଓ 'ଆରକ'ଟି ଏମିତି ବରାବର ଏକାଠି ରହୁଥିବ । ସେ ତିନିଜଣଯାକ ଖୁବ୍ ଖୁସ୍ ମିଜାଜରେ ଥିଲେ । ଏମିତିକି ସେମାନଙ୍କର ହସ ଉଲ୍ଲାସ ମଧ୍ୟ ଶୁଣି ହେଉଥିଲା । ତାହାର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ବର୍ଷା ଓ ମେଘ ଖଣ୍ଡ ଭିତରେ ଉଛୁଳି ଉଠୁଥିଲା ।

ଧୀରେ ଧୀରେ କଥୋପକଥନର ଧ୍ୱନି ଅନ୍ତର୍ହିତ ଭାବେ ବିସ୍ତାରିତ ହେବାରେ ଲାଗିଲା ଏବଂ ସେ ଧ୍ୱନି ପ୍ରଥମରେ ମଧ୍ୟ ସେହି ମାତ୍ରାରେ

ଥିଲା କିନ୍ତୁ ତା'ର ଅନ୍ତ ନ ଥିଲା—ଆଦ୍ୟ ଓ ଅନ୍ତବିହୀନ ଏକ ସଙ୍ଗୀତ ସଦୃଶ ତାହା ଥିଲା । ମୃତ୍ୟୁ ଓ ଜୀବନ ପରସ୍ପରର ଖୁବ୍ ସନ୍ନିକଟ ହୋଇ ରହିଥିଲେ, ଠିକ୍ ଯେମିତି ଭଲ ପାଇବା ଓ ମୃତ୍ୟୁ । ଭଲ ପାଇବାଟା ଯେପରି ସ୍ମୃତିହୀନ, ମୃତ୍ୟୁଟା ଠିକ୍ ସେହିପରି ଅତୀତ-ବିହୀନ । ଏହି ସଂଳାପ ମଧ୍ୟରେ ଭୟ ଆଦୌ ପ୍ରବେଶ କରିପାରୁ ନ ଥିଲା କାରଣ ଭୟ ସର୍ବଦା ଅନ୍ଧକାରମୟ ଓ ମୃତ୍ୟୁ ହେଉଛି ଆଲୋକ ।

ଏ ସଂଳାପ କୌଣସି ମନଗଢ଼ା କାହାଣୀ ବା କୁହେଳିକା ନ ଥିଲା । ଏହା ଥିଲା ପବନରେ ଏକ ଗୁଞ୍ଜରଣ ସଦୃଶ । ମାତ୍ର ସେ ଗୁଞ୍ଜରଣ ଏତେ ସୁସ୍ପଷ୍ଟ ଯେ ତମେ ଇଚ୍ଛା କଲେ ତାହାକୁ ଶୁଣି ପାରିବ ଏବଂ ସେତେବେଳେ ତା'ର ଏକ ଅଂଶ ମଧ୍ୟ ପାଲଟି ଯାଇପାରିବ । କିନ୍ତୁ ତମେ ଯେ ନିଜକୁ ନିଜ ଶରୀର ସହିତ ଏତେ ମାତ୍ରାରେ ଏକାକାର କରି ଦେଇଛ, ତମ ନିଜର ଭାବନା, ନିଜର ଚିନ୍ତାଧାରା ସହିତ ନିଜକୁ ଏମିତି ମିଶାଇ ଦେଇଛ, ସେଥିଲାଗି ତମେ ତାକୁ ଶୁଣିପାର ନାହିଁ । ତେଣୁ ତମେ ଯଦି ପ୍ରକୃତରେ ମୃତ୍ୟୁର ପ୍ରାପ୍ତି ଓ ଭଲ ପାଇବାକୁ ଲାଭ କରିବାକୁ ଚାହିଁ ତେବେ ତମକୁ ପ୍ରଥମେ ଏ ସବୁଯାକ ତ୍ୟାଗ କରିବାକୁ ହେବ ।"

× × × ×

ଅପରେସନ ପରେ କୃଷ୍ଣମୂର୍ତ୍ତି ଖୁବ୍ ଶୀଘ୍ର ସୁସ୍ଥ ହୋଇ ଉଠିଲେ । ବୟାଅଶୀ ବର୍ଷ ବୟସରେ ତାଙ୍କ ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ଏତେ କର୍ମଠ ଓ ମସ୍ତିଷ୍କ ଏଭଳି ପ୍ରଖର ଥିଲା ଯେ ତାହା ତାଙ୍କର ଚିକିତ୍ସା ଦାୟିତ୍ୱରେ ଥିବା ଡାକ୍ତରମାନଙ୍କୁ ମଧ୍ୟ ଆଚମ୍ବିତ କରି ଦେଇଥିଲା । ଶରୀରର ନମନୀୟତା ଧାଙ୍ଗକୁ ତାଙ୍କର ଯୁବ-ସୁଲଭ ରୁଚି ଓ ବ୍ୟବହାର ଦେଖି ସେମାନେ ତାଙ୍କୁ ପ୍ରଶଂସା ନ କରି ରହିପାରି ନଥିଲେ । ଏ ପରିପକ୍ୱ ବୟସରେ ସୁଦ୍ଧା ପୋଷାକ ପତ୍ର କ୍ଷେତ୍ରରେ କୃଷ୍ଣମୂର୍ତ୍ତି ଯେଭଳି ରଙ୍ଗ ଓ ସାଜ ଉପରେ ଗୁରୁତ୍ୱ ଦେଉଥିଲେ, ରୁଚିସମ୍ପନ୍ନ ଆସବାବ ପତ୍ର

ନେଇ ମଧ୍ୟ ଠିକ୍ ସେହିଭଳି ଗଭୀର ଆଗ୍ରହ ଦେଖାଉଥିଲେ । ଉପଯୁକ୍ତ ବ୍ୟାୟାମ ଓ ଯୋଗାଭ୍ୟାସ ଦ୍ୱାରା ଅବୟବ ଆଦିକୁ ନିଖୁଣ, ନିଟୋଳ ରଖିବାରେ ସେ ଜୀବନର ଶେଷ ପର୍ଯ୍ୟନ୍ତ ଯତ୍ନଶୀଳ ଥିଲେ । ତାଙ୍କର ଦୈନନ୍ଦିନ ଅଭ୍ୟାସ ଓ ରୁଚି ସାଧାରଣତଃ ଲୋକମାନଙ୍କ ମନରେ ବଡ଼ କୌତୁହଳ ସୃଷ୍ଟି କରିଥାଏ । ଯେଉଁ ଲୋକମାନେ ତାଙ୍କଠାରୁ ଶୁଣିବାକୁ ପାଆନ୍ତି ଯେ, ସେ ଜୀବନରେ କେବେହେଲେ ନିଗୂଢ଼ ଦର୍ଶନ ବା ଧର୍ମଶାସ୍ତ୍ର ପଢ଼ି ନାହାନ୍ତି, ସେଇମାନେ ଯେତେବେଳେ ତାଙ୍କୁ ଗୋଟିଏ ହାଲୁକା ପତ୍ରିକା ବା କେବେକେବେ ଡିଟେକ୍ଟିଭ୍ ବହିଟିଏ ମନ ଦେଇ ପଢ଼ୁଥିବାର ଦେଖନ୍ତି, ବା ଲୋକପ୍ରିୟ ଚଳଚ୍ଚିତ୍ରଟିଏ ଗଭୀର ଆଗ୍ରହ ସହକାରେ ଦେଖୁଥିବାର ଦେଖନ୍ତି ସେମାନଙ୍କ ଆଶ୍ଚର୍ଯ୍ୟର ସୀମା ରହେ ନାହିଁ । ବହି ତ ବହି, ଦିନେ ତାଙ୍କୁ 'ଦ ଓ୍ୱାର୍ଲଡ୍ସ୍ ଟୁ ଥାଉଜାଣ୍ଡ୍ ବେଷ୍ଟ୍ ଜୋକ୍ସ୍' ନାମକ ବହି ଖଣ୍ଡେ ପଢ଼ୁଥିବାର ଦେଖି ତାଙ୍କର ଜଣେ ବନ୍ଧୁ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ !

## ଆଡାୟାର ଭ୍ରମଣ

କାନାଡ଼ାର ଭାଙ୍କୋଭର ଦ୍ୱୀପରେ 'ଉଲଫ୍ ଲେକ୍ ସ୍କୁଲ୍' ନାମରେ ଆଜି ଗୋଟିଏ ନୂଆ କୃଷ୍ଣମୂର୍ତ୍ତି ସ୍କୁଲ ୧୯୭୬ ମସିହା ସେପ୍ଟେମ୍ବର ମାସରେ ପ୍ରତିଷ୍ଠିତ ହୋଇଥିଲା । କାନାଡ଼ାରେ ପ୍ରତିଷ୍ଠିତ ଜଣେ ଭାରତୀୟ ବ୍ୟବସାୟୀଙ୍କର ଦୁଇ ଝିଅ — ଜେ. କେ. ସିନ୍ଧୁ ଓ ଏସ୍. କେ. ସିନ୍ଧୁ ପ୍ରଥମ କରି ଏହି ସ୍କୁଲ ଆରମ୍ଭ କରିଥିଲେ । ଅନ୍ୟାନ୍ୟ ପାଶ୍ଚାତ୍ୟ କୃଷ୍ଣମୂର୍ତ୍ତି-ସ୍କୁଲ ଭଳି ଏଠାରେ ମଧ୍ୟ ଆବଶ୍ୟକୀୟ ପାଠ୍ୟକ୍ରମ ସହିତ ଚିତ୍ରାଙ୍କନ, ଶିଳ୍ପକଳା, ସଙ୍ଗୀତ, ଡ୍ରାମା ଓ ଅଶ୍ୱଚାଳନା, ସ୍କିଇଂ ପ୍ରଭୃତି ପାଶ୍ଚାତ୍ୟ ରୁଚିକୁ ସୁହାଇଲା ଭଳି ଆନୁସଙ୍ଗିକ ବିଷୟ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ସ୍କୁଲଟି ପ୍ରଥମେ ଆରମ୍ଭ ହେବା ସମୟରେ ତା'ର ଛାତ୍ରଛାତ୍ରୀ ସଂଖ୍ୟା ଦଶ ହୋଇଥିବା ସ୍ଥଳେ, ଶିକ୍ଷାଦାତାଙ୍କର ସଂଖ୍ୟା ଥିଲା

ଏଗାର । ମାତ୍ର ଏ କ୍ଷେତ୍ରରେ ଶିକ୍ଷକ ସଂଖ୍ୟା ଯେ ଅଧିକ ହୋଇପଡ଼ିଲା ଏକଥା କର୍ତ୍ତୃପକ୍ଷ କେବେହେଲେ ଅନୁଭବ କରି ନ ଥିଲେ । ବାସ୍ତବିକ, କୃଷ୍ଣମୂର୍ତ୍ତି ସ୍କୁଲଗୁଡ଼ିକର ଏକ ବୈଶିଷ୍ଟ୍ୟ ହେଉଛି, ସେଠାରେ ଶିକ୍ଷକମାନେ ଯେ ପିଲାମାନଙ୍କ ଠାରୁ କୌଣସି ଗୁଣେ ଶ୍ରେୟସ୍କର ବା ଉଚ୍ଚତର—ଏ ପ୍ରକାର ପରିବେଶ ଆଦୌ ସୃଷ୍ଟିହେବାକୁ ଦିଆଯାଏ ନାହିଁ । ସେଠାରେ ଶିକ୍ଷକମାନେ ପିଲାମାନଙ୍କର ସାଥୀ, ସହଯୋଗୀ ଓ ସହକର୍ମୀ ଭଳି ଜୀବନ ବିତାଇଥାନ୍ତି । ସେମାନେ ଛାତ୍ରଛାତ୍ରୀଙ୍କ ମନର ଭାବନା, ପ୍ରତିକ୍ରିୟା ଓ ଚିନ୍ତାଧାରାକୁ ବୁଝିବାକୁ ଚେଷ୍ଟା କରିଥାନ୍ତି ଏବଂ ପ୍ରତିବଦଳରେ ଆପଣାକୁ ମଧ୍ୟ ସେଇଭଳି ପିଲାଙ୍କ ସମ୍ମୁଖରେ ମେଲି ଦେଇଥାନ୍ତି । କାନାଡ଼ାର ଏଇ ନୂଆ ସ୍କୁଲକୁ ମିଶାଇ ପୃଥିବୀରେ ସମୁଦାୟ ସାତଗୋଟି କ୍ରିଷ୍ଣମୂର୍ତ୍ତି ସ୍କୁଲ ହେଲା । ଏହାଛଡ଼ା ନିକଟ ଭବିଷ୍ୟତରେ ବାଙ୍ଗାଲୋର ନିକଟରେ ଋଷିଭାଲି ସ୍କୁଲ ଦ୍ୱାରା ପରିଚାଳିତ 'ଭାଲି ସ୍କୁଲ' ନାମରେ ଅନ୍ୟ ଏକ କ୍ରିଷ୍ଣମୂର୍ତ୍ତି ସ୍କୁଲ ମଧ୍ୟ ଖୋଲିବାକୁ ଉଦ୍ୟମ ଚାଲିଥିଲା ।

ଏସବୁ ସ୍କୁଲ ମାନଙ୍କରେ କୃଷ୍ଣମୂର୍ତ୍ତି ଯଦିଓ ନିୟମିତ ଭାବରେ ପ୍ରତି ବର୍ଷ ଭାଷଣ ଦେଇଥାନ୍ତି ତଥାପି ତାହାକୁ ଯଥେଷ୍ଟ ନୁହେଁ ବୋଲି ବିଚାରି, ସ୍କୁଲର ଛାତ୍ରଛାତ୍ରୀ ତଥା ଶିକ୍ଷାଦାତାଙ୍କ ସହିତ ଅଧିକ ସଂସ୍ପର୍ଶରେ ଆସିବା ନିମନ୍ତେ ୧୯୭୮ ମସିହା ସେପ୍ଟେମ୍ବର ମାସରୁ ପ୍ରତି ପନ୍ଦର ଦିନରେ ସେମାନଙ୍କ ଉଦ୍ଦେଶ୍ୟରେ ସେ ଗୋଟିଏ ଲେଖା ଚିଠି ଲେଖିବାକୁ ଆରମ୍ଭ କଲେ । ସେପ୍ଟେମ୍ବର ମାସରୁ ଆରମ୍ଭ କରି ୧୯୮୦ ମାର୍ଚ୍ଚ ଭିତରେ ଲେଖାଯାଇଥିବା ସମୁଦାୟ ୩୭ଟି ଚିଠିରେ ସେ ଶିକ୍ଷାର ବାସ୍ତବ ମର୍ମକୁ ଉନ୍ମୋଚନ କରିବା ସଙ୍ଗେ ସଙ୍ଗେ 'ଉଚିତ' ଓ 'ପ୍ରକୃତ' ଶିକ୍ଷା ଲାଭ କରିଥିବା ବ୍ୟକ୍ତି, ଜୀବନର ବହୁବିଧ ସମସ୍ୟାର କିଭଳି ସମ୍ମୁଖୀନ ହେବ ତା'ର ସୂଚନା ଦେଇଛନ୍ତି । ଏଭଳି ଭାବରେ ସେ ପ୍ରତି ମାସରେ ଦୁଇଖଣ୍ଡ କରି ଲେଖୁଥିବା ଚିଠିର ନକଲ ତାଙ୍କର ସମସ୍ତ ସ୍କୁଲର ପ୍ରତ୍ୟେକ ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କୁ ବ୍ୟକ୍ତିଗତ ଭାବରେ ଦିଆଯାଉଥିଲା । ପରେ ୧୯୮୧ ମସିହାରେ ସେସବୁ ଚିଠିଗୁଡ଼ିକ ଏକତ୍ର ହୋଇ 'ଲେଟର୍ସ ଟୁ ଦି ସ୍କୁଲ' ନାମରେ ପ୍ରକାଶ ପାଇଲା ।

୧୯୮୦, ନଭେମ୍ବର ମାସରେ କୃଷ୍ଣମୂର୍ତ୍ତି ଭାରତରେ ପହଞ୍ଚି କିଛିଦିନ ପାଇଁ ଆଡ୍ୟାରର ବସନ୍ତ ବିହାର ଠାରେ ରହିଲେ । ବସନ୍ତ ବିହାରର ଅନତି ଦୂରରେ ଥିଓସଫିକାଲ ସୋସାଇଟିର ଆନ୍ତର୍ଜାତିକ ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥିତ । କୃଷ୍ଣମୂର୍ତ୍ତିଙ୍କର ସେତେବେଳକୁ ଦୀର୍ଘ ପଚାଶ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ଥିଓସଫିକାଲ ସୋସାଇଟି ସହିତ କୌଣସି ସମ୍ପର୍କ ନ ଥିଲା କହିଲେ ଚଳେ । ମାତ୍ର ସୋସାଇଟି ପ୍ରତି ବା ତାହାର ସଦସ୍ୟମାନଙ୍କ ପ୍ରତି ତାଙ୍କ ମନରେ ଯେ ତିଳେମାତ୍ର ବିଦ୍ୱେଷଭାବ ନଥିଲା ତାହାର ପ୍ରମାଣ ଏକ ଦୃଷ୍ଟାନ୍ତରୁ ମିଳେ । ୧୯୮୦ ମସିହାକୁ ଥିଓସଫିକାଲ ସୋସାଇଟିର ପ୍ରେସିଡେଣ୍ଟ ଥିଲେ ଶ୍ରୀମତୀ ରାଧା ବର୍ଣ୍ଣିଆର । ଦିନେ ସେ କୃଷ୍ଣମୂର୍ତ୍ତିଙ୍କ ନିକଟକୁ ଆସି ତାଙ୍କୁ ଥିଓସଫିକାଲ ସୋସାଇଟିର କାର୍ଯ୍ୟାଳୟର ହତା ଭିତରକୁ ବୁଲି ଆସିବାକୁ ଅନୁରୋଧ ଜଣାଇଲେ । ତାଙ୍କ ପ୍ରସ୍ତାବରେ କୃଷ୍ଣମୂର୍ତ୍ତି ତତ୍‌କ୍ଷଣାତ୍ ରାଜି ହୋଇଗଲେ ଓ ତାଙ୍କ ସାଙ୍ଗରେ ଯିବାକୁ ବାହାରି ପଡ଼ିଲେ । ଶ୍ରୀମତୀ ବର୍ଣ୍ଣିଆର ତାଙ୍କୁ ବଙ୍ଗଳା ଭିତରକୁ ନେଇ ପ୍ରଥମେ ଆନି ବେସାନ୍ତ ରହୁଥିବା ପ୍ରକୋଷ୍ଠ ଭିତରକୁ ନେଲେ । ବଖରା ଭିତରେ ପଶି କୃଷ୍ଣମୂର୍ତ୍ତି ବଡ଼ ସାବଧାନତାର ସହ ଆଗରୁ ଶ୍ରୀମତୀ ବେସାନ୍ତ ବସୁଥିବା ବଡ଼ କାଠ ଚଉକିର ସାମନାରେ କିଛି ସମୟ ଛିଡ଼ାହୋଇ ରହିଲେ । ତା'ପରେ ନୀରବରେ ସାରା ବଖରା ଭିତରଟା ବୁଲି ବୁଲି ଦେଖିବାକୁ ଲାଗିଲେ । ଏମିତି ବୁଲି ଦେଖୁ ଦେଖୁ କାନ୍ଥରେ ଟଙ୍ଗା ହୋଇଥିବା ଲେଡ଼ବିଟରଙ୍କର ଗୋଟିଏ ବଡ଼ ଫଟୋ ପାଖରେ ଅଟକିଯାଇ ସେ କହି ଉଠିଲେ, "କାହିଁ, ମୋ' ବେଳେ ତ' ଏ ଫଟୋ ଏଠି ଟଙ୍ଗାହୋଇ ନ ଥିଲା !" ତା'ପରେ ସେଇ ଫଟୋଆଡ଼େ ଚାହିଁ ଅନେକ ସମୟ ସେ ନୀରବରେ ଛିଡ଼ାହୋଇ ରହିଲେ । × × × × ତା'ପରେ କୃଷ୍ଣମୂର୍ତ୍ତି ପିଲାଦିନେ ଯେଉଁ ବଖରାଟି ବ୍ୟବହାର କରୁଥିଲେ ବର୍ଣ୍ଣିଆର ତାଙ୍କୁ ତା' ଭିତରକୁ ନେଇଗଲେ । ବଖରାର ଗୋଟିଏ ଝରକା ଦେଇ ବାହାରେ ଆଡ୍ୟାର ସମୁଦ୍ର ଅତି ସ୍ପଷ୍ଟ ଦିଶୁଥିଲା । କୃଷ୍ଣମୂର୍ତ୍ତି ସେଇ ଝରକା ସାମନାରେ ଅନେକ ବେଳ ଛିଡ଼ାହୋଇ ରହିଲେ । ସେଠାରୁ ଫେରିଆସିବା ପରେ ସେ ଅନ୍ୟମାନଙ୍କୁ

କହିଥିଲେ ଯେ ଆନି ବେସାନ୍ତଙ୍କର ସେ ଚଉକି, ଯେଉଁଠାରେ କି ସେ ତାଙ୍କୁ ଅନେକ ସମୟରେ ବସି ଲେଖିବାର ଦେଖିଛନ୍ତି, ସେଇଟିକୁ ଛାଡ଼ିଦେଲେ ତାଙ୍କର ପିଲାଦିନର ସ୍ମୃତି ଅନ୍ୟ କିଛି ହେଲେ ମନେ ନଥିଲା ।

× × ×

ସେ ବର୍ଷ ଶ୍ରୀଲଙ୍କା ସରକାରଙ୍କ ତରଫରୁ କୃଷ୍ଣମୂର୍ତ୍ତିଙ୍କୁ ସେ ଦେଶରେ ଭାଷଣ ଦେବାପାଇଁ ଆମନ୍ତ୍ରଣ ମିଳିଥିଲା । ଏଥି ଭିତରେ ଦୀର୍ଘ ବାଇଶ ବର୍ଷ ଧରି ସେ ସେଠାକୁ ଆଉ ଯାଇ ନ ଥିଲେ । ଏତେ ବର୍ଷର ବ୍ୟବଧାନ ପରେ ଯେତେବେଳେ ସେ ଯାଇ କଲମ୍ବୋରେ ପହଞ୍ଚିଲେ, ସେଠା ସରକାରଙ୍କ ପକ୍ଷରୁ ତାଙ୍କୁ ରାଷ୍ଟ୍ରୀୟ ଅତିଥିର ସମ୍ମାନ ପ୍ରଦର୍ଶନ କରି ବଡ଼ ମର୍ଯ୍ୟାଦାରେ ପାଛୋଟି ନିଆଗଲା । ସେଠାରେ ବାର ଦିନ ରହଣି ମଧ୍ୟରେ ସେ କେତେକ ସାଧାରଣ ସଭା, ବ୍ୟକ୍ତିଗତ ଓ ଦଳଗତ ଆଲୋଚନା ବ୍ୟତୀତ କେତୋଟି ପ୍ରେସ୍ କନ୍‌ଫରେନ୍‌ସ, ଟେଲିଭିଜନ ସାକ୍ଷାତକାର ଓ ବୌଦ୍ଧ ଭିକ୍ଷୁଙ୍କ ସହିତ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଏହାଛଡ଼ା ରାଷ୍ଟ୍ରପତି ଶ୍ରୀ ଜୟବର୍ଦ୍ଧନେ ଓ ପ୍ରଧାନମନ୍ତ୍ରୀ ପ୍ରେମଦାସା ମଧ୍ୟ ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ସାକ୍ଷାତ କରିଥିଲେ । କିନ୍ତୁ ଏସବୁ ଭିତରେ କୃଷ୍ଣମୂର୍ତ୍ତିଙ୍କ ପ୍ରାଣରେ ଗୋଟିଏ କଥା ବଡ଼ ଆଘାତ ଦେଇଥିଲା । ସେଇଟି ହେଲା, ରାଷ୍ଟ୍ରୀୟ ଅତିଥି ଭାବରେ ଆସିଥିବାରୁ ତାଙ୍କର ସୁରକ୍ଷା ନିମନ୍ତେ ଶ୍ରୀଲଙ୍କା ସରକାର ଏତେ ସଂଖ୍ୟକ ପୁଲିସ ଓ ସୈନ୍ୟବାହିନୀକୁ ତୟାର ରଖିଥିଲେ ଯେ ସେ ଦୃଶ୍ୟ ତାଙ୍କୁ ଅସହ୍ୟ ବୋଧ ହୋଇଥିଲା । ବାସ୍ତବିକ ଯେଉଁ ବ୍ୟକ୍ତି ଜୀବନଯାକ ମୁକ୍ତ ଓ ସ୍ୱାଧୀନ ଜୀବନ ଯାପନ ଉପରେ ଜୋର୍ ଦେଇ ଆସିଛି, ସାମରିକ କଟକଣାରୁ ଦୂରେଇ ରହିଛି, ଏବେ ତାହାରି ଉଦ୍ଦେଶ୍ୟରେ ସୈନ୍ୟ ବାହିନୀର ଏ ପ୍ରକାର ଆଡ଼ମ୍ବରପୂର୍ଣ୍ଣ ଉଦ୍ୟମ ତାକୁ ଆଘାତ ନ ଦିଅନ୍ତା ବା କିପରି ?

ସେଥରକ ଭାରତ ଓ ଶ୍ରୀଲଙ୍କା ଗସ୍ତ ଶେଷକରି ଫେରିବାବେଳକୁ କୃଷ୍ଣମୂର୍ତ୍ତି ଅତିଶୟ କ୍ଳାନ୍ତ ହୋଇପଡ଼ିଥିଲେ । ତେଣୁ ୧୯୩୮ ମସିହା ମାର୍ଚ୍ଚ ଓ ଏପ୍ରିଲ ମାସ ପୂର୍ବରୁ ସେ ଓହାଇରେ ବିଶ୍ରାମ ନେବାକୁ ଇଚ୍ଛା କଲେ । ଏହି ବିଶ୍ରାମ କାଳର ଅଧିକାଂଶ ସମୟ ତାଙ୍କର କଟୁଥିଲା 'ପାଇନ କଟେଜ'ର ଚତୁର୍ଦ୍ଦିଗରେ ଅବସ୍ଥିତ ବିସ୍ତୀର୍ଣ୍ଣ ଉଦ୍ୟାନ ଭିତରେ । ସେହି ବଗିଚାରେ ସେ କାମ କରୁଥିଲେ, ପାଇନ ଜଙ୍ଗଲ ଭିତରକୁ ନିୟମିତ ଭ୍ରମଣରେ ଯାଉଥିଲେ । ପ୍ରକୃତି ପ୍ରତି ତାଙ୍କ ମନରେ ଯେଉଁ ଗଭୀର ଶ୍ରଦ୍ଧା ଭାବଟି ପିଲାଦିନେ ରହିଥିଲା, ପରିପକ୍ୱ ବୟସରେ ମଧ୍ୟ ତାହା ଠିକ୍ ସେହି ପରିମାଣରେ ଗଚ୍ଛିତ ଥିଲା । ଘଞ୍ଚ ବୃକ୍ଷାଦିଭରା ଅରଣ୍ୟରେ ଭ୍ରମଣ କରିବାରେ ସେ ଯେତିକି ଆନନ୍ଦ ଲାଭ କରୁଥିଲେ, ଉଦ୍ୟାନରେ ବୃକ୍ଷଲତା ଆଦି ରୋପଣ କରିବାରେ ମଧ୍ୟ ତାଙ୍କର ଠିକ୍ ସେତିକି ଆଗ୍ରହ ଥିଲା । ପ୍ରକୃତିର ସଂସର୍ଗ ତାଙ୍କଠାରେ ଏକ ନୂତନ ଜୀବନୀ ଶକ୍ତିର ସଞ୍ଚାର କରୁଥିଲା । ଦିନେ ସକାଳେ ଉଠି ଏଇକଥା କୃଷ୍ଣମୂର୍ତ୍ତି ମେରି ଜିମ୍ବାଲିଷ୍ଟଙ୍କ ଆଗରେ ପ୍ରକାଶ କରିଥିଲେ । ସେ କହିଥିଲେ ଯେ ନିଦରୁ ଉଠିବାବେଳକୁ ସେ 'ଏକ ଅତି ପ୍ରଚଣ୍ଡ, ତୀବ୍ର ଶକ୍ତି ଅନୁଭବ କରୁଛନ୍ତି । ସେ ଶକ୍ତି କାର୍ଯ୍ୟ କରିବାର ଶକ୍ତି ଭଳି ନୁହେଁ — କେବଳ ନିଘୋଳା, ନିଛକ ଶକ୍ତି । ତାହା ଏକ ଅଫୁରନ୍ତ ଶକ୍ତି ।' ଏମିତି ପ୍ରାୟ ସବୁଦିନ ନିଦରୁ ଉଠିବା ବେଳକୁ ତାଙ୍କଠାରେ ସେହି ବିରାଟ, ଅପରିମେୟ ଶକ୍ତିର ଉପସ୍ଥିତିକୁ ସେ ଅନୁଭବ କରୁଥିଲେ । ବାସ୍ତବରେ ଏହା ଥିଲା ଏକ ସ୍ୱତନ୍ତ୍ର ଧରଣର ଧ୍ୟାନ, ଯହିଁରେ କି ସେ ଉକ୍ତ ଅଫୁରନ୍ତ ଶକ୍ତିର ମୂଳ ଉତ୍ପତ୍ତିକୁ ସ୍ୱୟଂ ଅନୁଭବ କରି ପାରୁଥିଲେ । ତାଙ୍କର ଏହି 'ଧ୍ୟାନ' କୌଣସି ସାଧନାକୁ ବୁଝାଉ ନ ଥିଲା, କି ଏକାଗ୍ରତା ଦ୍ୱାରା ଏହାକୁ ଲାଭ କରି ହେଉ ନ ଥିଲା । ଏହାହିଁ ଥିଲା ସର୍ବେସର୍ବା — ଏହାର ଊର୍ଦ୍ଧ୍ୱରେ ଆଉ କିଛି ହେଲେ ନ ଥିଲା । ତାଙ୍କ ଭାଷାରେ — " ସେ ଶକ୍ତି ଅବିକଳ ଏକ ଦୁର୍ଦ୍ଧର୍ଷ ଝଡ଼ ସଦୃଶ—କିନ୍ତୁ ସେଥିରେ ବତାସ ନ ଥାଏ କି ତା'ର କୌଣସି ଗର୍ଜନ ବି ନ ଥାଏ; ଏହାର ତୀବ୍ରତା ଏକବାରେ ଅକଳନୀୟ । ଆଉ, ସବୁଠାରୁ ଆଶ୍ଚର୍ଯ୍ୟର କଥା ଏଇ ଯେ ଯେତେବେଳେ

'ସେଇଟା' ଆସେ, ତା' ସମ୍ଭବତ ସଦାବେଳେ କିଛି ନା କିଛି ନୂତନତ୍ୱ ମିଶି ରହିଥାଏ । ଏହା କେବେହେଲେ ପୂର୍ବ ଥର ଭଳି ନ ଥାଏ । ଏହା ସଦା ଅପ୍ରତ୍ୟାଶିତ । ତେବେ 'ସେଇଟା' (otherness) କିଛି ଗୋଟାଏ ଅସାଧାରଣ ବା ବିରଳ ଶକ୍ତି ମଧ୍ୟ ନୁହେଁ — ତାକୁ ଏଇ ଅର୍ଥରେ ଅସାଧାରଣ କୁହାଯାଇପାରେ ଯେ 'ତାହା' ସମସ୍ତ ଓ ଭାବନା ବହିର୍ଭୂତ । ସମୟ ବା ଭାବନା ଦ୍ୱାରା ଆବଦ୍ଧ ମନ ତାକୁ କଦାପି ଅନୁମାନ କରିପାରିବ ନାହିଁ । ପ୍ରେମ ବା ଭଲ ପାଇବାକୁ ଯେମିତି ବିଶ୍ଳେଷଣ କରି ବୁଝିହୁଏ ନାହିଁ, 'ଏହାକୁ' ମଧ୍ୟ ସେମିତି ବୁଝି ହେବ ନାହିଁ । ତେବେ ଏକଥା ସତ ଯେ ସେହି ମହିମାମୟ ପ୍ରାଚୁର୍ଯ୍ୟ ଓ ଶକ୍ତି ବିନା ଏ ଜୀବନଟା ପ୍ରତ୍ୟେକ ସ୍ତରରେ ଗୌଣ ଓ ଦୁଃଖଭରା ହୋଇଥାଏ ।"

୧୯୮୧ ମସିହା ଅକ୍ଟୋବର ମାସରେ କୃଷ୍ଣମୂର୍ତ୍ତି ଆସି ଦିଲ୍ଲୀରେ ପହଞ୍ଚିଲେ । ତା'ର ଠିକ୍ ମାସକ ପୂର୍ବରୁ ଏକ ସାଙ୍ଘାତିକ ଇନ୍‌ଫ୍ଲୁଏନ୍‌ଜା ଜ୍ୱରରୁ ଉଠି ସେ ଖୁବ୍ ଦୁର୍ବଳ ହୋଇ ପଡ଼ିଥାନ୍ତି । ତାଙ୍କର ଦିଲ୍ଲୀ ଆସିବା ଖବର ଶୁଣି ଇନ୍ଦିରା ଗାନ୍ଧି ଏବଂ ତତ୍‌କାଳୀନ ରାଷ୍ଟ୍ରପତି ସଞ୍ଜୀବ ରେଡ୍ଡି, ଉଭୟେ ତାଙ୍କୁ ନିଜ ନିଜ ଘରକୁ ନିମନ୍ତ୍ରଣ ଜଣାଇଲେ । ଶ୍ରୀଯୁକ୍ତ ରେଡ୍ଡି ଋଷିଭାଲି ସ୍କୁଲର ପୁରାତନ ଛାତ୍ର ହୋଇଥିବାରୁ କୃଷ୍ଣମୂର୍ତ୍ତି ଦିଲ୍ଲୀରେ ତାଙ୍କରି ଘରେ ରହନ୍ତୁ ବୋଲି ଯଦିଓ ତାଙ୍କର ବଡ଼ ଇଚ୍ଛା ଥିଲା, କେତେକ କାରଣରୁ ତାହା ସମ୍ଭବ ହୋଇ ନ ଥିଲା । ଦିଲ୍ଲୀରେ ପହଞ୍ଚିବା ପରେ କୃଷ୍ଣମୂର୍ତ୍ତି ପୁପୁଲ ଜୟକରଙ୍କୁ ଇନ୍ଦିରା ଗାନ୍ଧିଙ୍କର ରାଜନୈତିକ ଓ ମାନସିକ ଅବସ୍ଥା ବିଷୟରେ ପ୍ରଶ୍ନ ପଚାରିଥିଲେ । ଭାରତରେ ବଢ଼ି ଚାଲିଥିବା ଦୁର୍ନୀତି ଓ ହିଂସାତ୍ମକ ପନ୍ଥା ନେଇ ସେ ଖୁବ୍ ଚିନ୍ତିତ ଥିବା ପରି ମନେ ହେଉଥିଲେ । ପୁପୁଲ ଜୟକରଙ୍କଠାରୁ ଇନ୍ଦିରା ଗାନ୍ଧି ଓ ଭାରତର ତତ୍କାଳୀନ ରାଜନୈତିକ ଅବସ୍ଥା ସମ୍ପର୍କରେ ସବୁ କଥା ଶୁଣି ସେ ପଚାରିଥିଲେ, — "ସେ (ଇନ୍ଦିରା) ଏସବୁକୁ ସମ୍ଭାଳି ପାରିବେ ତ? ...... ସେ ଯେ ବଡ଼ ଅରକ୍ଷିତ !" ଠିକ୍ ସେହି ଦିନ ସନ୍ଧ୍ୟାରେ ଶ୍ରୀମତୀ ଗାନ୍ଧିଙ୍କ ନିମନ୍ତ୍ରଣ ରକ୍ଷା କରି କୃଷ୍ଣମୂର୍ତ୍ତି ତାଙ୍କ ଘରକୁ

ଯାଇଥିଲେ । ସେଠାରେ ଶ୍ରୀମତୀ ଗାନ୍ଧି ପୂର୍ବ ଦୁଇ ଘଣ୍ଟା କାଳ ତାଙ୍କ ସହିତ ଏକାନ୍ତରେ କଥାବାର୍ତ୍ତା କରିଥିଲେ । ଗନ୍ତବ୍ୟରେ ସେଠାରୁ ଫେରିବା ପରେ କୃଷ୍ଣମୂର୍ତ୍ତି ବଡ଼ ଗମ୍ଭୀର ଦିଶୁଥିଲେ । ଘରେ ପହଞ୍ଚି ସେ ପୁପୁଲଙ୍କୁ କହିଲେ ଯେ ଇନ୍ଦିରା ଗାନ୍ଧିଙ୍କ ଘର ସାରା ଏକ ତୀବ୍ର ମାନସିକ ଉତ୍ତେଜନା ଓ ଘୃଣା ଘୃଣା ଭାବ ଭରି ରହିଥିବା କଥା ସେ ଅନୁଭବ କରିଥିଲେ । ତାଙ୍କର ମନେ ହୋଇଥିଲା ଯେ ସାଧାରଣ ଘରୋଇ କଳି କଜିଆ ଠାରୁ ତାହା ଯେପରି ଢେର ଗମ୍ଭୀର ଓ ଗୁରୁତ୍ୱପୂର୍ଣ୍ଣ ।

ତିନି ବର୍ଷ ପରେ, ୧୯୮୪ ମସିହା ଅକ୍ଟୋବର ୩୧ ତାରିଖ ଦିନ ନିଜ ବାସଗୃହରେ ଅଗୃନକ ଦେହରକ୍ଷୀର ଗୁଳିରେ ଶ୍ରୀମତୀ ଗାନ୍ଧିଙ୍କର ମୃତ୍ୟୁ ଘଟିଲା । ଯୋଗକୁ କୃଷ୍ଣମୂର୍ତ୍ତି ମଧ୍ୟ ସେତିକବେଳେ ଭାରତ ଗସ୍ତରେ ଆସି ଦିଲ୍ଲୀରେ ଉପସ୍ଥିତ ଥିଲେ । ଏ ଖବର ଶୁଣିବା କ୍ଷଣି ସେ ପ୍ରଥମେ ଅତି ଗମ୍ଭୀର ହୋଇ ଉଠିଲେ । ପୁପୁଲଙ୍କ ବର୍ଣ୍ଣନା ଅନୁଯାୟୀ, ଦିନର ଅଧିକାଂଶ ସମୟ ସେ ବୈଠକଖାନାରେ ଏକୁଟିଆ କଟାଇଥିଲେ — ଅନେକ ସମୟ ଧରି ଝରକା ବାଟେ ବାହାର ବଗିଚା, ଆକାଶ, ମେଘ, ଗଛ ଆଦି ଆଡ଼େ ଚାହିଁ ବସି ରହିଥିଲେ । ଉପରଓଳି ଗୃହରେ ପାଖାପାଖି ମନେ ହେଲା ଯେପରି ଇନ୍ଦିରା ଗାନ୍ଧି ସେଇଠି ଉପସ୍ଥିତ ଅଛନ୍ତି — ସେଇଠି ଚଳପ୍ରଚଳ ହେଉଛନ୍ତି ! କୃଷ୍ଣମୂର୍ତ୍ତି ସେତେବେଳେ ଘରର ଲୋକମାନଙ୍କୁ ଏକାନ୍ତ ଭାବରେ ଶାନ୍ତ ରହିବାକୁ ଉପଦେଶ ଦେଇ କହିଥିଲେ ଯେ କେବଳ ତାହାରି ଦ୍ୱାରା ହିଁ ଶ୍ରୀମତୀ ଗାନ୍ଧିଙ୍କୁ ଶାନ୍ତି ମିଳି ପାରିବ — "ତାଙ୍କର ସ୍ମୃତିକୁ ମନ ଭିତରେ ଆବୋରି ଧରି ନାହିଁ; ତା' ଦ୍ୱାରା ସେ ପୃଥିବୀରେ ବାନ୍ଧି ହୋଇ ରହିବେ । ବାସ୍ — ତାଙ୍କୁ ଚାଲିଯିବାକୁ ଦିଅ ।"

ସବୁ ବର୍ଷ ଭଳି ସେଥର ମଧ୍ୟ କୃଷ୍ଣମୂର୍ତ୍ତି ତାହା ପରେ ଦିଲ୍ଲୀ, ବମ୍ବେ, ମାଡ୍ରାସ, ବନାରସ ଓ ଋଷିଭ୍ୟାଲିରେ ତାଙ୍କର ପୂର୍ବ ନିର୍ଦ୍ଧାରିତ ଭାଷଣ ଦେଇଥିଲେ । କିନ୍ତୁ ଏତେ ବର୍ଷ ଧରି ଗଭୀର ଆନ୍ତରିକତାର ସହିତ ଭାଷଣ ଦେବା ପରେ ସୁଦ୍ଧା ସେ ଅନୁଭବ କରିଥିଲେ ଯେ ଲୋକମାନେ

କେବଳ ଜଡ଼ ପଥର ଭଳି ତାଙ୍କ ବକ୍ତବ୍ୟକୁ ଶୁଣି ଯାଉଛନ୍ତି, ଆଉ ବିଗତ ହଜାର ହଜାର ବର୍ଷ ଧରି ସେମାନେ ଯାହା ଥିଲେ ଠିକ୍ ତାହା ହିଁ ହୋଇ ରହିଛନ୍ତି । ଲୋକମାନଙ୍କର ଏ ପ୍ରକାର ନିଷ୍କ୍ରିୟତାରେ ସେ ଖୁବ୍ ମର୍ମାହତ ହୋଇଥିଲେ । ତାଙ୍କର ମନେ ହୋଇଥିଲା ଯେ ଏତେ ବର୍ଷ କାଳ ସମୟ ଓ ପରିଶ୍ରମ ଦେଇ ଲୋକମାନେ ଯେ ତାଙ୍କର ଭାଷଣ ଶୁଣିବାକୁ ଦୂର ଦୂରାନ୍ତରୁ ଧାଇଁ ଆସୁଛନ୍ତି, ତାଙ୍କର ବହି ପଢୁଛନ୍ତି, ତାଙ୍କ ସହିତ ଆଲୋଚନା କରୁଛନ୍ତି, ହେଲେ କାହିଁ ସେମାନଙ୍କ ଠାରେ ତ' କୌଣସି ପରିବର୍ତ୍ତନ ଦେଖା ଦେଉନାହିଁ ! ସେମାନେ ଗୋଟାପଣେ ଯାହାକୁ ସେଇଆ ରହି ଯାଇଛନ୍ତି ।

କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା ଓ ପ୍ରଚଳିତ ଧର୍ମୀୟ ପରମ୍ପରା ମଧ୍ୟରେ ରହିଥିବା ପ୍ରଭେଦକୁ ଦର୍ଶାଇ ଜଣେ ଶ୍ରୋତା ତାଙ୍କୁ ଥରେ ମାଡ୍ରାସର ଏକ ସଭାରେ ପଚାରିଥିଲେ — "ଆଚ୍ଛା, ଆମର ଏଇ ସାଧୁ ସନ୍ନ୍ୟାସୀମାନେ ଯେଉଁ ସବୁ ମୂର୍ତ୍ତି, ପ୍ରତିମା, ବା କାହାଣୀମାନ ସୃଷ୍ଟି କରି ଯାଇଛନ୍ତି ମୁଁ ତ' ଭାବୁଛି ସେସବୁ କେବଳ ଆମର ଜୀବନକୁ ସୁଧାରିବା ଲାଗି, ଆମର ଜୀବନକୁ ଭଲ ଭାବରେ ଗଢ଼ି ତୋଳିବା ଲାଗି କରି ଯାଇଛନ୍ତି । ତେବେ ଆପଣ ତା'କୁ ବାଜେ, ନିରର୍ଥକ ବୋଲି କହି ଆଡ଼େଇ ଦେଉଛନ୍ତି କାହିଁକି ?" ତା'ର ଉତ୍ତରରେ କୃଷ୍ଣମୂର୍ତ୍ତି ଯାହା କହିଲେ, ତା'ର ଗୋଟିଏ ଅଂଶ ହେଲା — "ଏ ପ୍ରଶ୍ନଟିର କ'ଣ ସତରେ କୌଣସି ଉତ୍ତର ଦରକାର ? ଦେଖ, ପ୍ରଥମ କଥା ହେଲା ଆମେ କାହାକୁ ସାଧୁ ବୋଲି କହୁଆଉ ? ଯିଏ କିଛି ଗୋଟାଏ ପାଇକରି ଯିବା ଲାଗି ସଂଘର୍ଷ ଚଳାଇଥାଏ ତା'କୁ ନା ଯେଉଁ ବ୍ୟକ୍ତି ଜଣକ ସଂସାରକୁ 'ପରିତ୍ୟାଗ' କରିଥାଏ, ତା'କୁ ? କିନ୍ତୁ ଟିକିଏ ଭଲକରି ଭାବିଲେ ଜାଣି ପାରିବ ଯେ ସେଭଳି ବ୍ୟକ୍ତି ତ' ପ୍ରକୃତରେ ସଂସାର ପରିତ୍ୟାଗ କରି ନ ଥାଏ । କାରଣ ସଂସାରଟା ହେଉଛି ସେ ନିଜେ । ସେ ବ୍ୟକ୍ତି ଜଣକ ସ୍ୱଭାବତଃ ରାଗୀ ହୋଇ ସୁଦ୍ଧା ନିଜର ରାଗକୁ ଦମନ କରି ରଖିଥାଇ ପାରେ ଓ ଭିତରେ ଜଳୁ ଥାଇ ପାରେ । ନିଜ ଉପରେ ନିଜେ ଅତ୍ୟାଚାର କରୁଥାଇ ପାରେ । ସେ ଟିକିଏ ଆଡ଼ମ୍ବର ମଧ୍ୟ

ହୋଇଥାଇ ପାରେ । ଆଉ ସେହିଭଳି ଲୋକଟିଏ ପାଇଲେ ତମେ ସାଙ୍ଗେ ସାଙ୍ଗେ ତା'ଙ୍କୁ ପୂଜା କରିବାକୁ ଆରମ୍ଭ କରିଦିଅ ।" × × × × "କିନ୍ତୁ ସେଭଳି ସନ୍ନ୍ୟାସୀ ତ' ପ୍ରକୃତରେ ସନ୍ନ୍ୟାସୀ ନୁହେଁ । ସେ କେବଳ ଗୋଟାଏ ଗତାନୁଗତିକ ଧାରା ବା ପଦ୍ଧତିକୁ ଅନୁସରଣ କରି ଚାଲିଥାଏ । ତା'ଛଡ଼ା କହିଲ ଦେଖି, ଏ ସାଧୁ ସନ୍ନ୍ୟାସୀମାନେ କ'ଣ ଆଜି ପର୍ଯ୍ୟନ୍ତ ତାଙ୍କର କାହାଣୀ, ପୁତ୍ତଳିକା, ବା ଆଦର୍ଶ ଦ୍ୱାରା ଏକ ନୂତନ ଜଗତ, ବା ଭଲ ସମାଜଟିଏ, ଅଥବା ଭଲ ମଣିଷଟିଏ ଗଢ଼ି ପାରିଛନ୍ତି କି ?"

୧୯୮୨ ମସିହା ଫେବୃଆରୀ ମାସରେ ଭାରତରୁ ଫେରି କୃଷ୍ଣମୂର୍ତ୍ତି ଓହାଇରେ ପହଞ୍ଚିଲେ । ସେଠାରେ ତାଙ୍କର ହାର୍ଣ୍ଣିଆ ଅପରେସନ୍ ହେବ ବୋଲି ଆଗରୁ ସ୍ଥିର ହୋଇଥିଲା । ଏଥିପାଇଁ ମେରୀ କମ୍ବାଲିଷ୍ଟ ଡାକ୍ତର-ଖାନାରେ ସମସ୍ତ ବନ୍ଦୋବସ୍ତ କରି ରଖିଥିଲେ । ଅପରେସନ୍ ପାଇଁ କୃଷ୍ଣମୂର୍ତ୍ତିଙ୍କୁ ସମୁଦାୟ ଚାରି ଦିନ ଡାକ୍ତରଖାନାରେ ରହିବାକୁ ପଡ଼ିଲା । ପୂର୍ବ ଅପରେସନ୍ ଭଳି ଏଥର ମଧ୍ୟ ତାଙ୍କୁ ଜେନେରାଲ ଆନାସ୍ଥେସିଆ ବଦଳରେ ମେରୁଦଣ୍ଡ ନିଶା ଇଞ୍ଜେକ୍ସନ୍ ଦେଇ ଅଚେତ କରାଯାଇଥିଲା । ଅପରେସନ୍ ପରେ ପ୍ରାୟ ଦୁଇ ସପ୍ତାହ କାଳ ସମୟ ସମୟରେ ତାଙ୍କର ଯନ୍ତ୍ରଣା ହେଉଥିଲା ଓ ସେ ଭଲ ଭାବରେ ଚାଲି ବୁଲି ପାରୁ ନ ଥିଲେ । ସେତେବେଳେ ତାଙ୍କର ତତ୍ତ୍ୱାବଧାନ ପାଇଁ ଶ୍ରୀମତୀ କମ୍ବାଲିଷ୍ଟ ବରାବର ତାଙ୍କ ପାଖେ ପାଖେ ରହୁଥିଲେ । କିନ୍ତୁ ତାଙ୍କୁ କାଳେ ଅଧିକ ପରିଶ୍ରମ ପଡ଼ିଯିବ, ସେଥିପାଇଁ କୃଷ୍ଣମୂର୍ତ୍ତି ବଡ଼ ସଜାଗ ଥିଲେ ଏବଂ ଅନେକ ସମୟରେ ରନ୍ଧା ବାସନପତ୍ର ଧୂଆମଜା କରିବା ଓ ଘରଦ୍ୱାର ସଫା କରିବା କାମରେ ସେ ନିଜେ ମେରୀଙ୍କୁ ସାହାଯ୍ୟ କରୁଥିଲେ । ଏହାଛଡ଼ା ଯେହେତୁ ନିଜର ଦୁର୍ବଳତାବଶତଃ ସେ ଭ୍ରମଣରେ ଯାଇ ପାରୁ ନ ଥିଲେ ଏବଂ ଅଧିକ ଚଲାବୁଲା କରିବାକୁ ଡାକ୍ତରଙ୍କ ବାରଣ ଥିଲା, ତେଣୁ ସେ ଦିନର ଅଧିକାଂଶ ସମୟ ନୀରବରେ ବସି ରହୁଥିଲେ ଓ କେବେକେବେ ପତ୍ରିକା ବା ଗୋଟିଏ ଗୋଟିଏ ବହି ପଢ଼ୁଥିଲେ ।

## ସାଧୁ ସନ୍ନ୍ୟାସୀଙ୍କ ଗହଣରେ

କୃଷ୍ଣମୂର୍ତ୍ତି କେବେହେଲେ ନିଜକୁ ଜଣେ ମହାତ୍ମା ବା ମହର୍ଷି ଭାବରେ ପ୍ରତିଷ୍ଠା କରିବାକୁ ଚାହିଁ ନାହାନ୍ତି କିମ୍ବା ତାଙ୍କର ଶିକ୍ଷାକୁ ପ୍ରଚାର କରିବାକୁ କୌଣସି ସଂଗଠନ ବା ପ୍ରଚାରକ ଗଢ଼ି ନାହାନ୍ତି । ବରଂ ସେ ସର୍ବଦା ନିଜକୁ ଅନ୍ୟମାନଙ୍କ ଭଳି ଏକ ସାଧାରଣ ବ୍ୟକ୍ତି ଭାବରେ ପରିଚୟ ଦେଇଥାନ୍ତି । ଏସବୁ ସତ୍ତ୍ୱେ ତାଙ୍କଠାରେ ଏଭଳି କିଛି ଆଧ୍ୟାତ୍ମିକ ମହତ୍ତ୍ୱ ରହିଥିଲା ଯାହାକି ଅନେକ ସମୟରେ ଯୋଗୀ ଋଷିଙ୍କୁ ସ୍ୱତଃ ଆକୃଷ୍ଟ କରି ଆଣୁଥିଲା । ଏକଦା କୃଷ୍ଣମୂର୍ତ୍ତି ମାଡ୍ରାସରେ ଥିବାବେଳେ ଗେରୁ ବସ୍ତ୍ର ପରିହିତ ଜଣେ ଜଟାଧାରୀ ସାଧୁ ତାଙ୍କ ସହିତ ସାକ୍ଷାତ କରିବାକୁ ଆସି ହାଜର ହେଲେ । ସେ କିପରି ଭାବରେ କୃଷ୍ଣମୂର୍ତ୍ତିଙ୍କ ସନ୍ଧାନ ପାଇ ସେଠାକୁ ଆସିଲେ ସେ କାହାଣୀ ବଡ଼ ଅଦ୍ଭୁତ ।

ସେ ସନ୍ନ୍ୟାସୀଜଣକ ଏକ ବିଶିଷ୍ଟ ସିଦ୍ଧ ଯୋଗୀଙ୍କର ଶିଷ୍ୟ ଥିଲେ । ଦିନେ ତାଙ୍କୁ ଡାକକରି ତାଙ୍କର ଗୁରୁ କହିଲେ ଯେ ତାଙ୍କର ଅନ୍ତିମ କାଳ ପାଖେଇ ଆସିଲାଣି; ସେ ଦିବ୍ୟଜ୍ଞାନ ବଳରେ ଜାଣି ପାରୁଛନ୍ତି ଯେ ଜଣେ ଅତି ବଡ଼ ସାଧୁ ପୁରୁଷ, ଯେ କି ସାରା ପୃଥିବୀରେ ବୁଲି ବୁଲି ଜ୍ଞାନ ବିତରଣ କରୁଛନ୍ତି, ସେ ବର୍ତ୍ତମାନ ସେଠି ନିକଟରେ କେଉଁଠି ରହୁଛନ୍ତି । ଗୁରୁଙ୍କଠାରୁ ଏ କଥା ଶୁଣି ଶିଷ୍ୟଜଣକ ସେଭଳି ମହାତ୍ମାଙ୍କ ସନ୍ଧାନରେ ବାହାରି ପଡ଼ିଲେ ଓ ବୁଲି ବୁଲି ଅନେକ ମଠ, ଆଶ୍ରମରେ ସନ୍ଧାନ ନେଲେ, ହେଲେ କେଉଁଠି ତାଙ୍କର ମନ ମାନିଲା ନାହିଁ । ଏମିତି ବୁଲୁ ବୁଲୁ ଦିନେ ମାଡ୍ରାସଠାରେ ସେ କୃଷ୍ଣମୂର୍ତ୍ତିଙ୍କର ଗୋଟିଏ ଭାଷଣ ଶୁଣିଲେ । ସେଇଠି ତାଙ୍କର ମନେ ହେଲା ଯେ ଆଜି ଯାକେ ସେ ଖୋଜି ବୁଲୁଥିବା ସନ୍ଥଜଣକ କୃଷ୍ଣମୂର୍ତ୍ତିଙ୍କ ବିନା ଅନ୍ୟ କେହି ନୁହେଁ । ତତ୍‌କ୍ଷଣାତ୍ ସେଠାରୁ ଫେରି ଯାଇ ସେ ଗୁରୁଙ୍କୁ ସବୁକଥା

ଜଣାଇଲେ । ଶିଷ୍ୟଠାରୁ ସବୁ ଶୁଣି ସାଈ ଗୁରୁ ତାଙ୍କ ସହିତ ଏକମତ ହେଲେ ଓ ତାଙ୍କୁ 'କ୍ରିଷ୍ଣମୂର୍ତ୍ତିଙ୍କ ନିକଟକୁ ମାଡ୍ରାସ ଫେରି ଯିବାକୁ ଆଦେଶ ଦେଲେ ।

ସେମିତି ଆଉ ଥରେ ବମ୍ବେରେ ଥିବାବେଳେ ଦିନେ ସକାଳେ ଦୁଇ ଜଣ ସାଧୁ ଆସି କ୍ରିଷ୍ଣମୂର୍ତ୍ତିଙ୍କୁ ଦର୍ଶନ କରିବାକୁ ପୁପୁଲଙ୍କ ଘରେ ପହଞ୍ଚିଲେ । ତାଙ୍କ ଭିତରୁ ଜଣେ ଥିଲେ ଅତି ବୃଦ୍ଧ — ଅଣ୍ଟା ନଇଁ ଯାଇଥିଲା । ସେ ବାଡ଼ି ଧରି ଚାଲୁଥିଲେ । ଆଉ ସାଧୁଜଣକ ଅପେକ୍ଷାକୃତ ଅଳ୍ପ ବୟସ୍କ । ଦିହେଁଯାକ ତୀର୍ଥଯାତ୍ରାରେ ଋଷିକେଶରୁ ବାହାରି ରାମେଶ୍ୱର ପର୍ଯ୍ୟନ୍ତ ଯାଉଥିଲେ । ବାଟରେ କ୍ରିଷ୍ଣମୂର୍ତ୍ତି ରହୁଥିବା ଘର ପାଖ ଦେଇ ଯାଉ ଯାଉ ହଠାତ୍ ସେହି ବୃଦ୍ଧ ସାଧୁଜଣକ କହିଲେ ଯେ ତାଙ୍କର କାହିଁକି ମନେ ହେଉଛି, ସେହି ଆଖ ପାଖରେ କେହି ଜଣେ ଅତି ବଡ଼ ମହାପୁରୁଷ ରହୁଛନ୍ତି । ନିଜର ଅତୀନ୍ଦ୍ରିୟ ଶକ୍ତି ବଳରେ ଖୋଜି ଖୋଜି ଶେଷରେ ସାଧୁ ଦିହେଁ ଆସି କ୍ରିଷ୍ଣମୂର୍ତ୍ତି ରହୁଥିବା ବଙ୍ଗଳା ଭିତରେ ପହଞ୍ଚି 'ମହାପୁରୁଷ'ଙ୍କ ଦର୍ଶନ ଲାଗି ଅନୁନୟ ଜଣାଇଲେ । ସାଧୁଙ୍କଠାରୁ ସବୁକଥା ଶୁଣି ଗୃହକର୍ତ୍ତ୍ରୀ ଭିତରକୁ ଯାଇ କ୍ରିଷ୍ଣମୂର୍ତ୍ତିଙ୍କ ଆଗରେ ଏକଥା କହିଲେ । ସେ ତାହା ଶୁଣି ସଙ୍ଗେ ସଙ୍ଗେ ଭିତରୁ ବାହାରି ଆସି ସେହି ସାଧୁ ଦିହିଁଙ୍କ ସାଙ୍ଗରେ ଭୂଇଁରେ ଦରି ଉପରେ ଚକାମାରି ବସିଗଲେ । ଅନେକ ସମୟ ପାଇଁ ସେ ବୃଦ୍ଧଜଣକର ହାତଟିକୁ ନିଜ ପାପୁଲିରେ ମୁଠାଇ ଧରି ନୀରବରେ ବସି ରହିଲେ । ସେମାନଙ୍କ ଭିତରେ କୌଣସି କଥାବାର୍ତ୍ତା ନ ଥିଲା । କିଛି ବେଳ ପରେ ସାଧୁ ଦିହେଁ ତାଙ୍କୁ ପ୍ରଣାମ ଜଣାଇ ପୁଣି ଆପଣା ବାଟରେ ଚାଲିଗଲେ ।

୧୯୮୨ ମସିହାର ଭାରତ ଗସ୍ତ ବେଳେ କଲିକତା ଠାରେ କ୍ରିଷ୍ଣମୂର୍ତ୍ତି ସର୍ବମୋଟ ଚାରୋଟି ଭାଷଣ ଦେବାର ସ୍ଥିର ହୋଇଥିଲା । ଏଥି ପୂର୍ବରୁ ସେ କେବେହେଲେ କଲିକତାରେ ଭାଷଣ ଦେଇ ନ ଥିଲେ । ତେଣୁ ତାଙ୍କ ଭାଷଣ ପ୍ରତି ସେଠା ଜନସାଧାରଣଙ୍କର କିଭଳି ପ୍ରତିକ୍ରିୟା ହେବ, ସେମାନେ ଭାଷଣସଭାକୁ ଆସିବେ କି ନାହିଁ — ସେଥି ନେଇ

କୃଷ୍ଣମୂର୍ତ୍ତି ଫାଉଣ୍ଡେସନର କର୍ତ୍ତୃପକ୍ଷଙ୍କର ଅନେକ ଆଶଙ୍କା ଥିଲା । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ ସେଠାରେ ଅନୁଷ୍ଠିତ ଗୃହବୈଠକିଯାକ ଜନସଭାରେ ଏତେ ଲୋକଗହଳି ହୋଇଥିଲା ଯେ ତାହା ବମ୍ବେ ବା ଦିଲ୍ଲୀର ସଭାକୁ ସୁଦ୍ଧା ବଳାଇଗଲା । ଦୈନିକ ଖବରକାଗଜ, ପତ୍ରପତ୍ରିକା ପ୍ରଭୃତି କେବଳ କୃଷ୍ଣମୂର୍ତ୍ତିଙ୍କ ସମ୍ବାଦ ଓ ଫଟୋରେ ପୂରି ଉଠିଥିଲା । ପ୍ରତିଟି ସଭାରେ ପ୍ରାୟ ଚୂରିରୁ ପାଞ୍ଚ ହଜାର ପର୍ଯ୍ୟନ୍ତ ଶ୍ରୋତା ତାଙ୍କର ଭାଷଣକୁ ଆରମ୍ଭରୁ ଶେଷ ଯାକେ ଯେଉଁଭଳି ମନ ଧ୍ୟାନ ଦେଇ ଗଭୀର ଆଗ୍ରହରେ ଶୁଣିଥିଲେ, ସେଥିରୁ ମନେ ହେଉଥିଲା ସତେ ଅବା ସେମାନେ କୃଷ୍ଣମୂର୍ତ୍ତିଙ୍କ ଦର୍ଶନରୁ ଏକ ନବ ଦିଗନ୍ତର ସନ୍ଧାନ ପାଇଛନ୍ତି । କଲିକତାବାସୀଙ୍କର ଏ ପ୍ରକାର ପ୍ରବଳ ଆଗ୍ରହ ଓ ଉତ୍ସୁକତାରେ କୃଷ୍ଣମୂର୍ତ୍ତି ନିଜେ ମଧ୍ୟ ମୁଗ୍ଧ ହୋଇ ଯାଇଥିଲେ । ସେହିଠାରେ ଗୋଟିଏ ଭାଷଣରେ ଜୀବନରେ ସମ୍ବେଦନଶୀଳତାର ତାତ୍ପର୍ଯ୍ୟ ସମ୍ବନ୍ଧରେ ବୁଝାଇବାକୁ ଯାଇ ସେ କହିଥିଲେ—

"ଆମେମାନେ କାହିଁକି ଆପଣାକୁ ଏମିତି ଧ୍ୱଂସ କରି ପକାଉଛୁ ? ଆମର ଯେତେକ ଧର୍ମ, ଧର୍ମଗ୍ରନ୍ଥ, ଧର୍ମଗୁରୁ, ପୁଣି ସାରା ଖ୍ରୀଷ୍ଟିଆନ ଜଗତ — ସେ ସମସ୍ତ ଆମକୁ କେବଳ ଆମର କାମନା, ବାସନାକୁ ଜବରଦସ୍ତ ଚପାଇ ରଖିବାକୁ ବତାଇଛି ! ସ୍ତ୍ରୀ ଲୋକଟିଏ ଦେଖିଲେ ତା' ଆଡ଼େ ନଜର ନ ପକାଇବାକୁ, ପୁଣି ନିଜ ଉପରେ ନିଜେ ଅତ୍ୟାଚାର କରିବାକୁ ଶିଖାଇଛି — ଆଉ କହିଛି ଯେ ସେପରି କଲେ ଯାଇ କେବଳ ଆମେ ଭଗବାନଙ୍କୁ ଲାଭ କରି ପାରିବା, ନିର୍ବାଣ, ମୋକ୍ଷ, ବା ଆମେ ଯାହାକିଛି ଖୋଜୁଛୁ, ତା'କୁ ପାଇ ପାରିବା, ତା'ର ଦ୍ୱାରା କେବଳ ଜ୍ଞାନ ଲାଭ କରିପାରିବା ଇତ୍ୟାଦି ଯେତେ ସବୁ ବାଜେ କଥା ! କିନ୍ତୁ ଏ ଯେଉଁ ଅସାମାନ୍ୟ ଜିନିଷଟିଏ ଆମର ପାଖରେ ରହିଛି — ଅର୍ଥାତ ଆମର ଏ ଶରୀର, ତା'ର ଯେତେକ ଇନ୍ଦ୍ରିୟାନୁଭବ, ସୌନ୍ଦର୍ଯ୍ୟବୋଧ, ତା'କୁ ତମେ ଧ୍ୱଂସ କରିଦେବ ବା କିପରି ?"

କଲିକତାଠାରେ କୃଷ୍ଣମୂର୍ତ୍ତିଙ୍କର ସବୁତକ ଭାଷଣ ଶୁଣିଥିବା ତଥା ସଦ୍ୟ କଲେଜ ପାଶ୍ କରିଥିବା ଜଣେ ଯୁବକଙ୍କୁ ପଚାରିବାରେ ସେ

କହିଥିଲେ ଯେ କୃଷ୍ଣମୂର୍ତ୍ତିଙ୍କ ଭାଷଣର ବିଷୟବସ୍ତୁ ତାଙ୍କ ମନ ଭିତରେ ଆଜି ଯାଏଁ ରହି ଆସିଥିବା ସକଳ ମୂଲ୍ୟବୋଧ, ଆଦର୍ଶ ଏବଂ ଆଧ୍ୟାତ୍ମିକତା ପ୍ରତି ଅନୁରକ୍ତିକୁ ଯେମିତି ଏକାବେଳକେ ଓଲଟ ପାଲଟ କରି ଦେଇଛି । ତେର ଚଉଦ ବର୍ଷ ବୟସରୁ ସେହି ଯୁବକ ଜଣକ ଧର୍ମଗୁରୁ, ଜ୍ଞାନ ପ୍ରାପ୍ତି ଆଦି ବଡ଼ ବଡ଼ ବିଷୟ ନେଇ ମାତି ରହିଥିଲେ, ଅନେକ ଗ୍ରନ୍ଥ, ଧର୍ମଶାସ୍ତ୍ର ଆଦି ପଢ଼ିଥିଲେ, ତୀର୍ଥଯାତ୍ରାରେ ମଧ୍ୟ ଅନେକ ଥର ଯାଇଥିଲେ । କିନ୍ତୁ ଏତେ ଦିନ ପରେ କୃଷ୍ଣମୂର୍ତ୍ତିଙ୍କ ଠାରୁ ସେସବୁର ନିରର୍ଥକତା ବିଷୟରେ ଶୁଣି ସେ ବଡ଼ ନିଃସହାୟ ଜଣା ପଡୁଥିଲେ । ଭବିଷ୍ୟତରେ କ'ଣ କରିବେ, କ'ଣ ନାହିଁ, ସେଥି ନେଇ ଭାରି ଚିନ୍ତିତ ମନେ ହେଉଥିଲେ ।

ସେମିତି ଆଉ ଥରକର ଘଟଣା । କୃଷ୍ଣମୂର୍ତ୍ତିଙ୍କ ନିକଟକୁ ଋଷିକେଶରୁ ଜଣେ ସାଧୁ ଆସିଥିଲେ । ଅନେକ ବର୍ଷ କାଳ ସେଠାରେ ଜଣେ ଗୁରୁଙ୍କ ଆଶ୍ରମରେ ରହିବା ପରେ ସେ ଏକୁଟିଆ ପାହାଡ଼ ଉପରକୁ ଯାଇ ସେହିଠାରେ ରହିବାକୁ ଆରମ୍ଭ କରିଥିଲେ । ଘର ସଂସାର ଛାଡ଼ି କୋଡ଼ିଏ ବର୍ଷ ବୟସରୁ ସେ ସାଧୁ ଜଣକ ବହୁ ଆଶ୍ରମ ବୁଲିଛନ୍ତି, ଧର୍ମଗ୍ରନ୍ଥ କିଛି ପଢ଼ାପଢ଼ି କରିଛନ୍ତି । ବୟସ ବେଶ୍ ହୋଇ ଯାଇଥିଲେ ସୁଦ୍ଧା ମୁହଁରେ ତାଙ୍କର ଦୀପ୍ତି ଓ ଯୁବସୁଲଭ କମନୀୟତା ଝଲସୁଥିଲା । ନିଜର ପରିଚୟ ଦେଇ ସାଧୁ ଜଣକ ବର୍ଣ୍ଣନା କରିବାରେ ଲାଗିଲେ ସେ କିପରି ସଂସାରରୁ ଦୂରେଇ ରହିଛନ୍ତି ଓ ମଝିରେ ମଝିରେ ତାଙ୍କର ଗୁରୁ, ଯେ କି ଏବେ ହିମାଳୟର ଏକ ନିକାଞ୍ଚନ ଅଞ୍ଚଳରେ ଏକାକୀ ରହୁଛନ୍ତି, ତାଙ୍କଠାରୁ ଆଶୀର୍ବାଦ ଭିକ୍ଷା କରି ସନ୍ନ୍ୟାସ ଜୀବନ ଯାପନ କରନ୍ତି ।

ସାଧୁଙ୍କ ଠାରୁ ତାଙ୍କ ବିଷୟରେ ସବୁ କଥା ଶୁଣି କୃଷ୍ଣମୂର୍ତ୍ତି ପଚାରିଲେ, "କିନ୍ତୁ ସଂସାରରୁ ବିଚ୍ଛିନ୍ନ ହୋଇ ପଡ଼ିବାଟା କ'ଣ ନିହାତି ଦରକାର ?" ସାଧୁଜଣକ ଜୋର ଦେଇ କହିଲେ ଯେ ସଂସାର ତ୍ୟାଗ ନ କଲେ କି ଜଣେ ଗୁରୁଙ୍କଠାରୁ ଶିକ୍ଷା ଲାଭ ନ କଲେ ଜୀବନର ସତ୍ୟତା ଉପଲବ୍ଧି କରିବା ଅସମ୍ଭବ । କାରଣ ସଂସାର ହିଁ ତ'

ହେଉଛି ମିଥ୍ୟା । ତାହାଛଡ଼ା ସତ୍ୟର ଅନୁସନ୍ଧାନ କରିବାକୁ ହେଲେ ଯେଉଁମାନେ ସେ ମାର୍ଗରେ ଆଗରୁ ଯାଇଛନ୍ତି ତାଙ୍କର ସହାୟତା ନହାତି ଲୋଡ଼ା । ତା'ପରେ ସେ କହିଲେ, "କିନ୍ତୁ ଆପଣ ତ' କ'ଣ ଏ ସବୁକୁ ବାରଣ କରୁଛନ୍ତି ! ତେଣୁ ଆପଣ ପ୍ରକୃତରେ କ'ଣ କହିବାକୁ ଚାହାନ୍ତି ଓ କାହିଁକି ଏପରି କହୁଛନ୍ତି, ସେଇକଥା ପଚାରିବାକୁ ଖାସ୍ ମୁଁ ଆଜି ଏତେ ବାଟ ଧାଇଁ ଆସିଛି ।"

କୃଷ୍ଣମୂର୍ତ୍ତି କହିଲେ, "ଆଚ୍ଛା, ତମ ଆଖି ଆଗରେ ବହି ଯାଉଥିବା ସେ ନଈଟି ଆଡ଼େ ଟିକିଏ ଚାହିଁ ଦେଖିଲ ! ତା' ଦେହରେ ଉଷାର ଆଲୋକ, ତା' ସେପାରିରେ ଛନଛନିଆ ଗହମ କ୍ଷେତ, ପୁଣି ଆହୁରି ସେକଡ଼କୁ ସେ ଗଛ ସବୁ — କେଡ଼େ ସୁନ୍ଦର ଦିଶୁଛି ସତେ ! ଟିକିଏ ଚାହିଁ ଦେଖିଲ ସେଆଡ଼େ ! କେତେ ସୌନ୍ଦର୍ଯ୍ୟ ମାଧୁରୀ ଭରି ରହିଛି ସେଠି ! କିନ୍ତୁ ତା'କୁ ହୃଦୟଙ୍ଗମ କରିବା ଲାଗି ତମ ଆଖି ଯୋଡ଼ିକ ଶ୍ରଦ୍ଧା, ପ୍ରେମରେ ଟଳମଳ ହେଉଥିବା ଦରକାର । ପୁଣି, ସେପଟେ ଲୁହା ପୋଲ ଉପରେ ଚାଲି ଯାଉଥିବା ରେଳଗାଡ଼ିର ଝଣଝଣ ଶବ୍ଦକୁ ଶୁଣିବା ଯେତିକି ଦରକାର, ଚଢ଼େଇଟିର ଡାକ ଶୁଣିବା ବି ସେତିକି ଦରକାର । ତମେ ଆଖି ମେଲି ଦେଖିଯାଅ, କାନ ପାତି ଶୁଣିଯାଅ — ସେ ପାରିଗୁଡ଼ାକ କେମିତି ଘୁମୁରିବାରେ ଲାଗିଛନ୍ତି; ତେନ୍ତୁଳି ଗଛ ଡାଳରେ ଶୁଆ ଯୋଡ଼ିଏ ବସିଛନ୍ତି, ତାଙ୍କୁ ଟିକେ ନଜର ଦେଇ ଦେଖ । × × × × ଏଇ ସବୁ ତ' ହେଲା ସଂସାର — ଜଗତର ଅଂଶ । ତମେ ଯଦି କହ ଯେ ତମେ ଏ ସବୁକୁ ପରିତ୍ୟାଗ କରିଛ, ତେବେ ତ' ତମେ ସୌନ୍ଦର୍ଯ୍ୟ, ସୁଷମା ଓ ପ୍ରେମକୁ ପରିତ୍ୟାଗ କରିଛ, ପୃଥିବୀକୁ ପରିତ୍ୟାଗ କରିଛ । କିନ୍ତୁ ତମେ ଯାହାକୁ ଛାଡ଼ିଦେଇ ଯାଇଛ ସେଇଟା ହେଲା ଲୋକ ମାନଙ୍କର ସମାଜ । କିନ୍ତୁ ଏ ମଣିଷ ଯାହା ଗଢ଼ିଛି ତମେ ତ' ତାକୁ ପ୍ରକୃତରେ ପରିତ୍ୟାଗ କରିଯାଅ ନାହିଁ । ତମେ କେବେହେଲେ ତମର ସଂସ୍କୃତିକୁ ପରିତ୍ୟାଗ କର ନାହିଁ; ପରମ୍ପରା, ଜ୍ଞାନ ଗରିମା, ବା ଯାହାସବୁ ସଂସାର ପରିତ୍ୟାଗ କଲାବେଳେ ତମ ସାଥିରେ ଥାଏ, ସେ ସବୁକୁ ତ କେବେ ଛାଡ଼ନାହିଁ । × × × ×

ସଂସାରୀ ନ ହେବାର ଅର୍ଥ କୌପୀନ ପିନ୍ଧିବା ନୁହେଁ କି ଦିନକୁ ଥରେ ଖାଇବା, ନିରର୍ଥକ ଶ୍ଳୋକ ପାଠ କରିବା ମଧ୍ୟ ନୁହେଁ । ସଂସାରକୁ ତ୍ୟାଗ କରି ଏଣେ ଭିତରେ ଭିତରେ ସଂସାରର ଲୋଭ, ଭୟ, ହିଂସାକୁ ଧରି ରଖିବା, କର୍ତ୍ତୃତ୍ୱକୁ ମାନି ଚଳିବା, କିଏ 'ଜାଣେ' ଓ କିଏ 'ଜାଣେ ନାହିଁ' ତାଙ୍କ ଭିତରେ ପ୍ରଭେଦ କାଢ଼ିବା — ଏସବୁ ହେଲା ସାଂସାରିକତା । × × × × ଏଥିରେ ମଣିଷକୁ ଏକାକୀ ହୋଇ ବଞ୍ଚିବାକୁ ହୁଏ ସତ, କିନ୍ତୁ ସେ ଏକାକୀତ୍ୱଟା ବିଚ୍ଛିନ୍ନତା ନୁହେଁ । ଏକାକୀତ୍ୱ କହିଲେ ବୁଝାଏ ଡମେ ଲୋଭ, ଘୃଣା, ହିଂସ୍ରତାର ଦୁନିଆରୁ ଓ ତା'ର ଧୂର୍ତ୍ତ ଫାସରୁ ମୁକ୍ତ ହୋଇଯିବ; ନିଃସଙ୍ଗତାର ଯନ୍ତ୍ରଣା ଓ ହତାଶାରୁ ମଧ୍ୟ ମୁକୁଳି ଆସିବ । ......"

## 'ଏ ଶିକ୍ଷାର କେହି ପ୍ରତିନିଧି ନାହିଁ ......'

ସ୍କୁଲ, ଭାଷଣ, ଆଲୋଚନା ସଭା ପ୍ରଭୃତି ବ୍ୟତୀତ ଅନ୍ୟ ଏକ ଉପାୟରେ ଯେ ମଣିଷକୁ ଶିକ୍ଷା ଦିଆ ଯାଇପାରେ ଏ ଦିଗରେ କ୍ରିଷ୍ଣମୂର୍ତ୍ତି ବିଗତ କିଛି ବର୍ଷ ଧରି ଚିନ୍ତା କରିବାରେ ଲାଗିଥିଲେ । ସେ ଅନୁଭବ କରୁଥିଲେ ଯେ ସ୍କୁଲ ପିଲାମାନଙ୍କର ଶିକ୍ଷା ଲାଗି ଆଜଯାଏ ଯେତେକ ଉଦ୍ୟମ କରାଯାଇ ଥିଲେ ହେଁ, ଏ ପ୍ରକାର ଶିକ୍ଷା ଦିଗରେ ଆଗ୍ରହୀ ବୟସ୍କ ବ୍ୟକ୍ତିମାନଙ୍କ ନିମନ୍ତେ ଏ ପର୍ଯ୍ୟନ୍ତ କୌଣସି ପ୍ରକାର ବ୍ୟବସ୍ଥା କରାଯାଇ ନାହିଁ । ତେଣୁ ସେଭଳି ବ୍ୟକ୍ତିମାନଙ୍କ ନିମନ୍ତେ ଏକ ଉପଯୁକ୍ତ ଶିକ୍ଷାପୀଠ ଗଢ଼ିବା ପାଇଁ ତାଙ୍କ ମନରେ ବଡ଼ ଇଚ୍ଛା ଥିଲା । ଏବେ ତାଙ୍କର ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ — ଅର୍ଥାତ, କ୍ରିଷ୍ଣମୂର୍ତ୍ତି-ଶିକ୍ଷା ଉପରେ ପର୍ଯ୍ୟବସିତ ଏକ 'କ୍ରିଷ୍ଣମୂର୍ତ୍ତି ସେଣ୍ଟର' ଗଠନ କରିବା ପାଇଁ ଭାରତ, ଇଂଲଣ୍ଡ ଓ ଆମେରିକା ଫାଉଣ୍ଡେସନର କର୍ମକର୍ତ୍ତାମାନେ ଜୋରସୋର ଉଦ୍ୟମ କରିବାକୁ ଲାଗି ପଡ଼ିଲେ । ଏଭଳି ଏକ ସେଣ୍ଟରରେ କ୍ରିଷ୍ଣମୂର୍ତ୍ତିଙ୍କର ସମସ୍ତ ପୁସ୍ତକ ଏବଂ ତାଙ୍କର ଭାଷଣର

ସଂଗୃହୀତ ଟେପ୍‌ଗୁଡ଼ିକ ରଖାଯିବାର ବ୍ୟବସ୍ଥା କରାଗଲା । ଗୃହୁଁ ଗୃହୁଁ ଏହି 'ଶିକ୍ଷା ସେଣ୍ଟର' ଗଠନ ଲାଗି ବିଭିନ୍ନ ସ୍ଥାନରୁ ଦାନ ସୂତ୍ରରେ ବିପୁଳ ପରିମାଣରେ ଅର୍ଥ ଆସି ପାଣ୍ଠିରେ ଜମା ହେବାରେ ଲାଗିଲା । ଅପ୍ରତ୍ୟାଶିତ ଭାବରେ ବଡ଼ ବଡ଼ ଆର୍କିଟେକ୍ଟ୍, ଇଞ୍ଜିନିଅର ଓ ଶିଳ୍ପପତିମାନେ ଏହି କାର୍ଯ୍ୟରେ ସହାୟତା କରିବାକୁ ସ୍ୱତଃ ଆଗେଇ ଆସିଲେ ଏବଂ ଅଚିରେ ବ୍ରକ୍‌ଉଡ୍ ଓ ଓହାଇଠାରେ 'ସେଣ୍ଟର'ର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଗଲା । ଏଭଳି ଏକ ସେଣ୍ଟର ଗଠନର ଲକ୍ଷ୍ୟ ଓ ଆଭିମୁଖ୍ୟ ନେଇ ୧୯୮୩ ମସିହାରେ ବ୍ରକ୍‌ଉଡ୍‌ଠାରେ କୃଷ୍ଣମୂର୍ତ୍ତିଙ୍କ ସହିତ ଯେଉଁ ଆଲୋଚନା ହୋଇଥିଲା ସେଥିରେ ସେ କହିଥିଲେ—

'କୃଷ୍ଣମୂର୍ତ୍ତି' ପ୍ରକୃତରେ କ'ଣ କହୁଛନ୍ତି, ଏକଥା ଜାଣିବାର ଆଗ୍ରହ ନେଇ ଯଦି ସେହି ସେଣ୍ଟର ବା ଶିକ୍ଷାପୀଠକୁ ଯିବି ତେବେ ସେଠାରେ ଖାଲି ବହି କେତୋଟି ପଢ଼ି ଦେଇ ମୁଁ ଘରକୁ ଲେଉଟି ଆସିବି ନାହିଁ । ବରଂ ସେଠି ଯାହା ସବୁ ମୁଁ ପଢ଼ିବି, ତା'କୁ ମନ ଭିତରେ ତନ୍ନ ତନ୍ନ କରି ପରୀକ୍ଷା କରି ଦେଖିବି, ତା'ର ଉପରେ ନିଜକୁ ନିଜେ ପ୍ରଶ୍ନ କରିବି, ପୁଣି ତା'ର ସତ୍ୟାସତ୍ୟ ନେଇ ସନ୍ଦେହ ବି କରିବି । କୃଷ୍ଣମୂର୍ତ୍ତିଙ୍କର ବକ୍ତବ୍ୟକୁ କେବଳ ସ୍ମୃତିରେ ସାଇତି ରଖିବା ଲାଗି ମୁଁ ସେ ବହିଗୁଡ଼ିକୁ ପଢ଼ି ବସିବି ନାହିଁ; ବରଂ ସେଥିରୁ କିଛି ଶିଖିବା ପାଇଁ ଚେଷ୍ଟା କରିବି । ଖୋଳତାଡ଼ କରି ଦେଖିବି ତାଙ୍କର ଲେଖା ପ୍ରତି ମୋ ମନରେ କିଭଳି ପ୍ରତିକ୍ରିୟା ଉଠୁଛି, ମୋର ମନ ତାଙ୍କ ସହିତ ସହମତ ହେଉଛି, ନା ତାଙ୍କୁ ବିରୋଧ କରୁଛି — ମାନେ, ତାଙ୍କ କଥାଟା ଠିକ୍, ନା ମୁଁ ଯାହା ଭାବୁଛି ତାହା ଠିକ୍ ସେକଥା ବୁଝିବାକୁ ଚେଷ୍ଟା କରିବି । କାରଣ ଏପରି କରିବା ଦ୍ୱାରା ମୁଁ ଯାହାସବୁ ପଢ଼ୁଥିବି ଏବଂ ନିଜେ ଯାହା ଅନୁଭବ କରୁଥିବି, ସେ ଦୁଇଟି ଭିତରେ ଅନବରତ ଭାବରେ ଏକ ଭାବ ବିନିମୟ ଚାଲିଥିବ, ଆଦାନ ପ୍ରଦାନ ଚାଲିଥିବ । ଖାଲି ସେତିକି ନୁହେଁ, ମୁଁ ଚେଷ୍ଟା କରିବି ଯେ

ମୁଁ ଯାହା ସବୁ ପଢ଼ୁଛି, ଦେଖୁଛି, କି ଶୁଣୁଛି ସେଗୁଡ଼ିକ ସହିତ ମୋର, ଅର୍ଥାତ ମୋର ପ୍ରତିକ୍ରିୟା, ସ୍ମୃତିବଦ୍ଧତା ପ୍ରଭୃତିର ଯେପରି ଏକ ନିରବଚ୍ଛିନ୍ନ ସମ୍ପର୍କ ରହିଥିବ । ପରସ୍ପର ଭିତରେ ସଦା ସର୍ବଦା କଥାବାର୍ତ୍ତା ଚାଲିଥିବ । ଆଉ ଏକଥା ନିଶ୍ଚିତ ଯେ ଏଇଭଳି ଏକ କଥୋପକଥନ ହିଁ ମନୁଷ୍ୟଠାରେ ମୌଳିକ ପରିବର୍ତ୍ତନ ଆଣିବାରେ ସମର୍ଥ ହେବ ।"

କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷାର ଏକ ବିଶେଷତ୍ୱ ଯାହା କି ପ୍ରାୟ କୌଣସି ଦାର୍ଶନିକଙ୍କ ଠାରେ ଦେଖାଯାଏ ନାହିଁ, ସେଇଟି ହେଲା — ସେ କୌଣସି ପ୍ରତିନିଧି ବା ବ୍ୟାଖ୍ୟାକାରୀଙ୍କୁ କେବେ ପ୍ରଶ୍ରୟ ଦେଉ ନ ଥିଲେ । ସେ ମନେ କରୁଥିଲେ ଯେ ଏହି ତଥାକଥିତ ବ୍ୟାଖ୍ୟାକାରୀ ବା ପ୍ରଚାରକମାନେ ଶିକ୍ଷାର ମୌଳିକତାକୁ ନଷ୍ଟ କରିଦେବା ସଙ୍ଗେ ସଙ୍ଗେ ଶିକ୍ଷାକୁ ପ୍ରବଞ୍ଚନା ଏବଂ ଶୋଷଣର ଏକ ଅମୋଘ ଅସ୍ତ୍ର ରୂପେ ବ୍ୟବହାର କରିଥାନ୍ତି । ଏହି ମର୍ମରେ ଏକ ବକ୍ତବ୍ୟରେ ଏକଦା ସେ କହିଥିଲେ ଯେ "ପ୍ରତ୍ୟେକ ମଣିଷ ନିଜର କ୍ରିୟା କଳାପକୁ ନିଜେ ଲକ୍ଷ୍ୟ କରିବା ଉଚିତ । ଏଥିପାଇଁ ସେ କୌଣସି ମତବାଦ ବା କର୍ତ୍ତୃତ୍ୱ ଉପରେ ନିର୍ଭର କରିବା ଉଚିତ ନୁହେଁ । ଆଉ ଖାସ୍ ସେଇଥିପାଇଁ ଏ ଶିକ୍ଷାରେ ବ୍ୟାଖ୍ୟାକାରୀର କୌଣସି ଆବଶ୍ୟକତା ନାହିଁ । ମାତ୍ର ବଡ଼ ଦୁଃଖର କଥା ଯେ ଏବେ ବ୍ୟାଖ୍ୟାକାରୀମାନେ ଆପଣାଛାଏଁ ମୁଣ୍ଡ ଟେକିବାରେ ଲାଗିଛନ୍ତି । ଗଲା କେତେ ବର୍ଷ ଭିତରେ କେତେକ ବ୍ୟକ୍ତି ନିଜକୁ ମୋର ଉତ୍ତରାଧିକାରୀ ବୋଲି ଦାବୀ କରି କହି ବୁଲୁଛନ୍ତି ଯେ ମୁଁ ତାଙ୍କୁ ମୋ ଶିକ୍ଷାର ପ୍ରସାର ନିମନ୍ତେ ମନୋନୀତ କରିଛି । କିନ୍ତୁ ତମମାନଙ୍କ ଜାଣିବା ସକାଶେ ଏକଥା ମୁଁ ଏଠାରେ ପୁଣି ଥରେ କହି ରଖୁଛି ଯେ — କ୍ରିଷ୍ଣମୂର୍ତ୍ତିଙ୍କର ଜୀବନକାଳରେ ହେଉ ବା ମୃତ୍ୟୁ ପରେ ହେଉ, ତାଙ୍କର କେହି ପ୍ରତିନିଧି ନାହାନ୍ତି କି ରହିବେ ନାହିଁ — କୌଣସି ବ୍ୟକ୍ତିଗତ ପ୍ରତିନିଧି ନୁହେଁ କି ଶିକ୍ଷାର ପ୍ରତିନିଧି ମଧ୍ୟ ନୁହେଁ ।"

ଉପରୋକ୍ତ ଦୃଷ୍ଟିକୋଣରୁ ଚିନ୍ତା କଲେ ଦେଖାଯିବ ଯେ କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷାର ମହତ୍ତ୍ୱକୁ ଅକ୍ଷୁର୍ଣ୍ଣ ଓ ମୌଳିକ ରଖିବା ଦିଗରେ

ଶିକ୍ଷା 'ସେଣ୍ଟର' ଗୁଡ଼ିକ ବାସ୍ତବରେ ଅତିମାତ୍ରାରେ ଗୁରୁତ୍ୱପୂର୍ଣ୍ଣ । ପରେ ପରେ ବ୍ରକ୍‌ଉଡ୍ ଓ ଓହାଇର ସେଣ୍ଟର ତାଞ୍ଚାରେ ଭାରତରେ ମଧ୍ୟ ରାଜଘାଟ ଓ ଋଷିଭ୍ୟାଲିଠାରେ ସେଣ୍ଟର ଖୋଲାଯାଇ କୃଷ୍ଣମୂର୍ତ୍ତିଙ୍କର ସମସ୍ତ ପୁସ୍ତକ ଓ ଭାଷଣର ଟେପ୍ ସଂଗୃହୀତ ହୋଇ ଆଗ୍ରହୀ ବ୍ୟକ୍ତିମାନଙ୍କ ପାଇଁ ରଖାଯିବାର ବ୍ୟବସ୍ଥା କରାଯାଇଛି ।

୧୯୮୪ ମସିହା ଅକ୍ଟୋବର ମାସରେ ବ୍ରକ୍‌ଉଡ୍‌ରୁ ଫେରି ଦିଲ୍ଲୀରେ ପହଞ୍ଚିବାବେଳକୁ କୃଷ୍ଣମୂର୍ତ୍ତି ଭୀଷଣ ଦୁର୍ବଳ ଓ କ୍ଷୀଣ ହୋଇ ପଡ଼ିଥିଲେ । ହାର୍ଣ୍ଣିଆ ଅପରେସନ୍ ପରଠାରୁ ଦୁଇବର୍ଷ ଧରି ତାଙ୍କର ରକ୍ତରେ ଶର୍କରା ପରିମାଣ ଅତି ବେଶି ରହୁଥିଲା । ପୁଣି ଆଖିରେ ତାଙ୍କର ପରଲ ମାଡ଼ି ଯିବାର ଆଶଙ୍କା ଦେଖା ଦେଇଛି ବୋଲି ଡାକ୍ତରୀ ପରୀକ୍ଷାରୁ ମଧ୍ୟ ଜଣା ପଡ଼ିଥିଲା । ତାହାଛଡ଼ା ସ୍ନାୟୁବିକ ଦୁର୍ବଳତା ହେତୁ କୌଣସି ବସ୍ତୁକୁ ମୁଠାଇ ଧରିଲେ ତାଙ୍କର ହାତ ଖୁବ୍ ଜୋରରେ ଥରୁ ଥିବାରୁ ସେ ପ୍ରାୟ କିଛି ଲେଖାଲେଖି କରି ପାରୁ ନ ଥିଲେ । କିନ୍ତୁ ଏହା ସତ୍ତ୍ୱେ ତାଙ୍କର ମାନସିକ ସ୍ଥିତିରେ କୌଣସି ପରିବର୍ତ୍ତନ ଦେଖା ଦେଇ ନ ଥିଲା । ଚାଲିରେ ତାଙ୍କର ଆଗ ଭଳି କ୍ଷିପ୍ରତା ଓ ମୁଖମଣ୍ଡଳରେ ଏକ ପ୍ରଫୁଲ୍ଲ ସତେଜତା ଭରି ରହିଥିଲା । ଶାରୀରିକ ଦୁର୍ବଳତା ସତ୍ତ୍ୱେ ସେ ନିଜ କାମ ନିଜ ହାତରେ କରିବାକୁ ଚେଷ୍ଟା କରୁଥିଲେ । ଏପରିକି ଖାଇ ସାରିବା ପରେ ନିଜର ଅଇଁଠା ବାସନ, ଗିଲାସ ପ୍ରଭୃତିକୁ ଅନ୍ୟ କାହାରିକୁ ନ ଦେଇ ସେ ନିଜେ ହାତରେ ଧୋଇ ସଫା କରୁଥିଲେ । ଚା' ସହିତ ସମୟ ମିଳିଲେ ରନ୍ଧା ଘର, ରନ୍ଧା ବାସନ, ଚା କେଟିଲ୍ ପ୍ରଭୃତି ଧୋଇ ପୋଛି ସଜାଡ଼ି ରଖିବାରେ ଅନ୍ୟମାନଙ୍କୁ ସାହାଯ୍ୟ କରି ସେ ବିଶେଷ ଆନନ୍ଦ ଲାଭ କରୁଥିଲେ । ଉତ୍ତମ ସ୍ୱାସ୍ଥ୍ୟ ଓ ଶରୀରର ତତ୍ତ୍ୱାବଧାନ ଲାଗି ନିୟମିତ ବ୍ୟାୟାମ କରିବାକୁ ସେ କେବେ ଭୁଲୁ ନ ଥିଲେ । ପ୍ରତିଦିନ ଅନେକ ବାଟ ପର୍ଯ୍ୟନ୍ତ ଏକାକୀ ଚାଲି ଚାଲି ଯିବାର ଅଭ୍ୟାସଟା ସେମିତି ଶେଷ ପର୍ଯ୍ୟନ୍ତ ସେ ରଖିଥିଲେ; ମସ୍ତିଷ୍କ ତାଙ୍କର ସମ୍ପୂର୍ଣ୍ଣ ପ୍ରଖର ଓ ସଜାଗ ରହିଥିଲା । ହାତ ଥରିବା ଯୋଗୁ ଯେହେତୁ ସେ କଲମ ଧରି ପାରୁ ନ ଥିଲେ ତେଣୁ ଅନେକ ସମୟରେ

ନିଜର ବକ୍ତବ୍ୟଗୁଡ଼ିକୁ ମୌଖିକ ଭାବରେ ଡାକିବାକୁ ଆରମ୍ଭ କରିଥିଲେ । ପ୍ରଥମ କିଛି ଦିନ ମେରୀ କମ୍ବାଲିଷ୍ଟ ସର୍ଟହାଣ୍ଡରେ ସେଗୁଡ଼ିକ ସଂଗ୍ରହ କରି ଟିପି ରଖୁଥିଲେ; ମାତ୍ର ପରବର୍ତ୍ତୀ କାଳରେ କୃଷ୍ଣମୂର୍ତ୍ତି ଟେପ୍ ରେକର୍ଡ଼ର୍ ସାମନାରେ ବସି ନିଜର ବକ୍ତବ୍ୟକୁ ନିଜେ କ୍ୟାସେଟ୍‌ରେ ସଂଗ୍ରହ କରିବାରେ ଲାଗିଲେ ।

ଏଣିକି କୃଷ୍ଣମୂର୍ତ୍ତି ଭାରତରେ ରହୁଥିବା ସମୟତକ ଡକ୍ଟର ପାର୍ଚୁରେ ବୋଲି ଜଣେ ଭାରତୀୟ ଚିକିତ୍ସକ ତାଙ୍କ ପାଖେ ପାଖେ ରହି ଆସୁଥିଲେ । କୃଷ୍ଣମୂର୍ତ୍ତି ଡାକ୍ତରୀ ଔଷଧ ବ୍ୟବହାର କରିବାକୁ ଆଦୌ ଭଲ ପାଉ ନ ଥିଲେ । କବିରାଜୀ ଔଷଧକୁ ଯଦିଓ ସେ ଡାକ୍ତରୀ ଅପେକ୍ଷା ଅଧିକ ପସନ୍ଦ କରୁଥିଲେ ତଥାପି ତାକୁ ମଧ୍ୟ ସେ ଅତି ଦରକାର ନ ପଡ଼ିଲେ ଖାଉ ନ ଥିଲେ । ଦୃଷ୍ଟିଶକ୍ତି ଭଲ ରଖିବା ଲାଗି ସେ ଦୈନିକ ଚକ୍ଷୁ-ସଞ୍ଚାଳନ ବ୍ୟାୟାମ କରୁଥିଲେ ଓ ଅନେକ ସମୟରେ ବନ୍ଧୁମାନଙ୍କୁ ମଧ୍ୟ ସେଭଳି କରିବାକୁ ଶିଖାଇ ଦେଉଥିଲେ । ନିଜର ମୃତ୍ୟୁ ନେଇ ସେ ଦିନେ ସୁଦ୍ଧା ଚିନ୍ତିତ ବା ବିଚଳିତ ନ ଥିଲେ । ପ୍ରକୃତରେ ମୃତ୍ୟୁଟା ତାଙ୍କ ଲାଗି ପୁରାପୂରି ଏକ ଭିନ୍ନ, ନୂତନ ଅର୍ଥ ସୃଷ୍ଟି କରୁଥିଲା । ୧୯୮୨ ମସିହାରେ ଲଣ୍ଡନଠାରେ ଦେଇଥିବା ଗୋଟିଏ ଭାଷଣରେ ସେ କହିଥିଲେ — "ମୃତ୍ୟୁର ପ୍ରକୃତ ଅର୍ଥ ଜାଣିବା ଲାଗି ଯେଉଁମାନେ ବାସ୍ତବରେ ଆଗ୍ରହୀ ସେମାନଙ୍କୁ ଅନୁସନ୍ଧାନ କରି ଦେଖିବାକୁ ହେବ ଯେ ଏଇ ମୃତ୍ୟୁଟା କି ଜିନିଷ । କେବଳ ମୃତ୍ୟୁର ଭୟକୁ ନୁହେଁ, ଖୋଦ ମୃତ୍ୟୁକୁ ବା 'ଅନ୍ତ ଲଭିବା'କୁ ଅନୁସନ୍ଧାନ କରିବାକୁ ହେବ । ତେବେ ଏଇ 'ଅନ୍ତ ଲଭିବା'ଟା କି ଜିନିଷ ? ମଣିଷର ଏହା ପ୍ରତି ଏତେ ଭୟ କାହିଁକି ? ମୋର ଭାଇଟି ଯଦି ମରିଯିବ, ମୁଁ ତାକୁ ହରାଇ ବସିବି, ବା ମୋର ସ୍ତ୍ରୀ, ମୋର ଭଉଣୀ, ମୋର ପ୍ରେମିକାଟି ଯଦି ମରିଯିବ ଯାହା ସହିତ ମୁଁ ବନ୍ଧା, ଯାହାର ଆତ୍ମୀୟତା ମତେ ଭଲ ଲାଗେ, ତାକୁ ମୁଁ ହରାଇ ବସିବି — ଏଇସବୁ ପ୍ରତି ମୋ ମନରେ ଭୟ ଆସେ । ନିଜେ ଏକାନ୍ତ ଭାବେ ନିଃସଙ୍ଗ ହୋଇଯିବାକୁ ଭୟ ଲାଗେ । ସାଥୀଟିଏ ବିନା ବୁଢ଼ା କାଳରେ ପାଦ ଦେବାକୁ ଛାତି ଦୁଡ଼ୁଦୁଡ଼ୁ କରେ ।

ଏ ମୃତ୍ୟୁଟା ତେବେ କି ଜିନଷ କହ ? ମୃତ୍ୟୁ, ଯାହାର କି ଅର୍ଥ ହେଉଛି ସବୁକିଛି ଶେଷ ହୋଇଯିବା — ତମର ଆଧିପତ୍ୟ, ସ୍ମୃତି, ମମତା, ସୁଖକର ବା ଦୁଃଖକର ଅଭ୍ୟାସ, ସେ ସବୁ ଶେଷ ହୋଇଯିବା — ସେହି ମୃତ୍ୟୁ ନାମକ ଜିନଷଟି କ'ଣ ?"

ଅନେକ ବର୍ଷ ତଳେ ଥରେ କୃଷ୍ଣମୂର୍ତ୍ତିଙ୍କ ନିକଟକୁ ଜଣେ ଭଦ୍ର-ବ୍ୟକ୍ତି ଆସିଥିଲେ । ସେ ବେଶ୍ ପଢ଼ାଶୁଣା କରିଥିଲେ ଓ ମୃତ୍ୟୁପର ଅବସ୍ଥା ସମ୍ପର୍କରେ ତାଙ୍କର କିଛି କିଛି ଜ୍ଞାନ ମଧ୍ୟ ଥିଲା । କିନ୍ତୁ ସେ କାହିଁକି ଅନୁଭବ କରୁଥିଲେ ଯେ ମୃତ୍ୟୁ ନେଇ ତାଙ୍କ ମନରେ ସଦାବେଳେ ଏକ ଭୟ ରହିଛି । ସେ ଭୟଟା କ୍ରମଶଃ ତାଙ୍କୁ ଏତେ ମାତ୍ରାରେ ଗ୍ରାସି ପକାଇଥିଲା ଯେ ବେଳେବେଳେ ରାତିରେ ସେ ଭୟାନକ ସ୍ୱପ୍ନ ଦେଖି ଚମକି ଉଠୁଥିଲେ । ତାଙ୍କର ଡର ହେଉଥିଲା ଯେ ଏମିତି ବେଶି ଦିନ ଚାଲିଲେ ହୁଏତ ଏଇଟା ତାଙ୍କର ଏକ ମାନସିକ ବିକୃତିରେ ପରିଣତ ହୋଇ ପାରେ । ଏଇ ଭୟରୁ ରକ୍ଷା ପାଇବା ପାଇଁ ସେ ବହୁତ ପ୍ରକାର ମନସ୍ତତ୍ତ୍ୱ ବହି ପଢ଼ିଥିଲେ, ଧର୍ମ, ପୁନର୍ଜନ୍ମ ନେଇ ଅନେକ ପଢ଼ିଥିଲେ । କିନ୍ତୁ କୌଣସି ପ୍ରକାରେ ହେଲେ ତାଙ୍କୁ ଏ ଭୟରୁ ମୁକ୍ତି ମିଳୁ ନ ଥିଲା ।

କୃଷ୍ଣମୂର୍ତ୍ତିଙ୍କ ସଙ୍ଗେ ଖୋଲାଖୋଲି ଆଲୋଚନା କରି ଭଦ୍ରଲୋକ ନିଜର ସମସ୍ୟା ଜଣାଇଲେ । ଉତ୍ତରରେ କୃଷ୍ଣମୂର୍ତ୍ତି ତାଙ୍କୁ ଯାହା କହିଲେ ତା'ର ଗୋଟିଏ ଅଂଶ ଥିଲା — "ଦେଖ, ଏ ମୃତ୍ୟୁଟା ଏଭଳି ଏକ ବାସ୍ତବତା ଯାହାକୁ କି ତମେ କେବେ ଏଡ଼ାଇ ଯାଇ ପାରିବ ନାହିଁ । ଏହା ନିଶ୍ଚିତ ସତ୍ୟ, ଏହା ଆସିବ ହିଁ ଆସିବ । × × × × ତମେ ଯେହେତୁ ମୃତ୍ୟୁକୁ ଅନୁଭବ କରି ପାରୁନାହଁ ତେଣୁ ତା' ପ୍ରତି ତମ ମନରେ ଭୟ ରହିଛି ।" × × ×

୧୯୮୫ ମସିହା ଫେବୃଆରୀ ମାସରେ ଭାରତରୁ ଫେରି କୃଷ୍ଣମୂର୍ତ୍ତି କିଛି ଦିନ ଓହାଇରେ କଟାଇଲେ । ସେଠା ରହଣି ଭିତରେ ସେ ଓକ୍ ଗ୍ରୋଭ୍ ସ୍କୁଲର ଶିକ୍ଷାଦାତା, ଛାତ୍ରଛାତ୍ରୀ ତଥା ସେମାନଙ୍କ ଅଭିଭାବକ

ମାନଙ୍କ ସହିତ ପ୍ରାପ୍ତ ପ୍ରତିବେଦନ କିମ୍ବା ନା କିଛି ସମସ୍ୟା ଉପରେ ଆଲୋଚନା କରି ଆସୁଥିଲେ । ଏହାଛଡ଼ା ବାହାରୁ ମଧ୍ୟ ଅନେକ ବ୍ୟକ୍ତି କୃଷ୍ଣମୂର୍ତ୍ତିଙ୍କୁ ସାକ୍ଷାତ କରିବା ପାଇଁ, ତାଙ୍କ ସହ ବିଭିନ୍ନ ମନସ୍ତାତ୍ତ୍ୱିକ ସମସ୍ୟାନେଇ ଆଲୋଚନା କରିବା ପାଇଁ ସମୟ ଅସମୟରେ ସେଠାରେ ଆସି ପହଞ୍ଚୁଥିଲେ । କୃଷ୍ଣମୂର୍ତ୍ତିଙ୍କ ଚରିତ୍ରର ଏକ ବୈଶିଷ୍ଟ୍ୟ ହେଉଛି ଯେ ସେ ଯେତେ କ୍ଳାନ୍ତ, ଯେତେ କାର୍ଯ୍ୟବ୍ୟସ୍ତ ଥିଲେ ସୁଦ୍ଧା ତାଙ୍କୁ ସାକ୍ଷାତ କରିବାକୁ ଆସିଥିବା କୌଣସି ବ୍ୟକ୍ତିକୁ ସେ କେବେ ଫେରାଇ ଦେଉ ନ ଥିଲେ । ଏପରିକି ତାଙ୍କର ଦାୟିତ୍ୱରେ ଥିବା ବନ୍ଧୁମାନେ ବେଳେ ବେଳେ କୃଷ୍ଣମୂର୍ତ୍ତିଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଲୋକମାନଙ୍କୁ ସାକ୍ଷାତ ପାଇଁ ଅନୁମତି ନ ଦେଇ ଲେଉଟାଇ ଦେଉଥିବାବେଳେ ସେ ନିଜେ ଘର ଭିତରୁ ବାହାରି ଆସି ସେମାନଙ୍କୁ ଡାକି ତାଙ୍କ ସହିତ କଥାବାର୍ତ୍ତା କରୁଥିଲେ । ଯଥା ସମ୍ଭବ ନିଜର ସମୟ ଦେଇ, ଗଭୀର ସହାନୁଭୂତିର ସହ ସେମାନଙ୍କ ସଙ୍ଗେ ବସି ତାଙ୍କର ସମସ୍ୟାକୁ ମନପ୍ରାଣ ଦେଇ ବୁଝିବାକୁ ଚେଷ୍ଟା କରୁଥିଲେ ।

କୃଷ୍ଣମୂର୍ତ୍ତିଙ୍କ ସହିତ ଦେଖା କରିବାକୁ ସାଧାରଣତଃ ଅନେକ ରକମର ଲୋକ ଆସିଥାନ୍ତି । ସେମାନଙ୍କ ଭିତରୁ କେହି କେହି ନିଜକୁ ଅତି ବଡ଼ ଜ୍ଞାନୀ ବା ପଣ୍ଡିତ ବା ଦାର୍ଶନିକ ମନେ କରି ତାଙ୍କ ସହ ତର୍କ ଆଲୋଚନା କରିବାକୁ ଆସନ୍ତି ତ, ଆଉ କେହି ଅକସ୍ମାତ ଦୁଃଖରେ ପଡ଼ି ଧୈର୍ଯ୍ୟହରା ହୋଇ ତାଙ୍କ ନିକଟକୁ ଧାଇଁ ଆସନ୍ତି । ପ୍ରତ୍ୟେକଙ୍କର ସମସ୍ୟା ଭିନ୍ନ, ଦୁଃଖ ଦୁର୍ଦ୍ଦଶାର କାହାଣୀ ବି ଭିନ୍ନ ଭିନ୍ନ । କିନ୍ତୁ କୃଷ୍ଣମୂର୍ତ୍ତି ଯେ ସମସ୍ତଙ୍କୁ କେବଳ ଦାର୍ଶନିକ ଢାଞ୍ଚାରେ ଚିନ୍ତା କରିବାକୁ ଉତ୍ସାହିତ କରନ୍ତି ତା' ନୁହେଁ, ଅନେକ ସମୟରେ ସେ ଏତେ ବାସ୍ତବଧର୍ମୀ ଓ ସାଧାରିକ ସ୍ତରରେ କଥାବାର୍ତ୍ତା କରନ୍ତି ଯେ ଶୁଣିବା ଲୋକଜଣକ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଏ । ଶ୍ରୀଲଙ୍କାରେ ଥିବାବେଳେ ଥରେ ଜଣେ ଇଂରେଜ ଭଦ୍ରବ୍ୟକ୍ତି ତାଙ୍କୁ ଦେଖା କରିବାକୁ ଆସିଥିଲେ । ଅତୀତରେ ବହୁ ବର୍ଷ ଧରି ସେ ଲଣ୍ଡନର ଏକ ଚର୍ଚ୍ଚରେ ପାଦ୍ରୀକାମ କରିଥିଲେ । ମାତ୍ର ଆପଣାର ଜ୍ଞାନପିପାସା ତାଙ୍କୁ ସେଠାରେ ବେଶି କାଳ

ବାନ୍ଧି ରଖି ପାରିଲା ନାହିଁ । ଜୀବନର ପ୍ରକୃତ ଅର୍ଥ ଖୋଜି ଖୋଜି ଶେଷରେ ସେ ଇଉରୋପ ଛାଡ଼ି ଶ୍ରୀଲଙ୍କାରେ ପହଞ୍ଚିଲେ ଏବଂ ସେଠାରେ ବୌଦ୍ଧ ଧର୍ମ ଗ୍ରହଣ କରି ବୌଦ୍ଧ ଭିକ୍ଷୁ ବନିଗଲେ । ହେଲେ କ'ଣ ହେବ, ସେଥିରେ ମଧ୍ୟ ଖୁବ୍ ଶୀଘ୍ର ଅତିଷ୍ଠ ହୋଇ ପଡ଼ିଲେ ଓ ନିଜର ଭ୍ରମ ବୁଝି ପାରିଲେ । ତା'ପରେ ମାନସିକ ଅନିଶ୍ଚିତତା ଓ ଅସହାୟତା ଭିତରେ ଦିନ କାଟୁ କାଟୁ ଦିନେ ସେ କୃଷ୍ଣମୂର୍ତ୍ତିଙ୍କର ଗୋଟିଏ ଭାଷଣ ଶୁଣିବାର ସୁଯୋଗ ପାଇଲେ । ଭାଷଣର ଅଭିନବ ବିଷୟବସ୍ତୁ ଓ ଜୀବନ ଧର୍ମ ତାଙ୍କ ମନର ଗଭୀରକୁ ସ୍ପର୍ଶ କଲା ଏବଂ ସେ କ୍ରମଶଃ ସେହି ଦିଗରେ ଆକୃଷ୍ଟ ହେବାକୁ ଲାଗିଲେ । ଧୀରେ ଧୀରେ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ଓ ଦର୍ଶନ ଉକ୍ତ ଭିକ୍ଷୁଙ୍କ ଅନ୍ତରରେ ଏକ ଆଲୋଡ଼ନ ଆଣିଲା । ଏତେ କାଳ ଯାଏ ସେ ଯେଉଁ କଠୋର ସଂଯମ ଆଚରଣ କରି ସନ୍ନ୍ୟାସ ବ୍ରତ ପାଳନ କରୁଥିଲେ ଓ ଭିତରେ ଭିତରେ ସାଂସାରିକ ଜୀବନ ଯାପନ ପାଇଁ ଦହଗଞ୍ଜ ହେଉଥିଲେ — ଏବେ ସେସବୁକୁ ଛାଡ଼ି ସେ ସାଧାରଣ ମଣିଷଟିଏ ଭଳି ଜୀବନ କାଟିବାକୁ ଆରମ୍ଭ କଲେ, ଜଣେ ଭାରତୀୟ ମହିଳାଙ୍କୁ ବିବାହ ମଧ୍ୟ କଲେ । ହେଲେ ତା'ପରେ ତାଙ୍କ ଆଗରେ ଆଉ ଗୋଟିଏ ବଡ଼ ସମସ୍ୟା ଛିଡ଼ା ହେଲା । ଏବେ ସେ ନିଜର ତଥା ନିଜ ପରିବାରର ଭରଣ ପୋଷଣ କରିବେ କିପରି ? ପଇସା ରୋଜଗାର କରିବା ପାଇଁ ତାଙ୍କୁ ଯେ କୌଣସି ବୈଷୟିକ ଧନ୍ଦା ଜଣା ନାହିଁ !

କୃଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ କରି ସେହି ଭଦ୍ରବ୍ୟକ୍ତି ଜଣକ ନିଜର ସମସ୍ୟା ଖୋଲିଖୋଲି ଜଣାଇଲେ । ତାଙ୍କଠାରୁ ସବୁ ଶୁଣି ସାରି କୃଷ୍ଣମୂର୍ତ୍ତି ପଚାରିଲେ, — "ଆଚ୍ଛା, ଆପଣ ଯଦି ପାଦ୍ରୀ ଭାବରେ କାମ କରୁଥିଲେ ତେବେ ତ ଆପଣଙ୍କୁ ଲାଟିନ୍ ନିଶ୍ଚୟ ଜଣାଥିବ ?" ବ୍ୟକ୍ତିଜଣକ 'ହିଁ' ମାରି କହିଲେ ଯେ ଲାଟିନ୍ ଭାଷାରେ ସେ ବିଶେଷ ପାରଙ୍ଗମତା ମଧ୍ୟ ଲାଭ କରିଛନ୍ତି । ସେଇଠୁ କୃଷ୍ଣମୂର୍ତ୍ତି କହିଲେ ଯେ ଶ୍ରୀଲଙ୍କାରେ ଏପରି ଅନେକ ଧନୀ ପରିବାରର ପିଲାମାନେ ଅଛନ୍ତି ଯେଉଁମାନେ କି ଓକିଲାତି ପଢ଼ିବାକୁ ବଡ଼ ଉତ୍ସୁକ । ଆଉ ଓକିଲାତିରେ ଡିଗ୍ରୀ ଲାଭ କରିବା ପାଇଁ ଲାଟିନ୍ ଭାଷା ଜାଣିବା ନିହାତି ଦରକାର ।

ତେଣୁ ସେ ଯଦି ସେମାନଙ୍କୁ ଢଙ୍ଗରେ ଭାବରେ ଲାଟିନ୍ ଶିକ୍ଷା ଦେଇ ପାରିବେ ତେବେ ସେଇଥିରେ ତାଙ୍କର ଗୁଜୁରାଣ ମଧ୍ୟ ମେଣ୍ଟାଇ ପାରିବେ ।

କ୍ରିଷ୍ଣମୂର୍ତ୍ତିଙ୍କର ଏଭଳି ବାସ୍ତବଧର୍ମୀ ସମାଧାନରେ ବ୍ୟକ୍ତି ଜଣକ ସ୍ତବ୍ଧ ହୋଇଗଲେ । କାରଣ ସେ ଭଲ ଭାବରେ ଜାଣିଥିଲେ ଯେ ଧନ୍ଦା ହିସାବରେ ଓକିଲାତିକୁ କ୍ରିଷ୍ଣମୂର୍ତ୍ତି ଆଦୌ ସମର୍ଥନ କରନ୍ତି ନାହିଁ । ଅଥଚ ଏବେ ସେଇ ଓକିଲାତି ପଢ଼ୁଥିବା ଛାତ୍ରମାନଙ୍କୁ ସାହାଯ୍ୟ କରିବାର ପରାମର୍ଶ ସେ ଦେଉଛନ୍ତି ବା କିପରି ? କିନ୍ତୁ ପ୍ରକୃତପକ୍ଷେ କ୍ରିଷ୍ଣମୂର୍ତ୍ତି କେବେହେଲେ କୌଣସି ଧନ୍ଦା ଗ୍ରହଣ କରିବାକୁ ବା ନ କରିବାକୁ କାହାରିକୁ ପରାମର୍ଶ ଦେଉ ନ ଥିଲେ । ବରଂ ସେ କହୁଥିଲେ ଯେ ଜଣେ ଲୋକ ଯାହା କରିବାକୁ ଚାହୁଁଛି ତାକୁ ସେଥିରେ ସୁଯୋଗ ଦେବାରେ କ୍ଷତି କ'ଣ ? ସେ କ'ଣ ଚାହିଁବ ବା ନ ଚାହିଁବ ସେକଥା ନିର୍ଣ୍ଣୟ କରିବାକୁ ଅନ୍ୟ କାହାର ବା କ'ଣ ଅଧିକାର ଅଛି ?······ କିନ୍ତୁ ସେ ଯେଉଁ ସାର୍ଥକତାଟିକକ ଖୋଜି ହେଉଛି ସେଇଟା ଯେ ସେ ଖୋଜୁଥିବା ଜାଗାରେ ମିଳିବ ନାହିଁ ଏକଥା ତାକୁ ନିଜେ ଆବିଷ୍କାର କରିବାକୁ ଛାଡ଼ିଦିଅ । କ୍ରିଷ୍ଣମୂର୍ତ୍ତିଙ୍କର ପ୍ରସ୍ତାବ ବାସ୍ତବରେ ସେହି ବୌଦ୍ଧ ଭିକ୍ଷୁଙ୍କ ଜୀବନରେ ଏକ ଆମୂଳ ପରିବର୍ତ୍ତନ ଆଣି ଦେଇଥିଲା । ତା' ପରେ ସେ ଘର ଧନ୍ଦାରେ ମନ ଦେବାକୁ ଲାଗିଲେ ଏବଂ ସତକୁ ସତ କିଛି ଦିନ ଭିତରେ କେତେକ ଆଇନ ଛାତ୍ର ଯୋଗାଡ଼ କରି ସେମାନଙ୍କୁ ଲାଟିନ୍ ଭାଷା ପଢ଼ାଇବାକୁ ଆରମ୍ଭ କରିଦେଲେ ।

## ନବେ ବର୍ଷ ବୟସରେ —

୧୯୮୫ ମସିହାର ପ୍ରଥମ ଭାଗରେ କ୍ରିଷ୍ଣମୂର୍ତ୍ତି ଏକ ଭାଷଣ କାର୍ଯ୍ୟକ୍ରମରେ ନିଉୟର୍କ ଯାତ୍ରା କଲେ । ସେଠାରେ ଜାତିସଂଘର ଏକ ବିଶେଷ ଅଧିବେଶନରେ ଭାଷଣ ଦେବା ସଙ୍ଗେ ସଙ୍ଗେ ସେ ଆମେରିକାର ଓ୍ୱାସିଂଟନ୍ ପ୍ରଭୃତି କେତେକ ମୁଖ୍ୟ ସହରରେ ମଧ୍ୟ ଭାଷଣ ଦେଇଥିଲେ । ଆମେରିକା ଗସ୍ତ ଶେଷ କରି ଫେବୃଆରୀ ମାସରେ ସେ ଆସି ଓହାଇରେ ପହଞ୍ଚିଲେ । ସେତେବେଳକୁ ତାଙ୍କର ଶାରୀରିକ ଦୁର୍ବଳତା ଅତିମାତ୍ରାରେ ବଢ଼ି ଯାଇଥିଲା ଏବଂ ସେ ମଝିରେ ମଝିରେ ତଳ ପେଟରେ ଏକ ପ୍ରକାର ଯନ୍ତ୍ରଣା ଅନୁଭବ କରୁଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ସେ ନିଜର ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ କୌଣସି ପରିବର୍ତ୍ତନ ନ ଘଟାଇ ଓକ୍‌ଗ୍ରୋଭ୍ ସ୍କୁଲରେ ଆୟୋଜିତ ସମସ୍ତ ଭାଷଣ ସଭାରେ ଯୋଗ ଦେଇ ସାରିବା ପରେ ବ୍ରକ୍‌ଉଡ୍ ଯାତ୍ରା କଲେ । ସେତେବେଳକୁ ବ୍ରକ୍‌ଉଡ୍ 'ସେଣ୍ଟର' (ଅଧ୍ୟୟନ ପୀଠ) କୋଠାଘର ନିର୍ମାଣ ଲାଗି କିଥ୍ କ୍ରିଚ୍‌ଲେ ନାମକ ଜଣେ ପ୍ରଖ୍ୟାତ ଇଞ୍ଜିନିୟର କେତେଗୁଡ଼ିଏ ନକ୍‌ସା ପ୍ରସ୍ତୁତ କରି ରଖିଥିଲେ । କ୍ରିଷ୍ଣମୂର୍ତ୍ତି ବ୍ରକ୍‌ଉଡ୍‌ରେ ପହଞ୍ଚିବା ମାତ୍ରକେ ସେ ତାଙ୍କ ସହିତ ସାକ୍ଷାତ କରି ନକ୍‌ସା ଗୁଡ଼ିକ ଦେଖାଇ ସେ ବିଷୟରେ ତାଙ୍କ ସହିତ ବିଶଦ ଆଲୋଚନା କରିଥିଲେ । ଆଲୋଚନାରୁ କ୍ରିଚ୍‌ଲେ ଜାଣିଲେ ଯେ କ୍ରିଷ୍ଣମୂର୍ତ୍ତି ଉକ୍ତ ସେଣ୍ଟରରେ ଏଭଳି ଏକ ବିଶେଷ ପ୍ରକୋଷ୍ଠ ନିର୍ମାଣ କରିବାକୁ ଚାହୁଁଛନ୍ତି ଯେଉଁଠାକୁ କି ଜଣେ ବ୍ୟକ୍ତି କେବଳ 'ନୀରବ' ରହିବା ଉଦ୍ଦେଶ୍ୟରେ ଆସିବ । ସେହି ପ୍ରକୋଷ୍ଠଟି ଖାସ୍ ସେଇ ଉଦ୍ଦେଶ୍ୟରେ ତିଆରି ହେବ ଓ ସେହି କାର୍ଯ୍ୟରେ ହିଁ ବ୍ୟବହୃତ ହେବ । ତା ଛଡ଼ା ସମଗ୍ର ସେଣ୍ଟରର ନିର୍ମାଣ କାର୍ଯ୍ୟରେ ଯେଭଳି ସର୍ବୋତ୍କୃଷ୍ଟ ସାମଗ୍ରୀ ବ୍ୟବହୃତ ହୁଏ, ସେଥିପ୍ରତି ଧ୍ୟାନ ଦେବାକୁ କ୍ରିଷ୍ଣମୂର୍ତ୍ତି କ୍ରିଚ୍‌ଲେଙ୍କୁ ଅନୁରୋଧ କରିଥିଲେ ।

ବ୍ରକ୍‌ଉଡ଼୍‌ ପରେ ପରେ ସାନେନ୍‌ ଠାରେ ଅନୁଷ୍ଠିତ ହେବାକୁ ଥିବା ବାର୍ଷିକ ସମ୍ମିଳନୀରେ ଯୋଗଦେବା ପାଇଁ କ୍ରିଷ୍ଣମୂର୍ତ୍ତି ସେଠାକୁ ଯାତ୍ରା କଲେ । ୧୯୬୧ ମସିହାଠାରୁ ଆରମ୍ଭ କରି ପ୍ରତିବର୍ଷ ଏହି ସାନେନ୍‌ ଠାରେ ଏକ ଆନ୍ତର୍ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇ ଆସୁଥିଲା । କିନ୍ତୁ ସାନେନ୍‌ରେ ପହଞ୍ଚିବା ପରେ ସୁଦ୍ଧା କ୍ରିଷ୍ଣମୂର୍ତ୍ତିଙ୍କ ସ୍ୱାସ୍ଥ୍ୟରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସେହି ଅସୁସ୍ଥତା ଭିତରେ ସେ ନିର୍ଦ୍ଧାରିତ ପ୍ରତ୍ୟେକଟି କାର୍ଯ୍ୟକ୍ରମରେ ଯୋଗ ଦେଇ ଭାଷଣ ଦେଇଥିଲେ । ସେତେବେଳକୁ ତାଙ୍କ କଣ୍ଠର ଗାମ୍ଭୀର୍ଯ୍ୟ ପୂର୍ବଭଳି ଅତୁଟ ରହିଥିଲେ ସୁଦ୍ଧା ସ୍ୱର ଅତି କ୍ଷୀଣ ହୋଇ ଆସିଥିଲା । ଡାକ୍ତରଙ୍କ ପରାମର୍ଶ ଅନୁସାରେ ସେତେବେଳେ ତାଙ୍କ ଦେହରେ ପ୍ରତିଦିନ ଏକ ତୈଳ ମାଲିସ କରିବା ଆରମ୍ଭ ହୋଇଥିଲା ଏବଂ ସେ ଭିଟାମିନ୍‌ ଇଞ୍ଜେକ୍‌ସନ ମଧ୍ୟ ନେଉଥିଲେ । ସେହି ସମୟରେ ଦିନେ ସେ ମେରୀ ଜିମ୍ବାଲିଷ୍ଟଙ୍କୁ ଡାକି କହିଲେ, "ମନେହୁଏ ଏଥର ବୋଧେ ମୋର ବେଳ ଆସିଗଲା ।"

ପ୍ରକୃତରେ କ୍ରିଷ୍ଣମୂର୍ତ୍ତିଙ୍କ ଶେଷ ଜୀବନର ଅସୁସ୍ଥତା ସମୟରେ ମେରୀ ଜିମ୍ବାଲିଷ୍ଟ ହିଁ ତାଙ୍କ ପାଖେ ପାଖେ ରହି ତାଙ୍କର ଦେଖାଶୁଣା କରୁଥିଲେ । ଦିନେ କ୍ରିଷ୍ଣମୂର୍ତ୍ତି ତାଙ୍କୁ ହଠାତ୍‌ ଡାକି କହିଲେ, "ଜାଣିଛ 'ସେଇଟା' ମତେ ଲକ୍ଷ୍ୟ କରି ଚାଲିଛି ।" ମେରୀଙ୍କ ଭାଷାରେ, "କ୍ରିଷ୍ଣମୂର୍ତ୍ତିଙ୍କ କଥାରୁ ଜଣା ପଡ଼ୁଥିଲା ଯେ ତାଙ୍କର କଣ ହେବ ବା ନ ହେବ ଏ କଥା ଯେମିତି 'ସେହି' ଜିନିଷଟି ତାଙ୍କ ପାଇଁ ନିର୍ଣ୍ଣୟ କରୁଛି । ତାଙ୍କର କାର୍ଯ୍ୟ କେବେ ସମାପ୍ତ ହେବ, ଅର୍ଥାତ୍‌ ତାଙ୍କର ଜୀବନକାଳର ସମାପ୍ତି କେବେ ଘଟିବ ଏହାର ନିର୍ଣ୍ଣୟ 'ତାହାରି' ହାତରେ ରହିଛି ।" ଏହି ପ୍ରସଙ୍ଗରେ ସେଦିନ ମେରୀଙ୍କ ସହିତ ଯେଉଁ କଥୋପକଥନ ହୋଇଥିଲା ସେଥିରେ କ୍ରିଷ୍ଣମୂର୍ତ୍ତି କହିଥିଲେ—"ଦେଖ, ଏହାକୁ ତମେ ମୋର ମସ୍ତିଷ୍କର ଏକ ପ୍ରକ୍ରିୟା ବୋଲି ଧରି ନିଅ ନାହିଁ । କାରଣ ଏହା ପ୍ରକୃତରେ ତା'ଠାରୁ ଢେର ଭିନ୍ନ, ଢେର ଅଲଗା କଥା । ମୋ ଜୀବନଧାରା ତ ପୂର୍ବରୁ ନିର୍ଦ୍ଧାରିତ ହୋଇ ରହିଛି ।

ଏ ଜୀବନ କେବେ ଅନ୍ତ ଲଭିବ ସେକଥା 'ସେ' ମତେ ସୂଚାଇ ଦେବ । ମୋର ଜୀବନକୁ 'ସେ' ହିଁ ନିରୁପିତ କରିବ । କିନ୍ତୁ ଗୋଟିଏ କଥା -- 'ମୁଁ ଆଜି ମାତ୍ର ଦୁଇଗୋଟି ଭାଷଣ ଦେବି' ବା ମୋର ସେଭଳି କୌଣସି ଉକ୍ତି ଯେପରି 'ତା'ର' କାର୍ଯ୍ୟରେ ବାଧା ସୃଷ୍ଟି ନ କରେ ସେଥିପ୍ରତି ମୁଁ ସତର୍କ ରହିବା ଉଚିତ ।"

ଏକଥା ଶୁଣି ମେରୀ ପଚାରିଲେ—"ତେବେ ଆପଣଙ୍କର କ'ଣ ମନେ ହେଉଛି ? 'ସେ' ଆପଣଙ୍କୁ ଆଉ କେତେ ସମୟ ଦେବେ ?"

କୃଷ୍ଣମୂର୍ତ୍ତି--"ହୋଇପାରେ ଆହୁରି ଦଶବର୍ଷ ।"

ମେରୀ—"ତେବେ କ'ଣ ଆହୁରି ଦଶବର୍ଷ ଯାଏ ଆପଣ ଏମିତି ଭାଷଣ ଦେଉଥିବେ ?"

କୃଷ୍ଣମୂର୍ତ୍ତି—"ଯେତେବେଳେ ମୁଁ ଆଉ ଭାଷଣ ଦେଇ ପାରିବି ନାହିଁ, ସେତେବେଳେ ତାହା ଆପେ ଅନ୍ତ ଲଭିବ । କିନ୍ତୁ ମୁଁ ଏ ଶରୀରକୁ ଅତ୍ୟଧିକ ଖଟଣି ଦେବାକୁ ଚାହେଁ ନାହିଁ । ସେମିତି, ବେଶି ଗୁଡ଼ାଏ ଦିନ ବିଶ୍ରାମ ନେବାଟା ବି ଠିକ୍ ନୁହେଁ ।"

ସାନେନ ସମ୍ମିଳନୀ ଶେଷ ହେବା ପରଠାରୁ କୃଷ୍ଣମୂର୍ତ୍ତିଙ୍କ ଅବସ୍ଥାରେ ଦିନକୁ ଦିନ ଅବନତି ଘଟିବାରେ ଲାଗିଲା । ତାଙ୍କର ମନେ ହେଲା ସତେ ଯେମିତି ତାଙ୍କ ଭିତରେ କିଛି ଗୋଟାଏ ଘଟି ଚାଲିଛି । ଆଉ ତା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ସେ ଜାଣୁଥିଲେ ଯେ କୃଷ୍ଣମୂର୍ତ୍ତିର ଜୀବନ ବିଷୟରେ ଏ ଯେଉଁ ଶକ୍ତିଟି ନିର୍ଣ୍ଣୟ ନେଉଛି ତାହା ନିଶ୍ଚିତ ରୂପେ ଏକ ଅତୀବ ଅସାଧାରଣ ଶକ୍ତି । ଏପରି ଅବସ୍ଥାରେ ବ୍ରକ୍‌ଉଡ଼କୁ ଫେରିବା ପରେ ମଧ୍ୟ ସ୍ୱାସ୍ଥ୍ୟରେ ତାଙ୍କର ଉନ୍ନତିର କୌଣସି ଲକ୍ଷଣ ଦେଖାଗଲା ନାହିଁ । ସେ ଯେ ପ୍ରତିଦିନ ସନ୍ଧ୍ୟାରେ ଅନେକ ଦୂର ପର୍ଯ୍ୟନ୍ତ ଭ୍ରମଣରେ ଚାଲି ଚାଲି ଯାଉଥିଲେ ଏବେ ତାହା ଧୀରେ ଧୀରେ କମାଇ ଦେଲେ । ତାଙ୍କୁ ଦେଖି ମନେ ହେଲା ସତେ ଯେପରି ତାଙ୍କ ଶରୀର ଏ ଶ୍ରମ ସହ୍ୟ କରିବାକୁ ଆଦୌ ସକ୍ଷମ ନୁହେଁ । ଏମିତି କି ଦିନେ ସକାଳୁ ଉଠି ସେ ନିଜର ଦୈନିକ ବ୍ୟାୟାମ କରିବାକୁ ମଧ୍ୟ

କ୍ଳାନ୍ତ ବୋଧ କଲେ । ତାଙ୍କର ଦୀର୍ଘ ଏତେ ବର୍ଷର ଅଭ୍ୟାସରେ ଏଇ ଥିଲା ପ୍ରଥମ ବ୍ୟତିକ୍ରମ । ଦେହ, ହାତ ଓ ମୁହଁର ଚମ ବୟସର ପ୍ରଭାବରେ ଲୋଗ୍ଳ ପଡ଼ିଯାଇଥିଲା କିନ୍ତୁ ଆଖି ଦୁଇଟିରେ ସେଇ ପୂର୍ବଭଳି ଦୀପ୍ତି ଝଟକୁ ଥିଲା । କଥା ଲହରରେ ସେ ପିଲାଙ୍କ ପରି ଖିଲ୍ ଖିଲ୍ ହୋଇ ହସି ଉଠୁଥିଲେ ଓ ଲୋକମାନଙ୍କ ଗହଣରେ ମଜା ମଜା ହସ କଥା ସବୁ କହୁଥିଲେ । ନବେ ବର୍ଷ ବୟସରେ ମଧ୍ୟ କୃଷ୍ଣମୂର୍ତ୍ତି ପ୍ରତିଦିନ ବଡ଼ ଭୋରରୁ ଉଠିବା ଅଭ୍ୟାସଟା ରଖିଥିଲେ । ଭାରତରେ ଥିବା ସମୟତକ ନିଦ ଭାଙ୍ଗିବା ପରେ ସେ ପ୍ରଥମେ କିଛି ସମୟ ବିଛଣାରେ ପଡ଼ି ରହନ୍ତି । ସେତେବେଳେ ତାଙ୍କ ଶରୀରର ପ୍ରତିଟି ଇନ୍ଦ୍ରିୟ ତୀକ୍ଷ୍ଣ ଭାବରେ ସଜାଗ ରହିଥାଏ । ମନରେ କୌଣସି ଭାବନା ନଥାଏ; ଏକବାରେ ଫାଙ୍କା, ନିର୍ମଳ ମନ । ବିଛଣାରୁ ଉଠି ନିତ୍ୟକର୍ମ ଶେଷ କରି ସେ ଆଗ ପଇଁତ୍ରିଶ ମିନିଟ ପ୍ରାଣାୟାମ ଓ ତା'ପରେ ଆଉ ପଇଁତ୍ରିଶ ମିନିଟ ଯୋଗାସନ କରନ୍ତି । ସକାଳ ପ୍ରାୟ ଆଠଟା ବେଳକୁ ପ୍ରାତଃରାସ ପାଇଁ ଖାଇବା ଟେବୁଲକୁ ଆସନ୍ତି । ପ୍ରାତଃ ଜଳଖିଆରେ ଅଧିକାଂଶ ଦିନ ସେ ପାଉଁରୁଟି ଟୋଷ୍ଟ, ସାମାନ୍ୟ ଲହୁଣି, ଫଳ ଓ କିଛି ଗହମ ଜାତ ରନ୍ଧା ଖାଦ୍ୟ ଖାଆନ୍ତି । କେବେ କେବେ ତାଙ୍କ ପାଇଁ ଦୋସା, ଇଡ଼ୁଲି ଓ ନଡ଼ିଆ ଚଟଣୀ ମଧ୍ୟ ତିଆରି କରାଯାଏ । ଖାଇବା ସମୟରେ ସେ କେବେହେଲେ ଏକାକୀ ବସିବାକୁ ଭଲ ପାଆନ୍ତି ନାହିଁ । ତେଣୁ ଅଧିକାଂଶ ସମୟରେ କେହି ନା କେହି ବନ୍ଧୁ ବା ପରିଚିତ ଲୋକଙ୍କୁ ତାଙ୍କ ସହିତ ଖାଇବାକୁ ନିମନ୍ତ୍ରଣ କରାଯାଇଥାଏ । ସେଇ ଖାଇବା ଟେବୁଲ ଉପରେ ଦେଶର ରାଜନୀତିଠାରୁ ଆରମ୍ଭ କରି ବିଜ୍ଞାନର ସର୍ବାଧୁନିକ କୃତି ପର୍ଯ୍ୟନ୍ତ, ମଣିଷ ମନର ସୀମାବଦ୍ଧତା ଠାରୁ ଆରମ୍ଭ କରି ପରଶା ଯାଇଥିବା ଖାଦ୍ୟର ସ୍ୱାଦ, ରଙ୍ଗ ଓ ମହକ ପର୍ଯ୍ୟନ୍ତ—ସବୁକଥା ଆଲୋଚନା ହୁଏ ।

ଜଳଖିଆ ପର୍ବ ଶେଷ ହେବା ପରେ ସାଧାରଣତଃ ଗ୍ରୁପ ଗ୍ରୁପ ଆଲୋଚନା ସଭାର ବନ୍ଦୋବସ୍ତ ହୋଇଥାଏ ଓ ତାହା ପ୍ରାୟ ଦେଢ଼ରୁ ଦୁଇଘଣ୍ଟା ପର୍ଯ୍ୟନ୍ତ ଲାଗି ରହେ । ଏ ପ୍ରକାର ଦଶ, କୋଡ଼ିଏ ଜଣିଆ

ଗ୍ରେଷ୍ଠ ଗ୍ରେଷ୍ଠ ବୈଠକରେ ଲୋକମାନେ ସାମାଜିକ ସମସ୍ୟାଠାରୁ ଆରମ୍ଭ କରି ଗଭୀର ମନସ୍ତାତ୍ତ୍ୱିକ ସମସ୍ୟା ପର୍ଯ୍ୟନ୍ତ ନାନା ପ୍ରସଙ୍ଗ ନେଇ କୃଷ୍ଣମୂର୍ତ୍ତିଙ୍କ ସହ ବିଶଦ ଆଲୋଚନା କରିଥାନ୍ତି । ଦିନ ପ୍ରାୟ ସାଢ଼େ ଏଗାରଟା ସମୟରେ ବନ୍ଧୁମାନଙ୍କଠାରୁ ବିଦାୟ ନେଇ କୃଷ୍ଣମୂର୍ତ୍ତି ଅଳ୍ପ ସମୟ ବିଶ୍ରାମ କରିବାକୁ ନିଜ ବିଖରକୁ ଆସନ୍ତି । ସେହି ବେଳଟିକ ସାଧାରଣତଃ ତାଙ୍କର କିଛି ପଢ଼ାପଢ଼ି କରିବାରେ କଟିଯାଏ । ଖବରକାଗଜ, ପତ୍ର ପତ୍ରିକା, ଅଥବା ବୃକ୍ଷଲତା, ପ୍ରାକୃତିକ ଦୃଶ୍ୟ ସମ୍ବଳିତ ଚିତ୍ର ବହି, ବା କେବେକେବେ ଡିଟେକ୍‌ଟିଭ୍ ବହି ଖଣ୍ଡିଏ ଧରି ସେ ଘଣ୍ଟାଏ ଖଣ୍ଡେ ବିଖର ଭିତରେ କଟାନ୍ତି । ପଢ଼ିବାର ଅଭ୍ୟାସଟା ଯଦିଓ ତାଙ୍କର ନିତିଦିନିଆ ତଥାପି ସେ କେବେହେଲେ କୌଣସି ଗମ୍ଭୀର ଧରଣର ବହି ବା ଦର୍ଶନତତ୍ତ୍ୱ ଆଦି ପଢ଼ିବାର ଜଣା ନାହିଁ । ଗ୍ରେଷ୍ଠ ସରଳିଆ ଓ ଲଘୁକଥା ପଢ଼ିବାକୁ ସେ ସବୁବେଳେ ପସନ୍ଦ କରିଥାନ୍ତି । ଏହାପରେ ଦିନ ବାରଟା ପାଖାପାଖି ଦେହରେ ଭଲ କରି ତେଲ ମାଲିସ କରି ସେ ସ୍ନାନ କରନ୍ତି ଓ ଦିନ ଗୋଟାଏ ବେଳେ ମଧ୍ୟାହ୍ନ ଭୋଜନ ପାଇଁ ଆସନ୍ତି । ପ୍ରାତଃଗ୍ରାସ ଭଳି ମଧ୍ୟାହ୍ନ ଭୋଜନରେ ମଧ୍ୟ ତାଙ୍କ ସହିତ ଏକାଠି ବସି ଖାଇବାକୁ ବାହାର ଲୋକ ଦୁଇ ଗୃରିଜଣଙ୍କୁ ନିମନ୍ତ୍ରଣ କରାଯାଇଥାଏ । ସେହି ଖାଦ୍ୟରେ ତେଲ ମସଲା, ଭଜାଭଜିର ପରିମାଣ ଖୁବ୍ କମ୍ ଥାଏ । ଅତିଗୁଡ଼ାଏ ମିଠା ଖାଇବାକୁ ମଧ୍ୟ ସେ ଭଲ ପାଆନ୍ତି ନାହିଁ । ଦାନ୍ତକୁ ସୁସ୍ଥ ରଖିବା ପାଇଁ ଖାଦ୍ୟରେ ତାଙ୍କର ଟିକିଏ କିଛି ଚୋବାଇବା ଜିନିଷ ସେ ବରାବର ଖୋଜନ୍ତି । ଭାରତରେ ଥିବା ଦିନଟିକ ସେ ଭାରତୀୟ ଖାଦ୍ୟ ହିଁ ପସନ୍ଦ କରନ୍ତି । ଖାଇ ବସିଲାବେଳେ ତାଙ୍କୁ ଦେଖିଲେ ମନେହୁଏ ଯେପରିକି ପରଶା ଯାଇଥିବା ପ୍ରତ୍ୟେକଟି ଠା'ର ସ୍ୱାଦକୁ ସେ ଗୃଖି ଗୃଖି ଉପଭୋଗ କରି ଖାଉଛନ୍ତି । ମଧ୍ୟାହ୍ନ ଭୋଜନ ସାଙ୍ଗରେ ଆଚାର ଟିକିଏ ଥିଲେ ସେ ଅତି ଆନନ୍ଦରେ ଖାଇଥାନ୍ତି ।

ଭୋଜନ ପରେ ଦ୍ୱିପ୍ରହରଟା ନିଜ କକ୍ଷରେ ବିଶ୍ରାମ ନେବାପରେ ଗୃରିଟା ବେଳକୁ ସେ ପୁଣି ଲୋକମାନଙ୍କ ସହିତ ଆଲୋଚନା କରିବା

ପାଇଁ ବାଧାର ଆସନ୍ତି । ଯେଉଁଦିନ ଉପରଓଳି ଭାଷଣ କି ଆଲୋଚନା ସଭାର ଆୟୋଜନ ନ ଥାଏ, ସେଦିନ ତାଙ୍କ ସହିତ ବ୍ୟକ୍ତିଗତ ଭାବେ ଦେଖା କରିବାକୁ ଆସିଥିବା ଲୋକମାନଙ୍କ ସଙ୍ଗେ ସେ ସମୟ କଟାନ୍ତି । କାହାକୁ ସେ ନିଜ ବଖରା ଭିତରକୁ ଡାକି ନିଅନ୍ତି ତ ଆଉ କାହା ପାଖରେ ତଳେ ଦରି ଉପରେ ବସିପଡ଼ି ତା'ର ସମସ୍ୟା ନେଇ ମଗ୍ନ ହୋଇଯାଆନ୍ତି । ସାଧାରଣତଃ ଲୋକେ ତାଙ୍କ ପାଖକୁ ଅନେକ ବ୍ୟକ୍ତିଗତ ସମସ୍ୟା ନେଇ ଆସିଥାନ୍ତି । କାହାର ପୁଅ ଯୁଦ୍ଧରେ ମରିଥାଏ ତ କାହାର ସ୍ତ୍ରୀ ଡାକ୍ତରର ଅବହେଳାରୁ ମରିଥାଏ । ପୁଣି ଆଉ କେହି ରୋଗରେ ଘାଣ୍ଟି ହୋଇ କିପରି ମୃତ୍ୟୁର ସାମନା କରିବ ସେଇକଥା ପଚାରିବାକୁ ଆସିଥାଏ । କିନ୍ତୁ ଗୋଟିଏ କଥା, ଦେଶ କାଳ ନିର୍ବିଶେଷରେ ଜଣେ ବ୍ୟକ୍ତି ନିଜର ସ୍ୱାଭିମାନ ଓ ବଡ଼ପଣର ଯେତେ ଟେକ ଧରି ଆସିଥିଲେ ସୁଦ୍ଧା ଥରେ ତାଙ୍କ ସାମନା ସାମନି ବସି କଥା କହିବାକୁ ଆରମ୍ଭ କଲେ ତା'ର ଧୈର୍ଯ୍ୟର ସମସ୍ତ ବନ୍ଧ ଭାଙ୍ଗିଯାଏ । ସେଇଠି ସେ ଗଦଗଦ ହୋଇ କାନ୍ଦିବାକୁ ଆରମ୍ଭ କରେ । କ୍ରିଷ୍ଣମୂର୍ତ୍ତି କାହା ଆଖିରୁ ଲୁହ ପୋଛି ଦିଅନ୍ତି ତ କାହା ହାତକୁ ମୁଠାଇ ଧରି ନୀରବରେ ବସି ରହନ୍ତି । କିନ୍ତୁ ମନ ରଖିବା ପାଇଁ ସେ କେବେ କାହାରିକୁ ସାନ୍ତ୍ୱନା, ଆଶ୍ୱାସନା ଦିଅନ୍ତି ନାହିଁ ।

ସେମିତି ଦିନକର ଘଟଣା । କ୍ରିଷ୍ଣମୂର୍ତ୍ତିଙ୍କ ସଙ୍ଗେ ସାକ୍ଷାତ କରିବାକୁ ସ୍ୱାମୀ-ସ୍ତ୍ରୀ ଯୋଡ଼ିଏ ଆସିଥିଲେ । ଦିହେଁଯାକ ବେଶ୍ ଖୁସ୍ ମିଜାଜିଆ ଓ ସ୍ନେହୀ ମନେ ହେଉଥିଲେ । ସେମାନଙ୍କ କଥାବାର୍ତ୍ତାରୁ ମନେ ହେଉଥିଲା ଯେ ସ୍ତ୍ରୀଟି ନିଜ ସ୍ୱାମୀ ଉପରେ ଅନେକ ଭରସା ରଖିଥିଲେ । କଥାବାର୍ତ୍ତା କରୁ କରୁ ତାଙ୍କୁ ଟିକିଏ ଅପ୍ରସ୍ତୁତ ଲାଗିଲେ ସେ ଭରସା ପାଇଁ ସାଙ୍ଗେ ସାଙ୍ଗେ ସ୍ୱାମୀଙ୍କ ଆଡ଼କୁ ଚାହୁଁଥିଲେ । କିନ୍ତୁ ଦିହିଁଙ୍କର ସେ ଆନ୍ତରିକତା ସତ୍ତ୍ୱେ ମନେ ହେଉଥିଲା ଯେ ସେମାନେ କିଛି ଗୋଟାଏ ଗୁରୁତର ସମସ୍ୟା ନେଇ ଘାରି ହେଉଛନ୍ତି । କିଛି ସମୟ ପରେ ସେମାନେ ନିଜର କାହାଣୀ କହି ଚାଲିଲେ — ବାହାଘର ତାଙ୍କର ପଚାଶ ବର୍ଷରୁ ବେଶି ହେଲାଣି । ପୁଅ ଝିଅ ବଡ଼

ବଡ଼ ହୋଇଗଲେଣି । ଯେ କୌଣସି ମଧ୍ୟବିତ୍ତ ପରିବାର ଭଳି ସେମାନେ ବି ଦୁନିଆର ଅଭାବ ଅନଟନ ଓ ନିଃସହାୟତାକୁ ହାଡ଼େ ହାଡ଼େ ଅନୁଭବ କରିଛନ୍ତି । କିନ୍ତୁ ସେଇଟା ତାଙ୍କର ସମସ୍ୟା ନ ଥିଲା । ଏଣୁତେଣୁ ଟିକିଏ ଗପି ସେମାନେ ଧୀରେ ଧୀରେ ଅସଲ କଥାକୁ ଆସିଲେ । କଥାଟା ହେଉଛି ଗଲା କେତେ ବର୍ଷ ଧରି ସ୍ତ୍ରୀଙ୍କ ମନରେ ସବୁବେଳେ ସ୍ୱାମୀଙ୍କ ବିଷୟ ନେଇ ଏକ ଈର୍ଷା ଭାବ ଦେଖା ଦେଉଛି । ସ୍ତ୍ରୀଠାରେ ଏଭଳି ଈର୍ଷାଭାବ ଜାତ କରାଇବା ପାଇଁ ସ୍ୱାମୀ ଯଦିଓ କୌଣସି କାମ କରି ନାହାନ୍ତି ତଥାପି ସ୍ତ୍ରୀଠାରେ ଏହି ଭାବଟା ଧୀରେ ଧୀରେ ବଢ଼ିବାରେ ଲାଗିଛି । ସେ କହିଲେ ଯେ ଅନେକ ଦିନୁ ମନରେ ତାଙ୍କର ଏଇ ଈର୍ଷାଭାବ ଦେଖା ଦେଲାଣି — ଠିକ୍ ସେମିତି ଘରର କୁହୁଳା ଧୂଆଁ ଭଳି ଏଇଟା ତାଙ୍କ ମନ ଭିତରେ ମାଡ଼ି ମାଡ଼ି ଚାଲିଛି ।

ସେମାନଙ୍କ କଥା ଶୁଣି କୃଷ୍ଣମୂର୍ତ୍ତି କହିଲେ — "ନିଜର ସ୍ୱାମୀକୁ ବା ସ୍ତ୍ରୀକୁ ନିଜ ଅକ୍ତିଆରରେ ରଖିବା ପାଇଁ ଏଇ ଈର୍ଷାଟା ଗୋଟାଏ ବାଟ ନୁହେଁ କି ? ଈର୍ଷା ଆମଠାରେ ଯେତିକି ବଢ଼ି ବଢ଼ି ଚାଲେ, ଅକ୍ତିଆର କରିବାର ଭାବଟା ସେତିକି ବେଶି ବେଶି ଦେଖାଦିଏ । ନିଜର ଅଧୀନରେ କିଛି ରଖି ପାରିଲେ କେତେ ଖୁସି ଲାଗେ ! ହେଉ ପଛକେ ସେ କୁକୁର ଛୁଆଟିଏ, କିନ୍ତୁ ତା'କୁ ଏକାନ୍ତ ନିଜର କରି ଭାବିବାକୁ କେଡ଼େ ସ୍ୱସ୍ତିକର ଲାଗେ । ଆମ ଦଖଲ ଉପରେ ଆମେ ରାଜା — ଏଭଳି ଚିନ୍ତାଟା ଆମକୁ କେତେ ଆଶ୍ୱାସ ଓ ନିଶ୍ଚିନ୍ତତା ଦେଇଥାଏ । ନିଜ ଦଖଲରେ କିଛି ରଖିବା ଦ୍ୱାରା ନିଜର ପ୍ରାଧାନ୍ୟ ବଢ଼ିଗଲା ପରି ଲାଗେ, ଆଉ ସେଇ ପ୍ରାଧାନ୍ୟର ଭାବଟିକୁ ଆମେ ଜାବୁଡ଼ି ବସିଥାଉ । ଘରଟାଏ କି ସାଧାରଣ କଲମ ଖଣ୍ଡେ ନୁହେଁ — ପୂରା ଗୋଟାଏ ମଣିଷ ମୋର ଦଖଲରେ ଅଛି, ଏମିତି ଭାବିବାରେ ନିଜକୁ ନିଜେ କେଡ଼େ ପରାକ୍ରମୀ ମନେ ହୁଏ, କେଡ଼େ ତୃପ୍ତି ଆସେ । ତେଣୁ ଅନ୍ୟ କାହା ପାଇଁ ଯେ ମନରେ ଈର୍ଷା ଉଠେ ତା' ନୁହେଁ — ଆମର ନିଜର ମୂଲ୍ୟ ପାଇଁ, ନିଜର ପ୍ରାଧାନ୍ୟ ପାଇଁ ଈର୍ଷା ଦେଖାଦିଏ ।"

ସ୍ତ୍ରୀଲୋକଟିର ମନକୁ କିନ୍ତୁ ଏକଥା ଆଦୌ ଆସି ନ ଥିଲା । ସେ କହିବାକୁ ଚେଷ୍ଟା କରୁଥିଲେ ଯେ ସ୍ୱାମୀ ହିଁ ତାଙ୍କର ସର୍ବସ୍ୱ ଓ ତାଙ୍କୁ ସେ ଅତ୍ୟଧିକ ଭଲ ପାଆନ୍ତି ।

କୃଷ୍ଣମୂର୍ତ୍ତି — "ଆମେ ସମସ୍ତେ ଏମିତି କିଛି ନା କିଛିକୁ ଜାବୁଡ଼ି ଧରି ବସିଥାଉ । ତମେ ଯେମିତି ତମର ସ୍ୱାମୀଙ୍କୁ ଜାବୁଡ଼ି ଧରି ବସିଛ ସେମିତି ଅନ୍ୟମାନେ କିଏ ନିଜର ପିଲାପିଲିଙ୍କୁ, କିଏ ନିଜର ବିଶ୍ୱାସ, ଭରସାକୁ ଧରି ବସିଥାନ୍ତି । କିନ୍ତୁ ସବୁର ଅଭିପ୍ରାୟ ଏକ । ତାପରେ, ଯାହାକୁ ଆଙ୍କୁଡ଼ି ଧରି ଆମେ ବସିଥାଉ ତା' ବିନା ଆମର କୌଣସି ଅସ୍ତିତ୍ୱ ଥିବା ପରି ଲାଗେ ନାହିଁ । ନା' କ'ଣ ? ନିଜକୁ ତା' ବିନା ଏକାକୀ ବୋଲି ଅନୁଭବ କରିବାକୁ ଭୟ ଲାଗେ । ଏଇ ଭୟଟା ହିଁ ହେଉଛି ଈର୍ଷା, ଘୃଣା ଓ ଯନ୍ତ୍ରଣା । × × × ସବୁଠାରୁ ଦୁଃଖର କଥା ଏଇ ଯେ ଆମେ ପ୍ରକୃତରେ ଭଲ ପାଉ ନ ଥାଉ । ତମେ ନିଜେ ସୁଖୀ ରହିବ ବୋଲି, ଜୀବନରେ ସାଥୀଟିଏ ପାଇବ ବୋଲି, ନିଜକୁ ଏକୁଟିଆ ଲାଗିବ ନାହିଁ ବୋଲି ସିନା ନିଜ ସ୍ୱାମୀଙ୍କୁ ଏମିତି ହାତ ବାରସି କରିଥାଅ । ଆଉ ସେ ବି ତମକୁ ସେମିତି କରିଥାନ୍ତି ।······ଆଉ ସେହି ପାରସ୍ପରିକ ଗ୍ରହିଦା ମେଣ୍ଟିଣିକୁ ଆମେ 'ଭଲ ପାଇବା' ବୋଲି ଧରିନେଉ । × × × ×

ସେଦିନର ଆଲୋଚନା ଶେଷ ହେବା ବେଳକୁ ସ୍ତ୍ରୀ ଲୋକ ଜଣକର ଆଖିରୁ ଧାର ଧାର ଲୁହ ଗଡ଼ିବାରେ ଲାଗିଥିଲା । ଲୁହ ପୋଛି ସେ କହିବାକୁ ଚେଷ୍ଟା କରୁଥିଲେ, "ସତରେ, ଏବେ ସିନା ମୁଁ ଜାଣୁଛି ଯେ ମୁଁ ମୋ ସ୍ୱାମୀଙ୍କୁ କେବେ ପ୍ରକୃତରେ ଭଲ ପାଇ ନାହିଁ ।"

ପ୍ରତିଦିନ ସୂର୍ଯ୍ୟାସ୍ତ ସମୟରେ କୃଷ୍ଣମୂର୍ତ୍ତି ତାଙ୍କର ନିତି ଦିନିଆ ଭ୍ରମଣରେ ବାହାରି ପଡ଼ନ୍ତି । କେବେ କେବେ ସାଥିରେ କେତେକ ବନ୍ଧୁ ଥାଆନ୍ତି, ନହେଲେ ଅଧିକାଂଶ ଦିନ ସେ ପୂରା ଏକାକୀ । ତାଙ୍କର ଚାଲି ଏତେ କ୍ଷିପ୍ର ଯେ ସାଙ୍ଗରେ ଚାଲୁଥିବା ବନ୍ଧୁମାନେ ଚାହିଁ ଚାହିଁ ପଛରେ ପଡ଼ିଯାଆନ୍ତି ନ ହେଲେ ଧାଇଁ ସଇଁ ହୋଇ ତାଙ୍କ ସାଙ୍ଗେ ଏକାଠି ଚାଲିବାର ଚେଷ୍ଟା କରନ୍ତି । ଏମିତି ପୂରା ଘଣ୍ଟାଏ ସେ ବାଟ ଚାଲନ୍ତି; କିନ୍ତୁ ଭ୍ରମଣ

ସାରି ଫେରିଲାବେଳକୁ ମୁହଁରେ ତାଙ୍କର କ୍ଲାନ୍ତିର ଚିହ୍ନ ସୁଦ୍ଧା ନ ଥାଏ । ବୁଲିଲାବେଳେ ସେ ପ୍ରାୟ କଥାବାର୍ତ୍ତା କରନ୍ତି ନାହିଁ । ମନଟା ତାଙ୍କର ଏକ ଭାବନା-ଶୂନ୍ୟ ଅବସ୍ଥାରେ ରହିଥାଏ, ଇନ୍ଦ୍ରିୟଗୁଡ଼ିକ ତୀକ୍ଷ୍ଣ ଭାବରେ ସଜାଗ ଥାଏ । କେବଳ ସାଂଧ୍ୟ ଭ୍ରମଣରେ ନୁହେଁ, ଦିନ ସାରା ସେ ଯେତେବେଳେ ଯାହା କରନ୍ତୁ ନା କାହିଁକି, ମନରେ ତାଙ୍କର କୌଣସି ଭାବନା ନ ଥାଏ । ମନଟା ସଦାବେଳେ ଫାଙ୍କା ଆଉ ଖୋଲା ଥାଏ — ଠିକ୍ ଏକ ନିରୀହ ପିଲାର ମନ ଭଳି । ଆଉ ତା' ସାଙ୍ଗକୁ ଶରୀର ମଧ୍ୟ ଯୁବ-ସୁଲଭ ନମନୀୟ ଓ କର୍ମଠ । ଯିଏ ତାଙ୍କୁ ରାସ୍ତାରେ ଗଲାବେଳେ ହଠାତ ନଇଁ ପଡ଼ି ବାଟରେ ପଡ଼ିଥିବା ପଥରଟିକୁ ଆଡ଼େଇ ଦେବାର ଦେଖେ, କି ପାହାଚ ଉପରେ ଝୁଙ୍କି ପଡ଼ି ଜୋତାର ଫିତା ବାନ୍ଧିବାର ଦେଖେ ସେ କେବେହେଲେ ତାଙ୍କର ପରିପକ୍ୱ ବୟସର ଅନୁମାନ କରିପାରେ ନାହିଁ । ସାଂଧ୍ୟ ଭ୍ରମଣ ପରେ କୃଷ୍ଣମୂର୍ତ୍ତି ଘରକୁ ଫେରି ଧୂଆ ଧୋଇ ହୋଇ ଅଧଘଣ୍ଟା ପ୍ରାଣାୟାମ କରନ୍ତି । ତା'ପରେ ରାତି ଭୋଜନ ଶେଷ କରି ପ୍ରାୟ ଦଶଟା ପାଖାପାଖି ବିଛଣାକୁ ଆସନ୍ତି । ତାଙ୍କର ରାତ୍ରି ଭୋଜନର ପରିମାଣ ଖୁବ୍ କମ । ବାଟିଏ ଶିଝା ପରିବା, ଅଳ୍ପ କିଛି ଫଳ, ସୁପ୍ ଓ କିଛି ବାଦାମ୍ — ଏଇ ତାଙ୍କର ଅଧିକାଂଶ ରାତ୍ରିର ଭୋଜନ । ରାତିରେ ସେ ସ୍ୱପ୍ନ ଦେଖନ୍ତି ନାହିଁ ଓ କ୍ୱଚିତ କଡ଼ ବୁଲାନ୍ତି ।

କୃଷ୍ଣମୂର୍ତ୍ତିଙ୍କ ଦୈନନ୍ଦିନ ଜୀବନର ଦୁଇଟି ବୈଶିଷ୍ଟ୍ୟ ହେଉଛି ସଦା ସଜାଗ ମନ ଓ ପ୍ରକୃତି ସହିତ ନିବିଡ଼ତା । ସେ କହୁଥିଲେ ଯେ ସଜାଗତା ଓ ସଚେତନତା ବିଷୟରେ କେବଳ ଗୁଡ଼ାଏ ଭାବିଦେଲେ ବା ଆଲୋଚନା କଲେ ତାହା ଆସିଯାଏ ନାହିଁ । ହେଲେ, ମଣିଷ ତା' ଜୀବନର ପ୍ରତି କ୍ଷଣରେ ଅହରହ ଭାବରେ ନିର୍ଣ୍ଣୟ କରିବାରେ ଲାଗିଥାଏ, ଗୋଟିକୁ ଅନ୍ୟଟି ସହିତ ତୁଳନା କରିବାରେ ଲାଗିଥାଏ । କିନ୍ତୁ ସେଭଳି କରିବା ଦ୍ୱାରା ସଜାଗତା ଆସି ପାରେ ନାହିଁ । ସଜାଗତାଟା ସଦାବେଳେ ଅନାହୂତ । ଯାହା 'ଅଛି' ବା 'ରହିଛି' ତା'କୁ ଭାବନା, ତୁଳନା, ବିଗତ ସ୍ମୃତି, ପରମ୍ପରା ଓ ସ୍ଥିତିବଦ୍ଧତା ବିନା ଦେଖିବା ହିଁ ହେଉଛି ସଜାଗତା । ଏ ସମ୍ପର୍କରେ ଦିନେ ଗୋଟିଏ ଭାଷଣରେ ସେ କହିଥିଲେ—

"ଗୋଟିଏ ଜାଗା ବାଛି ନେଇ ସେଠାରେ ଏକଦମ୍ ଚୁପ୍‌ଚାପ୍ ହୋଇ ବସିଯାଅ । ନିଜକୁ ସହଜ, ହାଲୁକା କରିନିଅ......ଏକଦମ୍ ଧୀର ସ୍ଥିର, ନିଶ୍ଚଳ । ତା'ପରେ ଆଖି ମେଲି ସାମନାର ସେଇ ଗଛଗୁଡ଼ାକୁ ଚାହିଁ ଦେଖ । ଆଗରେ ପାହାଡ଼ର ବପୁ , ତା'ର ଆକୃତିକୁ ଦେଖ; ସେପାରିରେ ଗଛର ଟିକିନିଖି ରେଖା ରୂପ, ବର୍ଣ୍ଣ ଆଦିକୁ ଦେଖ । ଏମିତିକି ମୋର କଥାକୁ ବି କାନ ଦିଅ ନାହିଁ । ଖାଲି ସେଇ ଗଛଗୁଡ଼ାକୁ ଚାହିଁ ଦେଖୁଥାଅ — ତା'ର ହଳଦିଆ ପଡ଼ି ଆସିଥିବା ପତ୍ର, ପୁଣି ଆଗରେ ଛିଡ଼ା ହୋଇଥିବା ସେଇ ତେନ୍ତୁଳି ଗଛ ଆଉ ଆର ପଟେ ବୋଗେନ୍‌ଭିଲିଆ ଗଛ — ଏ ସବୁକୁ ଖାଲି ଚାହିଁ ଦେଖିବାରେ ଲାଗିଥାଅ । ମନର ସାହାଯ୍ୟ ନିଅ ନାହିଁ; କେବଳ ଆଖି ଦ୍ୱାରା ଦେଖିଯାଅ । ସେ ଗଛ, ପାହାଡ଼ମାଳ, ତହିଁରେ ବଡ଼ ବଡ଼ ପଥର ଖଣ୍ଡର ରଙ୍ଗ, ଆକୃତି, ତା'ର ଛାଇ, ଆଉ ଯେତେ ଯାହା ତମ ଆଖିରେ ପଡ଼ୁଛି — ସବୁ । ଏମିତି ଯେତେକ ବାହାରିଆ ଜିନିଷ, ସେ ସବୁକୁ ଦେଖି ସାରିବା ପରେ ଏବେ ନିଜ ଭିତରକୁ ଆସ । ଆଖି ଦୁଇଟିକୁ ପୂରା ମୁଦି ଦିଅ । ତମ ଚାରିପଟେ ଥିବା ସବୁ ଜିନିଷ ତ ଦେଖି ସାରିଛ, ଏବେ ଆଖି ବନ୍ଦ କରି ତମ ନିଜ ଭିତରେ କଣ ଘଟୁଛି ସେତକ ଦେଖିବାକୁ ଚେଷ୍ଟା କର । କେବଳ ତାକୁ ହିଁ ଲକ୍ଷ୍ୟ କରିବାରେ ଲାଗ । କିନ୍ତୁ ମନେରଖ — ଆଦୌ ଅସ୍ଥିର ହୁଅ ନାହିଁ, ନିଶ୍ଚଳ ହୋଇ ବସି ରହ । ଆଖି ଡୋଳାକୁ ସୁଦ୍ଧା ବୁଲାଅ ନାହିଁ । ତମ ଚାରିପଟେ ଆଉ କିଛି ଦେଖିବାକୁ ବାକି ନାହିଁ । ବର୍ତ୍ତମାନ କେବଳ ତମ ମନ ଭିତରେ ଯାହା ଘଟୁଛି, ତାକୁ ହିଁ ତମେ ଦେଖିବାରେ ଲାଗିଛ । ମନ ଭିତରେ ଘଟି ଚାଲିଥିବା ଜିନିଷକୁ ଦେଖିବା ଲାଗି ତମ ଭିତରଟା ଏକବାରେ ନିଶ୍ଚଳ ହେବା ଦରକାର । ଆଉ, ଏମିତି ଯେତେବେଳେ ତମ ଭିତରଟା ନୀରବ, ନିଶ୍ଚଳ ହୋଇଯାଏ ସେତିକି-ବେଳେ ତମଠାରେ କ'ଣ ଘଟେ ଜାଣ ? ସେତେବେଳେ ତମେ ଅତ୍ୟନ୍ତ ଦରଦଶୀଳ ହୋଇଉଠ; ତମ ଭିତରେ ତଥା ବାହାରେ ଘଟୁଥିବା ପ୍ରତ୍ୟେକଟି ଜିନିଷ ପ୍ରତି ନିବିଡ଼ ଭାବରେ ସଜାଗ ହୋଇଉଠ । ଆଉ ଖାସ୍ ସେତିକିବେଳେ ଯାଇ ତମେ ଦେଖ ଯେ ତମର ବାହାର ଓ

ଉତ୍ତର — ଦୁଇଟାଯାକ ସମାନ ହୋଇଯାଇଛି । ସେତିକିବେଳେ ଦ୍ରଷ୍ଟା ନିଜେ ହିଁ ସେହି ଦୃଷ୍ଟ ବସ୍ତୁ ପାଲଟିଯାଏ ।

ପ୍ରକୃତି ସହିତ ନିବିଡ଼ତା ରକ୍ଷା ଗୁଣଟା କିଷ୍ଣମୂର୍ତ୍ତିଙ୍କ ଜୀବନରେ ବାଲ୍ୟକାଳରୁ ହିଁ ସ୍ପଷ୍ଟ ଥିଲା । ପ୍ରକୃତି କହିଲେ ସେ କେବଳ ଗଛ, ଲତା, ନଈ, ପାହାଡ଼, ଆକାଶକୁ ବୁଝାଉ ନ ଥିଲେ । କାନ୍ଥକଡ଼ରେ ଧାଡ଼ି ବାନ୍ଧି ଚାଲିଥିବା ଛିକି ଛିକି କଳା ପିମ୍ପୁଡ଼ିର ସୁଅ, ଗଛ ଡାଳରେ ଘୁମୁରୁଥିବା କପୋତ, ଘରକୋଣରେ ବସା ବାନ୍ଧିଥିବା ଅମାନିଆ ବୁଢ଼ିଆଣୀ — ଏ ପ୍ରତ୍ୟେକଟି ପ୍ରତି ସେ ଅତିଶୟ ଦରଦୀ ଥିଲେ । ଏକା ଏକା ଜଙ୍ଗଲକୁ ଭ୍ରମଣରେ ଗଲାବେଳେ ସେ ଅନେକ ଥର ସାଙ୍ଘାତିକ ଜନ୍ତୁମାନଙ୍କର ହାବୁଡ଼ରେ ପଡ଼ିଛନ୍ତି, ଆଉ ସେ ଅନୁଭୂତିମାନ ମଧ୍ୟ ବଡ଼ ବିଚିତ୍ର । ଭାରତରେ ଥିବାବେଳେ ସେ ଥରେ ଶୁଣିଲେ ଯେ ପାଖ ଗାଆଁରେ ବାଘ ମାଡ଼ିଛି । ଠିକ୍ ତା' ପୂର୍ବ ରାତିରେ ବାଘ ଆସି ଗାଆଁ ଭିତରୁ ଗୋଟାଏ ବଡ଼ ଗାଈ ନେଇ ଯାଇଥିଲା । ତେଣୁ ଲୋକେ କୁହାକୁହି ହେଉଥିଲେ ଯେ ସେଦିନ ରାତିରେ ବି ବାଘ ପୁଣି ଶିକାର ପାଇଁ ଗାଆଁ ଭିତରକୁ ନିଶ୍ଚେ ଆସିବ । କୃଷ୍ଣମୂର୍ତ୍ତି ଯେଉଁ ବନ୍ଧୁଙ୍କ ଘରେ ଅତିଥି ଥିଲେ ସେହି ଭଦ୍ରବ୍ୟକ୍ତି ସେଦିନ ସନ୍ଧ୍ୟାରେ କୃଷ୍ଣମୂର୍ତ୍ତିଙ୍କୁ ସାଥିରେ ନେଇ ଜଙ୍ଗଲ ଭିତରେ ଗାଡ଼ିରେ ଥରଟିଏ ବୁଲି ଆସିବାର ପ୍ରସ୍ତାବ ଦେଲେ । ବନ୍ଧୁଜଣକ ଜାଣିଥିଲେ ଯେ କୃଷ୍ଣମୂର୍ତ୍ତି ବାଘଟିକୁ ଦେଖିବାକୁ ବଡ଼ ଆଗ୍ରହୀ । ତେଣୁ ସୂର୍ଯ୍ୟ ଠିକ୍ ଅସ୍ତ ହୋଇଯିବା ପରେ ପରେ ଦୁହେଁଯାକ ଗାଡ଼ିରେ ବସି ଜଙ୍ଗଲ ଆଡ଼େ ବାହାରି ପଡ଼ିଲେ । ଅନେକ ବାଟ ବଣ ଭିତର ଦେଇ ଯିବା ପରେ ରାତି ଧୀରେ ଧୀରେ ଗାଢ଼ ହେବାକୁ ଲାଗିଲା — କିନ୍ତୁ ବାଘର ଚିହ୍ନବର୍ଣ୍ଣ ମିଳିଲା ନାହିଁ । ନିରାଶ ହୋଇ ଭଦ୍ରଲୋକ ବିଚରା ଗାଡ଼ିକୁ ଫେରାଇ ଘରମୁହାଁ ଚଳାଇଲେ । କିନ୍ତୁ ରାସ୍ତାର କୋଣମୁଣ୍ଡ ମୋଡ଼ରେ ବାଙ୍କି ଗଲା ବେଳକୁ ହଠାତ ସେମାନଙ୍କ ନଜର ପଡ଼ିଗଲା ଏକ ବିରାଟକାୟ ମହାବଳ ବାଘ ଉପରେ । ରାସ୍ତାର ଠିକ୍ ମଝିରେ କରି ସେଇ ଭୟାନକ ଜାନୁଆରଟା ଗୋଡ଼ ଭାଙ୍ଗି ବସିଥିଲା; ଦେହଯାକ ତା'ର ପଟା ପଟା ଗାର, ଭୀଷଣକାୟ

ମୂର୍ତ୍ତି । ଗାଡ଼ିର ହେଡ୍‌ଲାଇଟ ପଡ଼ି ଆଖି ଦ୍ୱ'ଟା ତା'ର ଦପ୍ ଦପ୍ କରୁଥିଲା । ବାଘଠାରୁ ଖଣ୍ଡେ ଦୂରରେ ଗାଡ଼ି ଅଟକିଗଲା । ଆଜି, ହେଡ୍‌ଲାଇଟ ଗୁଡ଼ିକ ବାଘଟା ଗାଡ଼ି ଆଡ଼କୁ ମାଡ଼ି ଆସିଲା । ତା' ହେଡ୍‌ଲାଇଟରେ ଗାଡ଼ି ଭିତରଟା ଥରି ଉଠୁଥିଲା । ଦେଖିଲେ ମନେ ହେଉଥିଲା ଯେ କୌଣସି ଗୋଟାଏ କାରଣରୁ ବାଘଟା ରାଗି ଯାଇଛି । କୃଷ୍ଣମୂର୍ତ୍ତି ବସିଥିବା କଡ଼ରେ ଝରକା-କାଚ ମେଲା ଥିଲା । ବାଘ ତା'ର ପାଖ ଦେଇ ଚାଲି ଯାଉଥିବା ବେଳେ ଜଙ୍ଗଲର ସେହି ମହାନ୍ ଶକ୍ତିକୁ ହାତରେ ଟିକିଏ ଆଉଁସି ଦେବା ଲାଗି ହଠାତ୍ କୃଷ୍ଣମୂର୍ତ୍ତି ଝରକାବାଟେ ହାତଟିକୁ ବଢ଼ାଇ ଦେଲେ । ଏକଥା ଦେଖି ବନ୍ଧୁ ଜଣକ ସାଙ୍ଗେ ସାଙ୍ଗେ ତାଙ୍କ ହାତକୁ ଭିତରକୁ ଟାଣି ଆଣିଲେ ଓ କୃଷ୍ଣମୂର୍ତ୍ତିଙ୍କୁ ବୁଝାଇ ଦେଲେ ଯେ ବାଘ ତାଙ୍କ ହାତଟିକୁ ଛିଡ଼ାଇ ନେଇ ପାରଥାନ୍ତା !

ଆଉ ଥରେ ସେମିତି କାଲିଫର୍ଣ୍ଣିଆର ଜଙ୍ଗଲରେ ଏକୁଟିଆ ବୁଲୁ ବୁଲୁ କୃଷ୍ଣମୂର୍ତ୍ତି ହଠାତ୍ ଗୋଟାଏ ରାଟ୍‌ଲର୍ ସାପ ହାବୁଡ଼ରେ ପଡ଼ିଗଲେ । ଆମେରିକାର ଜଙ୍ଗଲମାନଙ୍କରେ ବିଶେଷ ଭାବରେ ଦେଖା ଦେଉଥିବା ଏହି ରାଟ୍‌ଲର୍ ସାପ ଅତି ଭୟଙ୍କର । ଏ ପ୍ରକାର ସାପର ବିଶେଷତ୍ୱ ହେଲା, ସେ ଗଲାବେଳେ ତା ଲାଞ୍ଜରୁ ଏକ ପ୍ରକାର 'ରଟ୍' 'ରଟ୍' ଶବ୍ଦ ବାହାରେ ଏବଂ ସେଇ ଶବ୍ଦକୁ ଶୁଣି ପଶୁ ପକ୍ଷୀମାନେ ସତର୍କ ହୋଇଯାନ୍ତି । ସେଦିନ ବଣ ଭିତରେ ଯାଉ ଯାଉ ହଠାତ୍ ଅତି ନିକଟରେ ଏମିତି ରଟ୍ ରଟ୍ ଶବ୍ଦ ଶୁଣି କୃଷ୍ଣମୂର୍ତ୍ତି ଭୁସ୍ କରି ଡେଇଁ ପଡ଼ି ପଛକୁ ହଟିଗଲେ । ଦେଖିଲାବେଳକୁ ସାମନାରେ କୁଣ୍ଡଳୀ ମାରି ଗୋଟିଏ ରାଟ୍‌ଲର୍ ସାପ ଏକାଗ୍ର ଦୃଷ୍ଟିରେ ତାଙ୍କୁ ଚାହିଁ ରହିଛି । ଦୁହିଁଙ୍କ ଭିତରେ ମାତ୍ର କେଇ ହାତର ଦୂରତା । ଉଭୟେ ଉଭୟଙ୍କୁ କିଛି ବେଳ ଏକ ଦୃଷ୍ଟିରେ ଚାହିଁ ରହିଲେ । କିଛି ବେଳ ପରେ ସାପଟି ତା'ର ମୁଣ୍ଡକୁ ବୁଲାଇ କୃଷ୍ଣମୂର୍ତ୍ତିଙ୍କୁ ପଛ କରି ଯିବାକୁ ଆରମ୍ଭ କଲା । କିନ୍ତୁ କୃଷ୍ଣମୂର୍ତ୍ତି ଯେମିତି ଆଗକୁ ପାହୁଣ୍ଡେ ବଢ଼ିଛନ୍ତି, ସାଙ୍ଗେ ସାଙ୍ଗେ ସେ ପୁଣି କୁଣ୍ଡଳୀ ପକାଇ ଦଂଶିବାକୁ ତିଆରି । ଏମିତି କିଛି ବେଳ ଖେଳ ଚାଲିବା ପରେ ସାପଟି ହାଲିଆ ହୋଇଗଲା । ତା'ପରେ ତା'କୁ

ସେଇଠି ଗ୍ରୁଡ଼ ଦେଇ କ୍ରିଷ୍ଣମୂର୍ତ୍ତି ଫେରି ଆସିଲେ । ଯେତେ ଭୟଙ୍କର ଜୀବଜନ୍ତୁ ହେଲେ ବି କ୍ରିଷ୍ଣମୂର୍ତ୍ତିଙ୍କ ମନକୁ ଭୟ କେବେ ଛୁଇଁ ନ ଥିଲା । ଏପରିକି ମନ୍ଦ ଶକ୍ତିର ଅସ୍ତିତ୍ୱ ମଧ୍ୟ ତାଙ୍କ ମନରେ ଭୟ ସୃଷ୍ଟି କରୁ ନ ଥିଲା । ସେ କହୁଥିଲେ ଯେ ଭୟଟା ସଦାବେଳେ ମନ୍ଦ ଶକ୍ତିକୁ ଆକର୍ଷଣ କରି ଆଣେ । ମନ୍ଦ ଶକ୍ତି ବିଷୟରେ କଥାବାର୍ତ୍ତା କରିବା ହିଁ ତାକୁ ଆମନ୍ତ୍ରଣ କରିବା ସାଙ୍ଗେ ସମାନ ।

ଦିନେ କେତେକ ବନ୍ଧୁଙ୍କ ସହିତ ଏମିତି ମନ୍ଦଶକ୍ତି ବିଷୟରେ ଆଲୋଚନା କରୁ କରୁ ହଠାତ୍ କ୍ରିଷ୍ଣମୂର୍ତ୍ତି କେମିତି ଗୋଟାଏ ଅଲଗା ପ୍ରକାର ଦିଶିଲେ । ଦୁଇ ହାତକୁ ଭାଙ୍ଗି ଜାକି ଜୁକି ଦେଇ ନିଜ ସ୍ଥାନରେ ବସି ରହିଲେ । ମୁହଁଟା ତାଙ୍କର ଅଦ୍ଭୁତ ଭାବରେ ବଦଳି ଯାଇଥିଲା । ତା'ପରେ ଅନ୍ୟମାନଙ୍କୁ ଚାହିଁ ସେ ପଚାରିଲେ, "ଦେଖୁଛ, ଏବେ ଏଇ ବଖରା ଭିତରେ ତାକୁ ଅନୁଭବ କରି ପାରୁଛ ?" ସତକୁ ସତ ସମସ୍ତେ ଅନୁଭବ କରିବାକୁ ଲାଗିଲେ ଯେ ବଖରା ଭିତରଟା ଏକ ଅସ୍ୱସ୍ତିକର ଶକ୍ତିରେ ଜର୍ଜରିତ ହେଉଛି । କିଛି ବେଳ ପରେ ସେ ପୁଣି କହିଲେ, "ରାତିରେ ଶୋଇବା ପୂର୍ବରୁ ହିଁ ମତେ ତାକୁ ଏଠାରୁ ଦୂର କରି ଏ ସ୍ଥାନଟିକୁ ରକ୍ଷା କରିବାକୁ ହେବ ।" କ୍ରିଷ୍ଣମୂର୍ତ୍ତି କ'ଣ କରିବେ ବୋଲି ସମସ୍ତେ ଉତ୍ସୁକ ହୋଇ ଚାହିଁ ବସିଲେ । ସେ ନିଜ ଜାଗାରୁ ଉଠି ଧୀରେ ଧୀରେ ଘର ଚାରିପଟେ ବୁଲିବାକୁ ଲାଗିଲେ । ଘରର ଭିତରର ପ୍ରତ୍ୟେକ ବଖରା ଚାରିପଟେ ସେ ଥରେ ଲେଖାଁ ବୁଲିଲେ । କିଛି ସମୟ ପରେ ସତକୁ ସତ ସେଇ ଅସ୍ୱସ୍ତିକର ଅନୁଭବ କୁଆଡ଼େ ମିଳାଇଗଲା ଓ ଘର ଭିତରେ ପୁଣି ପ୍ରଶାନ୍ତି ଫେରି ଆସିଲା । ଏହି ମନ୍ଦଶକ୍ତି ସମ୍ପର୍କରେ ବୁଝାଇବାକୁ ଯାଇ କ୍ରିଷ୍ଣମୂର୍ତ୍ତି ଦିନେ କହିଥିଲେ, "ମନ୍ଦଶକ୍ତି ହେଉଛି ଏକ ନିରାଟ ବାସ୍ତବତା । ବାସ୍ ତାକୁ ସେମିତି ଗ୍ରୁଡ଼ଦିଅ । ତମର ମନ ସେହି ମନ୍ଦଶକ୍ତି ନେଇ କେବେହେଲେ ଖେଳିବା ଉଚିତ ନୁହେଁ । ତା' ବିଷୟରେ ଚିନ୍ତା କରିବା ହିଁ ହେଉଛି ତାକୁ ନିଜ ପାଖକୁ ଡାକି ଆଣିବା । ତମର ଘୃଣା, ଈର୍ଷା ପ୍ରଭୃତି ଜିନିଷ ହିଁ ମନ୍ଦକୁ ଆକର୍ଷଣ କରିଥାଏ । ତେଣୁ ସ୍ଥିର ଓ

ନୀରବ ରହିବା ମନ ଓ ଦେହ ଉଭୟ ପକ୍ଷରେ ନିତାନ୍ତ ଆବଶ୍ୟକ । ଆଜି ତମ ନିଜ ଅଲକ୍ଷ୍ୟରେ ଯେପରି କୌଣସି ବଳିଷ୍ଠ, ତୀବ୍ର ଆବେଗ ଉଚ୍ଛ୍ୱାସ ତମ ମନରେ ନ ଉଠେ, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।

ବ୍ୟକ୍ତିଗତ ଭାବରେ କୃଷ୍ଣମୂର୍ତ୍ତି ଯଦିଓ ରାଜନୀତିକୁ ଆଦୌ ପସନ୍ଦ କରୁ ନ ଥିଲେ ତଥାପି ବିଶ୍ୱ ରାଜନୀତିର ସମସ୍ତ ସମାଚାର ସେ ଅନ୍ୟମାନଙ୍କ ଠାରୁ ପଚାରି ବୁଝୁଥିଲେ ଓ ସେଥିନେଇ ଖୁବ୍ ଉତ୍କଣ୍ଠିତ ମଧ୍ୟ ରହୁଥିଲେ । ଦେଶ ବିଦେଶର ବିଭିନ୍ନ ବୈଜ୍ଞାନିକ ଆବିଷ୍କାର, ଉଦ୍ଭାବନ, ଯାନ୍ତ୍ରିକ କୃତି-କୌଶଳ ସମ୍ପର୍କରେ ଜାଣିବାକୁ ତାଙ୍କଠାରେ ସଦାବେଳେ ଏକ ଅଦମ୍ୟ ଆଗ୍ରହ ରହିଥିଲା । ଯନ୍ତ୍ରପାତି ଚାଳନା, କାର୍ ମରାମତି ଓ ଛୋଟ ଛୋଟ ବ୍ୟବହାର୍ଯ୍ୟ କଳକବ୍ଜାକୁ ଖୋଲି ସଜାଡ଼ିବାରେ ତାଙ୍କର ହାତ ଦୁଇଟି ଖୁବ୍ ଦକ୍ଷ ଥିଲା । ଏସବୁ କରିବାରେ ସେ ଢେର ଆନନ୍ଦ ମଧ୍ୟ ଅନୁଭବ କରୁଥିଲେ । ଯେଉଁଦିନ ସେ ପ୍ରଥମ ଥର ପାଇଁ ଆମେରିକାର ବିମାନଘାଟିରେ ଚଳନ୍ତା ସିଡ଼ି (ଏସ୍କାଲେଟର୍) ଦେଖିଥିଲେ ସେଦିନ ଠିକ୍ ଛୋଟ ପିଲାଟି ଭଳି ଗଭୀର କୌତୁହଳର ସହିତ ଅନେକ ସମୟ ଧରି ତାକୁ ଲକ୍ଷ୍ୟ କରିଥିଲେ ଓ ତାହା କିଭଳି ଚାଲେ ସେ ବିଷୟରେ ନାନା କଥା ପଚାରି ବୁଝିଥିଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ କୃଷ୍ଣମୂର୍ତ୍ତିଙ୍କ ବନ୍ଧୁମାନେ ତାଙ୍କୁ ଅଧିକରୁ ଅଧିକ ବିଶ୍ରାମ ନେବା ପାଇଁ ଉପଦେଶ ଦେଉଥିଲେ । କିନ୍ତୁ ସେମାନଙ୍କ ବାରଣ ସତ୍ତ୍ୱେ ଅନେକ ଲୋକମାନେ ସମୟ ଅସମୟରେ ଆସି କୃଷ୍ଣମୂର୍ତ୍ତିଙ୍କ ସହିତ ସାକ୍ଷାତ କରିବାକୁ ବସି ରହୁଥିଲେ । ବିଶେଷକରି ଭାରତରେ ସେ ଭାଷଣ ଦେଇ ସାରି ମଞ୍ଚରୁ ଓହ୍ଲାଇବା ବେଳକୁ ତାଙ୍କୁ ହାତରେ ଟିକିଏ ଛୁଇଁବାକୁ ବା ତାଙ୍କର ପାଦଧୂଳି ନେବାକୁ ଲୋକମାନଙ୍କ ଭିତରେ ସଦାବେଳେ ଭିଡ଼ ଲାଗୁଥିଲା । ସେତେବେଳେ ଯଦି କେହି ତାଙ୍କୁ ଆପଟି କରିବା ଉଦ୍ଦେଶ୍ୟରେ ଲୋକଙ୍କୁ ଘଉଡ଼ାଇ ଦେବାର ଉଦ୍ୟମ କରୁଥିଲା ତେବେ କୃଷ୍ଣମୂର୍ତ୍ତି ନିଜେ ତାହା ବାରଣ କରୁଥିଲେ । ଜନସାଧାରଣ ଓ ନିଜ ଭିତରେ ସେ କୌଣସି ପ୍ରଭେଦ ରଖିବାକୁ

ଦେଉ ନ ଥିଲେ । କିନ୍ତୁ ଗୋଟିଏ କଥା, କେହି ତାଙ୍କୁ ପ୍ରଣାମ କରୁ, ତାଙ୍କର ଆଶୀର୍ବାଦ ଭିକ୍ଷା କରି ପାଦଧୂଳି ନେଉ, ବା ଦୁଇ ହାତ ଯୋଡ଼ି ତାଙ୍କ ସାମନାରେ ମୁଣ୍ଡ ନୁଆଁଇ ଛିଡ଼ା ହେଉ, ଏକଥା ସେ ଆଦୌ ପସନ୍ଦ କରୁ ନ ଥିଲେ । କେହି ତାଙ୍କୁ ପ୍ରଣାମ କଲେ ସେ ମଧ୍ୟ ଓଲଟି ତା'ର ପାଦ ଛୁଇଁବାକୁ ନଇଁ ପଡୁଥିଲେ । କାହାରିକୁ ତାଙ୍କ ଆଗରେ ହାତ ଯୋଡ଼ି ଛିଡ଼ା ହେବାର ଦେଖିଲେ ସେ ତତ୍‌କ୍ଷଣାତ୍ ତା' ନିକଟକୁ ଆଗେଇ ଯାଇ କହୁଥିଲେ, "ନା···ନା···ସେମିତି ନୁହେଁ ।" ତା'ପରେ ତାର ଯୋଡ଼ି ହାତକୁ ଅଲଗା କରିଦେଇ ହସ ହସ ମୁହଁରେ କହୁଥିଲେ, "ହଁ···ଏମିତି ଛିଡ଼ା ହୁଅ ।" ମୁଖମଣ୍ଡଳ ତାଙ୍କର ସଦା ପ୍ରଫୁଲ୍ଲ, ହସ ହସ, ଆଉ ତହିଁରେ କରୁଣାମୟ ଆଶୀର୍ବାଦର ଧାରା ।

## ଅନ୍ତିମ ଯାତ୍ରା

୧୯୮୫ ମସିହା । କୃଷ୍ଣମୂର୍ତ୍ତିଙ୍କର ଦୀର୍ଘ ନବଇ ବର୍ଷର କର୍ମଠ, ଶିକ୍ଷାବ୍ରତୀ ଜୀବନ ଧୀରେ ଧୀରେ ନିଃଶେଷ ହୋଇ ଆସୁଥିଲା । ଦେହରୁ ବଳ କମି କମି ଯାଉଥିଲା, ଦୁର୍ବଳତା ବଢ଼ି ଚାଲିଥିଲା । ଆଉ ତା'ରି ଭିତରେ ସେ ବିନା ବ୍ୟତିକ୍ରମରେ ନିଜର ଶେଷ ଦାୟିତ୍ୱଟି ସମ୍ପନ୍ନ କରିବାକୁ ଉଦ୍ୟମ କରିଥିଲେ । ଓହାଇ, ବ୍ରକ୍‌ଉଡ୍, ମାଡ୍ରାସ, ରାଜଘାଟ ଓ ଋଷିଭ୍ୟାଲିର ସମସ୍ତ ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ ଯୋଗ ଦେବା ଲାଗି ତାଙ୍କର ଦୁର୍ବଳ ଶରୀର ଶେଷ ଚେଷ୍ଟା କରିଥିଲା ।

୧୯୮୫ ମସିହା ଅକ୍ଟୋବର ୨୫ ତାରିଖରେ କୃଷ୍ଣମୂର୍ତ୍ତି ଆସି ଦିଲ୍ଲୀରେ ପହଞ୍ଚିଲେ । ସେତେବେଳକୁ ତାଙ୍କ ଦେହର ଅବସ୍ଥା ବେଶ୍ ଗୁରୁତର ଥିଲା । ପେଟ ଭିତରେ ବରାବର ଯନ୍ତ୍ରଣା ହେଉଥିଲା ଓ ମଝିରେ ମଝିରେ ତାହା ଉତ୍କଟ ହୋଇ ଉଠୁଥିଲା । ଓଜନ ଦ୍ରୁତ ଗତିରେ ହ୍ରାସ ପାଇବାରେ ଲାଗିଥିଲା । ତାଙ୍କର ଏ ଅବସ୍ଥା ଦେଖି ବନ୍ଧୁ

ଓ ଡାକ୍ତର ଭଉଣୀ ମନେ ମନେ ଡରି ଗଲେ । ଦିଲ୍ଲୀରେ ସାତ ଦିନ ବିଶ୍ରାମ ନେଇ ସେ ଉଡ଼ାଜାହାଜ ଯୋଗେ ବନାରସ ଆସିଲେ । ସେ ବର୍ଷ ରାଜଘାଟଠାରେ ଗୋଟିଏ ପାଞ୍ଚଦିନିଆ କାମ୍ପର ଆୟୋଜନ ହୋଇଥିଲା ଓ ପ୍ରାୟ ତିନିଶହରୁ ଊର୍ଦ୍ଧ୍ୱ ବ୍ୟକ୍ତି ବିଭିନ୍ନ ସ୍ଥାନରୁ ଆସି ସେଥିରେ ଯୋଗ ଦେଇଥିଲେ । ସେଠାରେ ଆୟୋଜିତ ସଭାଗୁଡ଼ିକରେ ଭାଷଣ ଦେଇ ସାରିବା ପରେ କୃଷ୍ଣମୂର୍ତ୍ତି ରାଜଘାଟ ସ୍କୁଲ କର୍ତ୍ତୃପକ୍ଷଙ୍କ ସହିତ ସ୍କୁଲ ସମ୍ବନ୍ଧୀୟ କେତେକ ଅତ୍ୟାବଶ୍ୟକୀୟ ଆଲୋଚନା ସାରି ଋଷିଭ୍ୟାଲି ଆସିଲେ । ଋଷିଭ୍ୟାଲିରେ ପହଞ୍ଚିବାବେଳକୁ ତାଙ୍କର ଦୁର୍ବଳତା ଏତେ ବେଶୀ ବଢ଼ି ଯାଇଥିଲା ଯେ ସେ ଚାଲିବୁଲି କଲାବେଳକୁ ଓ ବିଶେଷ କରି ଶିଡ଼ିରେ ଉଠୁଥିବାବେଳେ ପଡ଼ିଯିବାର ଭୟ ରହୁଥିଲା । କିନ୍ତୁ ତା' ସତ୍ତ୍ୱେ କେହି ଯଦି ଆଗେଇ ଆସି ତାଙ୍କ ହାତ ଧରି ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲା, ତେବେ ସେ ତା'କୁ ଆଡ଼େଇ ଯିବା ପାଇଁ ଅନୁରୋଧ କରୁଥିଲେ । ଯେତେ ଦୁର୍ବଳ, ଯେତେ କ୍ଳାନ୍ତ ହୋଇଥିଲେ ସୁଦ୍ଧା ସେ ପାରୁପର୍ଯ୍ୟନ୍ତ ଅନ୍ୟର ବିନା ସାହାଯ୍ୟରେ ଚାଲିବାକୁ ଚେଷ୍ଟା କରୁଥିଲେ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ଯଦିଓ ସେ ନିଜର ସନ୍ଧ୍ୟା-ଭ୍ରମଣର ସମୟ ଅନେକ ପରିମାଣରେ କମାଇ ଦେଇଥିଲେ ତଥାପି ଅଧିକାଂଶ ଦିନ ସନ୍ଧ୍ୟାରେ ବୁଲି ବୁଲି ଭ୍ରମଣରେ ଯାଉଥିଲେ ।

ରାଜଘାଟ ଭଳି ଋଷିଭ୍ୟାଲିରେ ମଧ୍ୟ କୃଷ୍ଣମୂର୍ତ୍ତି ଅଧିକାଂଶ ସମୟ କାର୍ଯ୍ୟବ୍ୟସ୍ତ ରହୁଥିଲେ । ସେତେବେଳକୁ ପୂର୍ବ ପ୍ରସ୍ତାବିତ 'କୃଷ୍ଣମୂର୍ତ୍ତି ସେଣ୍ଟର' ଦୁଇଟି ରାଜଘାଟ ଓ ଋଷିଭ୍ୟାଲିଠାରେ ପ୍ରାୟ ଗଢ଼ା ହେବା ଉପରେ । ତେଣୁ ସେ ସମ୍ବନ୍ଧୀୟ କେତେକ ଜରୁରୀ ଆଲୋଚନା କରିବା ସଙ୍ଗେ ସଙ୍ଗେ ସେ ଭାରତ ତଥା ଭାରତ ବାହାରେ ଯେତେକ କୃଷ୍ଣମୂର୍ତ୍ତି ସ୍କୁଲ, ସେସବୁର ଶିକ୍ଷକମାନଙ୍କୁ ଡକାଇ ସ୍କୁଲଗୁଡ଼ିକର ଭବିଷ୍ୟତ କାର୍ଯ୍ୟପନ୍ଥା ନେଇ ଏକ ଜରୁରୀ ସଭା ଡକାଇଥିଲେ । ଏସବୁ କାର୍ଯ୍ୟ ଶେଷ ହେବା ବେଳକୁ ଅତ୍ୟଧିକ ପରିଶ୍ରମ ହେତୁ ତାଙ୍କର ଅବସ୍ଥା ସାଂଘାତିକ ହୋଇ ପଡ଼ିଲା । ସେତେବେଳକୁ ଦେହରେ ତାଙ୍କର ଅଧିକାଂଶ ସମୟ ଜ୍ୱର ରହୁଥିଲା । ତେଣୁ ଶେଷରେ ସେ ବାଧ୍ୟ ହୋଇ

ସିଧା ମାଡ୍ରାସ ଯିବାକୁ ନିଷ୍ପତ୍ତି ନେଲେ । ମାଡ୍ରାସରେ ପହଞ୍ଚିବା ପରେ କୃଷ୍ଣମୂର୍ତ୍ତିଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଡକ୍ଟର ପାରଚୁରେ ସେଠାକାର ଜଣେ ବଡ଼ ଡାକ୍ତରଙ୍କୁ ଡାକି ଆଣିଲେ । ସେଇଠି ପ୍ରଥମ ଥର ପାଇଁ ଡାକ୍ତରଙ୍କର ସନ୍ଦେହ ହେଲା ଯେ କୃଷ୍ଣମୂର୍ତ୍ତିଙ୍କ ପେଟ ଭିତରେ କାନ୍‌ସର୍ ହୋଇଛି । କୃଷ୍ଣମୂର୍ତ୍ତି କିନ୍ତୁ ଓଜାଇରେ ପହଞ୍ଚିବା ପୂର୍ବରୁ କୌଣସି ଚିକିତ୍ସା ଆରମ୍ଭ କରିବାକୁ ରାଜି ନ ଥିଲେ । ତା'ଛଡ଼ା ସେତେବେଳକୁ ମାଡ୍ରାସ ଭାଷଣର ସମସ୍ତ ଆୟୋଜନ ସରିଥିଲା ଏବଂ ଲୋକମାନେ ଭାରତର ବିଭିନ୍ନ ସ୍ଥାନରୁ ଆସି ମାଡ୍ରାସରେ ପହଞ୍ଚି ମଧ୍ୟ ସାରିଥିଲେ । ତେଣୁ ଡାକ୍ତରଙ୍କ ବାରଣ ସତ୍ତ୍ୱେ ଲୋକମାନଙ୍କୁ ନିରାଶ ନ କରି କ୍ରିଷ୍ଣମୂର୍ତ୍ତି ସେଠାରେ ସର୍ବମୋଟ ତିନୋଟି ଭାଷଣ ଓ ଅଳ୍ପ କେତୋଟି ପ୍ରଶ୍ନ-ଉତ୍ତର ସଭାରେ ଯୋଗ ଦେଇଥିଲେ । କିନ୍ତୁ ତା ପରେ ପରେ ଅନୁଷ୍ଠିତ ହେବାକୁ ଥିବା କ୍ରିଷ୍ଣମୂର୍ତ୍ତି ଫାଉଣ୍ଡେସନ୍ ଇଣ୍ଡିଆର ଅନ୍ୟ କେତୋଟି ସଭାକୁ ବାତିଲ କରି ସେ ୧୯୮୬ ମସିହା ଜାନୁଆରୀ ଦଶ ତାରିଖରେ ଓଜାଇ ଫେରିଯିବାକୁ ଠିକଣା କଲେ ।

ମାଡ୍ରାସର ସେହି ଶେଷ କେତୋଟି ସଭାରେ ଆଶାତୀତ ସଂଖ୍ୟକ ବ୍ୟକ୍ତି ଯୋଗଦାନ କରିଥିଲେ । ଆଉ ସବୁଥର ଭଳି ସେଥର ମଧ୍ୟ ସେ ଭାଷଣ ଶେଷ କରି ଫେରିବା ସମୟରେ ତାଙ୍କର ପାଦଧୂଳି ନେବା ଲାଗି ଲୋକେ ତାଙ୍କ ଆଡ଼କୁ ଧାଇଁ ଆସିଥିଲେ । ଟଳମଳ ପାଦରେ ଯାଉ ଯାଉ ଗୁରପଛ ମାଡ଼ି ଆସୁଥିବା ଲୋକମାନଙ୍କୁ ସେ ଅତି ବିକଳ ହୋଇ ଅନୁରୋଧ କରୁଥିଲେ "ନା...ନା.. ମୁଁ ଏସବୁ ଗୁହେଁ ନାହିଁ... ଦୟାକରି ସେସବୁ କର ନାହିଁ ।" ତାଙ୍କର ବିଦାୟୀ ଭାଷଣର ଠିକ୍ ପୂର୍ବ ରାତିରେ ଖଟରୁ ଉଠୁ ଉଠୁ କ୍ରିଷ୍ଣମୂର୍ତ୍ତି ହଠାତ୍ କଣ୍ଟୁଡ଼ି ହୋଇ ଭୂଇଁରେ ଦୁଲ କରି ପଡ଼ିଗଲେ । କାନ୍ଥ ବାଜି ମୁଣ୍ଡରେ ତାଙ୍କର ଖୁବ ଆଘାତ ଲାଗିଲା । ସେଇ ଦିନଠାରୁ ତାଙ୍କର ସେକ୍ରେଟାରୀ ପରମେଶ୍ୱରନ୍ ଜିଦ କରି ରାତିରେ ତାଙ୍କ ବଖରା ବାହାରେ ଶୋଇଲେ — କାଳେ ହଠାତ୍ କିଛି ଦରକାର ପଡ଼ିବ । ଧୀରେ ଧୀରେ ସମସ୍ତେ ଅନୁଭବ

କରିବାକୁ ଲାଗିଲେ ଯେ କୃଷ୍ଣମୂର୍ତ୍ତିଙ୍କ ଅବସ୍ଥା ଅତିଶୟ ସଙ୍ଗୀନ ହୋଇ ପଡ଼ୁଛି ।

ଜାନୁଆରୀ ୪ ତାରିଖ ଦିନ ଶ୍ରୋତାମଣ୍ଡଳୀ ଶେଷ ଥର ପାଇଁ କୃଷ୍ଣମୂର୍ତ୍ତିଙ୍କ ଭାଷଣ ଶୁଣିବାକୁ ପାଇଥିଲେ । ସେଦିନର ଭାଷଣରେ କୃଷ୍ଣମୂର୍ତ୍ତି ଜୀବନର ଉତ୍ପତ୍ତି, ଧର୍ମ, ଧ୍ୟାନରୁ ଆରମ୍ଭ କରି କମ୍ପ୍ୟୁଟର ବିଜ୍ଞାନ, ଭାବନା, ସୃଜନଶୀଳତା, ପ୍ରତିବଦ୍ଧତା ଏବଂ ମନ ଓ ମସ୍ତିଷ୍କ ମଧ୍ୟରେ ଥିବା ପ୍ରଭେଦ ଆଦି ଅନେକ ପ୍ରସଙ୍ଗ ଉପରେ ଆଲୋଚନା କରିଥିଲେ । ଭାଷଣର ଶେଷ ପର୍ଯ୍ୟାୟରେ ଜଣେ ଶ୍ରୋତାଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ ଯେ "ସୃଷ୍ଟି ଏକ ଅତୀବ ପବିତ୍ର ବସ୍ତୁ । ଜୀବନରେ ଏହା ସବୁଠାରୁ ବଳି ପବିତ୍ର ଅଟେ । ତୁମେ ଯଦି ତୁମ ଜୀବନକୁ ଅଡୁଆ ତଡୁଆ କରି ଘାଣ୍ଟି ଘୋଣ୍ଟି ଦେଇ ରଖିଥାଅ ତେବେ ତାକୁ ଆଜି ହିଁ ବଦଳାଇ ଦିଅ । କାଲି ନୁହେଁ — ଆଜି ଏଇକ୍ଷଣି ତାକୁ ବଦଳାଇ ଦିଅ । ଯଦି ତୁମଠାରେ ଅନିଶ୍ଚିତତା ଭରି ରହିଛି, ତେବେ ତାର କାରଣ ଖୋଜି ବାହାର କର । ଆଉ ତା ପରେ 'ନିଶ୍ଚିତତା' ଲାଭ କର । ତୁମର ଚିନ୍ତାଧାରା ଯଦି ସଳଖ, ନ୍ୟାୟସିଦ୍ଧ ନୁହେଁ ତେବେ ତାକୁ ସଜାଡ଼ି ନିଅ; ଯୁକ୍ତିଯୁକ୍ତ ଭାବରେ, ନ୍ୟାୟସିଦ୍ଧ ଭାବରେ ଚିନ୍ତା କରିବାକୁ ଚେଷ୍ଟା କର । କାରଣ ଏସବୁର ପ୍ରସ୍ତୁତି ବିନା ତୁମେ ଏ ସଂସାରରେ, ସୃଷ୍ଟିର ସଂସାରରେ ପାଦ ଦେଇ ପାରିବ ନାହିଁ । × × × ବାସ୍ ଏତିକି ।" (ଏହି ଶେଷ ଶବ୍ଦ ଦୁଇଟି ସେ ଏତେ ନିମ୍ନ ସ୍ୱରରେ କହିଥିଲେ ଯେ ତାହା କାହାରିକୁ ଶୁଭି ନ ଥିବ । କିନ୍ତୁ ଟେପ୍ ରେକର୍ଡରରେ ତାହା ସ୍ପଷ୍ଟ ଲିପିବଦ୍ଧ ହୋଇଛି) ତା'ପରେ ସେ କିଛି ସମୟ ନୀରବ ହୋଇ ସେମିତି ମଞ୍ଚ ଉପରେ ବସି ରହିଲେ । ସେଇଠୁ କହିଲେ, "ଏଇ ମୋର ଶେଷ ଭାଷଣ । ଟିକିଏ ଚୁପ୍‌ଚାପ୍ ଏକାଠି ବସିବା କି ? ···ଆସ ତେବେ ନୀରବରେ କିଛିବେଳ ବସିବା ।" × × × × ସଭା ଭଙ୍ଗ ହେବା ପରେ ଶ୍ରୋତାମଣ୍ଡଳୀରୁ ଗୋଟିଏ ଛୋଟ ଝିଅ ଉଠି ଆସି ଧଳା ଚମ୍ପାଫୁଲଟିଏ କୃଷ୍ଣମୂର୍ତ୍ତିଙ୍କ ହାତକୁ ବଢ଼ାଇଦେଲା । ବଡ଼ ଯତ୍ନରେ ଫୁଲଟିକୁ ତା ହାତରୁ ନେଇ କୃଷ୍ଣମୂର୍ତ୍ତି

ତାଙ୍କୁ ଚୁମ୍ବନ ଦେଇ ହସିଲେ । ହସରୁ ତାଙ୍କର ଝରି ପଡ଼ିଲା ଅସୀମ ଆଶୀର୍ବାଦ ଓ କରୁଣାର ଧାରା । ଏକ ଅବ୍ୟକ୍ତ ପବିତ୍ରତାରେ ସମଗ୍ର ସ୍ଥାନଟି ଭରି ଉଠିଲା ।

ମାଡ୍ରାସରୁ ଓହାଇକୁ ଫେରିବା ବାଟରେ ସିଙ୍ଗାପୁର ଠାରେ ଉଡ଼ାଜାହାଜ ଅଳ୍ପ ସମୟ ପାଇଁ ଅଟକିଲା । ଉଡ଼ାଜାହାଜ ଭିତରେ ଅଧା ବାଟରୁ ହିଁ କୃଷ୍ଣମୂର୍ତ୍ତିଙ୍କ ପେଟରେ ଯନ୍ତ୍ରଣା ଆରମ୍ଭ ହୋଇ ଯାଇଥିଲା । ସିଙ୍ଗାପୁରରେ ପହଞ୍ଚିବା ବେଳକୁ ସେ ଯନ୍ତ୍ରଣା ଅସହ୍ୟ ହୋଇ ଉଠିଲା । ତେଣୁ ବାଧ୍ୟ ହୋଇ ଗୋଟିଏ ଯନ୍ତ୍ରଣା ଉପଶମ ବଟିକା ଖାଇ ସେ ପ୍ଲେନ୍ ଭିତରେ ଶୋଇ ରହିଲେ । ସେତେବେଳକୁ ତାଙ୍କ ଦେହରେ ଜ୍ୱର ଭରି ଯାଇଥିଲା ଓ ସେ ଖୁବ୍ ଶେଥା ଦିଶୁଥିଲେ । ଲସ୍ ଆଞ୍ଜେଲେସ୍ ବିମାନଘାଟୀରୁ ମେରୀ ଜିମ୍ବାଲିଷ୍ଟ ତାଙ୍କୁ ଗାଡ଼ିରେ ବସାଇ ତାଙ୍କର ପ୍ରିୟ ପାଇନ୍ କଟେଜ୍‌କୁ ନେଇଗଲେ । ସେଠାରେ ବଡ଼ କଷ୍ଟରେ ସେ ଗାଡ଼ିରୁ ଓହ୍ଲାଇ ନିଜ କକ୍ଷକୁ ଗଲେ । ରାତି ସାରା ପାଳି କରି ମେରୀ ଜିମ୍ବାଲିଷ୍ଟ, ଡକ୍ଟର ପାରଚୁରେ ଓ ସ୍କଟ୍ ତାଙ୍କ ଦୁଆର ବାହାରେ ଜଗି ରହିଲେ । ସେତେବେଳକୁ କୃଷ୍ଣମୂର୍ତ୍ତିଙ୍କର ଖାଦ୍ୟର ପରିମାଣ ଅନେକ କମି ଯାଇଥିଲା, ପାଟିରୁ ସ୍ୱାଦ ଚାଲି ଯାଇଥିଲା । ସାମାନ୍ୟ ଦିନ ଜିନିଷ ତୋଳିବାରେ ସୁଦ୍ଧା ସେ କଷ୍ଟ ଅନୁଭବ କରୁଥିଲେ ।

ବିଶ୍ରାମ ନେଇ ଟିକିଏ ସୁସ୍ଥ ହେବା ପରେ ଜାନୁଆରୀ ୧୯ ତାରିଖ ଦିନ କୃଷ୍ଣମୂର୍ତ୍ତି ପାଇନ୍ କଟେଜରୁ ବାହାରି କିଛି ବାଟ ଚାଲି ଚାଲି ଭ୍ରମଣରେ ଯାଇଥିଲେ । ଭ୍ରମଣରୁ ଫେରି ଘର ସମ୍ମୁଖରେ ଥିବା ପୂର୍ବୋକ୍ତ ପିପ୍‌ପର ଗଛ ମୂଳେ କିଛି ସମୟ ବସିଥିଲେ । ଗଛଟା ଏଥି ଭିତରେ ବଡ଼ ହୋଇ ବେଶ୍ ଝଙ୍କାଳିଆ ହୋଇ ଯାଇଥିଲା । କୃଷ୍ଣମୂର୍ତ୍ତିଙ୍କର ରହସ୍ୟମୟ ଜୀବନର ଏକ ଅବିସ୍ମରଣୀୟ ସ୍ମୃତି ସେ ଗଛ ସହିତ ଜଡ଼ିତ ଥିଲା । ତହିଁ ଆର ଦିନ ମେରୀ ଜିମ୍ବାଲିଷ୍ଟ ତାଙ୍କୁ ବିଷଦ ଡାକ୍ତରୀ ପରୀକ୍ଷା ପାଇଁ ଓହାଇର ହସପିଟାଲକୁ ଗାଡ଼ିରେ

ନେଇଗଲେ । ସେଠାରେ 'ସୋନୋଗ୍ରାମ୍' କରିବାରୁ ଜଣା ପଡ଼ିଲା ଯେ କୃଷ୍ଣମୂର୍ତ୍ତିଙ୍କର ଯକୃତରେ କ'ଣ ଗୋଟାଏ ଗୋଟାଳିଆ ପଦାର୍ଥ ଦେଖା ଯାଉଛି । ସେଇଟା ପ୍ରକୃତରେ କ'ଣ ବୋଲି ନିର୍ଣ୍ଣୟ କରିବା ପାଇଁ ଡାକ୍ତର ଆସନ୍ତା ୨୪ ତାରିଖକୁ ପରୀକ୍ଷା ପାଇଁ ଦିନ ଠିକଣା କଲେ । ହସପିଟାଲରୁ ଫେରିବା ପର ଦିନ, ଅର୍ଥାତ୍ ଜାନୁଆରୀ ୨୧ ତାରିଖ ସନ୍ଧ୍ୟାରେ କୃଷ୍ଣମୂର୍ତ୍ତି ପୁଣି ଥରେ ସାନ୍ଧ୍ୟ-ଭ୍ରମଣରେ ଗଲେ । ସେଦିନ କିନ୍ତୁ ସେ ପୂର୍ବ ଦିନ ଅପେକ୍ଷା ଯଥେଷ୍ଟ ବେଶୀ ବାଟ ଚାଲିଲେ । ପୂର୍ବ ଆର୍ଯ୍ୟ ବିହାର ଚାରି ପଟେ ଘୂରି ନଈକୂଳ ଦେଇ ତାଙ୍କର ପରିଚିତ କମଳା ବଗିଚା ଭିତରେ ପଶି ସେ ପୁଣି ସେଇ ପିପ୍ପଳ ଗଛ ମୂଳକୁ ଫେରି ଆସିଲେ । ସେଠାରେ ସେ କିଛି ସମୟ ନୀରବରେ ବସିଲେ । ତାହା ଥିଲା ତାଙ୍କ ଜୀବନର ଅନ୍ତିମ ସାନ୍ଧ୍ୟ ଭ୍ରମଣ ।

୨୨ ତାରିଖ ରାତି ଅଧରୁ କୃଷ୍ଣମୂର୍ତ୍ତିଙ୍କ ପେଟର ଯନ୍ତ୍ରଣା ବଢ଼ିବାକୁ ଆରମ୍ଭ କଲା । ଯେତେ ଯାହା କଲେ ବି ଟିକିଏ ହେଲେ କମିଲା ନାହିଁ । ସାରା ରାତି ସେ ଯନ୍ତ୍ରଣାରେ ଆତୁର ହୋଇ ଛଟପଟ ହେବାରେ ଲାଗିଲେ । ଭୋର ବେଳକୁ ଗୁଡ଼ାଏ ବାନ୍ତି ହୋଇଗଲା । ଡରି ଯାଇ ମେରୀ ତାଙ୍କ ଦାୟିତ୍ୱରେ ଥିବା ଡକ୍ଟର ଡିଉସ୍‌ଙ୍କୁ ଡାକି ପଠାଇଲେ । ସେ ଆସି କୃଷ୍ଣମୂର୍ତ୍ତିଙ୍କ ଅବସ୍ଥା ଦେଖି ବୁଝି ପାରିଲେ ଯେ ତାଙ୍କୁ ହସପିଟାଲ ନେବା ଛଡ଼ା ଅନ୍ୟ ଉପାୟ ନାହିଁ । କୃଷ୍ଣମୂର୍ତ୍ତି ଆଗରୁ ସଦାବେଳେ କହି ଆସୁଥିଲେ ଯେ ଶେଷ ଅବସ୍ଥାରେ ତାଙ୍କୁ ଯେମିତି କେହି ହସପିଟାଲରେ ଭର୍ତ୍ତି ନ କରାନ୍ତି । ଏବେ କିନ୍ତୁ ଅବସ୍ଥାର ସଙ୍ଗୀନତା ଦୃଷ୍ଟିରୁ ମେରୀ ତାଙ୍କୁ ହସପିଟାଲ ନେବା ଲାଗି ତାଙ୍କର ଅନୁମତି ଲୋଡ଼ିଲେ । ତାଙ୍କ ମୁହଁକୁ କିଛି କ୍ଷଣ ନୀରବରେ ଚାହିଁ କୃଷ୍ଣମୂର୍ତ୍ତି ରାଜି ହୋଇଗଲେ ।

ଓହାଇଠାରୁ ୧୬ ମାଇଲ ଦୂରରେ ଅବସ୍ଥିତ 'ସାଣ୍ଟାପଲ କମ୍ୟୁନିଟି' ହସପିଟାଲରେ କୃଷ୍ଣମୂର୍ତ୍ତିଙ୍କୁ ଭର୍ତ୍ତି କରାଗଲା । ସେଠାରେ ଏକ୍ସ-ରେ' କରି ଜଣାଗଲା ଯେ ତାଙ୍କ ଖାଦ୍ୟନଳୀର ତଳପଟେ

ଅବରୋଧ ଘଟି ମଳତ୍ୟାଗରେ ବାଧା ସୃଷ୍ଟି ହେଉଛି । ତେଣୁ ପମ୍ପ ଦ୍ୱାରା ଅବରୋଧକୁ ଦୂର କରିବାକୁ ଡାକ୍ତର ତାଙ୍କ ନାକ ଭିତରେ ନଳୀ ଦେଇ ସେଇ ଅବସ୍ଥାରେ କିଛି ଦିନ ରଖାଇଲେ । ଏଣେ ସିରିଞ୍ଜ ଦ୍ୱାରା ରକ୍ତକୁ ଖାଦ୍ୟ ଯୋଗାଇ ଦିଆ ଯାଉଥିଲା । ଗୋଟି ଗୋଟି କରି ଏ ପ୍ରତ୍ୟେକଟି ପ୍ରକ୍ରିୟା ଭୀଷଣ କଷ୍ଟଦାୟକ ଥିଲା; କୃଷ୍ଣମୂର୍ତ୍ତି କିନ୍ତୁ ନୀରବରେ ସେସବୁ ସହ୍ୟ କରି ଯାଉଥିଲେ । ଥରେ ଖାଲି ମୁହଁ ଫିଟାଇ ସ୍କଟଙ୍କୁ କହିଥିଲେ, "ହଁ, ମତେ ଏସବୁ ଯେମିତି ହେଲେ ସହିବାକୁ ପଡ଼ିବ । ଆଜି ଯାଏ ତ' ପୁଣି ଏତେ ସହ୍ୟ କରି ଆସିଲି ।" ବହୁତ ଦିନ ପୂର୍ବେ ଡକ୍ଟର ପାରଚୁରେ କୃଷ୍ଣମୂର୍ତ୍ତିଙ୍କୁ କଥା ଦେଇଥିଲେ ଯେ ଯେତେବେଳେ ସେ ସନ୍ଦେହ କରିବେ କୃଷ୍ଣମୂର୍ତ୍ତିଙ୍କର ଜୀବନର ଶେଷ ଅବସ୍ଥା ଆସିଗଲାଣି ସେତେବେଳେ ଆଉ ବିଳମ୍ବ ନ କରି ସେ ତତ୍‌କ୍ଷଣାତ୍ ତାଙ୍କୁ ଜଣାଇ ଦେବେ । ଏବେ ଡକ୍ଟର ପାରଚୁରେ ବୁଝି ପାରିଲେ ଯେ ସେହି ସମୟ ଆସି ଯାଇଛି — ଯେ କୌଣସି ମୁହୂର୍ତ୍ତରେ କୃଷ୍ଣମୂର୍ତ୍ତିଙ୍କର 'କୋମା' ବା ଅଚେତ ଅବସ୍ଥା ଆସିଯାଇ ପାରେ । ତେଣୁ କୃଷ୍ଣମୂର୍ତ୍ତିଙ୍କୁ ନିଜର ଆଶଙ୍କା ଜଣାଇ ସେ କହିଲେ ଯେ ଡାକ୍ତରୀ ରିପୋର୍ଟରୁ ତାଙ୍କର ଅଗ୍ନାଶୟରେ କ୍ୟାନସର୍ ହୋଇଛି ବୋଲି ଜଣା ପଡ଼ୁଛି, ଆଉ ତା'ର ପ୍ରଭାବରେ ତାଙ୍କର ଯକୃତର ଆକାର ଅତ୍ୟଧିକ ବଢ଼ିଯିବା ସଙ୍ଗେ ସଙ୍ଗେ ଅନ୍ତ୍ରନାଳୀରେ ଏକ ମାଂସଳ ବୃଦ୍ଧି ମଧ୍ୟ ଘଟିଛି ।

ସେଦିନ କୃଷ୍ଣମୂର୍ତ୍ତି ଡକ୍ଟର ପାରଚୁରେଙ୍କୁ କୌଣସି ଉତ୍ତର ଦେଇ ନ ଥିଲେ । ମାତ୍ର ତା' ପର ଦିନ ମେରୀ ଓ ସ୍କଟଙ୍କୁ ଦେଖି ସେ କହିଥିଲେ, "ଏଥର ବୋଧହୁଏ ମୋର ସମୟ ଆସିଗଲା...... କିନ୍ତୁ ବୁଝି ପାରୁ ନାହିଁ ସେଇ 'ଆଉକ'ଟି କାହିଁକି ଏ ଶରୀରକୁ ଛାଡ଼ିବା ପାଇଁ ନାରାଜ ।" ତାଙ୍କ କଥାରୁ ମନେ ହେଉଥିଲା ଯେ ସେହି 'ଅଦ୍ଭୁତ ଶକ୍ତି' ଯେପରି ମୃତ୍ୟୁକୁ ସ୍ୱୀକାର କରିବା ପାଇଁ ଆଦୌ ରାଜି ହେଉ ନାହିଁ । ସେ ପୁଣି କହିଥିଲେ, "ସତରେ 'ସେଇଟା' ଅତି ଅଦ୍ଭୁତ । ମୁଁ ଖାଲି ତାକୁ ନୀରବରେ ଲକ୍ଷ୍ୟ କରି ଚାଲିଛି......ମୃତ୍ୟୁ ଓ 'ସେଇଟି' ମଧ୍ୟରେ ଏକ ସଂଗ୍ରାମ ଚାଲିଛି ।" × × × × ଏ ଘଟଣାର ଦୁଇ

ଦିନ ପରେ ଚୂଡ଼ାନ୍ତ ରିପୋର୍ଟ ଆସିଲା ଯେ କୃଷ୍ଣମୂର୍ତ୍ତିଙ୍କର ଅଗ୍ନ୍ୟାଶୟରେ କାନସର ଅନେକ ଦୂର ମାଡ଼ି ଯାଇଛି । ଅପରେସନ୍ କଲେ ମଧ୍ୟ ଭଲ ହେବାର କୌଣସି ଆଶା ନାହିଁ । ତା'ର ପ୍ରଭାବରେ ଯକୃତ ଓ ଅନ୍ନନାଳୀ ପ୍ରଭୃତି ଆକ୍ରାନ୍ତ ହୋଇ ସାରିଛି ।

ହସପିଟାଲରେ କଟାଇ ଥିବା ସେଇ କେତେ ଦିନ ଡାକ୍ତର କୃଷ୍ଣମୂର୍ତ୍ତିଙ୍କୁ ଅଧିକାଂଶ ସମୟ ନିଦ ଇଞ୍ଜେକସନ୍ ଦେଇ ଶୁଆଇ ରଖୁଥିଲେ । ତାଙ୍କର ନାକ, ହାତ ଓ ବେକ ତଳେ ମୋଟା ମୋଟା ନଳୀରେ ଦେହ ଭିତରକୁ ଖାଦ୍ୟ ଓ ଔଷଧ ଦିଆ ଯାଉଥିଲା । ଇଞ୍ଜେକସନର ନିଶା ଟିକିଏ କଟିବା ମାତ୍ରକେ ପୁଣି ଯନ୍ତ୍ରଣା ଆରମ୍ଭ ହୋଇ ଯାଉଥିଲା । ଏଭଳି ଅବସ୍ଥାରେ ସେ ପୂରା ନ' ଦିନ ହସପିଟାଲରେ କଟାଇଥିଲେ । ସେତେବେଳେ ଡାକ୍ତରଙ୍କର କୌଣସି କଥାରେ ପ୍ରତିବାଦ ନ କରି ତାଙ୍କର ସବୁ ଚିକିତ୍ସାକୁ ସେ ମାନି ନେଉଥିଲେ । କୃଷ୍ଣମୂର୍ତ୍ତିଙ୍କର ଏକମାତ୍ର ଇଚ୍ଛା ଥିଲା ଯେ ଜୀବନର ଶେଷ ଦିନ କେତୋଟି ହସପିଟାଲରେ ନ ରହି ପାଇନ୍ କଟେଜକୁ ଫେରି ଆସିବେ । ତେଣୁ ଡାକ୍ତରଙ୍କ ଅନୁମତି ନେଇ ଜାନୁଆରୀ ୩୦ ତାରିଖ ସକାଳେ ସେ ହସପିଟାଲ ଛାଡ଼ି ପାଇନ କଟେଜକୁ ପୁଣି ଫେରି ଆସିଲେ ସିନା, ହେଲେ ବିଛଣାରୁ ଉଠିବାକୁ ତାଙ୍କର ଆଉ ବଳ ନ ଥିଲା । ଦୁଇ ହାତରେ ସେମିତି ମୋଟା ମୋଟା ନଳୀ ଲାଗି ରହିଥିଲା । ଔଷଧ ବୋତଲ ଝୁଲାଇ ରଖିବା ପାଇଁ ଏକ ସ୍ୱତନ୍ତ୍ର ଖଟିଆ ହସପିଟାଲରୁ ମଗା ହୋଇ ଘରେ ପଡ଼ିଲା । ଘରେ ପହଞ୍ଚି କୃଷ୍ଣମୂର୍ତ୍ତି ଆଗ କିଛି ଟିକିଏ ଖାଇବାକୁ ମାଗିଲେ । ଗୋଟିଏ ଟମାଟୋ ସାଣ୍ଡଉଇଚ୍‌ରୁ କାମୁଡ଼ାଏ ଓ ଆଇସ୍‌କ୍ରିମ୍‌ରୁ ଟିକିଏ ପାଟିରେ ଦେବା ପରେ ସେ ଆଉ ଖାଇ ପାରିଲେ ନାହିଁ, ଆଡ଼େଇ ରଖିଦେଲେ ।

କୃଷ୍ଣମୂର୍ତ୍ତିଙ୍କ ଶେଷାବସ୍ଥାର ସମ୍ବାଦ ପାଇ ମେରୀ ଲ୍ୟୁଟେନ୍‌ସ୍, ମେରୀ କାଡୋଗାନ, ଡରୋଥି ସିମନ୍‌ସ୍ ତଥା ଭାରତରୁ ପୁପୁଲ ଜୟକର, ତାଙ୍କ ଝିଅ ରାଧିକା ହର୍ଜବର୍ଗର୍, ପୁତୁରା ଅସୀତ ଚନ୍ଦ୍ରମଲ ଏବଂ

ମହେଶ୍ ସାକ୍ସେନା ପ୍ରଭୃତି ଜଣ ଜଣ କରି ଓହ୍ଲାଇରେ ପହଞ୍ଚିବାରେ ଲାଗିଲେ । କୃଷ୍ଣମୂର୍ତ୍ତି ବଡ଼ ଅସହାୟ ଅବସ୍ଥାରେ ବିଛଣାରେ ପଡ଼ି ରହିଥାନ୍ତି । ମୁଣ୍ଡର ଧୋବ ଫରଫର ଅସଜଡ଼ା ବାଳ ତକିଆ ଉପରେ ଖେଳେଇ ହୋଇ ପଡ଼ିଥାଏ । ସାମନାର ଖୋଲା ଝରକା ବାଟେ ପିପ୍ପଳ ଗଛଟା ଖଣ୍ଡ ଉପରୁ ସ୍ପଷ୍ଟ ଦିଶୁଥାଏ । ଅଧିକାଂଶ ସମୟ କୃଷ୍ଣମୂର୍ତ୍ତିଙ୍କୁ ଔଷଧ ଦେଇ ନିଦରେ ଶୁଆଇ ରଖା ଯାଉଥାଏ, ଆଉ ଯେତିକି ସମୟ ସେ ଚେତାରେ ରହୁଥାନ୍ତି ଖୁବ୍ ସତେଜ ପ୍ରଫୁଲ୍ଲ ହୋଇ କଥାବାର୍ତ୍ତା କରୁଥାନ୍ତି । ରାଧିକାଙ୍କୁ ଦେଖି ସେ ବଡ଼ ଉତ୍ସୁକ ହୋଇ ପଚାରିଲେ, "ଋଷିଭ୍ୟାଲିରେ ଏଥର ବର୍ଷା କେମିତି ହୋଇଛି ?"

ଫେବୃଆରୀ ମାସ ୩ ତାରିଖ । ସକାଳୁ ତାଙ୍କ ଅବସ୍ଥାରେ ଟିକିଏ ଉନ୍ନତି ହେବା ପରି ମନେ ହେଲା । ଯନ୍ତ୍ରଣା ବି ଅନେକ କମି ଯାଇଥିଲା । ସେଦିନ ଉଭୟ ଭାରତ ଓ ଇଂଲଣ୍ଡ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ପ୍ରକାଶନ ଦାୟିତ୍ୱରେ ଥିବା ସଦସ୍ୟମାନଙ୍କୁ ଏକାଠି କରି ସେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଆଲୋଚନା କରି ବସିଲେ । କୃଷ୍ଣମୂର୍ତ୍ତିଙ୍କ ରଚନାବଳୀର ପ୍ରକାଶନ ଦାୟିତ୍ୱ ନେଇ ଏଥି ପୂର୍ବରୁ ବହୁ ବର୍ଷ ଧରି ଇଂଲଣ୍ଡ ଓ ଭାରତ ଫାଉଣ୍ଡେସନ ମଧ୍ୟରେ ଭିଡ଼ା ଓଟରା ଚାଲିଥିଲା । କେତେ ଜଣ ଭାରତୀୟ ସଦସ୍ୟଙ୍କ ଯୁକ୍ତି ଥିଲା ଯେ କୃଷ୍ଣମୂର୍ତ୍ତି ମୌଳିକତଃ ଜଣେ ଭାରତୀୟ ହୋଇଥିବାରୁ ତାଙ୍କର ଶିକ୍ଷା ଓ ଦର୍ଶନକୁ ଭାରତୀୟମାନେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ହୃଦୟଙ୍ଗମ କରି ପାରିବେ । ସେହି ଯୁକ୍ତି ବାଡ଼ି ସେମାନେ କୃଷ୍ଣମୂର୍ତ୍ତିଙ୍କ ପ୍ରକାଶନ ଉପରେ ଭାରତୀୟ ଫାଉଣ୍ଡେସନର ଦାବୀ ଅଧିକ ବୋଲି କହୁଥିଲେ । ମାତ୍ର କୃଷ୍ଣମୂର୍ତ୍ତି ନିଜକୁ କେବେହେଲେ କୌଣସି ନିର୍ଦ୍ଦିଷ୍ଟ ଦେଶ ବା ଜାତିର ବୋଲି ବିଚାରୁ ନ ଥିଲେ । ତାଙ୍କର ଶିକ୍ଷା ଓ ଜୀବନ ତତ୍ତ୍ୱ ସମଗ୍ର ମାନବ ଜାତି ନିମନ୍ତେ ଉଦ୍ଦିଷ୍ଟ ଥିଲା; ତା' ଉପରେ ସମସ୍ତଙ୍କର ସମାନ ଅଧିକାର ଥିଲା । ଏବେ ମୃତ୍ୟୁର ଦ୍ୱାରଦେଶରେ ଛିଡ଼ା ହୋଇ ସେଇ ସମସ୍ୟା ଉପରେ ଏକ ପୂର୍ଣ୍ଣଚ୍ଛେଦ ଟାଣିବାକୁ ଯାଇ କୃଷ୍ଣମୂର୍ତ୍ତି ତା'ର ଦାୟିତ୍ୱଟି ନିଜ ମୁଣ୍ଡକୁ ନେଇଗଲେ । ଉପସ୍ଥିତ ସମସ୍ତ ବନ୍ଧୁ ଓ

ଫାଉଣ୍ଡେସନର ସଭ୍ୟମାନଙ୍କ ସମ୍ମୁଖରେ ସେ ଘୋଷଣା କଲେ ଯେ ଭବିଷ୍ୟତରେ ତାଙ୍କର ସମସ୍ତ ରଚନାର ସମ୍ପାଦନା ଓ ପ୍ରକାଶନର ଦାୟିତ୍ୱ ଏକମାତ୍ର ଇଂଲଣ୍ଡ ଫାଉଣ୍ଡେସନ ଉପରେ ନ୍ୟସ୍ତ ରହିବ । ଭାରତୀୟ ଫାଉଣ୍ଡେସନ କେବଳ ତାକୁ 'ପେପର ବ୍ୟାକ୍' ମୁଦ୍ରଣରେ ଭାରତରେ ପ୍ରକାଶ କରି ପାରିବ । ଏହା ବ୍ୟତୀତ ଭାରତୀୟ ଫାଉଣ୍ଡେସନ ମୁଖ୍ୟତଃ ତାଙ୍କର ପୁସ୍ତକଗୁଡ଼ିକୁ ଇଂରାଜୀରୁ ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରିବା ନେଇ ସମ୍ପୃକ୍ତ ରହିବ । କ୍ରିଷ୍ଣମୂର୍ତ୍ତିଙ୍କର ଏତାଦୃଶ ନିଷ୍ପତ୍ତିରେ ଭାରତୀୟ ଫାଉଣ୍ଡେସନର କେତେକ ସଦସ୍ୟଙ୍କ ମନରେ ନୈରାଶ୍ୟ ଦେଖାଦେଲା । କେହି କେହି ସନ୍ଦେହ ମଧ୍ୟ କଲେ ଯେ ତାଙ୍କ ଉପରେ ନୈତିକ ଚାପ ପକାଇ ଏଭଳି ବ୍ୟବସ୍ଥା କରାଯାଇଛି । ମାତ୍ର ବାସ୍ତବରେ ଏ ନିଷ୍ପତ୍ତି ଥିଲା ତାଙ୍କର ଏକାନ୍ତ ନିଜସ୍ୱ । ସେ କହିଥିଲେ ଯେ "ଦେଖ, ମୁଁ ପୁଣି ଥରେ ତମମାନଙ୍କୁ କହି ରଖୁଛି । ତମ ଭିତରୁ କାହାରି ବାଧ ବାଧକତାରେ ବା କାହାରି ଦ୍ୱାରା ପ୍ରଭାବିତ ହୋଇ ମୁଁ ଏ ନିଷ୍ପତ୍ତି ନେଇ ନାହିଁ । କେହିହେଲେ ମତେ କିଛି ବୁଝାଇ ନାହିଁ । ଏହାପରେ ତମମାନଙ୍କର ଏଥିନେଇ ଆଉ କିଛି କରିବାର ମଧ୍ୟ ନାହିଁ । ବାସ୍, ଏତିକି ହିଁ କଥା ।"

ଶଯ୍ୟାଶାୟୀ ହେଲେ ସୁଦ୍ଧା କ୍ରିଷ୍ଣମୂର୍ତ୍ତି ନିଜ ଶରୀର ପ୍ରତି ଦିନେ ସୁଦ୍ଧା ହେଳା କରି ନ ଥିଲେ । ଦାନ୍ତକୁ ସୁସ୍ଥ ରଖିବା ପାଇଁ ସେ ଅଭ୍ୟାସ କରି ପ୍ରତିଦିନ ସକାଳେ ଦାନ୍ତ ସଫା କରିବା ପରେ କିଛି ଟିକିଏ ଘେଞ୍ଚିବାଉ ଥିଲେ । ରୋଜ୍ ସକାଳେ ଖଟରେ ବସି ଚକ୍ଷୁ-ସଞ୍ଚାଳନ ବ୍ୟାୟାମ କରୁଥିଲେ ଏବଂ ଫୁସ୍‌ଫୁସ୍‌କୁ ସୁସ୍ଥ ରଖିବା ପାଇଁ ଏକ ପ୍ରକାର ଫୁଙ୍କିବା ବ୍ୟାୟାମ କରୁଥିଲେ । ତାଳୁରେ ତାଙ୍କର ପ୍ରତିଦିନ ଅଳିଭ ତେଲ ବା ଆଲମଣ୍ଡ ତେଲ ମାଲିସ କରାଯାଉଥିଲା ଏବଂ ପ୍ରତିଦିନ ସକାଳେ ଦେହ ହାତ ପରିଷ୍କାର ଭାବରେ ପୋଛିପୋଛି କରାଯାଇ ଲୁଗାପଟା ବଦଳା ଯାଉଥିଲା । ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ନିଜ ଶରୀରକୁ ଦିନକ ପାଇଁ ସୁଦ୍ଧା ହତାଦର କରି ନ ଥିଲେ ।

୪ ତାରିଖ ଉପର ବେଳା କୃଷ୍ଣମୂର୍ତ୍ତି ଟିକିଏ ସୁସ୍ଥ ଦିଶୁଥିଲେ । ତାଙ୍କର ଅନୁରୋଧରେ ସ୍କଟ୍ ଓ ଡାକ୍ତର ପାରଚୁରେ ତାଙ୍କୁ ବିଛଣାରୁ ଉଠାଇ ଏକ ଚକଲଗା ଚଉକି ସାହାଯ୍ୟରେ ଘର ସାମନାର ପିପ୍ପଳ ଗଛ ମୂଳକୁ ନେଇ ଯାଇଥିଲେ । ସେତେବେଳେ ବି ଗଳା ତଳକୁ ତାଙ୍କର ଡ୍ରପ୍ ବୋତଲ ଲାଗି ରହିଥିଲା ଓ ବୋତଲଟିକୁ ଚଉକିର ବାଡ଼ାରେ ଝୁଲାଇ ରଖା ଯାଇଥିଲା । ସେହି ଅବସ୍ଥାରେ ସେ ପିପ୍ପଳ ଗଛ ମୂଳେ ଏକାକୀ କିଛି ସମୟ ବସି ରହିଲେ । ସାମନାରେ ତାଙ୍କର ଓହାଇ ଉପତ୍ୟକାର ବିସ୍ତୃତ ପ୍ରାନ୍ତର ଓ ଅନନ୍ତ ଦୂରରେ ଉଚ୍ଚ ପର୍ବତମାଳା ଅତି ସ୍ପଷ୍ଟ ଦିଶୁଥିଲା । ସେଇଠି ବସି ଏ ସୁନ୍ଦର ପୃଥିବୀଠାରୁ ସେ ନିଜର ମେଲାଣି ମାଗୁଥିଲେ ଅବା !

ତହିଁ ଆର ଦିନ, ଫେବୃଆରୀ '୫ ତାରିଖ । କୃଷ୍ଣମୂର୍ତ୍ତିଙ୍କୁ ଦେଖିବାକୁ ଆସିଥିବା ସମସ୍ତ ବନ୍ଧୁଙ୍କୁ ସେ ନିଜର କକ୍ଷ ଭିତରକୁ ଡକାଇଲେ । ସେଦିନ ସେମାନଙ୍କୁ ଯାହାସବୁ ସେ କହିଲେ, ତାଙ୍କରି ଅନୁରୋଧରେ ତାହା ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଟେପ୍ ଦ୍ୱାରା ସଂଗୃହୀତ ହୋଇ ରହିଲା । ଡାକ୍ତର ଡଇଚ୍ କୃଷ୍ଣମୂର୍ତ୍ତିଙ୍କୁ ତାଙ୍କ ଅବସ୍ଥା ସମ୍ପର୍କରେ ଯାହା ସବୁ କହିଥିଲେ ସେସବୁକୁ ସଂକ୍ଷେପରେ ଉଲ୍ଲେଖ କରି ସେ କହିଲେ ଯେ ଏଇ ଅବସ୍ଥାରେ ସେ ଆହୁରି ମାସେ କି ଦୁଇ ମାସ ହୁଏତ ବଞ୍ଚି ରହି ପାରନ୍ତି; ମାତ୍ର ତା' ଦ୍ୱାରା ସେ ଆଉ ଆଗ ଭଳି ବିଭିନ୍ନ ସ୍ଥାନକୁ ଯାତ୍ରା କରି ପାରିବେ ନାହିଁ କି ବୁଲି ବୁଲି ଭାଷଣ ମଧ୍ୟ ଦେଇ ପାରିବେ ନାହିଁ । ଏକଥା କହିବା ବେଳେ କୃଷ୍ଣମୂର୍ତ୍ତିଙ୍କର ଯନ୍ତ୍ରଣା ଏକବାରେ ବନ୍ଦ ହୋଇ ଯାଇଥିଲା । ସେ ଆହୁରି ମଧ୍ୟ କହିଲେ ଯେ "ମୋର ମସ୍ତିଷ୍କ ଏବେ ସମ୍ପୂର୍ଣ୍ଣ ପ୍ରଖର ଅଛି — ପୂର୍ବ ମାତ୍ରାରେ କାର୍ଯ୍ୟକ୍ଷମ ଅଛି......ଯେତେ ଦିନ ଯାଏ ଏ ଶରୀରରେ ପ୍ରାଣ ଥିବ ସେତେ ଦିନ ଯାଏ ମୁଁ ଶିକ୍ଷାଦାନ ହିଁ କରୁଥିବି । ଭାଷଣ ମଞ୍ଚରେ ବସିଥିବାବେଳେ ଏ କୃଷ୍ଣମୂର୍ତ୍ତି ଯାହା ଥାଏ ବର୍ତ୍ତମାନ ମଧ୍ୟ ଠିକ୍ ତାହା ହିଁ ରହିଛି...ଏବେ ସୁଦ୍ଧା ମୁଁ ଏ ସମସ୍ତ ସ୍କୁଲ, ଫାଉଣ୍ଡେସନ ଆଦିର ମୁଖ୍ୟ ରହିଛି...ହଁ, ଏବେ ବି ରହିଛି । ଆଉ ଏଇକଥା ମୁଁ ଆଜି ତମ

ସମସ୍ତଙ୍କ ଆଗରେ ଖୋଲାଖୋଲି ଜଣାଇ ଦେବାକୁ ଚାହୁଁଛି ଯେ ଯେତେଦିନ ପର୍ଯ୍ୟନ୍ତ କୃଷ୍ଣମୂର୍ତ୍ତିର ଶରୀରରେ ପ୍ରାଣ ରହିଛି ସେତେଦିନ ପର୍ଯ୍ୟନ୍ତ ସ୍ୱୟଂ କୃଷ୍ଣମୂର୍ତ୍ତି ହିଁ ରହିଛନ୍ତି । ଏହା ନିରାଟ ସତ୍ୟ ଅଟେ । ମୋ ଭିତରେ ଚମତ୍କାର ସ୍ୱପ୍ନମାନ ଖେଳୁଛି । ସ୍ୱପ୍ନ ନୁହେଁ ଯେ — ଯାହା କରୁ ଘଟୁଛି ସେଇସବୁ । ଆଉ ଖାସ୍ ସେଇଥି ପାଇଁ ମୁଁ ଆଜି ତୁମମାନଙ୍କୁ ଡାକି ଏସବୁ କହୁଛି ।"

ତାପରେ ସେମାନଙ୍କୁ ସେଠାରେ ରହି ଆଉ ଅଯଥା ସମୟ ନଷ୍ଟ ନ କରିବାକୁ ବାରମ୍ବାର ଅନୁରୋଧ କରି କୃଷ୍ଣମୂର୍ତ୍ତି କହିଥିଲେ — "ଆଉ ବୃଥାଟାରେ ଏଠି ବସି ରହି ତମ ସମୟ ନଷ୍ଟ କର ନାହିଁ । ତମେ ତ ଜାଣୁଛ ଯେ ମତେ କୌଣସି ପ୍ରକାରେ ସାହାଯ୍ୟ କରି ପାରିବ ନାହିଁ, ମୋର ଏ ଶରୀରକୁ ବଞ୍ଚାଇ ରଖି ପାରିବ ନାହିଁ···କିନ୍ତୁ ତୁମମାନଙ୍କୁ ମୋର ଗୋଟିଏ ଅନୁରୋଧ — ମୋ ପାଇଁ ତମେ ଗୋଟିଏ ଉପକାର କରିବ କି ? ଏ ଶରୀରର ଉପକାର ନୁହେଁ, ଏ ଶିକ୍ଷା ପ୍ରତି ଗୋଟିଏ ଅନୁଗ୍ରହ କରିବାକୁ କହୁଛି । ଏତିକି ଦେଖିବ, ଏ ଶିକ୍ଷା ଭିତରକୁ କୌଣସି ଉତ୍ତରାଧିକାରୀ-ସୂତ୍ର ପୂରାଇ ଦେବ ନାହିଁ । କୌଣସି ପଣ୍ଡିତ, ପୁରୋହିତ, ପୂଜା ଅର୍ଚ୍ଚନାର ପୀଠ ବା ସ୍ୱୀକୃତ ମତକୁ ନେଇ ଏ ଶିକ୍ଷାକୁ ଯୋଡ଼ି ବସିବ ନାହିଁ ।" × × × ×

କୃଷ୍ଣମୂର୍ତ୍ତିଙ୍କ ଅନୁରୋଧ ରକ୍ଷା କରି ବନ୍ଧୁମାନେ ଧୀରେ ଧୀରେ ଯେ ଯାହା ଦେଶକୁ ଫେରିଗଲେ । ଡାକ୍ତର ପାରଚୁରେ, ସ୍କଟ୍, ମେରୀ ଜିମ୍ବାଲିଷ୍ଟ ଓ ମହେଶ ସାକ୍‌ସେନା ପ୍ରଭୃତି ଅଳ୍ପ କେତେ ଜଣ ତାଙ୍କ ପାଖରେ ରହିଲେ । ସେତେବେଳକୁ କୃଷ୍ଣମୂର୍ତ୍ତିଙ୍କୁ ଡାକ୍ତର ଅଧିକାଂଶ ସମୟ ମରଫିନ ନିଶା ଦେଇ ଶୁଆଇ ରଖୁଥିଲେ । ନିଶା କଟିଗଲେ ପେଟ ଭିତରେ ପୁଣି ଯନ୍ତ୍ରଣା ଆରମ୍ଭ ହୋଇ ଯାଉଥିଲା । ଏମିତି ଅବସ୍ଥାରେ ଫେବୃଆରୀ ମାସ ମଝି ଯାଏ ଗଡ଼ିଗଲା । ଫେବୃଆରୀ ୧୫ ତାରିଖ ରାତି ଦିନଟାରୁ ହଠାତ୍ କୃଷ୍ଣମୂର୍ତ୍ତିଙ୍କ ଅବସ୍ଥା ଖରାପ ଆଡ଼କୁ ଗତି କଲା । ଯନ୍ତ୍ରଣା ଅସମ୍ଭବ ଭାବରେ ବଢ଼ିଗଲା । ନିଶା ଔଷଧ ବା

କୌଣସି ଇଞ୍ଜେକସନ୍ ମଧ୍ୟ କାମ ଦେଲା ନାହିଁ । ୧୬ ତାରିଖ ପୂର୍ବାହ୍ନ ଦିନଟା ସେମିତି ପ୍ରବଳ ଯନ୍ତ୍ରଣା ଭିତରେ କଟିଲା । କୃଷ୍ଣମୂର୍ତ୍ତି ଯାହା ପର୍ଯ୍ୟନ୍ତ କଷ୍ଟ ସହିବାକୁ ଚେଷ୍ଟା କରୁଥିଲେ । ସନ୍ଧ୍ୟା ପ୍ରାୟ ସାତଟା ପାଖାପାଖି କଷ୍ଟ ଟିକିଏ କମିବା ଭଳି ମନେ ହେଲା । ଆଉ ଗୋଟିଏ ନିଦ ବଟିକା ଦେଇ ଡାକ୍ତର ତାଙ୍କୁ ଶୁଆଇ ଦେବାର ଚେଷ୍ଟା କଲେ । ପାଖରେ ଜଗି ବସିଲେ ସେଇ ତିନି ଜଣ ବନ୍ଧୁ — ମେରି ଜିମ୍ବାଲିଷ୍ଟ, ସ୍କଟ୍ ଓ ପାରଚୁରେ । ନିଦ ବଟିକା ଖାଇ ସାରିବା ପରେ କୃଷ୍ଣମୂର୍ତ୍ତି ସେମାନଙ୍କୁ ଯେ ଯାହା କକ୍ଷରେ ବିଶ୍ରାମ କରିବାକୁ ବାରମ୍ବାର ଅନୁରୋଧ କଲେ । ଅଳ୍ପ ସମୟ ଭିତରେ ତାଙ୍କୁ ନିଦ ଘୋଟି ଆସିଲା ଆଉ ଧୀରେ ଧୀରେ ସେଇ ଗଭୀର ନିଦ 'କୋମା' ବା ଚେତାହୀନତାରେ ପରିଣତ ହେଲା । ପ୍ରଶ୍ୱାସର ବେଗ କମି କମି ଆସିଲା । ଖଟ ପାଖରେ ଡାକ୍ତର ଡିଉସ୍ ଓ ପୂର୍ବୋକ୍ତ ବନ୍ଧୁ ତିନି ଜଣ ଉଦବିଗ୍ନ ହୋଇ ବସି ରହିଲେ ।

ରାତି ଠିକ୍ ବାରଟା ବାଜି ଦଶ ମିନିଟ । ତାଙ୍କର ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଇଗଲା । ଏକାନବେ ବର୍ଷର ଅପ୍ରତିହତ ସଜାଗତା, ସଚେତନତା ସେଇଠି ଅନ୍ତ ଲଭିଲା ।

ମୃତ୍ୟୁ ଶଯ୍ୟାରେ ଥାଇ କୃଷ୍ଣମୂର୍ତ୍ତି ନିଜର ଶବ ସଂସ୍କାର ଓ ମୃତ୍ୟୁପର କ୍ରିୟାକର୍ମ ନେଇ କେତେକ ଗୁରୁତ୍ୱପୂର୍ଣ୍ଣ ସୂଚନା ଦେଇ ଯାଇଥିଲେ । ସେ ବାରମ୍ବାର କହି ରଖିଥିଲେ ଯେ ମୃତ୍ୟୁ ପରେ ତାଙ୍କୁ ନେଇ ବା ସେ ବ୍ୟବହାର କରୁଥିବା କୌଣସି ବସ୍ତୁ ଅଥବା ବାସଗୃହକୁ ନେଇ ଯେପରି ଉପାସନା ପୀଠ ବା ତୀର୍ଥଭୂମିର ପ୍ରହସନ କରି ନ ଯାଏ; ଶବଦାହ ସମୟରେ ଯେପରି କୌଣସି ଧରଣର ପ୍ରଥା ପରମ୍ପରା ଅନୁସରଣ କରି ନ ଯାଏ । ଅତି ସାଧାରଣ ଭାବରେ ବୈଦ୍ୟୁତିକ ଚୁଲ୍ଲୀରେ ତାଙ୍କର ଶବଦାହ ହେଉ ବୋଲି ଇଚ୍ଛା ପ୍ରକାଶ କରି ସେ କହିଥିଲେ ଯେ ମୃତ୍ୟୁ ପରେ ତାଙ୍କର ମୃତ ଶରୀରକୁ କେହି ଯେପରି ଆସି ସମ୍ମାନ ନ ଦେଖାଏ, ଚନ୍ଦନ ଆଦି ପ୍ରଲେପ ନ ଦିଏ । ଏପରିକି ମୂଲ୍ୟବାନ କମ୍ବଳରେ ତାଙ୍କ ମୃତ ଶରୀରକୁ ଆଚ୍ଛାଦନ କରି ସେଗୁଡ଼ିକୁ ନଷ୍ଟ ନ କରିବାକୁ ମଧ୍ୟ ସେ ଅନୁରୋଧ କରିଥିଲେ । ଅତି ସାଧାରଣ

ଭାବରେ, ବିନା ଆଡ଼ମ୍ବରରେ ତାଙ୍କର ଶବସତ୍କାର କରିବାକୁ ସେ ବାରମ୍ବାର ଜୋର୍ ଦେଇଥିଲେ । ତାଙ୍କ ଭାଷାରେ "ମୃତ ଶରୀରକୁ ସ୍ନାନ କରାଇ ଗୋଟିଏ ସଫା ଚଦରରେ ଢାଙ୍କି ଦେବ । ବାସ୍ ସେତିକି । କୌଣସି ପଣ୍ଡିତଙ୍କ ମନ୍ତ୍ରପାଠ, ପୂଜା ଅର୍ଚ୍ଚନା, ଫୁଲ ଆଦିର ପ୍ରୟୋଜନ ନାହିଁ । ଶବଦାହ ସମୟରେ ବି ଯେମିତି ଖୁବ୍ କମ୍ ଲୋକ ଉପସ୍ଥିତ ରହନ୍ତି, ସେକଥା ଦେଖିବ । ଶୋକ ପାଳନର କୌଣସି ଆବଶ୍ୟକତା ନାହିଁ ।" ଶବଦାହ ପରେ ଚିତାଭସ୍ମକୁ କ'ଣ କରାଯିବ ସେ ବିଷୟରେ କ୍ରିଷ୍ଣମୂର୍ତ୍ତି ଯାହା କହିଥିଲେ ସ୍କଟ୍ ତାକୁ ମଧ୍ୟ ରେକର୍ଡ କରି ରଖିଥିଲେ । ପୂର୍ବରୁ ଅନେକେ ଅନୁମାନ କରୁଥିଲେ ଯେ କ୍ରିଷ୍ଣମୂର୍ତ୍ତି ହୁଏତ ନିଜର ଚିତାଭସ୍ମକୁ ଗଙ୍ଗାରେ ବିସର୍ଜନ କରିବା ଲାଗି କହିଯିବେ ......ମାତ୍ର ବାସ୍ତବରେ ସେସବୁ କିଛି ହେଲେ ସେ କହିଁ ନ ଥିଲେ । ସେ କହିଥିଲେ "ଚିତାଭସ୍ମକୁ ତିନି ଭାଗରେ ବାଣ୍ଟି ଭାରତ, ଓହାଇ ଓ ବ୍ରକ୍‌ଉଡ୍‌ପାର୍କ ନେଇଯିବ ।......ସେଠାରେ ତାକୁ ଖାଲି ମାଟିରେ ବୁଣିଦେବ । ତା ଉପରେ କାହାରିକୁ ଚଲାବୁଲା କରିବାକୁ ଦେବ ନାହିଁ । ସେଠି ଖାଲି ଗଛ ଲଗାଇଦେବ — ଜାଗାଟିକୁ ଅନାମିକା ଛାଡ଼ି ଦେବ ।"

କ୍ରିଷ୍ଣମୂର୍ତ୍ତିଙ୍କ ଅନ୍ତିମ ଇଚ୍ଛାକୁ ଅକ୍ଷରେ ଅକ୍ଷରେ ପାଳନ କରା ଯାଇଥିଲା । ତାଙ୍କର ମୃତ ଶରୀରକୁ ପରିଷ୍କାର ଭାବରେ ଗାଧୋଇ ଦେଇ ଖଦି ସିଲ୍‌କ କନା ଖଣ୍ଡିକରେ ଢାଙ୍କି ଦିଆଗଲା ଓ ତା' ଉପରେ ସେ ବ୍ୟବହାର କରୁଥିବା ହାଲୁକା କମ୍ବଲଟିଏ ବିଛାଇ ଦିଆଗଲା । ୧୭ ତାରିଖ ସକାଳ ଆଠଟା ବେଳେ ମେରୀ, ସ୍କଟ୍, ମହେଶ ସାକ୍‌ସେନା, ଡକ୍ଟର ପାରଚୁରେ, ଅସୀତ ଚନ୍ଦ୍ରମଲ ଓ ଅନ୍ୟ ଦୁଇଜଣ ଘନିଷ୍ଟ ସହଯୋଗୀଙ୍କ ଉପସ୍ଥିତିରେ ନିତାନ୍ତ ନିରାଡ଼ମ୍ବର ଭାବରେ କ୍ରିଷ୍ଣମୂର୍ତ୍ତିଙ୍କର ମର ଶରୀରକୁ ବୈଦ୍ୟୁତିକ ଚୁଲ୍ଲୀରେ ଦାହ କରାଗଲା ।

ମୃତ୍ୟୁର ମାତ୍ର ଦୁଇ ଦିନ ପୂର୍ବରୁ ଡକ୍ଟର ଡିଉସ୍‌ଙ୍କ ସହିତ କଥାବାର୍ତ୍ତା କରୁ କରୁ ସେ କହିଥିଲେ, "ମରିବା ଲାଗି ମୋର ଭୟ ନାହିଁ, କାରଣ

ଜୀବନଟା ସାରା ମୁଁ ମୁକ୍ତ ସତ୍ୟର ବଖ୍ୟା ଆସିଛି । କୌଣସି ସଂସ୍ଥାକୁ କେବେହେଲେ ସାଥିରେ ବାନ୍ଧି ରଖି ନାହିଁ ।”

## ‘କିଏ ସେଇ କୃଷ୍ଣମୂର୍ତ୍ତି ?’

ଗତ ଏକାନବେ ବର୍ଷର ଏକ ଚହ୍ଲା ମୁହଁ କାହିଁ ହଜିଗଲା, ଗମ୍ଭୀର ଆଖିର ଦୟାର୍ଦ୍ର, କରୁଣ ଦୃଷ୍ଟି କୁଆଡ଼େ ଛପିଗଲା, ଓଠର ହସ ଆଉ ଅବିରତ ପ୍ରଶ୍ନଶୀଳତା କାହିଁ କେଉଁଠି ଲୁଚିଗଲା । ରହିଲା ଖାଲି ତାଙ୍କର ଛବି — ଭିଡିଓ କ୍ୟାସେଟରେ; ରହିଲା ତାଙ୍କର କଣ୍ଠସ୍ୱର ଅଡ଼ିଓ କ୍ୟାସେଟରେ, ଆଉ ଅମର ହୋଇଗଲା ସେ ଶିକ୍ଷା । ଗଦା ଗଦା ପୁସ୍ତକ, ପ୍ରଶ୍ନୋତ୍ତର ସଙ୍କଳନ, ଟିପାଖାତା, ଜର୍ଣ୍ଣାଲ; ଭାଷଣାବଳୀର ସଙ୍କଳିତ ପୃଷ୍ଠା ସମୂହ ସେ ଶିକ୍ଷାକୁ ସାଇତି ରଖିଲେ — ଆଜି ପାଇଁ ନୁହେଁ, କାଲି ପାଇଁ ନୁହେଁ — ଯୁଗ ଯୁଗ ପାଇଁ; ଯେତେ କାଳ ଯାଏ ମଣିଷ ଆପଣା ସମସ୍ୟା, ଆପଣା ସୁଖ ଦୁଃଖର ଡୋରରେ ଆପଣାକୁ ବାନ୍ଧି ରଖିଥିବ ସେତେ କାଳ ଯାଏ ।

ଜନ୍ମ ମରଣ କିଛି ନୂଆ ଘଟଣା ନୁହେଁ । ଜନ୍ମ ଟାଣି ଆଣେ ହସ ଖୁସିର ପୁଆର, ଆନନ୍ଦ ଉଲ୍ଲାସ; ମରଣଟା ସଦାବେଳେ ଦୁଃଖ-ଦାୟକ । ତା ସାଥିରେ ବନ୍ଧା ଲୁହ, କୋହ ଆଉ ଅସହାୟତା । କୃଷ୍ଣମୂର୍ତ୍ତିଙ୍କ ବିୟୋଗରେ କିଏ ଭାଙ୍ଗି ପଡ଼ିଲା, କିଏ ଆପଣାକୁ ଅସହାୟ ମନେ କଲା, ସେଇଟା ଏଠି ପ୍ରଶ୍ନ ନୁହେଁ । ପ୍ରକୃତ ପ୍ରଶ୍ନ ହେଉଛି — ‘କିଏ ତେବେ ଏଇ କୃଷ୍ଣମୂର୍ତ୍ତି ?’ ...‘ଦକ୍ଷିଣ ଭାରତର ବ୍ରାହ୍ମଣ ପରିବାରରେ ଜନ୍ମ ସେହି ଗ୍ରେଟ ପିଲାଟି, ଯାହା ପାଇଁ କି ଥିଓସଫିକାଲ ସୋସାଇଟି ଗଢ଼ା ହେଲା, ଆନି ବେସାନ୍ତ, ଲେଡବିଟର ପ୍ରଭୃତି ଏତେ ଏତେ ଅପବାଦ ମଥାକୁ ନେଇଗଲେ, ତାହାର ପ୍ରକୃତ ପରିଚୟ କଣ ’? ...‘ଯାହା ପାଖରେ ଅତି ମୂଲ୍ୟବାନ, ଆଧୁନିକ ରୋଲସ୍‌ରୟେସ

ଗାଡ଼ିଠାରୁ ଆରମ୍ଭ କରି "ଷ୍ଟାର" ଅନୁଷ୍ଠାନର ଅଚଳାଚଳ ସମ୍ପତ୍ତି ଥିଲା ଓ ସେ ସବୁକୁ ଛାଡ଼ି ସିଏ ପୁଣି ଏକାକୀ ହୋଇଗଲା, ତା' ଜୀବନର ଉଦ୍ଦେଶ୍ୟ କ'ଣ ଥିଲା ?...'ସେ କ'ଣ ପ୍ରକୃତରେ ମହାମୁନୀ ମୈତ୍ରେୟଙ୍କ ଚେତନାର ପରପ୍ରକାଶ — ଚଳନ୍ତ ଯୁଗର ଜଗତଗୁରୁ ?' ଏ ସବୁ ପ୍ରଶ୍ନର ଉତ୍ତର କୌଣସି ନଥିପତ୍ରରୁ ମିଳିବା କିମ୍ବା ତାଙ୍କର ସହଯୋଗୀ-ମାନଙ୍କଠାରୁ ପଚାରି ବୁଝିବା ଏତେ ସହଜ ନୁହେଁ । କୃଷ୍ଣମୂର୍ତ୍ତିଙ୍କ ଜୀବନର କେତେକ ଘଟଣା ବଡ଼ ବିଚିତ୍ର ଓ ରହସ୍ୟମୟ । ତାଙ୍କର ସେ 'ପ୍ରକ୍ରିୟା' ଯାହାକି ସ୍ୱୟଂ ଲେଡ଼ବିଟରଙ୍କ ପାଇଁ ସୁଦ୍ଧା ଏକ ପ୍ରହେଳିକା ହୋଇଗଲା, ତାହା ଯେ କୌଣସି ଧରଣର ଶାରୀରିକ ପ୍ରକ୍ରିୟାଠାରୁ ଯେ ଭିନ୍ନ ଏଥିରେ ସନ୍ଦେହ ନାହିଁ । ତେବେ ତାଙ୍କର ଶିକ୍ଷା ଓ ଦର୍ଶନ କ'ଣ ସେହି ପ୍ରକ୍ରିୟା ସହିତ ସଂଶ୍ଳିଷ୍ଟ ? ଏ ଶିକ୍ଷାର ଉତ୍ସ କେଉଁଠି ? ତା'ର ମୌଳିକତାର ଉତ୍ପତ୍ତି କେଉଁଠାରେ ?

୧୮୭୫ ମସିହାରେ ଥିଓସଫିକାଲ ସୋସାଇଟି ପ୍ରତିଷ୍ଠା ହେବା ପରେ ଥିଓସଫିକାଲ ସୋସାଇଟିର ସଦସ୍ୟମାନଙ୍କ ମଧ୍ୟରେ ଆଗତପ୍ରାୟ ଜଗତଗୁରୁଙ୍କୁ ନେଇ ନାନା କଳ୍ପନା ଜଳ୍ପନା ଆରମ୍ଭ ହୋଇ ଯାଇଥିଲା । ସେ କିଭଳି ହେବେ, କେଉଁ ଦେଶରେ ଜନ୍ମ ଗ୍ରହଣ କରିବେ, ଥିଓସଫିର ସଭ୍ୟମାନଙ୍କୁ ଶିଷ୍ୟ ରୂପେ ଗ୍ରହଣ କରି କିପରି ଜ୍ଞାନ ପ୍ରଦାନ କରିବେ, ଏହିଭଳି ନାନା ପ୍ରଶ୍ନ ସେମାନଙ୍କ ମନରେ ଖେଳିବାରେ ଲାଗିଥିଲା । ସାଧାରଣତଃ, ମହାପୁରୁଷ କହିଲେ ସମସ୍ତେ ବୁଝନ୍ତି ଯେ ଲୋକଟିର ଅଲୌକିକ ଶକ୍ତି ଥିବ, କାହିଁ କେତେ ସିଦ୍ଧି ଥିବ, ସେ କେତେ କେତେ ଅସମ୍ଭବକୁ ସମ୍ଭବ କରି ଦେଇ ପାରୁଥିବ । ଥିଓସଫିବାଦୀମାନେ ମଧ୍ୟ ଏମିତି କେତେ କ'ଣ ସ୍ୱପ୍ନ ନେଇ ଏଭଳି ଏକ ଅଦ୍ଭୁତ ମହାମାନବଙ୍କର ଆବିର୍ଭାବକୁ ଅପେକ୍ଷା କରି ବସିଥିଲେ । ଏମିତି ସନ୍ଦେହ, ଆଶା ଓ ଖୋଜାଖୋଜିରେ ସମୟ ଗଡ଼ିବାକୁ ଲାଗିଲା । ଏତିକିବେଳେ ଜଣେ ପ୍ରଖ୍ୟାତ ଥିଓସଫିଷ୍ଟ, ଟି. ଏର୍. ରେଡଫର୍ଣ୍ଣ ଲଣ୍ଡନଠାରେ ତାଙ୍କ ଭାଷଣରେ ସୂଚନା ଦେଇ କହିଲେ ଯେ ୧୯୭୫ ମସିହାରେ ଜଗତଗୁରୁଙ୍କ ଆବିର୍ଭାବ ହେବାର ଅନେକ ଯୁକ୍ତିଯୁକ୍ତ ସମ୍ଭାବନା ରହିଛି । କଥାଟା

ଅନେକଙ୍କ ମନକୁ ଘେଇଲା । କାରଣ ପ୍ରଥମତଃ ସେମାନେ ହିସାବ କଲେ ଯେ ୧୯୭୫କୁ ଥିଓସଫିକାଲ ସୋସାଇଟି ପ୍ରତିଷ୍ଠା ହେବାର ଠିକ୍ ଶହେ ବର୍ଷ ପୂରୁଛି । ଦ୍ୱିତୀୟତଃ ସେହି ବର୍ଷଟି ଗଣନା ଅନୁସାରେ ବିଂଶ ଶତାବ୍ଦୀର ଶେଷ ଚତୁର୍ଥାଂଶର ଆରମ୍ଭ ଅବସ୍ଥା । ତେଣୁ ସେତିକବେଳେ ଜଗତକୁ ଏକ ନୂତନ ଆଧ୍ୟାତ୍ମିକ ପ୍ରେରଣା ମିଳିବା କଥା । ସେଥିପାଇଁ ଥିଓସଫିଷ୍ଟମାନେ ନିଜକୁ ମନେ ମନେ ୧୯୭୫ ମସିହାର ଆଗମନ ଲାଗି ପ୍ରସ୍ତୁତ କରିବାରେ ଲାଗି ପଡ଼ିଲେ । ଇତି ମଧ୍ୟରେ ଲେଡବିଟର ଓ ଆନି ବେସାନ୍ତ ଭାରତକୁ ଆସି କୃଷ୍ଣମୂର୍ତ୍ତିଙ୍କୁ ସନ୍ଧାନ କରି ତାଙ୍କୁ ମହାମୁନି ମୈତ୍ରେୟଙ୍କର ଚେତନାର ମାଧ୍ୟମ ହେବା ଲାଗି ଯୋଗ୍ୟ କରିବାକୁ ଜୋରସୋରରେ ଉଦ୍ୟମ କଲେ । କୃଷ୍ଣମୂର୍ତ୍ତି ଯେ ସେହି ବହୁ ଆକାଂକ୍ଷିତ ଜଗତଗୁରୁ ଏଥିନେଇ ସେ ଦୁହିଁଙ୍କର ତିଳେ ମାତ୍ର ସନ୍ଦେହ ନ ଥିଲା । ତାଙ୍କର ପିଲା ଦିନର ବୋକାମି, ସ୍କୁଲର ନୈରାଶ୍ୟଜନକ ପାଠ ପଢ଼ା, ଫେଲ ହେବା ଓ ତା'ପରେ ଯୁବା ବୟସରେ ମଟର ଗାଡ଼ି, କଳ କବ୍‌ଜା, ଖେଳାଖେଳି ତଥା ସାଜସଜ୍ଜା ଓ ରୂପ ପରିପାଟୀ ପ୍ରତି ଅଦମ୍ୟ ଝୁଙ୍କ ଇତ୍ୟାଦି ଲକ୍ଷ୍ୟ କରି ସୁଦ୍ଧା ସେ ଦୁହିଁଙ୍କ ମନରେ ଥରେ ହେଲେ ବି କୃଷ୍ଣମୂର୍ତ୍ତିଙ୍କ ପ୍ରକୃତ ପରିଚୟକୁ ନେଇ ସନ୍ଦେହ ଦେଖା ଦେଇ ନ ଥିଲା । କିନ୍ତୁ ବାହାରିଆ ଲୋକଙ୍କ କଥା ଅଲଗା । ସେମାନେ ଶିକ୍ଷାର ମୌଳିକତା ଓ ସତ୍ୟାସତ୍ୟକୁ ବାଦ ଦେଇ ଜଣେ ଜଗତଗୁରୁଙ୍କ ଠାରୁ ଆହୁରି ବହୁତ କିଛି ଦେଖିବାକୁ ଆଶା କରୁଥିଲେ ।

ଏମିତି ଅନିଶ୍ଚିତତା ଭିତରେ ୧୯୭୫ ମସିହାରେ ଶ୍ରୀମତୀ ମେରି ଲ୍ୟୁଟିନ୍‌ସ୍‌ଙ୍କର ରଚିତ କୃଷ୍ଣମୂର୍ତ୍ତି ଜୀବନୀ ('ଦି ଇଅର୍‌ସ୍ ଅଫ୍ ଆୱେକ୍‌ନିଂ') ପ୍ରକାଶ ପାଇଲା । ସତେ ଅବା ସାରା ବିଶ୍ୱରେ ଚହଲ ପଡ଼ିଗଲା ! କୃଷ୍ଣମୂର୍ତ୍ତିଙ୍କ ଜୀବନର ଯେଉଁ ଘଟଣାଗୁଡ଼ିକ ସେ ଯାଏଁ ଗୁପ୍ତ ରହିଥିଲା, ବା ଗୋଟିଏ ଦଳଟି ଭିତରେ ସୀମିତ ଥିଲା ତାହା ପ୍ରତ୍ୟେକ ବ୍ୟକ୍ତିର ହାତ ପାଆନ୍ତାକୁ ଆସିଗଲା । ବହିଟି ପଢ଼ି କେତେକଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ — 'ସେ କୃଷ୍ଣମୂର୍ତ୍ତି ତେବେ କ'ଣ

ଜଗତଗୁରୁ !' 'ତାଙ୍କର ଶିକ୍ଷା କ'ଣ ଏହି ଯୁଗର ମହାମନ୍ତ୍ର ?' ଅନେକେ ବିଶ୍ୱାସ କଲେ ନାହିଁ । କେତେ କେତେ ଧର୍ମଗୋଷ୍ଠୀ ତା ବିରୁଦ୍ଧରେ ସ୍ୱର ଉଠାଇଲେ । ସେମାନଙ୍କର ଯୁକ୍ତି ହେଲା ଯେଉଁ ବ୍ୟକ୍ତିଠାରେ ଅଲୌକିକ ସିଦ୍ଧି ପ୍ରମାଣିତ ହୋଇ ନାହିଁ, ଯିଏ ଜନ୍ମରୁ ଏଡ଼େ ଧିମା, ବୋକା ଥିଲା ସେ ପୁଣି ଜଗତଗୁରୁ ହେବ କିପରି ? ସେମାନଙ୍କର ଏ ପ୍ରଶ୍ନ ଆଜି ରହିଛି ଓ ଭବିଷ୍ୟତରେ ରହିବ ମଧ୍ୟ । ଏପରିକି ୧୯୮୦ ମସିହାରେ ବ୍ରିଟିଶ ଟେଲିଭିଜନର ଏକ ସାକ୍ଷାତକାରରେ ଭାଗ ନେଇ କେତେକ ବ୍ୟକ୍ତି ଆପଣାକୁ ଜଗତଗୁରୁ ବୋଲି ଦାବୀ ମଧ୍ୟ କରି ବସିଲେ । କିନ୍ତୁ କିଏ ପ୍ରକୃତରେ ଜଗତଗୁରୁ ଓ କିଏ ନୁହେଁ ସେକଥା ବିଚାର କରିବା ଅଧିକାର ପ୍ରତ୍ୟେକ ବ୍ୟକ୍ତିର ରହିଛି ଓ ଏଥିପାଇଁ କାହାରିକୁ ବୁଝାଇବା ନିଷ୍ପ୍ରୟୋଜନ ।

କିନ୍ତୁ ପ୍ରଶ୍ନ ଉଠେ, କିଏ ଏହି କୃଷ୍ଣମୂର୍ତ୍ତି ? ଆନି ବେସାନ୍ତ ଓ ଲେଡବିଟର ବିଶ୍ୱାସ କରୁଥିଲେ ଯେ ମହାମୁନି ମୈତ୍ରେୟଙ୍କର ମାଧ୍ୟମ ରୂପେ ବ୍ୟବହୃତ ହେବା ଲାଗି ଏ ନିର୍ଦ୍ଦିଷ୍ଟ 'ଜୀବାତ୍ମା'କୁ (୧୫୦) ଜନ୍ମ ଜନ୍ମ ଧରି ସ୍ୱାର୍ଥହୀନ, ଅନାବିଲ କରି ଗଢ଼ିବାର ପ୍ରୟାସ କରାଯାଉଥିଲା । ସେହି ଜୀବାତ୍ମାଟି କ୍ରମବିକାଶର ଅନେକ ସୋପାନ ଅତିକ୍ରମ କରି ଶେଷରେ କୃଷ୍ଣମୂର୍ତ୍ତି ନାମରେ ଏକ ଶୁଦ୍ଧ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କଲା । ଚଳିତ ଜନ୍ମରେ ହ୍ୱାଇଟ ବ୍ରଦରହୁଡ୍ ଠାରୁ କେତେକ ନିର୍ଦ୍ଦିଷ୍ଟ ତାଲିମ ପାଇବା ପରେ ସେହି ଜୀବାତ୍ମା ନିଜଠାରେ ମହାମୁନି ମୈତ୍ରେୟଙ୍କର ଚେତନାର ପରିପ୍ରକାଶ ଘଟାଇ ତାଙ୍କର ମାଧ୍ୟମ ରୂପେ ବ୍ୟବହୃତ ହେଲା । ଅନ୍ୟ ପକ୍ଷରେ କୃଷ୍ଣମୂର୍ତ୍ତିଙ୍କର ପରିଚୟ ନେଇ ଆଉ ଏକ ଯୁକ୍ତି ମଧ୍ୟ କରାଯାଇପାରେ । ସେଇଟି ହେଲା, ଲେଡବିଟର ନିଜ ପୁସ୍ତକରେ 'ଆଲକିଓନ' ନାମରେ ବର୍ଣ୍ଣନା କରିଥିବା ଜୀବାତ୍ମାଟି ନିଜର ସଦ୍‌ଗୁଣ, ସତକର୍ମ ଓ ସ୍ୱାର୍ଥହୀନତା ଦ୍ୱାରା କ୍ରମବିକାଶର ସୋପାନରେ ଉପରକୁ ଉଠି ବର୍ତ୍ତମାନ କୃଷ୍ଣମୂର୍ତ୍ତି ନାମରେ ଜନ୍ମ ନେଇଛି । ଉପରୋକ୍ତ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ

କୃଷ୍ଣମୂର୍ତ୍ତି ମହାମୁନୀ ମୈତ୍ରେୟଙ୍କର ମାଧ୍ୟମ ମାତ୍ର ନୁହନ୍ତି । ସେ ହେଉଛନ୍ତି ସ୍ୱୟଂ ଜଗତଗୁରୁ ।

ଏହି ପ୍ରସଙ୍ଗ ନେଇ ଥରେ ମେରୀ ଲ୍ୟୁଟିନ୍‌ସ୍ କୃଷ୍ଣମୂର୍ତ୍ତିଙ୍କ ସହିତ ଏକ ଖୋଲାଖୋଲି ଆଲୋଚନା କରିଥିଲେ । ଆଲୋଚନା କ୍ରମରେ ପ୍ରଶ୍ନ ଉଠିଲା ଯେ କୃଷ୍ଣମୂର୍ତ୍ତିଙ୍କ ମନରେ ସଦାବେଳେ ଯେଉଁ 'ଶୂନ୍ୟତା' ରହି ଆସୁଥିଲା ତାହା ସମ୍ଭବ ହୋଇଥିଲା କିପରି ? ତାଙ୍କୁ ଯେ ପିଲାଟି ଦିନରୁ ଥିଓସଫିର ଏତେ ଜ୍ଞାନ ଦିଆଗଲା, ନିର୍ଦ୍ଦିଷ୍ଟ ଢଙ୍ଗରେ ଶିକ୍ଷା ଦିଆଗଲା ତଥାପି ସେସବୁ ତାଙ୍କ ମନରେ ଏତେ ଟିକିଏ ବି ଦାଗ ରଖିଗଲା ନାହିଁ କାହିଁକି ? ତେବେ କ'ଣ ଏହି ଶୂନ୍ୟମନଟା ହେଉଛି କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଂଶ ? 'ଶୂନ୍ୟତା' ବିନା କଣ ଏ ଶିକ୍ଷା ସମ୍ଭବ ହୋଇ ପାରି ନ ଥାନ୍ତା ? କିନ୍ତୁ ସେଇଟା ତ ଆମର ପ୍ରକୃତ ପ୍ରଶ୍ନ ନୁହେଁ; ଆମର ପ୍ରକୃତ ପ୍ରଶ୍ନ ହେଉଛି ମନଟା ଏମିତି ଶୂନ୍ୟ ରହିଥାଏ 'କାହିଁକି' ? କାରଣ, ମନଟା ଶୂନ୍ୟ ଥିବା ହେତୁ ହିଁ କେବଳ ତହିଁରେ କୌଣସି ସମସ୍ୟା ନ ଥାଏ । ସେହି ଆଲୋଚନାର କ୍ରମରେ କ୍ରିଷ୍ଣମୂର୍ତ୍ତି କହିଲେ — "ଅବଶ୍ୟ ଏକଥା ମୁଁ କଦାପି କହିବି ନାହିଁ ଯେ ଏପରି ଘଟିବାଟା ଗୋଟାଏ ବଡ଼ ରହସ୍ୟ ବା ଅତି ଅସାମାନ୍ୟ ଘଟଣା ଯାହାକି ଅନ୍ୟ କାହାରି ଠାରେ ସମ୍ଭବ ହେବ ନାହିଁ; ଛୋଟ ପିଲା ଥିଲାବେଳେ ମୋର ଏ ମନଟା ଯାହା ଥିଲା ଏବେ ଠିକ୍ ସେଇଆ ରହିଛି । ସେ 'ଅନ୍ୟଟି' (the other thing) ଏବେ ସୁଦ୍ଧା ଏଇଠି ରହିଛି । ସେ ଏକ ପ୍ରାଣବନ୍ତ ଶକ୍ତି — କାହିଁ, ତାକୁ ଅନୁଭବ କରି ପାରୁଛ ଏଇଠି ?"

ମେରୀ— " ମୁଁ ଆପଣଙ୍କ କଥାରେ ପୂରା ଏକମତ । ଆପଣଙ୍କ ଶିକ୍ଷାର ସାରତତ୍ତ୍ୱ ତ' ଠିକ୍ ତାହା ହିଁ କହୁଛି—ଯେ କୌଣସି ବ୍ୟକ୍ତି ଏହା ଲାଭ କରି ପାରିବ ।"

କୃଷ୍ଣମୂର୍ତ୍ତି— "ବାସ୍, ଠିକ୍ କହୁଛ । ଏବେ କହ 'ସେଇଟି' ତା'ହେଲେ କ'ଣ ଏ ମନକୁ ଏମିତି ଶୂନ୍ୟ ରଖିଛି ? ଏତେ ବର୍ଷ ଧରି ମନଟା ତେବେ ଶୂନ୍ୟ ରହୁଛି କେମିତି ? ସତରେ କେଡ଼େ ଅଦ୍ଭୁତ, କେଡ଼େ ଚମତ୍କାର ...... ଏ ଯଦି ନିରାସକ୍ତ ହୋଇ ନ ଥାନ୍ତା ତାହାହେଲେ ଏସବୁ କିଛି ହେଲେ ସମ୍ଭବ ହୋଇ ନ ଥାନ୍ତା । 'ସେଇଟି' ତେବେ ତା'କୁ କହୁଥିବ 'ଦେଖ, ଶୂନ୍ୟତା ରହିବା ମୋ ପାଇଁ ନିହାତି ଦରକାର; କାରଣ ଶୂନ୍ୟତା ନ ଥିଲେ ମୋ ପକ୍ଷରେ କାର୍ଯ୍ୟ କରିବା ଆଦୌ ସମ୍ଭବ ନୁହେଁ ।' × × × × × ସେଦିନର ସେଇ ଶ୍ରେଷ୍ଠ ପିଲାଟି ଆଜି ପର୍ଯ୍ୟନ୍ତ କେମିତି 'ଶୂନ୍ୟ' ହୋଇ ରହିଯାଇଛି ସେକଥା ଆମେ ଖୋଜି ବାହାର କରିବାକୁ ବସିଛୁ । ସେ ଶୂନ୍ୟତାଟା କ'ଣ ସ୍ୱାର୍ଥହୀନତା ? 'ମୋର' ବା 'ମୋର ଘର' ଏଭଳି କୌଣସି ଆସକ୍ତି ନ ଥିବା ଗୁଣଟା କ'ଣ ହେଉଛି ଶୂନ୍ୟତା ? କିନ୍ତୁ ସେଇ ଶୂନ୍ୟତା, ସେଇ ସ୍ୱାର୍ଥହୀନତା ସମ୍ଭବ ହେଲା କିପରି ? ମହାମୁନି ମୈତ୍ରେୟ ଏ ଶରୀରକୁ ଗଢ଼ି ତାକୁ ଶୂନ୍ୟତା ପ୍ରଦାନ କଲେ ବୋଲି କହିବାଟା ବଡ଼ ଉପରଠାଉରିଆ ଜଣାପଡ଼ୁଛି । ଏମିତି ଗୋଟାଏ ସାଧାସିଧା ସରଳିଆ ଯୁକ୍ତି ଉପରେ ସନ୍ଦେହ ମଧ୍ୟ ଆସୁଛି । ପୁଣି ତମେ ଆଉ ଗୋଟିଏ କଥା ବି କହିପାର ଯେ ଏଇ କୃଷ୍ଣମୂର୍ତ୍ତିର ଜୀବାତ୍ମା ମହାମୁନି ମୈତ୍ରେୟ ପ୍ରଭୁ ବୁଦ୍ଧଙ୍କ ନିକଟରେ ପ୍ରାର୍ଥନା କଲା ଯେ 'ମୁଁ ମୋର କ୍ଷୁଦ୍ର, ଫଶୁଲ୍ଲିଆ ସ୍ୱ ଅପେକ୍ଷା 'ସେଇଟାକୁ' ଢେର ବେଶି ଗୁରୁତ୍ୱପୂର୍ଣ୍ଣ ମନେ କରୁଛି । ସେହି କାରଣରୁ ମୁଁ ମୋର ସେଇ ସ୍ୱ କୁ ( ଏ ଶରୀରରୁ ) ହଟାଇ ନେଉଛି ।' ମାତ୍ର ଏଭଳି ଏକ ଯୁକ୍ତି ପ୍ରତି ମଧ୍ୟ ମୋର ସନ୍ଦେହ ଆସୁଛି, କାରଣ ଏଥିରେ କିଛିଟା ଅନ୍ଧବିଶ୍ୱାସ ମିଶି ରହିଛି । ......ମହାମୁନି ମୈତ୍ରେୟ ଏହି କାୟାକୁ ସବୁଠାରୁ ସ୍ୱାର୍ଥହୀନ କାୟା ବୋଲି ଲକ୍ଷ୍ୟ କରି ଏହାରି ମାଧ୍ୟମରେ ଆପଣାକୁ ପ୍ରକାଶ କରିବାକୁ ଇଚ୍ଛା କଲେ ଏବଂ ତାଙ୍କର ଉଦ୍ଦେଶ୍ୟରେ ଏ ଶରୀରକୁ ପବିତ୍ର, ଅକଳୁଷିତ ରଖାଗଲା । ଆଗେ ଆନି ବେସାନ୍ତ ବରାବର କହୁଥିଲେ ଯେ କୃଷ୍ଣମୂର୍ତ୍ତିର ମୁଖମଣ୍ଡଳର ଅନେକ ତାତ୍ପର୍ଯ୍ୟ ରହିଛି, କାରଣ ସେ ମୁହଁଟି ହିଁ ହେଲା 'ତାହାର' ପ୍ରତୀକ । ଯାହାକୁ 'ତାହାର' ଉଦ୍ଦେଶ୍ୟରେ ଗଢ଼ା ଯାଇଛି ।

କିନ୍ତୁ ତାଙ୍କ କଥାରୁ କ'ଣ ଏଇ ଅର୍ଥ ବାହାରୁଛି ଯେ ଅନ୍ୟ କେହି ବ୍ୟକ୍ତି ତାହା ଲାଭ କରି ପାରିବ ନାହିଁ ? କୃଷ୍ଣମୂର୍ତ୍ତି ଏ ସୃଷ୍ଟିରେ ଏକ ଅନନ୍ୟ ଜୀବ, ଏକ ବ୍ୟତିକ୍ରମ ? ଭାରି ସୁବିଧା କଥାଟିଏ ନା ? ହେଲେ, ପ୍ରକୃତ କଥାଟା କ'ଣ ? ନା, ମୁଁ ନିଜେ ବି ଜାଣେ ନାହିଁ ସେକଥା । ସତ କହୁଛି — ମୁଁ ଜାଣେ ନାହିଁ । ...... ପୁଣି ଆଉ ଗୋଟିଏ କଥା — ଏ କୃଷ୍ଣମୂର୍ତ୍ତି ବୁଦ୍ଧଙ୍କ ପ୍ରତି ସଦା ଆକୃଷ୍ଟ । ଏହାକୁ କ'ଣ ତମେ କାହାର ପ୍ରଭାବ ବୋଲି କହିବ ? ନାଇଁ, ମୋର କାହିଁ ସେଭଳି ମନେ ହେଉ ନାହିଁ । ତେବେ ସେହି ଉତ୍ସଟି କ'ଣ ହେଉଛି ବୁଦ୍ଧ ? ମୈତ୍ରେୟ ? ସତ କଥାଟା କ'ଣ ? ଏଇଟା କ'ଣ ଏମିତି କଥାଟିଏ ଯାହାକି ଆମେ କେବେ ଖୋଜି ବାହାର କରି ପାରିବା ନାହିଁ ?"

ମେରି— "ଆଚ୍ଛା, ଆପଣଙ୍କୁ କ'ଣ କେବେହେଲେ ମନେ ହୋଇଛି ଯେ କେହିହେଲେ ଆପଣଙ୍କ ଭିତରେ ରହି ଆପଣଙ୍କୁ ଉପଯୋଗ କରୁଛି ?"

କୃଷ୍ଣମୂର୍ତ୍ତି— "ନା ସେଭଳି ତ କାହିଁ ମୋର ମନେ ହୁଏ ନାହିଁ । ଆମେ ଯେତେବେଳେ ଏ ବିଷୟରେ ମନପ୍ରାଣ ଦେଇ ଆଲୋଚନା କରୁ, ସେତେବେଳେ 'ତାହା' ବିଖରି ଭିତରକୁ ପ୍ରବେଶ କରେ ।"

ମେରି— "ତାହା କ'ଣ ଆପଣଙ୍କ କଷ୍ଟ ଯନ୍ତ୍ରଣା ସହିତ କୌଣସି ପ୍ରକାରେ ସଂଶ୍ଳିଷ୍ଟ ?"

କୃଷ୍ଣମୂର୍ତ୍ତି — "ମୁଁ ଯେତେବେଳେ ଏକବାରେ ନୀରବ ଥାଏ, ଅର୍ଥାତ କଥାବାର୍ତ୍ତା ନ କରି ଏକଦମ୍ ଚୁପ୍‌ଚାପ୍ ରହିଥାଏ ସେତିକବେଳେ ସେ ଯନ୍ତ୍ରଣା ଆସିଯାଏ । ପ୍ରଥମେ ତାହା ଖୁବ୍ ଧୀରେ ଧୀରେ ଶରୀରରେ ଦେଖା ଦିଏ; ଆଉ ତା ସଙ୍ଗେ ସଙ୍ଗେ ଏ ଶରୀର ବଳପି ଉଠେ 'ବାସ୍ ଆଉ ନୁହେଁ'... ସେତିକ ଥାଉ ।' କିନ୍ତୁ ତାହା ଯାଇ ଚରମ ସୀମାରେ ପହଞ୍ଚିବା ପରେ ଶରୀର ଚେତା ହରାଏ । ପୁଣି ସେ କଷ୍ଟ ଧୀରେ ଧୀରେ ଅପସରି ଯାଏ, କିମ୍ବା ବାହାରୁ କୌଣସି ହସ୍ତକ୍ଷେପ ହେଲେ ମଧ୍ୟ ତାହା ଦୂର ହୋଇଯାଏ । × × × × ଏଇ ଜିନିଷଟି ତେବେ ପ୍ରକୃତରେ

କ'ଣ ? ଏସବୁରେ ନିଶ୍ଚୟ ଏଭଳି କିଛି ଉପାଦାନ ରହିଛି ଯାହା କି ମନୁଷ୍ୟ ସୃଷ୍ଟି ନୁହେଁ କି କାଳ୍ପନିକ ମଧ୍ୟ ନୁହେଁ । ଯାହାକୁ ମୋ ମନର ଭ୍ରମ ବୋଲି ମଧ୍ୟ କହି ପାରିବ ନାହିଁ । କାରଣ ମୁଁ ସେଭଳି ନୁହେଁ । ତେବେ ଏଇଟା. କ'ଣ ଏମିତି ଗୋଟିଏ ଜିନିଷ ଯାହାକୁ କି ଆମେ କେବେହେଲେ ଖୋଜି ବାହାର କରି ପାରିବା ନାହିଁ ......ଯାହାକୁ କି ସ୍ପର୍ଶ କରିବା ବି ଉଚିତ ହେବ ନାହିଁ; ଯାହା ଭିତରେ ପଶି ହେବ ନାହିଁ ! ମୁଁ ନିଜେ ବି ସେଇ କଥା ଭାବି ହେଉଛି । ଅନେକ ସମୟରେ ମୋର ମନେ ହୁଏ ଯେ ଏହାକୁ ଖୋଜି ବାହାର କରିବା ମୋର କାମ ନୁହେଁ । ପୁଣି ବେଳେବେଳେ ମନେ ହୁଏ ଯେ ଆମେ କେବେହେଲେ ଯାହାକୁ ଖୋଜି ବାହାର କରି ପାରିବା ନାହିଁ । ଆମେ କହୁଛୁ ଯେ ମନଟା ଫାଙ୍କା, ଶୂନ୍ୟ ଥିବାରୁ ଏହା ଦେଖା ଦେଉଛି, କିନ୍ତୁ ତାହା ବି ବୋଧହୁଏ ଠିକ୍ ନୁହେଁ × × × × × ତେବେ ଏସବୁ କ'ଣ ଏମିତି ଜିନିଷ ଯାହାକୁ ଆମେ ଛୁଇଁ ସୁଦ୍ଧା ପାରିବୁ ନାହିଁ ? ଆମେ ଆମର ମନ ସାହାଯ୍ୟରେ ତାକୁ ଛୁଇଁବାର ଉଦ୍ୟମ କରୁଛୁ । ତେଣୁ ମନଟା ଯେତେବେଳେ ସମ୍ପୂର୍ଣ୍ଣ ଭାବେ ନୀରବ ଥିବ, ସେତିକବେଳେ ଚେଷ୍ଟା କରି ଦେଖ । କାରଣ ଏକଥାର ସତ୍ୟତା ଉପଲବ୍ଧି କରିବା ପାଇଁ ତମର ମନଟା ପୂରା ଶୂନ୍ୟ ରହିଥିବା ଆବଶ୍ୟକ ।"

ମେରି — "ତା'ହେଲେ କ'ଣ ଅନ୍ୟ କୌଣସି ବ୍ୟକ୍ତି ତାହାକୁ ଜାଣି ପାରିବ ନାହିଁ ?"

କୃଷ୍ଣମୂର୍ତ୍ତି — "ହଁ, 'ତମେ' ଇଚ୍ଛା କଲେ ଜାଣି ପାରିବ, କାରଣ ତମେ ସେ ବିଷୟରେ ଲେଖିବାକୁ ଯାଉଛ । କିନ୍ତୁ ମୁଁ ସେକଥା କରି ପାରିବି ନାହିଁ × × × ହଁ, ମୁଁ ସତ କହୁଛି ମୁଁ ନିଜେ କେବେହେଲେ ତାହା ଜାଣି ପାରିବି ନାହିଁ । ଯେମିତି, ପାଣିଟା କି ଜିନିଷ ସେକଥା ସେ ନିଜେ କ'ଣ କେବେହେଲେ ଜାଣିପାରିବ କି ?"

କୃଷ୍ଣମୂର୍ତ୍ତିଙ୍କ ବ୍ୟକ୍ତିତ୍ୱ ଭଳି କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ମଧ୍ୟ ଅନନ୍ୟ ଓ ଅସାଧାରଣ । ତାଙ୍କର ଭାଷଣ ଶୁଣିଥିବା ଅନେକ ଶ୍ରୋତା ତାଙ୍କ

ଦର୍ଶନକୁ ଅସ୍ପଷ୍ଟ, ଅର୍ଥହୀନ ଦର୍ଶାଇ ଭର୍ତ୍ସନା କରିଛନ୍ତି । ସେ ଶ୍ରୋତା ଓ ପାଠକଗଣଙ୍କୁ ନିର୍ଦ୍ଦିଷ୍ଟ ରୂପେ ସତ୍‌ମାର୍ଗ ଦେଖାଇବା ପରିବର୍ତ୍ତେ କେବଳ ଧନ୍ଦାଉଛନ୍ତି ଓ ତାଙ୍କ ମନରେ ଅନେକ ଅନେକ ଅହେତୁକ ପ୍ରଶ୍ନ ସୃଷ୍ଟି କରୁଛନ୍ତି — ଏଭଳି ନାନା ଯୁକ୍ତି ଦର୍ଶାଇ ଦେଶ ବିଦେଶର ଅନେକ ସମାଲୋଚକ ତାଙ୍କର ଶିକ୍ଷା ପଦ୍ଧତିରେ ତ୍ରୁଟି କାଢ଼ିଛନ୍ତି । କିନ୍ତୁ ଏସବୁ ପ୍ରତିକୂଳ ମନ୍ତବ୍ୟ ସତ୍ତ୍ୱେ କୃଷ୍ଣମୂର୍ତ୍ତିଙ୍କର ଶିକ୍ଷାକୁ ଭଲ ଭାବରେ ବୁଝିବାକୁ ହେଲେ ଆମକୁ ପ୍ରଥମେ ସେହି ଶିକ୍ଷାର ତାତ୍ପର୍ଯ୍ୟ କ'ଣ ଓ ତାହାର ସୃଷ୍ଟି କେଉଁଠି — ଏ ଦୁଇଟି ବିଷୟ ବିଚାର କରି ଦେଖିବାକୁ ହେବ । କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ସମ୍ବନ୍ଧରେ ଆଲୋଚନା କରିବାକୁ ଆମର ବୁଦ୍ଧିଜୀବୀ ସମାଜରେ ଅନେକ ତଥାକଥିତ କୃଷ୍ଣମୂର୍ତ୍ତିବାଦୀ ଆଗେଇ ଆସିବେ, ମାତ୍ର ସେମାନଙ୍କର ବିଚାର ବିବେଚନା ଅପେକ୍ଷା କୃଷ୍ଣମୂର୍ତ୍ତି ସ୍ୱୟଂ ନିଜର ଶିକ୍ଷା ବିଷୟରେ ଯାହା କହି ଯାଇଛନ୍ତି ତାହା ଅଧିକ ଗ୍ରହଣ ଯୋଗ୍ୟ ।

ଏହି ପ୍ରସଙ୍ଗରେ ଥରେ ତାଙ୍କ ସାଙ୍ଗରେ ମେରି ଲ୍ୟୁଟିନ୍‌ସଙ୍କର ଏକ ଗମ୍ଭୀର ଆଲୋଚନା ହୋଇଥିଲା । ସେଥିରେ ମେରି ତାଙ୍କୁ ପଚାରିଥିଲେ, "ଆପଣଙ୍କର ଏ ଶିକ୍ଷା ଅତ୍ୟନ୍ତ ଜଟିଳ, ନୁହେଁ କି ?"

କୃଷ୍ଣମୂର୍ତ୍ତି — "ହଁ, ନିଶ୍ଚୟ ଖୁବ୍ ଜଟିଳ ।"

ମେରି — "ଆପଣ ନିଜେ ଏହାକୁ ପଢ଼ିଲେ ବୁଝି ପାରିବେ କି ?"

କୃଷ୍ଣମୂର୍ତ୍ତି — "ନିଶ୍ଚୟ । ଏଥିରେ ସନ୍ଦେହ ନାହିଁ ।"

ମେରି — "ଏ ଶିକ୍ଷାକୁ ଏପରି ଗଢ଼ିଲା କିଏ ? ଆପଣ ସ୍ୱୟଂ, ନା ସେ 'ରହସ୍ୟ'ଟି ?"

କୃଷ୍ଣମୂର୍ତ୍ତି — "ଖୁବ୍ ଭଲ ପ୍ରଶ୍ନଟିଏ ପଚାରିଛ — କିଏ ସେହି ଶିକ୍ଷାକୁ ଗଢ଼ିଲା ?"

ମେଷ୍ଟ — "ହଁ, କାରଣ କ୍ରିଷ୍ଣମୂର୍ତ୍ତି ଭାବରେ ମୁଁ ଆପଣଙ୍କୁ ଯାହା ଯେମିତି ଜାଣିଛି ସେଥିରେ ଆପଣ ଯେ ଏହି ଶିକ୍ଷାକୁ ସ୍ୱୟଂ ଗଢ଼ିଛନ୍ତି ସେ କଥା କାହିଁକି ମୁଁ ଆଦୌ ବିଶ୍ୱାସ କରି ପାରୁନାହିଁ ।"

କ୍ରିଷ୍ଣମୂର୍ତ୍ତି — "ତେବେ ତମେ କହିବାକୁ ଚାହୁଁଛ ଯେ କୌଣସି ଶିକ୍ଷା ବିନା ମୁଁ ନିଜେ ଏହାକୁ ଗଢ଼ିଛି, ନା ଆଉ ଜଣେ କେହି ମୋ ପାଇଁ ଏ କାମ କରିଛି — ଏଇ ତ ?"

ମେଷ୍ଟ — "ହଁ । କାରଣ ଆପଣଙ୍କ ଠାରେ ଏଭଳି କିଛି ଆତ୍ମପ୍ରକାଶ କରିଛି ଯାହା କି ଆପଣଙ୍କ ମସ୍ତିଷ୍କରୁ ସୃଷ୍ଟି ହେବା ପରି ମୋର ମନେ ହେଉ ନାହିଁ ।"

କ୍ରିଷ୍ଣମୂର୍ତ୍ତି — "ଏ ଶିକ୍ଷା କ'ଣ ଅଭୂତପୂର୍ବ, ଅସାଧାରଣ ? × × × × ମୁଁ ଯଦି ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ସ୍ୱାକୁ ଲେଖିବାକୁ ବସିବି ତେବେ ଲେଖି ପାରିବି କି ନାହିଁ ସନ୍ଦେହ । ...... ପ୍ରଥମେ ମୋ ଠାରେ ଏକ ଶୂନ୍ୟତା ଆସେ, ତା'ପରେ ଯାଇ 'ତାହା' ଦେଖାଦିଏ । କିନ୍ତୁ ମୁଁ ଯଦି ତାହା କରିବା ବା ଲେଖିବା ଉଦ୍ଦେଶ୍ୟରେ ବସିବି ତେବେ ବୋଧହୁଏ ଏସବୁ କରି ପାରିବି ନାହିଁ । ଶୋପେନ୍‌ହରି, ଲେନିନ୍, ବର୍ଟ୍ରାଣ୍ଡ୍ ରସେଲ ଆଦି ଦାର୍ଶନିକଗଣ ବହୁ ସଂଖ୍ୟକ ପୋଥି ପୁସ୍ତକ ପଢ଼ିଥିଲେ । କିନ୍ତୁ ଏଠି ଆମେ ଏଭଳି ଲୋକଟିଏ ଦେଖୁଛୁ ଯେ କି ଆଦୌ କୌଣସି ଶିକ୍ଷା ଦୀକ୍ଷା ପାଇନାହିଁ, କୌଣସି ପ୍ରକାର ତାଲିମ ପାଇନାହିଁ । ତେବେ ତା'ଠାରେ ଏସବୁ ଜିନିଷ ଆସିଲା କିପରି ? ଖାଲି କ୍ରିଷ୍ଣମୂର୍ତ୍ତିର ବିଷୟ ମନରେ ଯଦି ଧରାଯାଏ, ତେବେ ତ ସେ ଅଶିକ୍ଷିତ, ଶାନ୍ତ, ସୁଧୀର — କହ ତେବେ ତା' ପାଖରେ ଏସବୁ ଆସିଲା କେଉଁଠୁ ? ଏ ଲୋକଟି ତ' ସେହିସବୁ ଶିକ୍ଷାକୁ ଭାବି ଚିନ୍ତି ସୃଷ୍ଟି କରିନାହିଁ ।"

ମେଷ୍ଟ — "ତେବେ ଆପଣ ଭାବନା ବା ଚିନ୍ତାଶକ୍ତି ଦ୍ୱାରା ଏହାକୁ ସୃଷ୍ଟି କରି ନାହାନ୍ତି ବୋଲି କହୁଛନ୍ତି ।"

କ୍ରିଷ୍ଣମୂର୍ତ୍ତି — "ହଁ, ତମେ ଠିକ୍ ବୁଝିଛ । ଏଇଟା ଠିକ୍ ଆବିର୍ଭାବ ଘଟିବା ଭଳି କଥାଟିଏ । ମୁଁ ଯେତେବେଳେ କଥା କହୁଥାଏ

ସେତେବେଳେ ଏହା ଘଟିବାରେ ଲାଗିଥାଏ । × × × × ଆସ ଏବେ ପ୍ରଶ୍ନଟିକୁ ଆଉ ଟିକିଏ ଗଭୀର କରି ଦେଖିବା । ପିଲାଟିକୁ ଆବିଷ୍କାର କରାଗଲା ; ପୁଣି, ସ୍ଥିତିବଦ୍ଧତାର ସାମାନ୍ୟତମ ପ୍ରଭାବ ମଧ୍ୟ ତା' ଉପରେ ପଡ଼ିଲା ନାହିଁ । ଅଧିକନ୍ତୁ, ମାନ ମର୍ଯ୍ୟାଦା, ଜଗତଗୁରୁତ୍ୱ, ଅଜସ୍ର ଧନ ସମ୍ପତ୍ତି — ଏସବୁ କିଛି ହେଲେ ସେ ପିଲାଟିକୁ ଟଳାଇ ପାରିଲା ନାହିଁ । କାହିଁକି ? କିଏ ତାକୁ ଏସବୁରୁ ଆପଣେ କରି ରଖିଲା ?"

ମେରୀ — "କୌଣସି ଏକ 'ଶକ୍ତି' ନିଶ୍ଚୟ ତାହା କରିଥିବ । କିନ୍ତୁ ସେହି ମହାନ ଶକ୍ତିକୁ କଳନା କରିବାର କ୍ଷମତା ଆମର ଏ ସୀମିତ ମସ୍ତିଷ୍କର ବାହାରେ । ତାହା ଠିକ୍ ଏକ ବିଦ୍ୟୁତ୍ ପରିବାହକ ସଦୃଶ କାର୍ଯ୍ୟ କରିଥିବ ।"

କୃଷ୍ଣମୂର୍ତ୍ତି — ହଁ "ଏ ଶରୀରରେ ନିଶ୍ଚୟ କିଛି ବିଶେଷତ୍ୱ ରହିଛି । ··· ଏ ଶରୀରକୁ ସେହି 'ଶକ୍ତି'ଟି ଜଗି କରି ରହିଥିଲା ।"

ମେରୀ — "ଆଉ ଜଗିବା ସଙ୍ଗେ ସଙ୍ଗେ 'ପ୍ରକ୍ରିୟା' ଲାଗି ତାକୁ ସଜ ମଧ୍ୟ କରୁଥିଲା । ନୁହେଁ କି ?"

କୃଷ୍ଣମୂର୍ତ୍ତି — "ସେକଥା ତ ପଛରେ ଘଟିଲା । କିନ୍ତୁ ଏସବୁକୁ ବିଶ୍ୱାସ କରିନେବା ଅର୍ଥ ହେଉଛି ଏହା ଏକ ଅସାଧାରଣ ଘଟଣା — ସୃଷ୍ଟିର ଏକ ବ୍ୟତିକ୍ରମ । ଆଉ ଏ ବ୍ୟତିକ୍ରମଟି କେବଳ ସେହି 'ଶିକ୍ଷା' ଉଦ୍ଦେଶ୍ୟରେ ହିଁ ଗଢ଼ା । କିନ୍ତୁ ପ୍ରକୃତରେ ଆମ ପକ୍ଷରେ ଏ ବ୍ୟତିକ୍ରମକୁ ଜାଣିବାର କୌଣସି ମୂଲ୍ୟ ନାହିଁ । ଯେ କୌଣସି ବ୍ୟକ୍ତି ଏ ଶିକ୍ଷାକୁ ଗ୍ରହଣ କରି ପାରିବ ; ତା'ର ସତ୍ୟତାକୁ ଉପଲବ୍ଧି କରି ପାରିବ ।"

ବାସ୍ତବରେ ଆମର ସକଳ ପାରମ୍ପରିକ ଦର୍ଶନ ବା ଶିକ୍ଷାତତ୍ତ୍ୱ ଠାରୁ କୃଷ୍ଣମୂର୍ତ୍ତିଙ୍କର ଶିକ୍ଷାତତ୍ତ୍ୱ ସମ୍ପୂର୍ଣ୍ଣ ଭିନ୍ନ — ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧରଣର ଏବଂ ସେହି ଅନନ୍ୟତାରେ ହିଁ ତାଙ୍କ ଶିକ୍ଷାର ମାଧୁର୍ଯ୍ୟ

ନିହିତ । ସାଧାରଣତଃ ଗୁରୁ କହିଲେ ଆମ ଆଖି ଆଗରେ ଏଭଳି ଏକ ମହାପୁରୁଷଙ୍କ ଛବି ଭାସି ଉଠେ ଯିଏ କି ନିଶ୍ଚିତ ରୂପେ କିଛି ନା କିଛି ଅଲୌକିକ ଶକ୍ତି ବା ସିଦ୍ଧିର ଅଧିକାରୀ ହୋଇଥିବେ, ଆପଣା ସାଧନା ବଳରେ ସର୍ବଶକ୍ତିମାନ ଈଶ୍ୱରଙ୍କ ନିକଟବର୍ତ୍ତୀ ହୋଇଥିବେ ବୋଲି ଆମେ ମନେ ମନେ ଧରି ନେଉ, ତେଣୁ ତାଙ୍କୁ ଇ' ଆଖି ବୁଜି ଅନୁସରଣ କରିବାରେ ଲାଗୁ । କ୍ରମଶଃ ସେହି ଗୁରୁଙ୍କର ଶିଷ୍ୟମାନେ ଏକଜୁଟ ହୋଇ ଗୁରୁ ଦର୍ଶାଇଥିବା ମାର୍ଗକୁ ଅନୁସରଣ କରି ଏକ ସ୍ୱତନ୍ତ୍ର ଧର୍ମଗୋଷ୍ଠୀ ଗଢ଼ି ବସନ୍ତି ଓ ତା'ପରେ ତାଙ୍କର ଦର୍ଶନବାଦକୁ ବ୍ୟାଖ୍ୟା ବିଶ୍ଳେଷଣ କରି ପ୍ରଚାର ଦ୍ୱାରା ଆପଣା ଗୋଷ୍ଠୀରେ ଅଧିକରୁ ଅଧିକ ଶିଷ୍ୟ ଠୁଳ କରିବାରେ ଲାଗି ପଡ଼ନ୍ତି ।

ମାତ୍ର କୃଷ୍ଣମୂର୍ତ୍ତିଙ୍କର ଶିକ୍ଷାତତ୍ତ୍ୱରେ ତାଙ୍କର ଦର୍ଶନକୁ ଅଧିକ ପଢ଼ିଥିବା ବା ବେଶି ବୁଝିଥିବା ବ୍ୟକ୍ତି ତାହାକୁ ବିଶ୍ଳେଷଣ କରି ସରଳ ଭାବରେ ଅନ୍ୟ ଜଣକୁ ବୁଝାଇବାକୁ ଚେଷ୍ଟା କଲେ ସେହି ଶିକ୍ଷାର ଅନ୍ତର୍ନିହିତ ଅର୍ଥକୁ କଦାକାର କରିବା ସଙ୍ଗେ ସଙ୍ଗେ ତାହାର ମୌଳିକତାକୁ ନଷ୍ଟ କରିଥାଏ । ଏ ପରିପ୍ରେକ୍ଷୀରେ ଆମକୁ କୃଷ୍ଣମୂର୍ତ୍ତିଙ୍କର ନିଜସ୍ୱ ଉକ୍ତିକୁ ପୁଣି ଥରେ ସ୍ମରଣ କରିବାକୁ ହେବ । ୧୯୭୩ ମସିହା ଜୁନ ମାସରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନର ଏକ ମିଳିତ ସମ୍ମିଳନୀରେ ସର୍ବସାଧାରଣଙ୍କ ଜାଣିବା ଉଦ୍ଦେଶ୍ୟରେ ସେ କହିଥିଲେ, "ମୋ ଶିକ୍ଷା ଉପରେ କୃଷ୍ଣମୂର୍ତ୍ତି ଫାଉଣ୍ଡେସନ୍ ଗୁଡ଼ିକର କୌଣସି ଅଧିକାର ନାହିଁ । ସେହି ଶିକ୍ଷା ଭିତରେ ହିଁ ସତ୍ୟ ନିହିତ ରହିଛି । ତେଣୁ ଫାଉଣ୍ଡେସନଗୁଡ଼ିକ କେବଳ ଦେଖିବେ — ଯେପରି କି ସେହି ଶିକ୍ଷା ଅକ୍ଷତ ଓ ଅତୁଟ ରହେ ; ସେଥିରେ ଯେପରି କୌଣସି ପ୍ରକାର ବିକୃତି ବା ଆବିଳତା ପ୍ରବେଶ ନ କରେ । ସେ ଶିକ୍ଷାର ବ୍ୟାଖ୍ୟା ଅଥବା ପ୍ରସାର ଲାଗି କୌଣସି ବ୍ୟାଖ୍ୟାକାରୀ ବା ପ୍ରତିନିଧି ପଠାଇବାର ଅଧିକାର ମଧ୍ୟ ଫାଉଣ୍ଡେସନର ନାହିଁ । ଆଗରୁ ମୁଁ ବାରମ୍ବାର କହି ଆସିଛି ଓ ଆଜି ପୁଣି ଥରେ କହି ରଖୁଛି ଯେ ଏବେ ହେଉ ବା

ଭବିଷ୍ୟତରେ ହେଉ, ଏ ଶିକ୍ଷାକୁ ମୋ ପକ୍ଷରୁ ପ୍ରଚାର କରିବାକୁ ମୋର କେହି ପ୍ରତିନିଧି ନାହିଁ ବା ଭବିଷ୍ୟତରେ ମଧ୍ୟ ରହିବ ନାହିଁ।"

× × × × ×

ମାତ୍ର ଦୁର୍ଭାଗ୍ୟର କଥା ଯେ ଏଥି ମଧ୍ୟରେ କେତେକ ବକ୍ତା କୃଷ୍ଣମୂର୍ତ୍ତିଙ୍କର ଶିକ୍ଷାକୁ ଅଧିକ ପଢ଼ିଛନ୍ତି ବା ଉପଲବ୍ଧି କରି ପାରିଛନ୍ତି ବୋଲି କହି, ଲୋକମାନଙ୍କ ଆଗରେ ତାହାକୁ ସରଳ ଭାବରେ ବୁଝାଇବାକୁ ବାହାରି ପଡ଼ିଲେଣି । ଫଳରେ ଅନେକ କ୍ଷେତ୍ରରେ ଶ୍ରୋତାମାନେ ସେଭଳି ବ୍ୟାଖ୍ୟାକାରୀଙ୍କ ଶିକାର ହୋଇ କୃଷ୍ଣମୂର୍ତ୍ତି 'ପ୍ରକୃତରେ କଅଣ କହୁଛନ୍ତି' ସେତିକ ଜାଣିବାରୁ ବଞ୍ଚିତ ହେଉଛନ୍ତି । ତେଣୁ କୃଷ୍ଣମୂର୍ତ୍ତିଙ୍କର ଶିକ୍ଷା କଣ ଓ ସେ କ'ଣ କହିଛନ୍ତି, ସେତିକ ବୁଝିବାକୁ ହେଲେ ପାଠକ ସ୍ୱୟଂ ତାଙ୍କର ବହି ପଢ଼ି ବା ତାଙ୍କର ଭାଷଣକୁ କ୍ୟାସେଟରେ ଶୁଣି ଆପେ ବୁଝିବା ଲାଗି ଚେଷ୍ଟା କରିବା ଉଚିତ । ତାଙ୍କର ଶିକ୍ଷାକୁ ବୁଝିବା ପାଇଁ ଏହା ହିଁ ଏକମାତ୍ର ଉପାୟ ।

ଉପରୋକ୍ତ ଉଦ୍ଦେଶ୍ୟ ସାଧନ କରିବା ଲାଗି 'କୃଷ୍ଣମୂର୍ତ୍ତି ଫାଉଣ୍ଡେସନ' ଦ୍ୱାରା ପୃଥିବୀର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ସ୍କୁଲ ଓ ଆନୁଷଙ୍ଗିକ ଅନୁଷ୍ଠାନ ସାଙ୍ଗକୁ ଏବେ ଭାରତରେ ଏକ ନୂଆ ଧରଣର ଅନୁଷ୍ଠାନ 'ସେଲଫ୍ ଏଡୁକେସନ୍' ଇନଷ୍ଟିଚ୍ୟୁସନ୍ ଗଢ଼ା ହୋଇଛି । କଟକର ପୁରୀଘାଟ ରୋଡ୍ଠାରେ ଥିବା 'ସେଲଫ୍ ଏଡୁକେସନ ଟ୍ରଷ୍ଟ' ଓ କଲିକତାର ଦେଓଦର ଷ୍ଟ୍ରିଟ୍ଠାରେ ଥିବା 'ସେଲଫ୍ ଏଡୁକେସନ ସେଣ୍ଟର' ନାମରେ ନାମିତ ଏହି ଦୁଇଟି ଅନୁଷ୍ଠାନର ପାଠାଗାରରେ କୃଷ୍ଣମୂର୍ତ୍ତିଙ୍କର ସମସ୍ତ ପୁସ୍ତକ ବ୍ୟତୀତ ବିଭିନ୍ନ ପ୍ରାଚୀନ ତଥା ପାରମ୍ପରିକ ଜ୍ଞାନ ସମ୍ବନ୍ଧୀୟ ଅନେକ ପୁସ୍ତକାଦି ସଞ୍ଚିତ ରହିଛି, ଯାହା ଦ୍ୱାରା କି ପାଠକ ଉକ୍ତ ଅନୁଷ୍ଠାନକୁ ଆସି ସମ୍ପୂର୍ଣ୍ଣ ମୁକ୍ତ ଭାବରେ କାଳାତୀତ ସତ୍ୟର ଅନୁସନ୍ଧାନ କରିପାରିବେ ଏବଂ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷା ସହିତ ନିଜେ ପରିଚିତ ହୋଇ ତାଙ୍କ ଶିକ୍ଷାର ସୌନ୍ଦର୍ଯ୍ୟକୁ ସ୍ୱୟଂ ଉପଲବ୍ଧି କରି ପାରିବେ । ଏହାଛଡ଼ା ଆଗ୍ରହୀ ବ୍ୟକ୍ତିଙ୍କର ସୁବିଧା ଲାଗି ଉକ୍ତ

ଅନୁଷ୍ଠାନ ଦୁଇଟିର ସଭାଗୃହରେ (auditorium)ରେ କ୍ରିଷ୍ଣମୂର୍ତ୍ତିଙ୍କର ଭାଷଣ ଓ ପ୍ରଶ୍ନୋତ୍ତର ସମ୍ବଳିତ ବହୁ ସଂଖ୍ୟକ ଟେପ୍ ଓ ଭିଡିଓ କ୍ୟାସେଟ ରହିଛି, ଫଳରେ କେହି ବ୍ୟକ୍ତି ତାଙ୍କର ବହି ପଢ଼ି ନ ପାରିଲେ ସୁଦ୍ଧା ତାଙ୍କର ଭାଷଣ ଶୁଣି ଯଥାର୍ଥ ଆନନ୍ଦ ଲାଭ କରି ପାରିବେ ।

ଜୀବନ ବଡ଼ ବିଚିତ୍ର, ରହସ୍ୟମୟ । ସେ ରହସ୍ୟକୁ ଉନ୍ମୋଚନ କରିବାକୁ କାହିଁ କେଉଁ ଆଦିମ କାଳରୁ ମଣିଷ କେତେ ଯେ ପ୍ରୟାସ କରିଛି ତା'ର କଳନା ନାହିଁ । କେତେ କେତେ ଚିନ୍ତକ, ମହାପୁରୁଷ ଏହି ରହସ୍ୟକୁ ଅନାବୃତ କରିବାର ଚେଷ୍ଟା କରି ସୁଦ୍ଧା କୌଣସି ସଠିକ, ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚି ପାରି ନାହାନ୍ତି । ତଥାପି ମାନବ ଜାତି ସେ ଉଦ୍ୟମରୁ ନିବୃତ୍ତ ହୋଇ ନାହିଁ । ଜୀବନର ଗୂଢ଼ ରହସ୍ୟ କ'ଣ ? ପାରସ୍ପରିକ ସମ୍ପର୍କରେ ଏତେ ଦୁଃଖ ଯାତନା କାହିଁକି ଭରି ରହିଛି ? ପୁଣି, ପରମ ସତ୍ୟ ଓ ଆନନ୍ଦ ଲାଭ କରିବାର ସୂତ୍ର କ'ଣ ? — ଏମିତି କେତେକ ଅଜଣା ପ୍ରଶ୍ନ ନେଇ ମଣିଷ ଯୁଗେ ଯୁଗେ ଧନ୍ଦ ହୋଇ ଆସିଛି ଏବଂ ଭବିଷ୍ୟତରେ ହେଉଥିବ ମଧ୍ୟ । କିନ୍ତୁ ଏସବୁ ପ୍ରଶ୍ନର ଉତ୍ତର ଅପେକ୍ଷା ଖୋଦ୍ ସେହି ପ୍ରଶ୍ନଗୁଡ଼ିକ ଯେ କେଡ଼େ ଗୁରୁତ୍ୱପୂର୍ଣ୍ଣ ଏକଥା କ'ଣ କେହି ହୃଦୟଙ୍ଗମ କରିଛି ? ଉତ୍ତର ଅପେକ୍ଷା ପ୍ରଶ୍ନ ହିଁ ଆମକୁ ସତ୍ୟର ସନ୍ଧାନ ଦେଇଥାଏ । 'ପାଇଯିବା' ଅପେକ୍ଷା 'ଖୋଜିବା'ରେ ହିଁ ଜୀବନର ମହତ୍ତ୍ୱ ଲୁଚି ରହିଥାଏ । ସତରେ, କେଡ଼େ ନିଛକ ଅଥଚ ଅଜଣା କଥାଟିଏ ଏଇଟା !

ସମୟ କାହାକୁ ଅପେକ୍ଷା କରେ ନାହିଁ । କ୍ରିଷ୍ଣମୂର୍ତ୍ତି ଆଜି ଆଉ ସଂସାରରେ ନାହାନ୍ତି । ତାଙ୍କର ସେହି ରହସ୍ୟମୟ ଜୀବନର ଇତି ଘଟିଛି । ମାତ୍ର ବାସ୍ତବରେ ତାଙ୍କର ଜୀବନ ବୃତ୍ତାନ୍ତ ଅପେକ୍ଷା ତାଙ୍କ ଶିକ୍ଷାର ମହତ୍ତ୍ୱ ଯେ ଅନେକ ବେଶି, ସେକଥା କେବଳ ତାଙ୍କର ଶିକ୍ଷାତତ୍ତ୍ୱକୁ ବୁଝିଥିଲେ ଅନୁଭବ କରି ହୁଏ । ତେବେ ସେତିକି କରିବା

ପାଇଁ ମଣିଷଠାରେ ଗଭୀର ଅନୁରାଗ ଓ ଚିନ୍ତନଶୀଳତା ରହିଥିବା ଆବଶ୍ୟକ । ମାତ୍ର ତାହାକୁ ମୁକ୍ତ ମନରେ ନିଜେ ନ ପଢ଼ି, ଜଣେ ବ୍ୟାଖ୍ୟାକାରୀ ମୁଖରୁ ସେତକ ଶୁଣିଲେ ମନ ଭିତରେ ସେହି ବ୍ୟାଖ୍ୟାକାରୀଙ୍କ ବ୍ୟାଖ୍ୟାଗୁଡ଼ିକ ପ୍ରାଧାନ୍ୟ ଲାଭ କରେ ଏବଂ କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷାର ତାତ୍ପର୍ଯ୍ୟ ହଜିଯାଏ । କ୍ରିଷ୍ଣମୂର୍ତ୍ତିଙ୍କ ମତରେ ସ୍ୱୟଂ ବ୍ୟକ୍ତି ହିଁ ହେଲା ସର୍ବେସର୍ବା । ଯେହେତୁ ଏଇଟା ହେଉଛି ତା'ର ବ୍ୟକ୍ତିଗତ ଜୀବନ — ଅନ୍ୟ କାହାର ନୁହଁ । ତେଣୁ ବ୍ୟକ୍ତି ଓ ତାଙ୍କର ଶିକ୍ଷା ଭିତରେ ମଧ୍ୟସ୍ଥ କେହି ନାହିଁ — କେହି ନାହିଁ — କେହି ନାହିଁ ।



## Special Notice

We have been asked to print the following notice which has appeared in all newspapers in India. It is necessitated by actions taken by small groups in India which have caused some public confusion. Of course, it applies only to India and we trust it will not be necessary to publish such notices elsewhere.

"It is well known that the KRISHNAMURTI FOUNDATION INDIA with its headquarters at 'Vasanta Vihar' Madras, is the only registered Society under the Act and the body authorised by Shri J. Krishnamurti, its Founder-President, to preserve and disseminate his Teachings ; publish books and journals of the Teachings ; produce and distribute audio and video tapes, and organise schools in the name of Krishnamurti. Unfortunately, some persons are creating confusion in the minds of people by registering themselves as a Society and using the name of Krishnamurti in their registration, journal and school.

BE IT KNOWN TO ALL CONCERNED that any Society, Organisation or Trust as a REGISTERED BODY USING THE NAME OF KRISHNAMURTI will put itself in an illegal position and it can be proceeded against by the Krishnamurti Foundation India."

( Bulletin No. 56. 1989
Krishnamurti Foundation Trust Limited.
Brockwood Park, United Kingdom. )

ଶ୍ରୀ ଜେ. କୃଷ୍ଣମୂର୍ତ୍ତିଙ୍କର କେତେଗୋଟି ଅନୁଦିତ ପୁସ୍ତକ :—

(୧) **ଆଗାମୀ ଜୀବନ** ଡିମାଇ ପୃ୩୫୨ସ୍ଥା ମୂଲ୍ୟ : ଅବନ୍ଧା ଟ୧୨-୦୦
**(Life Ahead)** ଛପା ୧୯୮୦ ବନ୍ଧାଇ ଟ୧୫-୦୦

(୨) ଧ୍ୟାନ ୧୯୬୯ କ୍ରାଉନ ପୃ ୮୫
**(Meditations 1969)**

ମନଗହନର ଉନ୍ମୋଚନ
**(Inward Flowering)**

ମନର ଏକ ସଂଳାପ (ଏକତ୍ର ତିନଖଣ୍ଡ) ଅବନ୍ଧା—ଟ୨-୨୫
**(A Dialogue with oneself)** ବନ୍ଧାଇ—ଟ୩-୨୫

(୩) ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ ଡିମାଇ ୧୬୩ପୃ ଅବନ୍ଧା—ଟ୫-୦୦
ଛପା ୧୯୮୧ ବନ୍ଧାଇ—ଟ୭-୦୦
**(Education and the Significance of life)**

(୪) ପରିବର୍ତ୍ତନ ଏକାନ୍ତ ଜରୁରୀ
ଡିମାଇ ପୃ ୨୫୦ ଛପା ୧୯୮୧ ଅବନ୍ଧା—ଟ୧୧-୦୦
**(The Urgency of Change)** ବନ୍ଧାଇ—ଟ୧୩-୦୦

(୫) ପରିଚିତରୁ ମୁକ୍ତି ଡିମାଇ ପୃ ୧୭୨ ଅବନ୍ଧା—ଟ୧୦-୦୦
ଛପା ୧୯୮୧ ବନ୍ଧାଇ—ଟ୧୨-୦୦
**(Freedom from the Known)**

(୬) ଧ୍ୟାନ ଡିମାଇ ପୃ ୭୪ ଅବନ୍ଧା—ଟ୪-୦୦
**(Meditations)** ଛପା ୧୯୮୨ ବନ୍ଧାଇ—ଟ୬-୦୦

(୭) ଏଇ ଯେ ସଂସ୍କୃତି ଡିମାଇ ପୃ ୪୦୮ ବନ୍ଧାଇ—ଟ୨୦-୦୦
**(This Matter of Culture)** ଛପା ୧୯୮୩

(୮) ଏକ ହିଁ ବିପ୍ଳବ ଡିମାଇ ପୃ ୨୯୮ ବନ୍ଧାଇ—ଟ୨୦-୦୦
**(The Only Revolution)** ଛପା ୧୯୮୪

(୯) କ୍ରିଷ୍ଣମୂର୍ତ୍ତି ଦିନ ଲିପି ଡିମାଇ ପୃ ୧୭୬ ବନ୍ଧାଇ—ଟ୧୩-୦୦
**(Krishnamurti's Journal)** ଛପା ୧୯୮୫

(୧୦) ଜୀବନ ଚର୍ଚ୍ଚା (୧ମ) ଡିମାଇ ପୃ ୫୧୩ ବନ୍ଧାଇ—ଟ୩୦-୦୦
**(Commentaries on Living-I)** ଛପା ୧୯୮୮

(୧୧) କ୍ରିଷ୍ଣମୂର୍ତ୍ତି କିଏ କାହିଁକି ଡିମାଇ ପୃ ୬୦ ବନ୍ଧାଇ—ଟ୫-୦୦
(ସଂକ୍ଷିପ୍ତ ଜୀବନୀ) ଛପା ୧୯୮୬

(୧୨) ଜେ. କ୍ରିଷ୍ଣମୂର୍ତ୍ତି ଡିମାଇ ପୃ ୩୪୨ ବନ୍ଧାଇ—ଟ୫୦-୦୦
(ଜୀବନୀ) ଛପା ୧୯୯୨
(ଲେଖିକା—ଡକ୍ଟର ନନ୍ଦିନୀ ଦାସ)

ଅନ୍ୟାନ୍ୟ ପୁସ୍ତକ

(୧୩) ଦୈବଯୋଗ ନା ନ୍ୟାୟ୍ୟ ବିଚାର ?
ଡିମାଇ ପୃ ୧୧୨ ଛପା ୧୯୮୬ ବନ୍ଧାଇ—ଟ୮-୦୦
**(Does Chance or Justice Rule Our Lives ?**
By—Nils A. Amneus

(୧୪) ଜନ୍ମ-ମୃତ୍ୟୁ ରହସ୍ୟ ଡିମାଇ ପୃ ୧୦୦ ବନ୍ଧାଇ—ଟ୮-୦୦
ଛପା ୧୯୮୬

